

ଜୀମୂତ ମଙ୍ଗରାଜ... ଦୀର୍ଘ ତିରିଶ ବର୍ଷର ସାମ୍ବାଦିକ ଜୀବନ । ଓଡ଼ିଶାର ଯେଉଁ କେତେଜଣ ଆଗଧାଡ଼ିର ସାମ୍ବାଦିକ ନିଜକ୍ଷେତ୍ରରେ ନିଜେ ଯଶସ୍ୱୀ ହୋଇପାରିଛନ୍ତି ସେମାନଙ୍କ ମଧ୍ୟରେ ଜୀମୂତ ମଙ୍ଗରାଜ ଅନ୍ୟତମ । ରାଜ୍ୟର ବିଭିନ୍ନ ଅଗ୍ରଣୀ ସମ୍ବାଦପତ୍ରଗୁଡ଼ିକରେ ଦୀର୍ଘବର୍ଷ ଧରି କାର୍ଯ୍ୟ କରିବା ପରେ ସେ ବର୍ତ୍ତମାନ ରାଜ୍ୟ ସରକାରଙ୍କ ସ୍ୱୀକୃତିପ୍ରାପ୍ତ ମୁକ୍ତବୃତ୍ତ ସାମ୍ବାଦିକ । ଅନୁସନ୍ଧାନମୂଳକ ରିପୋର୍ଟିଂକୁ ଯିଏ ଓଡ଼ିଶାରେ ପ୍ରସାର ଓ ଲୋକପ୍ରିୟ କରାଇଛନ୍ତି, ଯାହାଙ୍କର 'ଯତନନଗର' ଓ 'ମାଘମାସିଆ' ଭଳି ଲୋମ ଟାଙ୍କୁରି ଉଠୁଥିବା ବିଶେଷ ଅନୁସନ୍ଧାନମୂଳକ ରିପୋର୍ଟ ପଢ଼ି ସ୍ୱର୍ଗତ କବି ସଚ୍ଚି ରାଉତରାୟ ତାଙ୍କର ଆତ୍ମଜୀବନୀମୂଳକ ପୁସ୍ତକ 'ଉତରକକ୍ଷରେ' ଏହି ରିପୋର୍ଟର କିଛିଅଂଶ ଉଦ୍ଧୃତ କରିଥିଲେ । ଏହିଭଳି ବିଭିନ୍ନ ଅଭିଜ୍ଞତାକୁ ନେଇ ସେ ପ୍ରତିଷ୍ଠା କରିଛନ୍ତି ଓଡ଼ିଶାର ପ୍ରଥମ ରାଜନୈତିକ ସମ୍ବାଦପତ୍ର 'ନେତା' ଓ ପ୍ରଥମ ସ୍ୱାସ୍ଥ୍ୟଭିତିକ ସମ୍ବାଦପତ୍ର 'ଲାଇଫ୍ ଲାଇନ୍' । ଗଳ୍ପ, ଉପନ୍ୟାସ, କବିତା ପୁସ୍ତକ ସହିତ ପରିଚିତ ଥିବା ଓଡ଼ିଆ ପାଠକମାନଙ୍କୁ ଶ୍ରୀ ମଙ୍ଗରାଜ ଉପହାର ଦେଇଛନ୍ତି ଭିନ୍ନ ସ୍ୱାଦର ଦୁଇଟି ପୁସ୍ତକ 'ମୁହାଁମୁହିଁ' ଓ 'ଆସେମ୍ବ୍ଲି ଜୋକ୍ସ' । ଯାହା ରାଜନୈତିକ ତୁଙ୍ଗ ବ୍ୟକ୍ତିବିଶେଷଙ୍କ ସାକ୍ଷାତକାର ଓ ରାଜନୀତିର ଚଟକଦାର ଘଟଣାବଳୀ ଉପରେ ପର୍ଯ୍ୟବେସିତ। ଏ ଦୁଇଟି ପୁସ୍ତକ ବହୁଳ ଭାବରେ ପାଠକପ୍ରିୟ ହେବାପରେ ଜୀମୂତ ମଙ୍ଗରାଜଙ୍କର ତୃତୀୟ ରାଜନୀତିଧର୍ମୀ ଯାହା ନେତାମାନଙ୍କର ଗୁମର କଥାକୁ ନେଇ ସୃଷ୍ଟି ହେଉଥିବା ହାଲ୍‌କା ମନ୍ତବ୍ୟ ତଥା ରସାଳ ଘଟଣା ଉପରେ ଆଧାରିତ ପୁସ୍ତକ 'ଗୁମର କଥା' ପୁଣିଥରେ ପାଠକମାନଙ୍କ ପାଖରେ ଯେ ଏକ ଅଲଗା ଦିଗନ୍ତର ଉଦ୍‌ଘାଟନ କରିବ ଏଥିରେ ସନ୍ଦେହ ନାହିଁ । ଶ୍ରୀ ମଙ୍ଗରାଜ ଲେଖିକା ସାମ୍ବାଦିକା ପତ୍ନୀ ଜ୍ୟୋତ୍ସ୍ନା ରାଉତରାୟ, କନ୍ୟା ଋତୁପର୍ଣ୍ଣା ଓ ପୁତ୍ର ଅମୃତଙ୍କ ସହ ଭୁବନେଶ୍ୱର ୯ ନମ୍ବରସ୍ଥିତ ୩ ଆର୍-୧୬୭ରେ ଅବସ୍ଥାନ କରୁଛନ୍ତି ।

| | |
|---|---|
| ଗୁମର କଥା | Gumara Katha |
| ଲେଖକ : | Writer |
| ଜୀମୂତ ମଙ୍ଗରାଜ | Jimuta Mangaraj |
| ଫୋନ୍ | Phone |
| ୯୪୩୭୪୬୮୧୮୮ | 9437468188 |
| ପ୍ରକାଶକ | Publisher |
| ଏ.ଜେ. ପବ୍ଲିକେଶନ୍ସ | A.J. Publications |
| ପ୍ଲଟ ନଂ.-୬, ଭୌମନଗର, | Plot No. - 6, Bhoumanagar, |
| ଛାୟା ମେଡ଼ିକାଲ କମ୍ପ୍ଲେକ୍ସ | Chhaya Medical Complex |
| ଭୁବନେଶ୍ୱର, ୭୫୧୦୦୧ | Bhubaneswar, 751001 |
| ମୁଦ୍ରଣ | Printers |
| ମିଲନ୍ ଏଂଟରପ୍ରାଇଜେସ୍ | Milan Enterprises |
| ପ୍ଲଟ୍ ନଂ- ୨୬୫ | Plot No-265 |
| ଜୟଦେବବିହାର | Jaydev vihar |
| ଭୁବନେଶ୍ୱର | Bhubaneswar |
| ପ୍ରଥମ ପ୍ରକାଶନ | First Edition |
| ସେପ୍ଟେମ୍ବର ୨୦୧୦ | September 2010 |
| ମୂଲ୍ୟ | Price |
| ଦୁଇଶହ ପଚିଶ ଟଙ୍କା ମାତ୍ର | Rupees Two Hundred Twenty Five Only |
| ପ୍ରଚ୍ଛଦ ଓ ଅଙ୍ଗସଜ୍ଜା | Cover & Layout |
| ପ୍ରକାଶ କୁମାର ସାହୁ | Prakash Kumar Sahoo |
| ଅକ୍ଷରସଜ୍ଜା | DTP |
| ଅଜିତ୍ ଅମିତାଭ ନାୟକ | Ajit Amitav Nayak |
| ଫଟୋ | Photo |
| ଅଭିମନ୍ୟୁ ମହାରଣା | Abhimanyu Maharana |

# ଉତ୍ସର୍ଗ

ସମ୍ପର୍କର ଚୌହଦୀ ଭିତରେ

ଯେଉଁ ଦୁଇଜଣ ମୋତେ ଏ ପୃଥିବୀରେ

'ପିତା' ହେବାର ଗୌରବ

ଆଣିଦେଇଛନ୍ତି ସେହି

କନ୍ୟା 'ଋତୁପର୍ଣ୍ଣା' ଓ ପୁତ୍ର 'ଅମୃତ'

ହାତରେ -

**ଜୀମୂତ ମଙ୍ଗରାଜ**



# ନିଜ କଥା...

ଜୀବନ ଠାରୁ ବୋଧହୁଏ ଜୀବନର ଚଲାପଥଟା ଅଧିକ ଲମ୍ବା ଓ ବ୍ୟସ୍ତବହୁଳ । ପାରିବାରିକ ଓ ସାମାଜିକ ଜୀବନ ବ୍ୟତୀତ ଯେଉଁ ଜୀବନ ମୋର ଚଲାପଥର ପ୍ରତିଟି ମୁହୂର୍ତ୍ତକୁ ପୂର୍ଣ୍ଣ ବ୍ୟସ୍ତତାରେ ଭରିଦିଏ ତାହା ହେଲା ମୋର 'ସାମ୍ବାଦିକ' ଜୀବନ । ଅନ୍ୟ ପାଂଚଜଣଙ୍କ ପରି ମୁଁ ମଧ ଦିନେ ଚାହିଁଥିଲି ଗୋଟିଏ ନିରାପଦ କର୍ମଜୀବନ, ଗୋଟିଏ ସୁସ୍ଥିର ଗୃହକୋଣ କିମ୍ବା ଗୋଟିଏ ସ୍ୱଚ୍ଛନ୍ଦ ଜୀବନର ଗତି । କିନ୍ତୁ ମଣିଷ ଯାହା ଚାହେଁ ଈଶ୍ୱର ତାହା ଚାହାଁନ୍ତି ନାହିଁ । ସେ ତାଙ୍କର ନିଜର ଖିଆଲରେ ବ୍ୟକ୍ତିଟିକୁ ବାଟ କଢ଼ାଇ ନିଅନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ସାମ୍ବାଦିକତାରେ ଡିଗ୍ରୀ ହାସଲ କରି ମୁଁ ଯେତେବେଳେ ଉଚ୍ଚ ଚାକିରିରେ ଯୋଗଦାନ କରିବା ପାଇଁ ପ୍ରସ୍ତୁତ ହେଉଥିଲି ସେତେବେଳେ ହଠାତ୍ ମୋତେ ମିଳିଲା ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ (ପିଟିଆଇ)ରେ ଟ୍ରେନି ଜର୍ଣ୍ଣାଲିଷ୍ଟ ଭାବରେ ଯୋଗ ଦେବାର ସୁଯୋଗ । ହାତଛଡ଼ା ନକରି ଯୋଗ ଦେଲି । ତା'ପରେ ଦୀର୍ଘ ୩୦ ବର୍ଷର ଯାତ୍ରାପଥ । ଖବରକାଗଜ, ସମ୍ବାଦ, ସମାଜ, ପ୍ରଜାତନ୍ତ୍ର ପ୍ରଭୃତି ନାମକରା ଖବରକାଗଜଗୁଡ଼ିକରେ ସାମ୍ବାଦିକ ଭାବରେ କାମ କଲାପରେ ଓଡ଼ିଆ ସମ୍ବାଦପତ୍ର ଜଗତରେ ଏକ ନୂତନତା ଆଣିବା ପାଇଁ ଆଗ୍ରହୀ ହେଲି । ଏହି ଆଗ୍ରହରୁ ମୋ ଦ୍ୱାରା ସୃଷ୍ଟି ହେଲା ଓଡ଼ିଶାର ପ୍ରଥମ ରାଜନୈତିକ ସମ୍ବାଦପତ୍ର 'ନେତା' ଏବଂ ପ୍ରଥମ ସ୍ୱାସ୍ଥ୍ୟଭିତିକ ସମ୍ବାଦପତ୍ର 'ଲାଇଫ୍ ଲାଇନ୍' । ପୁଣି ଏ.ଜେ. ପବ୍ଲିକେସନ୍ସ ପରି ଏକ ପ୍ରକାଶନ ସଂସ୍ଥା । ଜଗନ୍ନାଥ ବାଟ ଚଲାଇଛନ୍ତି ଓ ମୁଁ ଚାଲୁଛି ।

ମୁଁ ଲେଖକ ନୁହେଁ କିନ୍ତୁ ମୋର ଦୀର୍ଘବର୍ଷର ଅଭିଜ୍ଞତା, ନାନା ଘଟଣା, ବିଧାନସଭା ଭିତରେ ବିଭିନ୍ନ ପ୍ରକାର ରସାଳ ବାକ୍ୟୁଦ୍ଧ, ବିଭିନ୍ନ ରାଜନୈତିକ ଦଳର ନେତାମାନଙ୍କର ଅଭିଜ୍ଞ ବକ୍ତବ୍ୟ ମୋତେ ଲେଖକ ହେବାକୁ ବାଧ କରିଛି । ହୁଏତ ସେସବୁ

ରାଜନୈତିକ ହୋଇପାରେ କିନ୍ତୁ ତା' ଭିତରେ ଲୁଚି ରହିଥାଏ ଲେଖିବାର ଖୋରାକ । ଯାହା ସାହିତ୍ୟ ଠାରୁ ମଧ୍ୟ ଅଧିକ ଆକର୍ଷକ, ମନୋରଂଜକ ଓ ହୃଦୟଗାହୀ । ବୋଧହୁଏ ସେଇଥିପାଇଁ 'ମହାଭାରତ' ରାଜନୀତିର ଶ୍ରେଷ୍ଠ ମହାକାବ୍ୟ ଭାବେ ସାରାବିଶ୍ୱରେ ଅପ୍ରତିଦ୍ୱନ୍ଦ୍ୱୀ ହୋଇରହିଛି ଆଉ ରହିଥିବ ମଧ୍ୟ ।

ଗୁମର କଥା ସେହିଭଳି ଏକ ପୁସ୍ତକ ଯାହା ରାଜନୀତିର ଅନେକ ଗୁମରକୁ ଫିଟାଇ ଦେବ ପାଠକମାନଙ୍କ ପାଖରେ ।

ଗୁମର କଥା ପୁସ୍ତକ ପ୍ରକାଶନ କ୍ଷେତ୍ରରେ ମୋ ସହିତ ସାମିଲ ହୋଇ ମୋର ବ୍ୟସ୍ତ ଜୀବନକୁ ସହଯୋଗ କରି ଯେଉଁମାନେ ମୋତେ ସବୁ ପ୍ରକାର ସାହାଯ୍ୟ କରିଛନ୍ତି ସେମାନଙ୍କ ପାଖରେ ମଧ୍ୟ ମୁଁ ଚିର ଉପକୃତ । ଅଭିମନ୍ୟୁ ମହାରଣାଙ୍କ ପରିଚ୍ଛନ୍ନ ଫଟୋଗ୍ରାଫ୍, ପ୍ରକାଶ ସାହୁଙ୍କ ଅଭିନବ ଲେଆଉଟ୍ ଡିଜାଇନ, ଅଜିତ୍ ଅମିତାଭ ନାୟକଙ୍କ ଅକ୍ଷରସଜ୍ଜା ଏହି ସଂକଳନଟିକୁ ଏକ ଅନନ୍ୟ ରୂପ ଦେଇଛି । ଅନ୍ତରଙ୍ଗ ବନ୍ଧୁ ନଳିନୀକାନ୍ତ ମହାନ୍ତି, ରାଧାକାନ୍ତ ପାଣି ଏବଂ ସହଯୋଗୀ ହୃଷୀକେଶ ଦାଶଙ୍କ ଉତ୍ସାହ ଓ ସାହାଯ୍ୟ ପାଇଁ ମୁଁ କୃତଜ୍ଞ । ମୋର ପତ୍ନୀ ଲେଖିକା, ସାମ୍ବାଦିକା ଜ୍ୟୋତ୍ସ୍ନା ରାଉତରାୟ, କନ୍ୟା ଋତୁପର୍ଣ୍ଣା, ପୁତ୍ର ଅମୃତଙ୍କ ଅକୁଣ୍ଠ ପ୍ରେରଣା ଓ ଉତ୍ସାହ ମୋତେ ସଂକଳନ ପ୍ରକାଶ ପାଇଁ ଆଗେଇ ନେଇଛି । ଯେଉଁମାନେ ମୋତେ ସାମାନ୍ୟତମ ସାହାଯ୍ୟ ମଧ୍ୟ କରିଛନ୍ତି ଏପରିକି କଥାରେ ମଧ୍ୟ ଉତ୍ସାହ ଦେଇଛନ୍ତି ସେମାନଙ୍କ ପାଖରେ ମୁଁ କୃତଜ୍ଞ । ଆଶା ରଖିଛି ମୋର ଦୁଇଟି ରାଜନୈତିକଧର୍ମୀ ପୁସ୍ତକ ମୁହାଁମୁହିଁ ଓ ଆସେମ୍ବ୍ଲି ଜୋକ୍ସ ପରି ଗୁମର କଥା ମଧ୍ୟ ପ୍ରିୟ ପାଠକମାନଙ୍କୁ କିଛି ଆନନ୍ଦ ଦେଇପାରିବ ।

- ଜୀମୂତ ମଙ୍ଗରାଜ -





**ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ**
ରାଜ୍ୟପାଳ, ଓଡ଼ିଶା

# ଲୋକପ୍ରିୟତା ହାସଲ କରିବ

ବେଶ୍ ଜଣାଶୁଣା ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ଗୁମର କଥା' ପୁସ୍ତକ ପ୍ରକାଶ ପାଉଥିବା ଜାଣି ଖୁସି ହେଲି । ଏହି ପୁସ୍ତକ ହେଉଛି ଏକ ରାଜନୈତିକଧର୍ମୀ ପୁସ୍ତକ । ଏଥିରେ ରାଜନୈତିକ ନେତାଙ୍କର ଅତୀତ ଓ ବର୍ତ୍ତମାନର ବହୁ ମଜାକଥା ସ୍ଥାନ ପାଇଛି । ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ଅନ୍ୟ ଏକ ରାଜନୈତିକ ପୁସ୍ତକ 'ଆସେମ୍ବ୍ଲି ଜୋକ୍ସ' ଅତ୍ୟନ୍ତ ଲୋକପ୍ରିୟ ହୋଇଛି । 'ଗୁମର କଥା' ମଧ୍ୟ ସେହିପରି ଲୋକପ୍ରିୟତା ହାସଲ କରିବ ବୋଲି ମୁଁ ଆଶା କରୁଛି ।

ଓଡ଼ିଶାର ସାଧାରଣ ପାଠକଙ୍କୁ 'ଗୁମର କଥା' ପରି ଏକ ଭିନ୍ନ ରୁଚିର ପୁସ୍ତକ ଦେଉଥିବାରୁ ଏହି ଅବସରରେ ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କୁ ମୁଁ ଶୁଭେଚ୍ଛା ଜଣାଉଛି ।

'ଗୁମର କଥା' ପୁସ୍ତକର ମୁଁ ସମସ୍ତ ସଫଳତା କାମନା କରୁଛି ।

ମୁରଲୀଧର ଭଣ୍ଡାରେ






**ଜାନକୀ ବଲ୍ଲଭ ପଟ୍ଟନାୟକ**
ରାଜ୍ୟପାଳ, ଆସାମ

# ଧନ୍ୟବାଦ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ 'ଗୁମର କଥା' ନାମକ ଏକ ପୁସ୍ତକ ପ୍ରକାଶ ପାଉଥିବା ଜାଣି ଖୁସି ହେଲି । ଏଥିପୂର୍ବରୁ ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ' ଓ 'ଆସେମ୍ଲି ଜୋକ୍‌ସ' ଦୁଇଟି ରାଜନୈତିକ ଧର୍ମୀ ପୁସ୍ତକ ପ୍ରକାଶ ପାଇଛି । 'ଗୁମର କଥା' ହେଉଛି ଶ୍ରୀ ମଙ୍ଗରାଜଙ୍କର ୩ୟ ରାଜନୈତିକ ଧର୍ମୀ ପୁସ୍ତକ । ଓଡ଼ିଆ ଭାଷାରେ ରାଜନୈତିକ ଧର୍ମୀ ପୁସ୍ତକର ଅଭାବ ଥିବାବେଳେ ଶ୍ରୀ ମଙ୍ଗରାଜ ଭିନ୍ନଭିନ୍ନ ସ୍ୱାଦ ଦେଇ ଗୋଟିଏ ପରେ ଗୋଟିଏ ରାଜନୈତିକ ଧର୍ମୀ ପୁସ୍ତକ ରଚନା କରିଚାଲିଥିବାରୁ ସେଥିପାଇଁ ତାଙ୍କୁ ଧନ୍ୟବାଦ ଜଣାଉଛି । ନେତାମାନଙ୍କର 'ଗୁମର କଥା'କୁ ଶ୍ରୀ ମଙ୍ଗରାଜ ତାଙ୍କର ସାମ୍ବାଦିକ କଲମ ମୁନରେ ବିଭିନ୍ନ ସମୟରେ ପଦାକୁ ଆଣିଥା'ନ୍ତି । ଏହି 'ଗୁମର କଥା'ଗୁଡ଼ିକ ସଂଗୃହୀତ କରି ଓଡ଼ିଶାବାସୀଙ୍କ ନିକଟରେ ପରିବେଷଣ କରିପାରିଥିବାରୁ ଶ୍ରୀ ମଙ୍ଗରାଜଙ୍କୁ ଧନ୍ୟବାଦ ଜଣାଉଛି । ଶ୍ରୀ ମଙ୍ଗରାଜଙ୍କର ଅନ୍ୟ ଦୁଇଟି ରାଜନୈତିକ ଧର୍ମୀ ପୁସ୍ତକ ପରି 'ଗୁମର କଥା' ପୁସ୍ତକଟି ସାଧାରଣରେ ଆଦର ଲାଭ କରିବ ବୋଲି ଆଶା କରୁଛି ।

'ଗୁମର କଥା'ର ସକଳ ସଫଳତା କାମନା କରୁଛି ।

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ





ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ, ଓଡ଼ିଶା

# ଆଦର ଲାଭ କରିବ

ବିଶିଷ୍ଟ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ରଚିତ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବା ଜାଣି ମୁଁ ଆନନ୍ଦିତ।

ସମସାମୟିକ ରାଜନୈତିକ ଘଟଣାବଳୀକୁ ଆଧାର କରି ଶ୍ରୀଯୁକ୍ତ ମଙ୍ଗରାଜ ସବୁବେଳେ ଲେଖନୀ ଚାଳନା କରିଆସିଛନ୍ତି । ତାଙ୍କ ରଚିତ 'ଆସେମ୍ବ୍ଲି ଜୋକ୍ସ' ଏବଂ 'ମୁହାଁମୁହିଁ' ପୁସ୍ତକରେ ରାଜନୈତିକ ଘଟଣାବଳୀରେ ତାଙ୍କର ସୂକ୍ଷ୍ମ ଅନୁଶୀଳନ ଓ ବର୍ଣ୍ଣନା ଚାତୁର୍ଯ୍ୟର ପରିଚୟ ମିଳିଥାଏ । ମୁଁ ଆଶା କରୁଛି 'ଗୁମର କଥା' ଏକ ଭିନ୍ନ ସ୍ୱାଦର ରାଜନୈତିକ ପୁସ୍ତକ ଭାବରେ ସାଧାରଣରେ ବିଶେଷ ଆଦର ଲାଭ କରିବ ।

ମୁଁ 'ଗୁମର କଥା' ପ୍ରକାଶନର ସଫଳତା କାମନା କରୁଛି ।

ନବୀନ ପଟ୍ଟନାୟକ





**ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ**
ଅର୍ଥ ଓ ଅବକାରୀ ମନ୍ତ୍ରୀ
ଓଡ଼ିଶା ସରକାର

# ସଚେତନ ଓ ସାବଧାନ କରାଇବ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'ଗୁମରକଥା' ପ୍ରକାଶିତ ହେଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । ପୂର୍ବରୁ ତାଙ୍କଦ୍ୱାରା ରଚିତ ଦୁଇଟି ପୁସ୍ତକ 'ମୁହାଁମୁହିଁ' ଏବଂ 'ଆସେମ୍ବ୍ଲି ଜୋକସ୍' ଅଶେଷ ସାଫଲ୍ୟ ହାସଲ କରିଛି । ଏହି ଅପୂର୍ବ ସଫଳତାର କାରଣ ହେଉଛି ଶ୍ରୀଯୁକ୍ତ ମଙ୍ଗରାଜଙ୍କର ଭାବ-ପ୍ରକାଶ ଭଙ୍ଗୀ ଏବଂ ରାଜନୈତିକ ଘଟଣାବଳୀ ଓ ରାଜନେତାଙ୍କ କାର୍ଯ୍ୟଧାରାର ଗଭୀର ଅନୁଶୀଳନ । ଭିନ୍ନ ଏକ ଅନ୍ତର୍ଦୃଷ୍ଟିନେଇ ସେ ବ୍ୟକ୍ତି ଓ ଘଟଣାକୁ ଦେଖିଥା'ନ୍ତି ।

'ଗୁମରକଥା' ରେ ବିଭିନ୍ନ ରାଜନୈତିକ ବ୍ୟକ୍ତିଙ୍କର ଆମୋଦଦାୟକ ପ୍ରସଙ୍ଗ ସ୍ଥାନ ପାଇବାକୁ ପାଇଛି । ଏହା ଯେ ପାଠକୀୟ ଶ୍ରଦ୍ଧା ଓ ଆଦର ଲାଭ କରିବ ଏଥିରେ ସନ୍ଦେହ ନାହିଁ। ସାଧାରଣ ଜନଜୀବନରେ କାର୍ଯ୍ୟ କରୁଥିବା ରାଜନେତାମାନଙ୍କର କେଉଁଠି ପାଟିରୁ ଖସିଯାଇଥିବା ପଦେ କଥା କିମ୍ବା ଛୋଟ କିଛି ଗୋଟେ କାର୍ଯ୍ୟ ଲେଖକମାନଙ୍କୁ ବିଶେଷତଃ ଗଣମାଧ୍ୟମରେ କାର୍ଯ୍ୟରତ ବନ୍ଧୁମାନଙ୍କୁ ଅଶେଷ ସମାଲୋଚନା ଓ ଆମୋଦର ଖୋରାକ ଯୋଗାଇଥାଏ। ଶ୍ରୀଯୁକ୍ତ ମଙ୍ଗରାଜ ସାମ୍ବାଦିକତା କ୍ଷେତ୍ରରେ ଦୀର୍ଘଦିନ ରହିଥିବାରୁ ତଥା ଭିନ୍ନ ଏକ ଅନ୍ତର୍ଦୃଷ୍ଟିର ଅଧିକାରୀ ହୋଇଥିବାରୁ ବିଭିନ୍ନ ଘଟଣା ଓ ପ୍ରସଙ୍ଗକୁ ସ୍ୱତନ୍ତ୍ରଭାବେ ଉପସ୍ଥାପନ କରିଛନ୍ତି । ବେଞ୍ଜାମିନ୍ ଡିସ୍‌ରାଏଲି, ଉିନ୍‌ଷ୍ଟନ ଚର୍ଚ୍ଚିଲ, ଅଟଲି, ମାର୍ଗରେଟ୍ ଥାଚର, ପଣ୍ଡିତ ଜବାହରଲାଲ ନେହେରୁ, ଚାର୍ଲସ୍ ଡିଗଲ୍, ଜର୍ଜ ୱାଶିଂଟନ୍, ଆବ୍ରାହମ୍ ଲିଙ୍କନ, ହାରିଏସ୍ ଟ୍ରୁମାନ୍ ଆଦି ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ପର୍କରେ ଅନେକ ଆମୋଦଦାୟକ ପ୍ରସଙ୍ଗ ରହିଛି । ମାତ୍ର ଓଡ଼ିଆ ଭାଷାରେ ଆମ ରାଜନେତାଙ୍କୁ ନେଇ ସେପରି ପୁସ୍ତକଟିଏ ନଥିଲା । 'ଗୁମରକଥା' ପୁସ୍ତକଟି ସେହି ଅଭାବ ଯେ ପୂରଣ କରିବ ତାହା ନୁହେଁ ବରଂ ଆଗାମୀ ଦିନରେ ରାଜନେତାମାନଙ୍କୁ ସଚେତନ ଓ ସାବଧାନ କରାଇବ ।

ମୁଁ ପୁସ୍ତକଟିର ସଫଳତା କାମନା କରୁଅଛି ।





ଦାମୋଦର ରାଉତ
କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ
ଓଡ଼ିଶା ସରକାର

# ଆଦରଣୀୟ

କଥାରେ କହନ୍ତି ସବୁ କହିବୁ ଗୁମର କହିବୁ ନାହିଁ । ଏବେ ବିଶିଷ୍ଟ ସାମ୍ବାଦିକ ଜୀମୂତ ମଂଗରାଜ ବହୁ ଗୁମର କଥା ଖୋଲି ଦେବା ପାଇଁ ବହିଟିଏ ଲେଖିଛନ୍ତି ଏବଂ ନାଁ ଦେଇଛନ୍ତି 'ଗୁମର କଥା' । ଏହା ମଧ କୁହାଯାଏ ସତ୍ୟ କହିବ କିନ୍ତୁ ଅପ୍ରିୟ ସତ୍ୟ କହିବ ନାହିଁ । ଅପ୍ରିୟ ସତ୍ୟ ଓ ଗୁମର ଏହି ଦୁଇଟି ଶବ୍ଦର ଅର୍ଥ ବହୁ ଗମ୍ଭୀର । ଏହି ଗମ୍ଭୀର ଶବ୍ଦକୁ ବିସ୍ଥାପିତ କରିଦେଲେ ଯନ୍ତ୍ରଣା ଯେତିକି ମିଳିବ ତାହାର ଉପଯୋଗିତା ତା' ଠାରୁ ଅଧିକ ହେବ । ତେବେ ଯନ୍ତ୍ରଣା ଅପେକ୍ଷା ଉପଯୋଗିତା ପସନ୍ଦ କରିବା ଉଚିତ ହେବ । ତେଣୁ କିଛି ଲୋକଙ୍କୁ ଗୁମର ଯନ୍ତ୍ରଣା ଦେଇପାରେ କିନ୍ତୁ ସାଧାରଣ ପାଠକ ଏବଂ ଜନତାଙ୍କ ପାଇଁ 'ଗୁମର କଥା' ଯେ ଏକ ଅତ୍ୟନ୍ତ ଉପଯୋଗୀପ୍ରକାଶନ ହେବ ମୋର ଏଥିରେ ସନ୍ଦେହ ନାହିଁ । ଆତ୍ମପ୍ରକାଶ କରୁଥିବା ଜୀମୂତ ମଂଗରାଜଙ୍କ 'ଗୁମର କଥା' ସମସ୍ତଙ୍କର ଆଦରଣୀୟ ହେଉ ଏତିକି ମୋର କାମନା ।





ପ୍ରସନ୍ନ ଆଚାର୍ଯ୍ୟ
ସ୍ୱାସ୍ଥ୍ୟ, ପରିବାରକଲ୍ୟାଣ, ପେନସନ୍ ଓ
ଅଭିଯୋଗ ପ୍ରଶାସନ ମନ୍ତ୍ରୀ
ଓଡ଼ିଶା ସରକାର

# ଖୋରାକ ଯୋଗାଇବ

ଆଗଧାଡ଼ିର ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବା ଶୁଣି ମୁଁ ଆନନ୍ଦିତ । ପୂର୍ବରୁ ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ପୁସ୍ତକ 'ମୁହାଁମୁହିଁ' ଓ 'ଆସେମ୍ବ୍ଲି ଜୋକସ୍' ପାଠକ ମହଲରେ ବିଶେଷଭାବେ ଆଦୃତ ହୋଇଥିଲା ।

ମୋର ଦୃଢ଼ ବିଶ୍ୱାସ 'ଗୁମର କଥା' ପୁସ୍ତକ ରାଜ୍ୟ ରାଜନୀତିକୁ ଆଲୋଚନା ଓ ପର୍ଯ୍ୟାଲୋଚନା ପାଇଁ ଯଥେଷ୍ଟ ଖୋରାକ ଯୋଗାଇବ ଏବଂ ରାଜ୍ୟର ସାମୂହିକ ହିତ ସାଧନ ପାଇଁ ସମସ୍ତ ରାଜନେତାଙ୍କ ନିମନ୍ତେ ପ୍ରେରଣାର ଉତ୍ସ ହେବା ସଙ୍ଗେସଙ୍ଗେ ପାଠକମାନଙ୍କ ପାଖରେ ରାଜ୍ୟ ରାଜନୀତିର ରୂପ ଓ ରଙ୍ଗକୁ ସଠିକ୍ ଭାବରେ ଉପସ୍ଥାପନ କରିବ ।





ସୂର୍ଯ୍ୟନାରାୟଣ ପାତ୍ର
ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ
ଓଡ଼ିଶା ସରକାର

# ସାର୍ଥକ ପରିକଳ୍ପନା

ପ୍ରିୟ ଜୀମୂତ ବାବୁ,

'ଗୁମର କଥା' ଭଳି ଏକ ଗଠନମୂଳକ ବ୍ୟଙ୍ଗାତ୍ମକ ପୁସ୍ତକ ପ୍ରକାଶନର ସାର୍ଥକ ପରିକଳ୍ପନା ନିମନ୍ତେ ପ୍ରଥମେ ଆପଣଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ମାନବ ଜୀବନରେ ବ୍ୟଙ୍ଗର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନକାଳରୁ ଏହି ମହାନ ପରମ୍ପରା ଚଳିଆସୁଛି । ବିଶେଷକରି ବ୍ୟଙ୍ଗ ସହିତ ଲଘୁ ମନ୍ତବ୍ୟ ଓ ଗଠନମୂଳକ ଇଙ୍ଗିତ ପାଠକୀୟ ରୁଚିକୁ ରୁଦ୍ଧିମନ୍ତ କରିଥାଏ । ଏହି ଦୃଷ୍ଟିରୁ 'ଗୁମର କଥା'ର ଆତ୍ମ ପ୍ରକାଶ ଏକ ଆନନ୍ଦର ବିଷୟ ।

ପୂର୍ବରୁ ଆପଣଙ୍କ ସଫଳ ପ୍ରଚେଷ୍ଟାରେ ଆତ୍ମପ୍ରକାଶ କରିଥିବା 'ମୁହାଁମୁହିଁ' ଏବଂ 'ଆସେମ୍ବ୍ଲି ଜୋକ୍‌ସ' ପାଠକମାନଙ୍କ ମନକୁ ବେଶ୍ ଛୁଇଁଥିଲା । ପୂର୍ବ ଅଭିଜ୍ଞତା, ପ୍ରତ୍ୟୁତ୍ପନ୍ନ ମତିତା ଏବଂ ସାଂପ୍ରତିକ ପରିସ୍ଥିତିର ସମ୍ଭାରକୁ ନେଇ 'ଗୁମର କଥା' ନିଶ୍ଚିତରୂପେ ପାଠକମାନଙ୍କ ତିକ୍ତ-ମଧୁର ରସ ଆସ୍ୱାଦନର ସୁଯୋଗ ଦେବ । କିନ୍ତୁ ଏହି ତିକ୍ତତା ସମାଜର ପୀଡ଼ାହାରକ ହେବା ସଙ୍ଗେସଙ୍ଗେ ରସାୟନ ପରି ଶକ୍ତିବର୍ଦ୍ଧକ ହେବ ।

ପୁସ୍ତକ ପ୍ରକାଶନ କରିବା କାଠିକର ପାଠ । ସେଥିରେ ପୁଣି ଏକ ଭିନ୍ନସ୍ୱାଦର ବିତରଣ ପ୍ରଚେଷ୍ଟା ନିଶ୍ଚୟ ଏକ ଆୟାମ୍‌ସାଧ କାର୍ଯ୍ୟ । ଆପଣଙ୍କ ପ୍ରଚେଷ୍ଟା ସଫଳ ହେଉ । ପୁସ୍ତକଟି ପାଠକମାନଙ୍କର ଚିତ୍‌ସମୁଦ୍ରରେ ଆନନ୍ଦର ସହସ୍ର ଲହରୀ ଉତୋଳିତ କରୁ ଏହା ହିଁ କାମନା କରୁଛି ।

ସୂର୍ଯ୍ୟନାରାୟଣ ପାତ୍ର





ପ୍ରଫୁଲ୍ଲ ସାମଲ
ପଂଚାୟତିରାଜ, ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ
ଓଡ଼ିଶା ସରକାର

# ପ୍ରଶଂସନୀୟ

'ଗୁମର କଥା' ପୁସ୍ତକ ପ୍ରକାଶିତ ହେଉଥିବାର ଜାଣି ମୁଁ ଆନନ୍ଦିତ । ପୂର୍ବରୁ ପ୍ରକାଶିତ 'ମୁହାଁମୁହିଁ' ଓ 'ଆସେମ୍ବ୍ଲି ଜୋକ୍ସ' ଓଡ଼ିଶାର ପାଠକ ମହଲରେ ବେଶ୍ ଆଦୃତ ହୋଇଥିଲା । ସାହିତ୍ୟରେ ବିଶେଷ କରି ବ୍ୟଙ୍ଗ ସାହିତ୍ୟରେ ରାଜନୈତିକ ମଣିଷର ଜୀବନ ଚିତ୍ରଣ ଦୁରହ ବ୍ୟାପାର । ଆପଣ ଯେଉଁ ଅଭିନବ ପଦକ୍ଷେପ ନେଇଛନ୍ତି ପାଠକ ମନକୁ ଛୁଇଁବାକୁ - ତାହା ପ୍ରଶଂସନୀୟ ।

'ଗୁମର କଥା'ର ଶୁଭକାମନା କରୁଛି ।





ଦେବୀ ପ୍ରସାଦ ମିଶ୍ର
ଉଚ୍ଚଶିକ୍ଷା,ସଂସ୍କୃତି, ପର୍ଯ୍ୟଟନ ମନ୍ତ୍ରୀ
ଓଡ଼ିଶା ସରକାର

# ନୂତନ ଓ ଅନନ୍ୟ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ।

ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ଆସେମ୍ବ୍ଲି ଜେକ୍ସ' ଓ 'ମୁହାଁମୁହିଁ' ବେଶ୍ ଜନାଦୃତ ହୋଇପାରିଥିଲା । ବିଧାନସଭାରେ ବାଦାନୁବାଦ ମଧ୍ୟରେ ବହୁ ମଜାଳିଆ, ଲଘୁମନ୍ତବ୍ୟକୁ ଲେଖନୀ ମାଧ୍ୟମରେ ବାନ୍ଧି ରଖିବାର ପ୍ରଚେଷ୍ଟା ବାସ୍ତବିକ୍ ନୂତନ ଓ ଅନନ୍ୟ । 'ମୁହାଁମୁହିଁ' ପୁସ୍ତକଟି ମଧ୍ୟ ସୁଖପାଠ୍ୟ । ମୋର ଦୃଢ଼ ବିଶ୍ୱାସ ରାଜ୍ୟର ରାଜନୈତିକ ପେଡ଼ିରୁ ବହୁ ଅନାଲୋଚିତ ଓ ଅକୁହା କଥା 'ଗୁମର କଥା' ରେ ସ୍ଥାନ ପାଇ ପାଠକମାନଙ୍କୁ ଆମୋଦିତ କରିବ ।

'ଗୁମର କଥା' ପୁସ୍ତକ ପ୍ରକାଶନର ସମସ୍ତ ସଫଳତା କାମନା କରିବା ସହିତ ଜୀମୂତ ମଙ୍ଗରାଜଙ୍କ ଲେଖନୀ ନିରବଚ୍ଛିନ୍ନ ଭାବେ ଚାଲିଥାଉ ଏହା ହିଁ ମୁଁ ଆନ୍ତରିକ କାମନା କରୁଛି ।

ଦେବୀପ୍ରସାଦ ମିଶ୍ର





**ରଘୁନାଥ ମହାନ୍ତି**
**ଶିଳ୍ପ, ଖଣି, ଇସ୍ପାତ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ**
**ଓଡ଼ିଶା ସରକାର**

# ଆମୋଦପ୍ରଦାନ କରିବ

ବିଶିଷ୍ଟ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'ଗୁମରକଥା' ପ୍ରକାଶ ପାଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ ।

ଗଣତନ୍ତ୍ର ରାଷ୍ଟ୍ରରେ ରାଜନୀତିର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ରାଜନୀତିରେ ଅଂଶଗ୍ରହଣ କରୁଥିବା ବ୍ୟକ୍ତିବିଶେଷ ସବୁବେଳେ ଆମ ଶାସନ ବ୍ୟବସ୍ଥାରେ ଚର୍ଚ୍ଚାର ପରିସୀମା ଭିତରକୁ ଆସିଥା'ନ୍ତି । ସେମାନଙ୍କ ସଂପର୍କରେ ଆମ ଦେଶର ନାଗରିକମାନେ ସବୁବେଳେ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିଥା'ନ୍ତି । ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ପୂର୍ବରୁ ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'ମୁହାଁମୁହିଁ' 'ଆସେମ୍ବ୍ଲି ଜୋକ୍ସ' ଆଦୃତି ଲାଭ କରିଛି । 'ଗୁମରକଥା' ପୁସ୍ତକରେ ଲିପିବଦ୍ଧ ବିଭିନ୍ନ ରାଜନୈତିକ ବ୍ୟକ୍ତିଙ୍କର ଆମୋଦଦାୟକ ପ୍ରସଙ୍ଗ ନିଶ୍ଚିତଭାବେ ସମସ୍ତଙ୍କୁ ଆମୋଦ ପ୍ରଦାନ କରିବ ବୋଲି ମୋର ଆଶା ଓ ବିଶ୍ୱାସ ।

'ଗୁମରକଥା' ପୁସ୍ତକ ପ୍ରକାଶନ ଓ ପାଠକୀୟ ମତାମତର ପୂର୍ଣ୍ଣ ସଫଳତା ଆଶା କରୁଛି ।

ରଘୁନାଥ ମହାନ୍ତି





**ଅନଙ୍ଗ ଉଦୟ ସିଂହଦେଓ**
ଯୋଜନା, ସମନ୍ୱୟ ଓ ସରକାରୀ ଉଦ୍ୟୋଗ ମନ୍ତ୍ରୀ
ଓଡ଼ିଶା ସରକାର

# ଆନନ୍ଦିତ

ବିଶିଷ୍ଟ ସାମ୍ବାଦିକ ତଥା ସଂପାଦକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ପୁସ୍ତକ 'ଗୁମର କଥା' ପ୍ରକାଶ ପାଇବାକୁ ଯାଉଥିବା ବିଷୟ ଜାଣି ମୁଁ ଆନନ୍ଦିତ ।

ରାଜନୈତିକ ଖବର ଆମର ସାଂପ୍ରତିକ ସାମାଜିକ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ସେହି ଦୃଷ୍ଟିରୁ ରାଜନୈତିକ ଧର୍ମୀ ପୁସ୍ତକ 'ଗୁମର କଥା' ପାଠକମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଆଶା ।

ମୁଁ ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ପୁସ୍ତକ 'ଗୁମର କଥା'ର ସଫଳତା କାମନା କରୁଛି ।





ଶ୍ରୀମତୀ ପ୍ରମିଳା ମଲିକ
ମହିଳା ଓ ଶିଶୁ ବିକାଶ ମନ୍ତ୍ରୀ
ଓଡ଼ିଶା ସରକାର

# ଉଚ୍ଚକୋଟୀର

ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ଦୁଇଟି ରାଜନୈତିକ ଧର୍ମୀ ପୁସ୍ତକ 'ମୁହାଁମୁହିଁ' ଏବଂ 'ଆସେମ୍ବ୍ଲି ଜୋକ୍ସ' ପୂର୍ବରୁ ପ୍ରକାଶ ପାଇଥିଲା । ତାହା ରାଜନୈତିକ ବ୍ୟକ୍ତି ଓ ସାଧାରଣ ପାଠକ ମହଲରେ ବେଶ୍ ଆଦୃତ ହୋଇ ପାରିଥିଲା । ମୋର ଆଶା ଏବଂ ବିଶ୍ୱାସ ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ଗୁମର କଥା' ବେଶ ଉଚ୍ଚକୋଟୀର ହେବ । ଆଉ ଏହା ସାଧାରଣ ପାଠକଙ୍କ ମଧ୍ୟରେ ଆଦୃତ ଲାଭ କରିବ ।

ପ୍ରମିଳା ମଲ୍ଲିକ





ବିକ୍ରମ କେଶରୀ ଆରୁଖ
ଗ୍ରାମ୍ୟ ଉନ୍ନୟନ ଓ ଆଇନ ମନ୍ତ୍ରୀ
ଓଡ଼ିଶା ସରକାର

# ସ୍ୱାତନ୍ତ୍ର୍ୟ ବହନ କରିବ

ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ ।

ଜୀମୂତ ମଙ୍ଗରାଜ ବିଧାନସଭା ଆଲୋଚନାବେଳର ମଜାଳିଆ କଥାକୁ "ଆସେମ୍ବ୍ଲି ଜୋକ୍ସ" ପୁସ୍ତକ ଆକାରରେ ପ୍ରକାଶ କରି ହଇଚଇ ସୃଷ୍ଟି କରିଥିଲେ । ତାଙ୍କ 'ମୁହାଁମୁହିଁ' ପୁସ୍ତକଟି ମଧ୍ୟ ଅନନ୍ୟ ଥିଲା । 'ଗୁମର କଥା' ପୁସ୍ତକଟି ସେହିଭଳି ସ୍ୱାତନ୍ତ୍ର୍ୟ ବହନ କରିବ ଓ ରାଜନୀତି କ୍ଷେତ୍ରର ବହୁ ଅକୁହା କଥାକୁ ଲୋକଲୋଚନକୁ ଆଣି ବେଶ୍ ଆଦୃତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ଜୀମୂତ ମଙ୍ଗରାଜ ଏହି ଭଳି ଲେଖନୀ ଚାଳନା କରୁଥା'ନ୍ତୁ ଏହା ହିଁ ମୋର କାମନା । 'ଗୁମର କଥା' ପୁସ୍ତକର ସମସ୍ତ ସଫଳତା କାମନା କରୁଛି ।

ବିକ୍ରମ କେଶରୀ ଆରୁଖ





ଅତନୁ ସବ୍ୟସାଚୀ ନାୟକ
ଶକ୍ତି ମନ୍ତ୍ରୀ
ଓଡ଼ିଶା ସରକାର

# ଅଭିନବ ଉଦ୍ୟମ

ବିଶିଷ୍ଟ ସାମ୍ବାଦିକ ତଥା ରାଜନୀତି ସମୀକ୍ଷକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ଏକ ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବା ଜାଣି ଅତ୍ୟନ୍ତ ଆନନ୍ଦିତ ।

ଓଡ଼ିଆ ସାମ୍ବାଦିକତା କ୍ଷେତ୍ରରେ ଶ୍ରୀ ମଙ୍ଗରାଜ ତାଙ୍କ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ପାଇଁ ବେଶ୍ ସୁପରିଚିତ । ସେ ଦୀର୍ଘ ବର୍ଷ ଧରି ଓଡ଼ିଶାର ରାଜନୀତିକୁ ଖୁବ୍ ନିକଟରୁ ଦେଖିଆସୁଛନ୍ତି । ପୂର୍ବରୁ ତାଙ୍କର ଦୁଇଟି ପୁସ୍ତକ 'ମୁହାଁମୁହିଁ' ଓ 'ଆସେମ୍ବ୍ଲି ଜୋକସ୍' ପାଠକଙ୍କ ଦ୍ୱାରା ଆଦୃତ ହୋଇଛି । 'ଗୁମର କଥା' ପୁସ୍ତକଟି ଏକ ଅଭିନବ ଉଦ୍ୟମ । ଏହା ପାଠକୀୟ ଆଦର ଲାଭ କରିବା ସହ ଓଡ଼ିଶା ରାଜନୀତିର ଅନେକ ଅପ୍ରକାଶିତ କଥା ଲୋକଲୋଚନକୁ ଆଣିବ ବୋଲି ଆଶା କରୁଛି ।

'ଗୁମର କଥା' ପୁସ୍ତକର ବ୍ୟାପକ ପ୍ରସାର କାମନା କରୁଛି ।





ସଂଜୀବ କୁମାର ସାହୁ
ବାଣିଜ୍ୟ ଓ ପରିବହନ ମନ୍ତ୍ରୀ
ଓଡ଼ିଶା ସରକାର

# ଜନାଦୃତ ହେବ

ବରିଷ୍ଠ ସାମାଦିକ ଜୀମୂତ ମଙ୍ଗରାଜ ଏକ ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ କରୁଥିବା ଜାଣି ମୁଁ ବିଶେଷ ଆନନ୍ଦିତ । ସେ ତାଙ୍କର ଦୀର୍ଘଦିନର ଅଭିଜ୍ଞତାକୁ ଆଧାରକରି ନେତାମାନେ ଦେଇଥିବା ଆମୋଦଦାୟକ ମନ୍ତବ୍ୟକୁ ନେଇ ଏକ ଭିନ୍ନଶୈଳୀର ପୁସ୍ତକ 'ଗୁମର କଥା' ପ୍ରକାଶ କରିଛନ୍ତି । ତାଙ୍କର ପୂର୍ବ ପ୍ରକାଶିତ ପୁସ୍ତକ 'ମୁହାଁମୁହିଁ' ଓ 'ଆସେମ୍ବ୍ଲି ଜୋକ୍ସ' ବହୁଳ ପାଠକୀୟ ଆଦୃତି ପାଇଛି । ମୋର ଆଶା ଓ ବିଶ୍ୱାସ ଏହା ପୁନର୍ବାର ବହୁଜନାଦୃତ ହେବ ।

ଲେଖକଙ୍କର ଏହି ଅଭିନବ ଉଦ୍ୟମ ପାଇଁ ତାଙ୍କୁ ଧନ୍ୟବାଦ ଜଣାଇବା ସହ ପୁସ୍ତକର ସଫଳ ପ୍ରକାଶନ କାମନା କରୁଛି ।

ସଂଜୀବ କୁମାର ସାହୁ





**ପୁଷ୍ପେନ୍ଦ୍ର ସିଂହଦେଓ**
ଶ୍ରମ, ନିୟୋଜନ ଓ ନିଯୁକ୍ତି ମନ୍ତ୍ରୀ
ଓଡ଼ିଶା ସରକାର

# ଉତ୍ସାହ ପ୍ରଦାନ କରିବ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ ଗୁମର କଥା ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଖୁସି । ରାଜନୀତି କରୁଥିବା ରାଜନୈତିକ ବ୍ୟକ୍ତିବିଶେଷ ସମ୍ପର୍କରେ ଜନସାଧାରଣ ସବୁବେଳେ ଜାଣିବା ପାଇଁ ଆଗ୍ରହୀ । ସେମାନଙ୍କ ସମ୍ପର୍କରେ ଆମୋଦଦାୟକ ପ୍ରସଙ୍ଗ ନିଶ୍ଚିତ ଭାବେ ଜନାଦୃତି ଲାଭ କରିବ । ସକାରାତ୍ମକ ପ୍ରସଙ୍ଗ ଉତ୍ସାହ ପ୍ରଦାନ କରିବା ବେଳେ ନକାରାତ୍ମକ ପ୍ରସଙ୍ଗ ରାଜନୈତିକ ବ୍ୟକ୍ତିଙ୍କୁ ଭଲ ବାଟରେ ନେବ ବୋଲି ମୋର ଦୃଢ଼ ଆଶା ଓ ବିଶ୍ୱାସ ।

ଗୁମର କଥା ପୁସ୍ତକର ସଫଳ ପ୍ରକାଶନ ଓ ପାଠକ ଆଦୃତି କାମନା କରୁଛି ।

ପୁଷ୍ପେନ୍ଦ୍ର ସିଂହ ଦେଓ





**ସାରଦା ନାୟକ**
**ଖାଦ୍ୟ,ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ**
**ଓଡ଼ିଶା ସରକାର**

# ଆମୋଦ ଦେବ

ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକ ଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଉଥିବା ଜାଣି ଖୁସି ହେଲି ।

ଗଣତନ୍ତ୍ର ଶାସନରେ ରାଜନୀତି ଏକ ପ୍ରମୁଖ ପେଶା । ରାଜନୀତିରେ ଅଂଶଗ୍ରହଣ କରୁଥିବା ବ୍ୟକ୍ତି ବିଶେଷ ସର୍ବଦା ଚର୍ଚ୍ଚାର ପରିଧି ଭିତରକୁ ଆସିଥା'ନ୍ତି । ସେମାନଙ୍କ ସମ୍ପର୍କରେ ବିଭିନ୍ନ ଆମୋଦଦାୟକ ପ୍ରସଙ୍ଗ ଶୁଣିବାକୁ ମିଳିଥାଏ । ଏହିସବୁ ପ୍ରସଙ୍ଗକୁ ନେଇ ସଙ୍କଳିତ ପୁସ୍ତକ 'ଗୁମର କଥା' ନିଶ୍ଚିତଭାବେ ସମସ୍ତଙ୍କୁ ଆମୋଦ ପ୍ରଦାନ କରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ଲେଖକ ଶ୍ରୀ ମଙ୍ଗରାଜଙ୍କ ଉଜ୍ଜ୍ୱଳ ଭବିଷ୍ୟତ କାମନା ସହ 'ଗୁମର କଥା'ର ସଙ୍କଳନଟିର ଜନ ଆଦୃତି ଆଶା କରୁଛି ।

ଶାରଦା ପ୍ର. ନାୟକ





ପ୍ରତାପ ଜେନା
ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀ
ଓଡ଼ିଶା ସରକାର

# ପ୍ରିୟ ହେବ

ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ଏକ ରାଜନୈତିକଧର୍ମୀ 'ଗୁମର କଥା' ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଖୁସି । ପୁସ୍ତକ ପଠନ ପ୍ରବଳ ହେଲେ ପୁସ୍ତକ ପ୍ରକାଶ ପାଇଥାଏ । ଶ୍ରୀ ମଙ୍ଗରାଜଙ୍କ ଲିଖିତ ପୁସ୍ତକ ବାସ୍ତବିକ ବିଭିନ୍ନ ରାଜନୈତିକ ବ୍ୟକ୍ତିଙ୍କର ଆମୋଦଦାୟକ ପ୍ରସଙ୍ଗରେ ଭରପୂର, ଯାହାକି ସବୁ ଶ୍ରେଣୀର ପାଠକମାନଙ୍କ ଦ୍ୱାରା ଆଦୃତ ହୋଇପାରିବ ।

ଏହି ଅବସରରେ ମୁଁ ପୁସ୍ତକ 'ଗୁମରକଥା'ର ସଫଳତା କାମନା କରଛି ।

ପ୍ରତାପ ଜେନା





ବଦ୍ରିନାରାୟଣ ପାତ୍ର
ନଗର ଉନ୍ନୟନ ମନ୍ତ୍ରୀ
ଓଡ଼ିଶା ସରକାର

# ନୂତନ ସ୍ୱାଦ

ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶ ପାଇବାକୁ ଯାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ଏହି ପୁସ୍ତକ ମାଧମରେ ପ୍ରକାଶ ପାଇବାକୁ ଯାଉଥିବା ପ୍ରସଙ୍ଗଗୁଡ଼ିକ ଆମୋଦଦାୟକ ହେବା ସହ ପାଠକମାନଙ୍କ ମଧରେ ବହୁଳ ଭାବେ ନିଶ୍ଚୟ ଆଦୃତ ହେବ ।

ଜୀମୂତ ମଙ୍ଗରାଜ ସମାଜର ଜଣେ ସୁନାମଧନ୍ୟ ଲେଖକ ହିସାବରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ତାଙ୍କ ଦ୍ୱାରା ପୂର୍ବ ପ୍ରକାଶିତ ଦୁଇଟି ପୁସ୍ତକ 'ମୁହାଁମୁହିଁ' ଓ 'ଆସେମ୍ବ୍ଲି ଜୋକ୍ସ'ଭଳି ଏହି 'ଗୁମର କଥା' ପୁସ୍ତକ ମଧ ପାଠକ ମହଲରେ ନୂତନ ସ୍ୱାଦ ଭରି ଦେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଏହି ଅବସରରେ ଲେଖକଙ୍କୁ ସାଧୁବାଦ ଜଣାଇବା ସହ 'ଗୁମର କଥା'ର ସଫଳତା କାମନା କରୁଛି ।

ବଦ୍ରି ନାରାୟଣ ପାତ୍ର





ଅଂଜଳି ବେହେରା
ହସ୍ତତନ୍ତ ଓ ବୟନଶିଳ୍ପ ମନ୍ତ୍ରୀ
ଓଡ଼ିଶା ସରକାର

# ପ୍ରେରଣାର ଉତ୍ସ ହେବ

ରାଜନୈତିକଧର୍ମୀ ପୁସ୍ତକ 'ଗୁମର କଥା' ପ୍ରକାଶିତ ହେଉଥିବା ଜାଣି ମୁଁ ଆନନ୍ଦିତ ।

ଏହି ପୁସ୍ତକରେ ରାଜନୈତିକ ଜୀବନରେ ଥିବା ବ୍ୟକ୍ତିମାନଙ୍କର ଆମୋଦଦାୟକ ପ୍ରସଙ୍ଗ ପରବର୍ତ୍ତୀ ପିଢ଼ୀ ପାଇଁ ପ୍ରେରଣାର ଉତ୍ସ ହେବା ସଙ୍ଗେସଙ୍ଗେ ଗଣତାନ୍ତ୍ରିକ ପରମ୍ପରାକୁ ଉଜ୍ଜିବୀତ କରିବ ବୋଲି ମୁଁ ଆଶାବାଦୀ ।

ପୁସ୍ତକଟି ପାଠକ/ପାଠିକାମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହେବ ବୋଲି ମୁଁ କାମନା କରୁଛି ।



# ମୂଷା ଓ ବିଜୁ



ଏମିତି ଅନେକ ବିଜୁ ପଟ୍ଟନାୟକଙ୍କୁ ଅହଂକାରୀ, ଦୁର୍ଦ୍ଧର୍ଷ, ନିର୍ଭିକ ନେତା ବୋଲି ବର୍ଣ୍ଣନା କରିଥା'ନ୍ତି । କିନ୍ତୁ ଏସବୁ ଭିତରେ ବିଜୁ ପଟ୍ଟନାୟକ ଯେ ଜଣେ ହୃଦୟବାନ ନେତା ଥିଲେ ତାହା ଅନେକ ଜାଣନ୍ତି ଆଉ ଅନେକ ମଧ୍ୟ ଜାଣନ୍ତି ନାହିଁ। ଏମିତି କାହାର ଦୁଃଖ ଦେଖିଲେ ବିଜୁ ମ୍ରିୟମାଣ ହୋଇଯାଆନ୍ତି । କିନ୍ତୁ ଏଠାର ପ୍ରସଙ୍ଗଟି ଏସବୁଥିରୁ ବ୍ୟତିକ୍ରମ ଅଟେ । ଏ ହେଉଛି ଦିନକର ଘଟଣା । ହଠାତ୍ କ'ଣ ହେଲା କେଜାଣି ବିଜୁ ପଟ୍ଟନାୟକ ନିର୍ଦ୍ଦେଶ ଦେଲେ ଲୋକସଭାର ଅର୍ଥ କମିଟି ଗସ୍ତରେ ଯାଇଥିବା ବେଳେ ତାଙ୍କୁ ଯେଉଁ ସୁଟ୍‌କେସ୍ ମିଳିଥିଲା ତାହାକୁ ପାଖକୁ ଆଣିବା ପାଇଁ । ସେହି ସୁଟ୍‌କେସ୍‌କୁ ବିଜୁ ପଟ୍ଟନାୟକଙ୍କ ପାଖକୁ ଅଣାଗଲା । ବିଜୁ ପଟ୍ଟନାୟକ ସୁଟ୍‌କେସ୍ ଖୋଲିଲେ । ହଠାତ୍ ସେ ଦେଖିଲେ ସୁଟ୍‌କେସ୍ ଭିତରେ ମୂଷାଛୁଆ ବହୁତ ଅଛନ୍ତି । ବିଜୁ ପଟ୍ଟନାୟକ ସଙ୍ଗେସଙ୍ଗେ ସୁଟ୍‌କେସ୍‌କୁ ବନ୍ଦ କରିଦେଲେ ଆଉ ତାଙ୍କ ପାଖରେ କାମ କରୁଥିବା ଜଣେ ବ୍ୟକ୍ତିଙ୍କୁ ଡାକି କହିଲେ- ଏହି ସୁଟ୍‌କେସ୍‌ଟିକୁ ବିମାନବନ୍ଦର ବାହାରେ ଥିବା ପଡ଼ିଆକୁ ନେଇଯାଅ । ସେହି ବ୍ୟକ୍ତି ଜଣଙ୍କ ବିଜୁ ପଟ୍ଟନାୟକଙ୍କର ଏହି ନିର୍ଦ୍ଦେଶରୁ କିଛି ବୁଝିପାରିଲେ ନାହିଁ । ବିଜୁ ପଟ୍ଟନାୟକ କହିଲେ- ମୋ ମୁହଁକୁ କାହିଁକି ଚାହିଁରହିଛ । ମୁଁ ଯାହା କହୁଛି ତାହା କର । ସେହି ବ୍ୟକ୍ତି ଜଣଙ୍କ ଆଜ୍ଞା ବୋଲି କହି ସୁଟ୍‌କେସ୍‌କୁ ଧରିଲେ । ବିଜୁ ପଟ୍ଟନାୟକ କହିଲେ- ପଡ଼ିଆ ଭିତରେ ସୁଟ୍‌କେସ୍‌ଟିକୁ ଖୋଲିଦେବ ଆଉ ସୁଟ୍‌କେସ୍ ଭିତରେ ଯେଉଁ ମୂଷାମାନେ ଅଛନ୍ତି ସେମାନେ ଯେପରି ତାହା ଭିତରୁ ବାହାରି ଖୁସିରେ ପଡ଼ିଆ ଭିତରକୁ ଚାଲିଯିବେ ତାହାକୁ ମଧ୍ୟ ଦେଖିବ । ନଜର ରଖିବ ଯେପରି ଚିଲ କି କାଉ ଆସି ମୂଷା ଛୁଆଙ୍କୁ ଉଠାଇ ନନିଏ । ସେମାନେ ବହୁଦିନ ହେଲାଣି ସୁଟ୍‌କେସ୍ ଭିତରେ ବାନ୍ଧି ହୋଇରହିଛନ୍ତି । ଯେକୌଣସି ପ୍ରାଣୀ ହେଉ ସେ ନିଶ୍ଚିତ ଭାବେ ଚାହିଁବ ଯେ ଏକ ମୁକ୍ତ ଜୀବନ । ତେଣୁ ମୂଷାଛୁଆଙ୍କୁ ମୁକ୍ତ ଜୀବନ ଦିଆଯିବ । ବ୍ୟକ୍ତି ଜଣଙ୍କ ସୁଟ୍‌କେସ୍‌ଟିକୁ ଧରି ବିଜୁଙ୍କ ପାଖରୁ ସଙ୍ଗେସଙ୍ଗେ ଚାଲିଗଲେ । ସେତେବେଳେ ବିଜୁଙ୍କ ପାଖରେ ଥିବା କିଛି ବ୍ୟକ୍ତିଙ୍କୁ ଏହି ଘଟଣା ବେଶ୍ ଆଚମ୍ବିତ କରିଥିଲା । ଦୁର୍ଦ୍ଧର୍ଷ ପୁରୁଷ ବିଜୁଙ୍କ ହୃଦୟ ଯେ ଏତେ କୋମଳ ତାହା ସେହିଦିନର ଘଟଣାରୁ ସ୍ପଷ୍ଟ ହୋଇଯାଇଥିଲା । ■

# ସାହିତ୍ୟ, କବିତା ଓ ନନ୍ଦିନୀ



ରାଜନୀତି କଲେ ଲେଖକ ଯେ ସାହିତ୍ୟ ଛାଡ଼ିଦିଏ ତାହା ନୁହେଁ । କିନ୍ତୁ ସାହିତ୍ୟ ପ୍ରତି ସମୟ ମିଳୁ ନଥିବାରୁ କ୍ରମେ ରାଜନୀତି ଭିତରେ ଲେଖକଟିଏ ଛନ୍ଦି ହୋଇଯାଏ ଆଉ ସାହିତ୍ୟ ଚର୍ଚ୍ଚା କମିଯାଏ । ନନ୍ଦିନୀ ସତପଥୀ ତାଙ୍କ ସମୟରେ ଜଣେ ଆଗଧାଡ଼ିର ସାହିତ୍ୟିକ ଥିଲେ । ଏମିତି ତ ସାହିତ୍ୟ ପରିବାରରେ ତାଙ୍କର ଜନ୍ମ ହୋଇଥିଲା । ରାଜନୀତିକୁ

ଆସିବା ପୂର୍ବରୁ ନନ୍ଦିନୀ ସତପଥୀ ସାହିତ୍ୟ ସହିତ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ଥିଲେ । ରାଜନୀତିକୁ ଆସିବା ପରେ ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ଥିଲେ ମଧ୍ୟ କ୍ରମେ ସାହିତ୍ୟ ଚର୍ଚ୍ଚା କରିବା ପାଇଁ ସମୟର ଅଭାବ ହେଲା । ଏହାସତ୍ତ୍ୱେ ନନ୍ଦିନୀ ବିଭିନ୍ନ ସମୟରେ ସାହିତ୍ୟ ସଭାକୁ ଯାଉଥିଲେ ଆଉ ଗପ, କବିତା ବି ଲେଖୁଥିଲେ । ସମୟ ମିଳିଲେ ଅନୁବାଦ ମଧ୍ୟ କରୁଥିଲେ । ଏମିତି ଦିନେ ସେ କଲିକତା ଯାଇଥିଲେ ସାହିତ୍ୟିକ ଅନ୍ନଦା ଶଙ୍କର ରାୟଙ୍କ ଜନ୍ମଦିବସ ଉତ୍ସବରେ ଯୋଗ ଦେବା ପାଇଁ । ସେଠାରେ ନନ୍ଦିନୀଙ୍କୁ ଫୁଲମାଳ ପରେ ଫୁଲମାଳ ମିଳିଲା । ନନ୍ଦିନୀ ସେତେବେଳେ ପୂର୍ବତନ ମୁଖ୍ୟମନ୍ତ୍ରୀ କିନ୍ତୁ ଓଡ଼ିଶା ରାଜନୀତିରେ ସେ ସକ୍ରିୟ ଥିଲେ । ଆଉ ରାଜ୍ୟ ଯୋଜନା ବୋର୍ଡ଼ର ଅଧ୍ୟକ୍ଷା ବି ଥିଲେ । କିନ୍ତୁ କଲିକତାରେ ଯେ ରାଜନୀତି ଅପେକ୍ଷା ସାହିତ୍ୟକୁ ଅଧିକ ଆଦର କରାଯାଏ ତାହା ସେଠାରେ ସ୍ପଷ୍ଟ ହୋଇଯାଇଥିଲା । ନନ୍ଦିନୀଙ୍କୁ ସେଠାରେ ଯେଉଁମାନେ ସମ୍ବର୍ଦ୍ଧନା ଦେଇଥିଲେ ସେମାନେ ସମସ୍ତେ ବଙ୍ଗଳା ସାହିତ୍ୟର ବହୁ ନାମୀଦାମୀ ଲେଖକଲେଖିକା ଥିଲେ । ଚଳଚ୍ଚିତ୍ର ଜଗତର ସନାମଧନ୍ୟ ନିର୍ଦ୍ଦେଶିକା ଅପର୍ଣ୍ଣା ସେନ୍ ମଧ୍ୟ ନନ୍ଦିନୀ ଆସିଛନ୍ତି ବୋଲି ଖବର ପାଇ ସେଠାକୁ ଯାଇଥିଲେ ଏବଂ ନନ୍ଦିନୀଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ନନ୍ଦିନୀ ସେଠାରେ ଆୟୋଜିତ ଉତ୍ସବରେ ପ୍ରଥମେ ଇଂରାଜୀରେ ଭାଷଣ ଦେଲେ । କିନ୍ତୁ ସେଠାରେ ଉପସ୍ଥିତ ଥିବା ସାହିତ୍ୟପ୍ରେମୀମାନେ ବଙ୍ଗଳାରେ ଭାଷଣ ଦେବା ପାଇଁ କହିଲେ । ସେତେବେଳେ ନନ୍ଦିନୀ କହିଲେ- ଇଂରାଜୀରେ ସେ ଭାଷଣ ନଦେଇ ହିନ୍ଦୀରେ ଭାଷଣ ଦେବେ । ନନ୍ଦିନୀ ହିନ୍ଦୀରେ ଭାଷଣ ଦେଲେ । ସଭା ମଧ୍ୟରେ ଥିବା ସାହିତ୍ୟ ପ୍ରେମୀମାନେ ପାଟିକଲେ ବଙ୍ଗଳା, ବଙ୍ଗଳା । ନନ୍ଦିନୀ ଟିକିଏ ହସିଲେ ଆଉ ତା'ପରେ ବଙ୍ଗଳାରେ ଭାଷଣ ଦେଲେ । କେହି ଜାଣିପାରିଲେ ନାହିଁ ଯେ, ନନ୍ଦିନୀଙ୍କର ମାତୃଭାଷା ଓଡ଼ିଆ ବୋଲି । ଅନେକ ମଧ୍ୟ ଭାବିଲେ ନନ୍ଦିନୀଙ୍କର ମାତୃଭାଷା ବଙ୍ଗଳା । ନନ୍ଦିନୀଙ୍କର ଭାଷଣ ଶେଷ ହେଲା । ତାଙ୍କ ପାଖକୁ ସାହିତ୍ୟ ଅନୁରାଗୀମାନଙ୍କର ସୁଅ ଛୁଟିଲା । ସମସ୍ତଙ୍କର ମୁହଁରେ ନନ୍ଦିନୀଙ୍କର ପ୍ରଶଂସା । ନିଜର ମାତୃଭାଷା ହୋଇ ସେମାନେ ବଙ୍ଗଳାରେ ନନ୍ଦିନୀଙ୍କ ପରି ଭାଷଣ ଦେଇପାରିବେ ନାହିଁ ବୋଲି ମଧ୍ୟ ପ୍ରକାଶ କଲେ । ନନ୍ଦିନୀଙ୍କର ସେମାନଙ୍କୁ ଉତ୍ତର ଥିଲା- ମାତୃଭାଷା ଓଡ଼ିଆକୁ ସେ ବେଶ୍ ଭଲ ପାଆନ୍ତି । ଅନ୍ୟ କାହା ମାତୃଭାଷାରେ ସେ ଭାଷଣ ଦେବାକୁ ଭଲ ପାଆନ୍ତି ନାହିଁ । ଯେଉଁଥିପାଇଁ ପ୍ରଥମେ ଇଂରାଜୀ ପରେ ହିନ୍ଦୀରେ ଭାଷଣ ଦେବାପାଇଁ ସେ ଚାହିଁଥିଲେ । ତେବେ ପଶ୍ଚିମବଙ୍ଗ ହେଉଛି ଓଡ଼ିଶାର ପଡ଼ୋଶୀ ରାଜ୍ୟ । ତେଣୁ ପଡ଼ୋଶୀଙ୍କ ଅନୁରୋଧ ରକ୍ଷା କରିବା ଥିଲା ତାଙ୍କର କର୍ତ୍ତବ୍ୟ । ଆଉ ଯେଉଁ ବଙ୍ଗଳାରେ ସେ ଭାଷଣ ଦେଇଛନ୍ତି ତାହା ପଡ଼ୋଶୀଙ୍କୁ ଭଲ ପାଉଥିବା ଯୋଗୁ । ନନ୍ଦିନୀଙ୍କର ଏହି କେତୋଟି କଥାକୁ ନେଇ ସେଠାରେ ଜୋରଦାର୍ ଚର୍ଚ୍ଚା ବି ହୋଇଥିଲା । ମାନିବାକୁ ପଡ଼ିବ ନନ୍ଦିନୀଙ୍କୁ । ଯୁଆଡ଼େ ଗଲେ ମଧ୍ୟ ସେ ଓଡ଼ିଶା ଓ ଓଡ଼ିଆ ଭାଷାକୁ ଆଦର କରନ୍ତି ହିଁ କରନ୍ତି । ■

# ଖଇଁଗା ମଂଜି, ଇଲିସି ଶୁଖୁଆ ଓ ବିଜୁ

ଜୁ ପଟ୍ଟନାୟକ ଏମିତି କେଉଁ ଖାଦ୍ୟ ନାହିଁ ଯାହାକୁ ଖାଇନାହାନ୍ତି । ମହାପ୍ରସାଦ ଠାରୁ ଆରମ୍ଭ କରି ବିଦେଶର ବିଭିନ୍ନ ସ୍ଥାନର ଖାଦ୍ୟ ମଧ୍ୟ ବିଜୁ ଖାଇଛନ୍ତି । କେଉଁ ଖାଦ୍ୟକୁ କିପରି ଖିଆଯାଏ ତାହାର କୌଶଳ ବିଜୁ ପଟ୍ଟନାୟକ ଭଲ ରୂପେ ମାଲୁମ ଥିଲା । କିନ୍ତୁ ଚିଲିକାର ଖଇଁଗା ମାଛ ମଂଜି ପ୍ରତି ବିଜୁ



ପଟ୍ଟନାୟକଙ୍କର ସବୁଠାରୁ ଅଧିକ ଦୁର୍ବଳତା ଥିଲା ବୋଲି କାଁ ଭାଁ କେହି ଜାଣନ୍ତି । ଏମିତି ସକାଳୁ ଉଠିଲେ ଅଣ୍ଡାପୋଚ୍ ନହେଲେ ବିଜୁ ପଟ୍ଟନାୟକଙ୍କର ନଚଳେ । ଅଣ୍ଡାପୋଚ୍ ପୁଣି କଂଚାଳିଆ ଥିବ । ବିଜୁ ଏହି ଅଣ୍ଡାପୋଚ୍ ଭିତରୁ କେଶରକୁ ଶୋଷି ଖାଇନେବେ ଆଉ ଧଳାଅଂଶଟି ସେହିପରି ଥିବ । ଚିକେନ୍ ରୋଷ୍ଟ ହେଲେ ବିଜୁଙ୍କର ଖୁସି କାହିଁରେ କ'ଣ । ଗୋଟିଏ ଚିକେନ୍ ରୋଷ୍ଟରେ ତାଙ୍କର ଖାଇବା ସଉକ ମେଂଟେନାହିଁ । ଚିଲିକାର ବାଗ୍‌ଦା ଚିଙ୍ଗୁଡ଼ି ମଧ୍ୟ ତାଙ୍କର ବେଶ୍ ପ୍ରିୟ ଅଟେ । ତେବେ ସମସ୍ତଙ୍କୁ ଟପିଯାଏ ଖଇଁଗା ମଂଜି ଶୁଖୁଆ । ସେଦିନ ବିଜୁ ପଟ୍ଟନାୟକ ନବୀନ ନିବାସର ଉପର ମହଲା ବାରଣ୍ଡାରେ ବସି ଦରବାର ଚଳାଉଥା'ନ୍ତି । ହଠାତ୍ ସେ କହିଲେ- ଗାନ୍ଧୀ ଆସିଛି, ତାକୁ ଉପରକୁ ପଠାଇଦିଅ । ସେ ନିଶ୍ଚିତ ଖଇଁଗା ମଂଜି ଶୁଖୁଆ ଆଣିଥିବ । ତାକୁ ରଖିଦେବ । ଆଜି ଅନ୍ୟ କୌଣସି ମେନୁ ନୁହଁ । ଖଇଁଗା ମଂଜିର ମେନୁ ହେବ । ସତକୁ ସତ ପୁରୀର ଗାନ୍ଧୀ ମିଶ୍ର ତାଙ୍କ ପାଖକୁ ଆସିଲେ । ବିଜୁ ତାଙ୍କୁ ଦେଖି ବେଶ୍ ହସିଲେ ଆଉ କହିଲେ- ଖଇଁଗା ମଂଜି ଆଣିଛୁ ତ । ଗାନ୍ଧୀ ମିଶ୍ର କହିଲେ- ଆଜ୍ଞା, ଆପଣ ଯାହା ନିର୍ଦ୍ଦେଶ ଦେବେ ତାହା ଏ ଅଧମ କାର୍ଯ୍ୟକାରୀ କେମିତି କରିବ ନାହିଁ । ବିଜୁ କହିଲେ- ଏତେ କଥା କହନାହିଁ । ଖଇଁଗା ମଂଜିଶୁଖୁଆ ଆଣିଛୁ ନା ନାହିଁ କହ । ଗାନ୍ଧୀ ମିଶ୍ର କହିଲେ- ଆଜ୍ଞା, ଆଣିଛି ଆଉ ତା' ସହିତ ଆଉ ଅଲଗା ଶୁଖୁଆ ମଧ୍ୟ ଆଣିଛି । ବିଜୁ ଟିକିଏ ଗମ୍ଭୀର ହୋଇଗଲେ ଆଉ ପଚାରିଲେ- ଆଉ କେଉଁ ଶୁଖୁଆ । ଗାନ୍ଧୀ ମିଶ୍ର କହିଲେ- ଇଲିସି ଶୁଖୁଆ । ବିଜୁ ପଟ୍ଟନାୟକ ଜୋର୍‌ରେ ହସି କହିଲେ- ବାଃ ତୁ ମୋ ମନକୁ ଭଲ ଭାବେ ଚିହ୍ନି ଯାଇଛୁ । ତା' ହେଲେ ଆଜିର ମେନୁ ହେବ- ଖଇଁଗା ମଂଜି ଶୁଖୁଆ ଓ ଇଲିସି ଶୁଖୁଆ । ବିଜୁ ଖଇଁଗା ମଂଜି ଶୁଖୁଆ ଖାଇବାକୁ ଭଲ ପାଆନ୍ତି ବୋଲି କେହିକେହି ଜାଣନ୍ତି । କିନ୍ତୁ ଇଲିସି ଶୁଖୁଆକୁ ଭଲ ପାଆନ୍ତି ବୋଲି କ୍ୱଚିତ ଜାଣନ୍ତି । ସେଦିନ ବିଜୁଙ୍କ ଦରବାରରେ ଥିବା ସବୁ ଲୋକ ଜାଣିଯାଇଥିଲେ ଯେ, ଇଲିସି ଶୁଖୁଆ ପ୍ରତି ମଧ୍ୟ ବିଜୁଙ୍କର ଦୁର୍ବଳତା ରହିଛି ବୋଲି । ■



# କଡ଼ା ଶାସନ

ସେ ତେବେବେଳେ ନନ୍ଦିନୀ ସତପଥୀ ରାଜ୍ୟ ଯୋଜନା ବୋର୍ଡ଼ର ଅଧ୍ୟକ୍ଷା ଥା'ନ୍ତି । ୭୦ ଦଶକରେ ମୁଖ୍ୟମନ୍ତ୍ରୀ ଥିବାବେଳେ ନନ୍ଦିନୀ ସତପଥୀ ଯେପରି କଡ଼ା ଶାସନ କରୁଥିଲେ ଯୋଜନା ବୋର୍ଡ଼ ଅଧ୍ୟକ୍ଷା ହେବାପରେ ସେହିପରି ଶାସନ କରିବା ପାଇଁ ମଧ୍ୟ ସେ ପ୍ରତିଜ୍ଞାବଦ୍ଧ ହେଲେ । ନନ୍ଦିନୀ ଏ କ୍ଷେତ୍ରରେ ଯୋଜନା ପ୍ରସ୍ତୁତ କଲେ । ପ୍ରତିମାସରେ ଶାସନ ସଚିବଙ୍କ ବୈଠକ ସେ ଡାକିଲେ । ଏଥିରେ ସେ ସମୀକ୍ଷା କଲେ । ନନ୍ଦିନୀ ଜଣଜଣ କରି ସଚିବଙ୍କୁ ଯୋଜନା କିପରି କାର୍ଯ୍ୟକାରୀ ହେଉଛି ବୈଠକରେ ଜାଣିବାକୁ ପ୍ରଶ୍ନ କରୁଥିଲେ । ନନ୍ଦିନୀଙ୍କର ଏଭଳି ମନୋବୃତ୍ତି ଦେଖି ଅନେକ ଶାସନ ସଚିବ ବୈଠକକୁ ପ୍ରସ୍ତୁତ ହୋଇଆସୁଥିଲେ । ସେଦିନ ଶାସନ ସଚିବଙ୍କ ବୈଠକ ଡକାଯାଇଥିଲା । ନନ୍ଦିନୀ ତାଙ୍କର ଚିରାଚରିତ ଢଙ୍ଗରେ ସମୀକ୍ଷା କଲେ । ଜଣଙ୍କ ପରେ ଜଣେ ଶାସନ ସଚିବଙ୍କୁ ସେ ପଚାରି ଚାଲିଲେ । ସତେ ଯେମିତି ତାହା ଥିବା 'ଜେରା' । ନନ୍ଦିନୀଙ୍କର ଏହି ଜେରାକୁ କେତେକ ଶାସନ ସଚିବ ଭୟ ବି କରୁଥିଲେ । ହଠାତ୍ ଦେଖାଗଲା ଜଣେ ଶାସନ ସଚିବଙ୍କ ପାଖରେ ନନ୍ଦିନୀ ଅଟକିଗଲେ । ନନ୍ଦିନୀ ଯେତେସବୁ ପ୍ରଶ୍ନ ତାଙ୍କୁ ପଚାରୁଥା'ନ୍ତି ସେ କିନ୍ତୁ ନିରବ ଯେ ରହୁଥିଲେ ତାହା ନୁହେଁ । ଉତର ବି ଦେଉଥିଲେ । କିନ୍ତୁ ନନ୍ଦିନୀ ସେଥିରେ ସନ୍ତୁଷ୍ଟ ହେଉ ନଥିଲେ । ଯେଉଁଥିପାଇଁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥିଲେ । ଶେଷକୁ ନନ୍ଦିନୀଙ୍କ ପାଟିରୁ ବାହାରିଲା ଯେ- ଆପଣ ପ୍ରସ୍ତୁତ ହୋଇ ଆସିନାହାନ୍ତି । ନନ୍ଦିନୀ ସତପଥୀ ଯେତେବେଳେ ବୈଠକ ଡାକିବେ ସେତେବେଳେ ପ୍ରସ୍ତୁତ ହୋଇ ଆସନ୍ତୁ ବୋଲି ସେ କହିଲେ । ଯୋଜନା ବୋର୍ଡ଼ର ଅଧ୍ୟକ୍ଷା ପଦବୀଟିକୁ କମ୍ ଗୁରୁତ୍ୱପୂର୍ଣ୍ଣ ବୋଲି ନଭାବିବାକୁ ଶାସନ ସଚିବମାନଙ୍କୁ ନନ୍ଦିନୀ ପରାମର୍ଶ ଦେଇଥିଲେ । ଅବଶ୍ୟ ବୈଠକଟି ଶେଷ ହୋଇଯିବା ପରେ ନନ୍ଦିନୀଙ୍କ ମନ୍ତବ୍ୟକୁ ନେଇ ଅନେକ ଶାସନ ସଚିବ ଚର୍ଚ୍ଚା କରିଥିଲେ । ମୁଖ୍ୟମନ୍ତ୍ରୀ ହେବାର ୨୧ ବର୍ଷ ବିତିଯାଇଥିଲେ ମଧ୍ୟ ନନ୍ଦିନୀ ଯେପରି ମୁଖ୍ୟମନ୍ତ୍ରୀ ସମୟରେ କଡ଼ା ଥିଲେ ସେହିପରି କଡ଼ା ଅଛନ୍ତି ବୋଲି ଆଇଏଏସ୍ ଅଫିସର ତଥା ଶାସନ ସଚିବମାନେ ସେଦିନ ଆଲୋଚନା କରିଥିଲେ । ଅବଶ୍ୟ ଏହି ଆଲୋଚନା ପରବର୍ତୀ ସମୟରେ ନନ୍ଦିନୀଙ୍କ କାନରେ ପଡ଼ିଥିଲା । ସେତେବେଳେ ନନ୍ଦିନୀ ହସି ଦେଇ ଓଡ଼ିଆରେ ଥିବା ମଣିଷ ପ୍ରକୃତି ମଲେ ତୁଟେ... ପ୍ରବାଦକୁ ବର୍ଣ୍ଣନା କରିଥିଲେ । ଆଉ ସେ ମଣିଷ ହୋଇଥିବାରୁ ତାଙ୍କର ପ୍ରକୃତି ୨୧ ବର୍ଷ ପୂର୍ବରେ ଯାହାଥିଲା ଏବେବି ତାହା ଅଛି ବୋଲି କହିଥିଲେ । ଓଡ଼ିଶା ଶାସନରେ ନନ୍ଦିନୀ ସତପଥୀଙ୍କ ଶାସନ ସବୁଦିନ ପାଇଁ ରେକର୍ଡ଼ ହୋଇରହିଥିବ ବୋଲି ନନ୍ଦିନୀ ମଧ୍ୟ ସେଦିନ କହିବାକୁ ପଛାଇ ନଥିଲେ । ■

# ଚିତ୍ରକର ନବୀନ



ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଲେଖକ ବୋଲି ଅନେକ ସମୟରେ ମଧ୍ୟ ବର୍ଣ୍ଣନା କରାଯାଇଥାଏ । ଏମିତି ଯେଉଁ କେତୋଟି ଉଲ୍ଲେଖନୀୟ ଇଂରାଜୀ ପୁସ୍ତକ ନବୀନ ରଚନା କରିଛନ୍ତି ସେଗୁଡ଼ିକ ମଧ୍ୟରେ ଅଛି 'ଏ ସେକେଣ୍ଡ ପାରାଡାଇଜ୍', 'ଏ ଡେଜର୍ଟ କିଙ୍ଗଡମ୍', 'ଦି ଗାର୍ଡନ ଅଫ୍ ଲାଇଫ' । ମାନେ ସେ ଜଣେ କ୍ରିଏଟିଭ୍‌ମ୍ୟାନ୍ । ଭାରତୀୟ ଡିଜାଇନକୁ ଆନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତିଲାଭ କରାଇବା ସହିତ ଭାରତୀୟ ହସ୍ତତନ୍ତ ଓ ବୟନଶିଳ୍ପରେ କାରିଗରଙ୍କ ପାଇଁ ଭାରତୀୟ ହସ୍ତତନ୍ତ ଶିଳ୍ପରେ ଯେପରି ବ୍ୟାପକ ସୁବିଧାସୁଯୋଗ ମିଳିବ ସେ ଦିଗରେ ସେ ରାଜନୀତିକୁ ଆସିବା ପୂର୍ବରୁ କାମ କରୁଥିଲେ । ପୁଣି ଭାରତୀୟ କଳା ଓ ସଂସ୍କୃତିର ବାର୍ତ୍ତାବହକ ବୋଲି କୁହାଯାଉଥିବା ଇନ୍‌ଟାକ୍‌ର ମଧ୍ୟ ସେ ପ୍ରତିଷ୍ଠାତା ସଭ୍ୟ । ତାଙ୍କର ସଂସ୍କୃତି ଓ ପରିବେଶ କ୍ଷେତ୍ରରେ ବିଶେଷ ଆଗ୍ରହ ରହିଛି । ଅବସର ସମୟ ପାଇଲେ ସେ ପଢ଼ନ୍ତି । ପୁଣି ସଂସ୍କୃତି, ଇତିହାସ ଓ ପରିବେଶ ସମ୍ପର୍କରେ ହେଉଥିବା କାର୍ଯ୍ୟକ୍ରମକୁ ସେ ମଧ୍ୟ ମନ ଦେଇ ଦେଖନ୍ତି । ଅନେକ ସମୟରେ ମଧ୍ୟ ଆଶା କରାଯାଉଥିଲା ଯେ, ନବୀନଙ୍କ ପରି ଜଣେ କ୍ରିଏଟିଭ୍‌ମ୍ୟାନ୍ ରାଜନୀତିକୁ ଆସିଥିବାରୁ ସେ ସବୁବେଳେ ଅଶ୍ୱସ୍ତି ଅନୁଭବ କରିବେ । କିନ୍ତୁ ୧୯୯୭ ମସିହାରୁ ଏଯାବତ୍ ନବୀନ କେତେବେଳେ ରାଜନୀତିରେ ଅଶ୍ୱସ୍ତି ଅନୁଭବ କରିଛନ୍ତି ତାହାର ଟେର୍ କେହି ପାଇନାହାନ୍ତି । ଅବଶ୍ୟ ରାଜନୀତିରେ ପୂରା ସମୟ ଦେଉଥିବାରୁ ନବୀନଙ୍କର କ୍ରିଏଟିଭିଟି ନଷ୍ଟ ହୋଇଗଲାଣି ବୋଲି ମଧ୍ୟ ଚର୍ଚ୍ଚା ହୁଏ । କିନ୍ତୁ ନବୀନ ରାଜନୀତିରୁ ଟିକିଏ ସମୟ ପାଇଲେ ସେହି କ୍ରିଏଟିଭ୍ ଆଡ଼କୁ ଚାଲିଯାଆନ୍ତି । ଏମିତି ତାଙ୍କର ମୁଡ୍ ଯଦି ଭଲ ଥିବ ତା' ହେଲେ ଯାହାଙ୍କ ସହିତ ସେ ଗପୁଥିବେ ତାଙ୍କ ମୁଖମଣ୍ଡଳକୁ ଦେଖି ସେହି ସମୟ ମଧ୍ୟରେ ତାଙ୍କର ଚିତ୍ରଟିଏ ମଧ୍ୟ ସେ ଆଙ୍କି ଦିଅନ୍ତି । ଆଉ ସେ ଚିତ୍ରକୁ ଦେଖିଦେଲେ ନବୀନଙ୍କୁ ଜଣେ ଦାମୀ ଚିତ୍ରକର ବୋଲି ଯେକୌଣସି ବ୍ୟକ୍ତି କହିବେ ହିଁ କହିବେ । ସେହି ଚିତ୍ରଟିରେ କେଉଁଠି ବି ଖୁଣ ରହି ନଥାଏ । ବୋଧହୁଏ ନବୀନଙ୍କର ଏହି କ୍ରିଏଟିଭ୍ ପାଇଁ ତାଙ୍କ ମନରେ ବିରକ୍ତି ଭାବ ଦେଖାଯାଇ ନଥାଏ । ଏମିତି ମଣିଷ ହେଲେ ସେ ନିଶ୍ଚିତ ଭାବେ ହସକାନ୍ଦ ଭରା ଦୁନିଆ ସହିତ ରହିବ ହିଁ ରହିବ । ନବୀନଙ୍କ ମନରେ ଦୁଃଖ ଆଉ ରାଗ ଯେ ବେଳେବେଳେ ଆସୁନଥିବ ତାହା ମଧ୍ୟ କୁହାଯାଇପାରିବନାହିଁ । ସୃଷ୍ଟିକର୍ତ୍ତା ଭଗବାନଙ୍କ ଠାରେ ମଧ୍ୟ ଦୁଃଖ ଆଉ ରାଗ ଦେଖିବାକୁ ମିଳିଥାଏ । ନବୀନ ଯେହେତୁ ଜଣେ ସାଧାରଣ ମଣିଷ ତେଣୁ ସେ ମଧ୍ୟ ଏହି ଦୁଃଖ ଓ ରାଗ ମଧ୍ୟ ଦେଇ ନିଶ୍ଚିତ ଭାବେ ଯିବେ । ତେବେ କାହିଁକି ନବୀନଙ୍କ ଠାରେ ଦୁଃଖ ଆଉ ରାଗ ଦେଖାଯାଉନାହିଁ ତାହାର କାରଣ ଖୋଜିବାକୁ ଆଉ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । କ୍ରିଏଟିଭ୍ ଲୋକମାନେ ଚିତ୍ରଟିଏ ଆଙ୍କିଦେଲେ କି ବହି

ପଢ଼ିଦେଲେ କି ଗଛ ଓ ପରିବେଶକୁ ଚାହିଁଦେଲେ କି କିଛି ଲେଖାଲେଖି କଲେ ସେମାନଙ୍କର ଦୁଃଖ ଆଉ ରାଗ ଆପେଆପେ ଉଭେଇଯିବ । ଏମିତି ନବୀନ କ୍ରିଏଟିଭ୍ ଲୋକ ହୋଇ ଚିତ୍ର ଆଙ୍କନ୍ତି, ବହି ପଢ଼ନ୍ତି, ଲେଖାଲେଖି କରନ୍ତି ପୁଣି ଗଛ ଓ ପରିବେଶ ପ୍ରତି ଅଧିକ ଆଗ୍ରହ ଦେଖାଇଥା'ନ୍ତି । ଏହି ଦୃଷ୍ଟିରୁ ନବୀନଙ୍କ ପାଖରେ ରାଗ ଆଉ ଦୁଃଖ ପଶିପାରୁନାହିଁ । ଦେଖାଯାଉ ରାଜନୀତିରେ ପୂର୍ଣ୍ଣ ସମୟ ଦେଇ ନବୀନ କେତେଦିନ କ୍ରିଏଟିଭ୍‌ମ୍ୟାନ୍ ହୋଇରହିପାରୁଛନ୍ତି । ■

# ନୋ ପଲିଟିକ୍‌ସ



ନୂଆବର୍ଷରେ ପ୍ୟାରୀମୋହନ ମହାପାତ୍ର ଅବସ୍ଥାନ କରିଥିଲେ କୋରାପୁଟରେ । ହୋଇଥାଇପାରେ ୨୦୦୯ ନିର୍ବାଚନ ବର୍ଷ ହୋଇଥିବାରୁ ତାଙ୍କୁ ବିଜେଡ଼ି ନେତା ଓ କର୍ମୀମାନେ ନବବର୍ଷ ଅଭିନନ୍ଦନ ଜଣାଇବାକୁ ଭିଡ଼ ହେବାର ସମ୍ଭାବନା ଥିବାରୁ ସେ ଏହାକୁ ଏଡ଼ାଇ ଦେବାପାଇଁ କୋରାପୁଟ ଯାଇଥାଇପାରନ୍ତି । ଅନେକ ବିଜେଡି ନେତା ଓ କର୍ମୀ ନୂଆବର୍ଷରେ ପ୍ୟାରୀଙ୍କ ଶହୀଦନଗର ବାସଭବନକୁ ଯାଇ ପ୍ୟାରୀ ନଥିବାରୁ ମନଦୁଃଖରେ ଫେରିଥିଲେ । କିନ୍ତୁ ପ୍ୟାରୀ ଆସିବା ଦିନକୁ ସେମାନେ ଚାହିଁ ରହିଥିଲେ । ଭୁବନେଶ୍ୱରରେ ପ୍ୟାରୀ ଯେତେବେଳେ ପହଂଚିଲେ ସେତେବେଳୁ ଆରମ୍ଭ ହୋଇଗଲା ବିଜେଡି କର୍ମୀ ଓ ନେତାଙ୍କ ମଧ୍ୟରେ ନବବର୍ଷ ଶୁଭେଚ୍ଛା ଜଣାଇବା ପାଇଁ ପ୍ରତିଯୋଗିତା । ପ୍ୟାରୀ ସମସ୍ତଙ୍କୁ ଦେଖା କରୁଥା'ନ୍ତି ଆଉ ଶୁଭେଚ୍ଛା ଗ୍ରହଣ କରୁଥା'ନ୍ତି ଏବଂ ଶୁଭେଚ୍ଛା ଜଣାଉଥିବା ବ୍ୟକ୍ତିଙ୍କୁ ଧନ୍ୟବାଦ ବି ଦେଉଥା'ନ୍ତି । ଦେଖାଗଲା ନିର୍ବାଚନରେ ଟିକଟ ପାଇବା ପାଇଁ ବହୁ ଆଶାୟୀ ପ୍ରାର୍ଥୀ ପ୍ୟାରୀଙ୍କୁ ଶୁଭେଚ୍ଛା ଜଣାଇବା ପାଇଁ ଯାଇଥିଲେ । ସେଥିମଧ୍ୟରୁ ଅନେକ ନିଜ ନାମ ଏବଂ ନିର୍ବାଚନମଣ୍ଡଳୀ ସମ୍ପର୍କରେ ମଧ୍ୟ ସୂଚନା ଦେଲେ । ପ୍ୟାରୀ କିଛି କହିବା ପୂର୍ବରୁ ସେମାନେ ବିଜେଡିର ଆଶାୟୀ ପ୍ରାର୍ଥୀ ବୋଲି ନିଜ ଆଡୁ କହିବା ପାଇଁ ମଧ୍ୟ ପଛାଉ ନଥା'ନ୍ତି । କିନ୍ତୁ ପ୍ୟାରୀଙ୍କର ଉତ୍ତରରେ ସେମାନଙ୍କୁ ଚୁପ୍ ହେବାକୁ ପଡ଼ିଥିଲା । ପ୍ୟାରୀ କହିଥିଲେ -ନୂଆ ବର୍ଷର ଶୁଭେଚ୍ଛା ବ୍ୟତୀତ ଅନ୍ୟ କିଛି ନୁହଁ । ନୋ ପଲିଟିକ୍‌ସ । ରାଜନୀତି ସମ୍ପର୍କରେ ଆଲୋଚନା କରିବାକୁ ହେଲେ ସମୟ ନେବାକୁ ପଡ଼ିବ । ଏମିତି ନୂଆ ବର୍ଷ ଶୁଭେଚ୍ଛା ଜଣାଇବାକୁ ଆସି ରାଜନୀତି କଥା କହିଲେ ହେବ ନାହିଁ । ପ୍ୟାରୀଙ୍କର ଏହି ମନ୍ତବ୍ୟ ଆଶାୟୀ ପ୍ରାର୍ଥୀଙ୍କ ମଧ୍ୟରେ ନିରାଶା ସୃଷ୍ଟି କରିଥିଲା । ଏମିତି ପ୍ୟାରୀଙ୍କୁ ଦେଖା କରିବା ପାଇଁ ସେମାନେ ମାସ ପରେ ମାସ ଅପେକ୍ଷା କଲେ ମଧ୍ୟ ଦେଖା ବି କରିପାରୁ ନଥିଲେ । ଚାହିଁ ରହିଥିଲେ ନୂଆବର୍ଷରେ ଶୁଭେଚ୍ଛା ଦେବାପାଇଁ । ଏହି ଶୁଭେଚ୍ଛା ଦେବା ସମୟରେ ନିଜ ମନର କଥା ପ୍ୟାରୀଙ୍କ ଆଗରେ ଖୋଲିଦେଲେ ଆଶ୍ୱାସନା ମିଳିବ ବୋଲି ସେମାନେ ଭାବିନେଇଥିଲେ । କିନ୍ତୁ ସେମାନଙ୍କର ସବୁ ଆଶାକୁ ପ୍ୟାରୀଙ୍କ ନୋ ପଲିଟିକ୍‌ସ ଧୂଳିସାତ୍ କରିଦେଇଥିଲା । ■

# ଢିଙ୍କି ଯେଉଁଠିକୁ ଗଲେ ଧାନ କୁଟିବ




ଭୁବନେଶ୍ୱର ସ୍ଥିତ ଜୟଦେବ ଭବନରେ ଏକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଆମ ଓଡ଼ିଶା ପକ୍ଷରୁ ଅନୁଷ୍ଠିତ ଏହି ଉତ୍ସବରେ 'ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ' ପୁସ୍ତକକୁ ଉନ୍ମୋଚନ କରାଯାଇଥିଲା । ଜାନକୀ ବଲ୍ଲଭ ପଟ୍ଟନାୟକ ସାଢ଼େ ୧୩ ବର୍ଷ ମୁଖ୍ୟମନ୍ତ୍ରୀ ଥିବା ସମୟରେ ବିଭିନ୍ନ କ୍ଷେତ୍ରରେ ହୋଇଥିବା ବିକାଶମୂଳକ କାର୍ଯ୍ୟକ୍ରମ ସମ୍ପର୍କରେ ଏହି ପୁସ୍ତକରେ ଉଲ୍ଲେଖ ହୋଇଥିଲା । ପୁସ୍ତକକୁ ପୂର୍ବତନ କେନ୍ଦ୍ରମନ୍ତ୍ରୀ ବିଭୁଧେନ୍ଦ୍ର ମିଶ୍ର ଉନ୍ମୋଚନ କରିଥିଲେ । ତେବେ ଆସାମ ରାଜ୍ୟପାଳ ଜାନକୀ ବଲ୍ଲଭ ପଟ୍ଟନାୟକ ଏହି ଉତ୍ସବରେ ଯେଉଁ ବକ୍ତବ୍ୟ ଦେଇଥିଲେ ତାହା ବିଭିନ୍ନ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଥିଲା । ଯେହେତୁ ସେ ରାଜ୍ୟପାଳ ଅଛନ୍ତି ତେଣୁ ସିଧାସଳଖ ବକ୍ତବ୍ୟ ନଦେଇ ପରୋକ୍ଷ ଭାବେ ସେ ଏମିତି ଶର ଛାଡ଼ିଥିଲେ ଯେ ତାହା ବୁଝିବା ବ୍ୟକ୍ତି ହିଁ ସବୁଦିନ ପାଇଁ ମନେ ରଖିବ । ଏବେ ଦେଖିବା ଜାନକୀ ବଲ୍ଲଭ ପଟ୍ଟନାୟକ ସଭାରେ କ'ଣ କହିଲେ । ଏହି ପୁସ୍ତକ ସମ୍ପର୍କରେ ସେ ପ୍ରଥମେ କହିଲେ ଯେ, ପୁସ୍ତକଟି ଜୀବନୀ କି ଆତ୍ମଜୀବନୀ ନୁହେଁ କି ଏହା ଅଭିନନ୍ଦନ ଗ୍ରନ୍ଥ ନୁହେଁ । ତାଙ୍କ ସମୟରେ ଶାସନ କ୍ଷେତ୍ରରେ ଯେଉଁ କାର୍ଯ୍ୟ ହୋଇଥିଲା ସେହି କାର୍ଯ୍ୟରେ ସାମିଲ ଥିବା ବ୍ୟକ୍ତିମାନଙ୍କର ଅନୁଭବର ହେଉଛି ଏହି ପୁସ୍ତକ । ଇତିହାସ ଏମିତି ଅନେକ ସମୟରେ ଭୁଲ୍ ପ୍ରମାଣିତ ହୋଇପାରେ । ଯେହେତୁ ଇତିହାସକୁ ଜଣେ ବ୍ୟକ୍ତି ଲେଖିଥା'ନ୍ତି ତେଣୁ ସେଥିରେ ନିରପେକ୍ଷତା ରହିବା ନେଇ ଆଶଙ୍କା ଦେଖାଦେଇପାରେ । କାରଣ ସେହି ବ୍ୟକ୍ତିର ଦୃଷ୍ଟିଭଙ୍ଗୀକୁ ନେଇ ସେହି ଇତିହାସ ଲେଖାଯାଇଥାଏ । ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ ପୁସ୍ତକଟିକୁ ଜଣେ ଲେଖିନାହାନ୍ତି । ସେହି ସମୟରେ ହୋଇଥିବା ବିଭିନ୍ନ କାର୍ଯ୍ୟରେ ସଂପୃକ୍ତ ଅନେକ ବ୍ୟକ୍ତିଙ୍କ ନିଜକ ଅନୁଭୂତିକୁ ନେଇ ପୁସ୍ତକଟି ପ୍ରକାଶ ପାଇଛି । ଜାନକୀ ବଲ୍ଲଭ ତାଙ୍କ ଭାଷଣରେ ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ ପୁସ୍ତକଟି ସତ୍ୟ ଉପରେ ଆଧାରିତ ବୋଲି ଯୁକ୍ତି ଦର୍ଶାଇଥିଲେ । ଏହାପରେ ସେ କହିଥିଲେ- ତାଙ୍କ ଶାସନ ସମୟରେ ନିଷ୍ଠାର ସହ ସେ ବହୁକାମ କରିଛନ୍ତି । ପର ମୁହୂର୍ତ୍ତରେ ସେ ଅନୁଭବ କଲେ ରାଜନୈତିକ ଝଡ଼ଝଂଜା ଓ ବିବାଦ ମଧ୍ୟରେ ଏହାସବୁ ଲୁଚିଯାଇପାରେ । ଏହା ଫଳରେ ସେହିସବୁ ତଥ୍ୟ ଲୋକଲୋଚନର ଅନ୍ତରାଳରେ ରହିଯାଇପାରେ । ଓଡ଼ିଶାରେ ତାଙ୍କ ସମୟରେ ଏହା ଘଟିଛି ବୋଲି ଅନେକ ସ୍ୱୀକାର କରିବାକୁ ମଧ୍ୟ ପ୍ରସ୍ତୁତ ନୁହନ୍ତି ଏବଂ ତାଙ୍କ ସମୟର କାର୍ଯ୍ୟକୁ ଅସ୍ୱୀକାର କରିବାର ଉଦ୍ୟମ ମଧ୍ୟ ଆରମ୍ଭ ହେଲାଣି ବୋଲି ସେ ଅନୁଭବ କଲେଣି । ଆତ୍ମଜୀବନୀ ଲେଖିଥିଲେ ତାଙ୍କର ସମସ୍ତ କାର୍ଯ୍ୟ ସେ ଲେଖିପାରିଥା'ନ୍ତେ । କିନ୍ତୁ ଇତିହାସ ଦୃଷ୍ଟିରୁ ହୁଏତ ତାହା ଗ୍ରହଣୀୟ ହୋଇପାରି ନଥା'ନ୍ତା । ବର୍ତ୍ତମାନ ଏହି ପୁସ୍ତକରେ ଯେଉଁମାନଙ୍କର ଲେଖାରହିଛି ସେମାନେ ନିଜନିଜ କ୍ଷେତ୍ରରେ ସନାମଧନ୍ୟ । ତେଣୁ ଏହି ପୁସ୍ତକଟି ଏକ ନୂଆ ଧରଣର

ପ୍ରାମାଣିକ ଗ୍ରନ୍ଥ ହୋଇପାରିବ । ଇତିହାସ ପୃଷ୍ଠାରୁ ଏହି କାର୍ଯ୍ୟଗୁଡ଼ିକୁ କେହି ପୋଛିପାରିବେ ନାହିଁ । ଶାସନ ସମୟରେ ବହୁ କାର୍ଯ୍ୟ କରିବା ସତ୍ୱେ ତାଙ୍କର କିଛି ସ୍ୱପ୍ନ ମଧ୍ୟ ଅଧୁରା ରହିଗଲା । ସମୟ, ଚାପ, ପରିବେଶ ପରିବର୍ତ୍ତନ ଯୋଗୁ ଏହି ସ୍ୱପ୍ନ ଅଧୁରା ରହିଗଲା ବୋଲି ସେ କହିଥିଲେ । ଜାନକୀ ବଲ୍ଲଭଙ୍କ ବକ୍ତବ୍ୟ ଶୁଣିବା ପାଇଁ ସାରା ସୂଚନାଭବନ ସେଦିନ ଲୋକାରଣ୍ୟ ହୋଇଯାଇଥିଲା । କିନ୍ତୁ ଯେଉଁ ବକ୍ତବ୍ୟ ସେ ଦେଲେ ତାହାର ଭିତିରି ଅର୍ଥ ମଧ୍ୟ ସେହିଠାରେ ହିଁ ବୁଝାପଡ଼ିଥିଲା । ତାଙ୍କ ସମୟର କାର୍ଯ୍ୟକୁ ଅସ୍ୱୀକାର କରିବାର ଉଦ୍ୟମ ଚାଲିଛି ବୋଲି ସେ କହିବାକୁ ପଛାଇ ନଥିଲେ । ପୁଣି ରାଜନୈତିକ ଝଡ଼ଝଂଜା ଓ ବିବାଦ ମଧ୍ୟରେ ତାଙ୍କର ସାଢ଼େ ୧୩ ବର୍ଷର ଶାସନ ସମୟର ଶ୍ରେଷ୍ଠ କାମଗୁଡ଼ିକ ଲୁଚିଯାଇପାରେ ବୋଲି ମଧ୍ୟ ସେ ଆଶଙ୍କିତ ହୋଇଯାଇଥିଲେ । କେବଳ ସେତିକିରେ ସେ ଆଶଙ୍କିତ ନଥିଲେ । କୁଆଡ଼େ ତାଙ୍କର କାମକୁ ଅସ୍ୱୀକାର କରିବାର ଉଦ୍ୟମ ହେଉଛି ବୋଲି ସେ ମଧ୍ୟ କହିବାକୁ ପଛାଇ ନଥିଲେ । ଏମିତି ଜାନକୀ ବଲ୍ଲଭଙ୍କୁ ଓଡ଼ିଶାର ଶ୍ରେଷ୍ଠ ରାଜନୀତିଜ୍ଞ ବୋଲି କୁହାଗଲେ କୌଣସି ଅତ୍ୟୁକ୍ତି ହେବନାହିଁ । ସେ ହିଁ ୧୯୮୦ ମସିହାରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାପରେ ରାଜ୍ୟରେ ପ୍ରଥମେ ସ୍ଥାୟୀ ସରକାର କରିଥିଲେ । କିନ୍ତୁ କଂଗ୍ରେସ ରାଜନୀତିରେ ସେ ବେଳେବେଳେ ଅସହାୟ ହୋଇଯାଇଛନ୍ତି । ତାଙ୍କର ଶତ୍ରୁ ଯେ ବିରୋଧୀ ଦଳ ତାହା ନୁହେଁ । କଂଗ୍ରେସରେ ହିଁ ତାଙ୍କର ଶତ୍ରୁ ଅଧିକ । ପୁଣି ଯେଉଁମାନଙ୍କୁ ସେ ଉପରକୁ ଉଠାଇଛନ୍ତି ସେମାନେ ହିଁ ତାଙ୍କର ଚରମଶତ୍ରୁ ହୋଇଯାଇଛନ୍ତି । ୨୦୦୯ ନିର୍ବାଚନରେ ଯେପରି ତାଙ୍କୁ ନିର୍ବାଚନରୁ ଦୂରେଇ ରଖାଗଲା ଏଥିରୁ ହିଁ ସ୍ପଷ୍ଟ ହୋଇଯାଇଥିଲା ଯେ, କଂଗ୍ରେସ ଦଳରେ ଜାନକୀଙ୍କର ଶତ୍ରୁ ବିରୋଧୀ ଦଳ ଅପେକ୍ଷା ଅଧିକ ବୋଲି । ନହେଲେ ନିର୍ବାଚନ ପରିଚାଳନା କରିବା ପାଇଁ ସବୁ ଯୋଗ୍ୟତା ଥିବା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ନିର୍ବାଚନରୁ ଦୂରେଇ ରଖାଯାଇ ନଥା'ନ୍ତା । ଜାନକୀ ବଲ୍ଲଭ ଏହି ସଭାରେ ବକ୍ତବ୍ୟ ଦେବାବେଳେ ସ୍ପଷ୍ଟ କରିଦେଇଥିଲେ ଯେ ରାଜନୀତିକୁ ସେ ଛାଡ଼ିନାହାନ୍ତି ବୋଲି । କଂଗ୍ରେସ ଦଳରେ ଯେଉଁମାନେ ତାଙ୍କୁ ଶତ୍ରୁ ବୋଲି ଭାବୁଛନ୍ତି ତାଙ୍କ ପାଇଁ ମଧ୍ୟ ସେ ପରୋକ୍ଷ ଭାବେ ଦୁଇପଦ ବି କହିଦେଲେ । ସେ କହିଲେ- ଅନେକ ଭାବୁଛନ୍ତି ସେ ନିର୍ବାସନରେ ଚାଲିଯାଇଛନ୍ତି ବୋଲି କିନ୍ତୁ ପ୍ରକୃତରେ ତାହା ନୁହେଁ । ଢିଙ୍କି ଯେଉଁଠିକୁ ଗଲେ ମଧ୍ୟ ଧାନ କୁଟିବ । ଯଦିଓ ଜାନକୀଙ୍କ ବକ୍ତବ୍ୟଟି ବଙ୍କା ଆକାରରେ ଥିଲା କିନ୍ତୁ ଏହାର ସିଧା ଅର୍ଥଟିକୁ ଯେପରି ସମସ୍ତେ ବୁଝିଯାଇଥିଲେ । ଆଉ ଜାନକୀ ଏହା କହିବା ବେଳକୁ ସାରା ସଭାସ୍ଥଳରେ ତାଳି ମାଡ଼ ପରେ ତାଳି ମାଡ଼ ହୋଇଥିଲା । ଜାନକୀଙ୍କ ମନର କଥା ସତେ ଯେମିତି ଉପସ୍ଥିତ ଦର୍ଶକ ବୁଝିଯାଇଥିଲେ ଆଉ ଜାନକୀ ମଧ୍ୟ ଦର୍ଶକଙ୍କ ତାଳିମାଡ଼କୁ ଦେଖି ବେଶ୍ ଖୁସି ହୋଇଯାଇଥିଲେ । ଜାନକୀ ପରୋକ୍ଷ ଭାବେ କହିଦେଇଥିଲେ ଯେ, ସେ ରାଜ୍ୟପାଳ ହେଲେ ମଧ୍ୟ ରାଜନୀତିକୁ ଛାଡ଼ିବେ ନାହିଁ । ଜାନକୀ ପୁଣି ରାଜନୀତି ସମ୍ପର୍କରେ ଆଉ କିଛି ବକ୍ତବ୍ୟ ଦେଇଥିଲେ । ସେ କହିଥିଲେ- ନୀତିମାନଙ୍କ

ମଧ୍ୟରେ ଶ୍ରେଷ୍ଠ ହେଲା ରାଜନୀତି । ରାଜନୀତିକୁ ନେଇ ଥଟ୍ଟାତାମସା ଗ୍ରହଣୀୟ ନୁହେଁ କି ରାଜନୈତିକ ବ୍ୟକ୍ତିଙ୍କୁ ଯେପରି ଚିତ୍ରଣ କରାଯାଉଛି ତାହା କରାଯିବା ଉଚିତ ନୁହେଁ । ଭଲ ଲୋକମାନେ ଜୀବନକୁ ଏକ ମିଶନ ଭାବେ ନେଇ ରାଜନୀତି କ୍ଷେତ୍ରକୁ ଆସିବା ଉଚିତ । ଭଲ ଲୋକ ନଆସିଲେ ରାଜନୀତି ଭ୍ରଷ୍ଟ ହୋଇଯିବ । ଜାନକୀ ବଲ୍ଲଭଙ୍କ ସାଢ଼େ ୧୩ ବର୍ଷ ଶାସନ ସମ୍ପର୍କରେ ଏହି ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ ପୁସ୍ତକଟି ରାଜନୀତି ପ୍ରତି ଆଗ୍ରହ ରଖୁଥିବା ବ୍ୟକ୍ତିବିଶେଷଙ୍କ ପାଖରେ ପହଂଚି ପାରିବ କି ନାହିଁ ତାହା କହି ହେବନାହିଁ । କିନ୍ତୁ ଜାନକୀ ବଲ୍ଲଭ ଏହିଦିନ ଯେଉଁ ବକ୍ତବ୍ୟଟି ରଖିଲେ ତାହା ରାଜନୀତି ମହଲରେ ବେଶ୍ ଖୋରାକ ଯୋଗାଇ ଦେଇଥିଲା । ଜାନକୀଙ୍କ ସମର୍ଥକମାନେ ସେହିଠାରେ ଆରମ୍ଭ କରିଦେଲେ ଚର୍ଚ୍ଚା ପରେ ଚର୍ଚ୍ଚା । ଜାନକୀ ଆସାମର ରାଜ୍ୟପାଳ ହେଲେ ମଧ୍ୟ ରାଜନୀତିରୁ ଦୂରେଇ ଯାଇନାହାନ୍ତି । ଓଡ଼ିଶା କଂଗ୍ରେସ ପାଇଁ ଯେତେବେଳେ ଆବଶ୍ୟକ ପଡ଼ିବ ସେତେବେଳେ ଜାନକୀ ଓଡ଼ିଶାକୁ ଚାଲିଆସିବେ ବୋଲି ତାଙ୍କ ସମର୍ଥକମାନେ ଚର୍ଚ୍ଚା କଲେ । ଏମିତି ଦେଖିଲେ ବିଧାନସଭା ନିର୍ବାଚନ ଆହୁରି ୪ ବର୍ଷ ଅଛି । ସେତେବେଳକୁ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ରାଜନୈତିକ ସ୍ଥିତି କେଉଁ ଆଡ଼କୁ ଯାଇଥିବ ତାହା ଏବେଠାରୁ କହି ହେବନାହିଁ । କିନ୍ତୁ ଆମ ଓଡ଼ିଶା ପକ୍ଷରୁ ଓଡ଼ିଶା ଶାସନର ଏକ ସ୍ୱର୍ଣ୍ଣଯୁଗ ପୁସ୍ତକର ଉନ୍ମୋଚନ ଉତ୍ସବରେ ଜାନକୀ ତାଙ୍କ ବିରୋଧୀଙ୍କ ପ୍ରତି ପରୋକ୍ଷ ଭାବେ ଯେଉଁ  ବକ୍ତବ୍ୟ ଦେଲେ ତାହା ସେମାନଙ୍କ ପାଇଁ ଚିନ୍ତାର କାରଣ ନିଶ୍ଚିତ ହୋଇଯିବ ଏଥିରେ ସନ୍ଦେହ ନାହିଁ । ■

# ନୋ ସାର୍



ଏହା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ବିଧାନସଭା କାର୍ଯ୍ୟାଳୟ ଭିତରର ଦୃଶ୍ୟ । ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଚୌକିରେ ବସିଥା'ନ୍ତି । ଏହି ସମୟରେ ସେଠାରେ ଉପସ୍ଥିତ ଥା'ନ୍ତି ତାଙ୍କର ପ୍ରମୁଖ ଶାସନ ସଚିବ ବିଜୟ ପଟ୍ଟନାୟକ, ଆଦିବାସୀ ଓ ହରିଜନ କଲ୍ୟାଣ ମନ୍ତ୍ରୀ ବିଜୟ ରଂଜନ ସିଂ ବରିହା, ଶ୍ରମ ଓ ନିଯୁକ୍ତି ମନ୍ତ୍ରୀ ପୁଷ୍ପେନ୍ଦ୍ର ସିଂହଦେଓ । ଏମିତି ମୁଖ୍ୟମନ୍ତ୍ରୀଙ୍କ ସହିତ ଆଲୋଚନା ଚାଲିଥାଏ ! ହଠାତ୍ ନବୀନଙ୍କ ନଜର ଅନ୍ୟ ଆଡ଼କୁ ଗଲା । ସେ ଚାହିଁଲେ ବିଜୟ ରଂଜନ ସିଂ ବରିହାଙ୍କ ଆଡ଼କୁ । ସେତେବେଳକୁ ବିଜୟ ରଂଜନ ସିଂ ବରିହା ତାଙ୍କ ପାଖରେ ଠିଆ ହୋଇଥିବା ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ବିଜୟ ପଟ୍ଟନାୟକଙ୍କୁ ସାର୍, ସାର୍ ସମ୍ବୋଧନ କରି କିଛି କହୁଥା'ନ୍ତି । ଏହା ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି  ଆକର୍ଷଣ କଲା । ସଙ୍ଗେସଙ୍ଗେ ମୁଖ୍ୟମନ୍ତ୍ରୀ ଉଚ୍ଚ ପାଟିରେ କହିଲେ- ନୋ, ସାର୍ । ବିଜୟ ରଂଜନ ସିଂ ବରିହାଙ୍କୁ ଚାହିଁ ନବୀନ କହିଲେ- ତମେ ମନ୍ତ୍ରୀ । ବିଜୟବାବୁଙ୍କୁ ସାର୍ କାହିଁକି ଡାକୁଛ । ଏହାପରେ ବିଜୟ ପଟ୍ଟନାୟକଙ୍କ ଆଡ଼କୁ ଚାହିଁ ନବୀନ କହିଲେ- ଆପଣ ସାର୍ ଡାକିବା ପାଇଁ ସେମାନଙ୍କୁ ଉତ୍ସାହିତ କରନ୍ତୁ ନାହିଁ ।

ମନା କରି ଦିଅନ୍ତୁ । ଆପଣ ମନା କରିନାହାନ୍ତି କି ବୋଲି ମୁଖ୍ୟମନ୍ତ୍ରୀ ପ୍ରଶ୍ନ କରିବାରୁ ବିଜୟ ପଟ୍ଟନାୟକ ମନା କରିଦେଇଛନ୍ତି ବୋଲି କହିଥିଲେ । ଏହାପରେ ବିଜୟ ପଟ୍ଟନାୟକଙ୍କୁ ବିଜୟ ରଂଜନ ସିଂ ବରିହା କିଛି କହିବାକୁ ଉଦ୍ୟମ କଲେ । କାଳେ ବିଜୟ ରଂଜନ ସିଂ ବରିହାଙ୍କ ପାଟିରୁ ସାର୍ ବାହାରି ଯିବ ସେଥିପାଇଁ ନବୀନ ପଟ୍ଟନାୟକ ପୁଣିଥରେ ବଡ଼ପାଟି କରି କହିଲେ- ନୋ ସାର୍ । ପ୍ରସଙ୍ଗଟି ଏଇଠି ଶେଷ ହୋଇଗଲା କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ନୋ ସାର୍ ବିଧାନସଭା ଗୃହ ଭିତରକୁ ଚାଲିଆସିଲା ଏବଂ ସବୁଆଡ଼େ ଚାଲିଲା ତାକୁ ନେଇ ଚର୍ଚ୍ଚା । ଏମିତି ଦେଖିଲେ ମୁଖ୍ୟମନ୍ତ୍ରୀଙ୍କର ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିଥା'ନ୍ତି ତାଙ୍କ ପ୍ରମୁଖ ଶାସନ ସଚିବ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମଧ ପ୍ରତି ପ୍ରସଙ୍ଗରେ ପ୍ରମୁଖ ଶାସନ ସଚିବଙ୍କୁ ପାଖକୁ ଡାକି ଆଲୋଚନା କରିଥା'ନ୍ତି । ସେ ମନ୍ତ୍ରୀ ହୁଅନ୍ତୁ କି ବିଧାୟକ ହୁଅନ୍ତୁ ମୁଖ୍ୟମନ୍ତ୍ରୀଙ୍କୁ କହିଲେ ସେମାନଙ୍କ କଥା ଯେତିକି ରହେ ପ୍ରମୁଖ ଶାସନ ସଚିବଙ୍କୁ କହିଲେ ତାଙ୍କର କାମ ହୋଇଯାଏ ବୋଲି ସେମାନେ ଭାବି ନିଅନ୍ତି । ଯେଉଁଥିପାଇଁ ପ୍ରମୁଖ ଶାସନ ସଚିବଙ୍କୁ ମନ୍ତ୍ରୀମାନେ ସାର୍ ବୋଲି ସମ୍ବୋଧନ କରନ୍ତି । ତେବେ ସାର୍ ଡାକିବାରେ ନବୀନଙ୍କର କଟକଣା କେତେଦୂର କାମ ଦେଉଛି ତାହା ଭବିଷ୍ୟତ ହିଁ କହିବ । ■

## ଭାଲୁ ଉପରେ ପରିସ୍ରା



ଏମିତି ଭାଲୁକୁ ଦୂରରୁ ଦେଖିଲେ ମଣିଷର ପରିସ୍ରା ହୋଇଯିବ । କିନ୍ତୁ ଭାଲୁ ଉପରେ ମଣିଷ ପରିସ୍ରା କରିବ ଏହା ଯେକୌଣସି ବ୍ୟକ୍ତିକୁ ହିଁ ଆଶ୍ଚର୍ଯ୍ୟ ଲାଗିବ । ଏଭଳି ଜଣେ ଦୁଃସାହସିକ ନେତା ହେଉଛନ୍ତି ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ । ଏମିତି ସେ ଭାଲୁ ବୋଲି ଜାଣି ତା ଉପରେ ପରିସ୍ରା କରିଥିଲେ ତାହାନୁହେଁ । ଭାଲୁକୁ ପିଚୁ ଡ଼ବା ଭାବି ତା ଉପରେ ସେ ପରିସ୍ରା କରିଥିଲେ । ଘଟଣାଟି ଥିଲା ଏହିପରି । ଦଇତାରୀ ଖଣି ଅଂଚଳକୁ ପ୍ରସନ୍ନ ପାଟଶାଣୀଙ୍କୁ ଏକ ଉତ୍ସବରେ ଅତିଥି ଭାବେ ଯୋଗଦେବାପାଇଁ ନିମନ୍ତ୍ରଣ କରାଯାଇଥିଲା । ପ୍ରସନ୍ନ ବଡ଼ ଆଗ୍ରହ ସହକାରେ ସେଠାକୁ ଅତିଥି ହେବାପାଇଁ ଯାଇଥିଲେ । ସଭାରେ ସେ ଅତିଥି ହେଲେ ଏବଂ ସଭା ଶେଷ ହେଲା । ସେତେବେଳକୁ ରାତି ପ୍ରାୟ ୯ଟା ପାଖାପାଖି । ପ୍ରସନ୍ନଙ୍କୁ ପରିସ୍ରା ଲାଗିଲା । ଏମିତି ତ ତାଙ୍କୁ ସମସ୍ତେ ବାବା ବୋଲି ଡାକନ୍ତି । ତେଣୁ ବାବା ପ୍ରସନ୍ନ ଦଇତାରୀରେ ଥିବା ଖୋଲା ଅଂଚଳରେ ପରିସ୍ରା କରିବାକୁ ପସନ୍ଦ କଲେ । ସଭାସ୍ଥଳରୁ ଟିକେ ସେ ଦୂରକୁ ଗଲେ । ଅନ୍ଧାରରେ ସେ କିଛିବାଟ ଗଲାପରେ ଦେଖିଲେ କଳା ପିଚୁ ଟିଣଟିଏ ଥୁଆ ହୋଇଛି । ପ୍ରସନ୍ନ କ'ଣ ଭାବିଲେ କେଜାଣି ସେହି ପିଚୁ ଟିଣ ଉପରେ ପରିସ୍ରା କଲେ । ଅଧା ପରିସ୍ରା ବେଳକୁ ସେ ଦେଖିଲେ ପିଚୁ ଟିଣଟି ଗଡ଼ୁଛି । ସେତେବେଳେ ସେ ନିଜକୁ ଦୁର୍ଯ୍ୟୋଧନ

ବୋଲି ଭାବିନେଲେ । ଦୁର୍ଯ୍ୟୋଧନଙ୍କ ପରିସ୍ରାରେ ବରଫଳଟିଏ ଭାସି ଯାଇଥିଲା । ତାହା ଦୁର୍ଯ୍ୟୋଧନଙ୍କୁ ହସର ଖୋରାକି ଯୋଗାଇଥିଲା । ବାବା ପ୍ରସନ୍ନ ତାଙ୍କ ପରିସ୍ରାରେ ପିଚୁ ଟିଣ ଗଡୁଥିବାର ଦେଖି ହୋ ହୋ ହୋଇ ହସିଥିଲେ । ସେ ନିଜକୁ ଦୁର୍ଯ୍ୟୋଧନଠାରୁ ଆହୁରି ଶକ୍ତିଶାଳୀ ବୋଲି ଭାବିଲେ । ପ୍ରଥମେ ବାବାଙ୍କୁ ଆଶ୍ଚର୍ଯ୍ୟ ଲାଗିଥିଲା । ମନରେ ମଧ ପ୍ରଶ୍ନ ଉଙ୍କି ମାରିଥିଲା । ମଣିଷର ପରିସ୍ରାରେ ପିଚୁଟିଣ ଗଡ଼ି ଯିବ ବୋଲି ସେ ଆଦୌ ଭାବିପାରୁନଥିଲେ । ଘଟଣା ସମ୍ପର୍କରେ ଜାଣିବା ପାଇଁ ପ୍ରସନ୍ନଙ୍କର ଇଚ୍ଛା ହେଲା । ସେ ଏପଟେ ପରିସ୍ରା କରୁଥା'ନ୍ତି ସେପଟେ ପିଚୁ ଟିଣକୁ ନିରିଖେଇ ଦେଖୁଥା'ନ୍ତି । ହଠାତ୍ ଦେଖିଲେ ସେ ଯାହାକୁ ପିଚୁଟିଣ ବୋଲି ଭାବୁଥିଲେ ତାହା ଗୋଟିଏ ଭାଲୁ । ବାବାଙ୍କର ପରିସ୍ରା ସେଇଠି ଠପ୍ ହୋଇଗଲା । ବୋପାଲୋ କହି ସେ ତାଙ୍କ ଗେରୁଆ ବସ୍ତ୍ରକୁ ଜାବୁଡି ଧରି ହରିଣ ମାର୍କାରେ ଦୌଡ଼ିଲେ । ଧଇଁସଇଁ ହୋଇ ସଭାସ୍ଥଳରେ ପହଂଚିଲେ । ସମସ୍ତେ ବାବାଙ୍କ ମୁହଁକୁ ଚାହିଁଲେ । ବାବା ଅନର୍ଗଳ ଭାଷଣ ଦେବାପରି କହିଚାଲିଲେ ଆଉ ଟିକିଏ ପରେ ଭାଲୁ ସବୁ ସାରିଦେଇଥା'ନ୍ତା । ଭଗବାନ ବଡ଼ଲୋକ । ରକ୍ଷା କରିଦେଲେ । ଭାଲୁ କଥା ଶୁଣିଲେ ବାବା ପ୍ରସନ୍ନ ପାଟଶାଣୀଙ୍କର ଏହି ପରିସ୍ରା କଥା ମନେପଡିଯାଉଛି । ■

## ନବୀନଙ୍କ ଦରବାର



ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଶାସନ ସମ୍ପର୍କରେ କିଛି ଜାଣନ୍ତି ନାହିଁ, ପୁଣି ରାଜନୀତିର 'ର' ଅକ୍ଷର ଉପରେ ତାଙ୍କର ଧାରଣା ନାହିଁ ବୋଲି ତାଙ୍କ ନିନ୍ଦୁକମାନେ କହିଥା'ନ୍ତି । କିନ୍ତୁ ନବୀନ ଯେ ରାଜନୀତିରେ ଅଭିଜ୍ଞ ଓ ପ୍ରଶାସନରେ ଦକ୍ଷ ହୋଇଗଲେଣି ତାହା ତାଙ୍କ ଦରବାରକୁ ଗଲେ ଜଣାପଡ଼ିଯାଏ । ଏମିତି ନବୀନଙ୍କର ଦରବାର ବୋଲି କିଛି ନଥାଏ । କେତେବେଳେ କେଉଁ ମନ୍ତ୍ରୀ କିମ୍ବା ବିଧାୟକ କିମ୍ବା ଦଳର ବରିଷ୍ଠ ନେତା ତାଙ୍କୁ ନବୀନ ନିବାସରେ ସାକ୍ଷାତ କଲେ ସେ ସେମାନଙ୍କ ସହିତ ମନ ଖୋଲି ଦୁଇପଦ କଥାବାର୍ତ୍ତା ହୁଅନ୍ତି । ନଚେତ ସବୁଦିନ ନିର୍ଦ୍ଦିଷ୍ଟ ସମୟରେ ସଚିବାଳୟ ଯାଆନ୍ତି ଓ ଫେରନ୍ତି । ଆଉ ଗସ୍ତ କାର୍ଯ୍ୟକ୍ରମ ଥିଲେ ସେଥିରେ ଯୋଗ ଦିଅନ୍ତି । ଏହା ହେଉଛି ନବୀନଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମ । ସେଦିନ କିନ୍ତୁ ସବୁକିଛି ବ୍ୟତିକ୍ରମ ଥିଲା । ଦେଖାଗଲା ହଠାତ୍ ନବୀନ ପଟ୍ଟନାୟକ ଗର୍ଜି ଉଠୁଛନ୍ତି । ତାଙ୍କ ସମ୍ମୁଖରେ ଭୁବନେଶ୍ୱର ମହାନଗର ନିଗମର ଜଣେ କର୍ପୋରେଟର ଠିଆ ହୋଇଥା'ନ୍ତି । ନବୀନ କହୁଥା'ନ୍ତି- ତମେ ସବୁ ଚୋର । ଭୁବନେଶ୍ୱର ଓ କଟକ ମହାନଗର ନିର୍ବାଚନରେ ସେ ନିଜେ ବୁଲିବୁଲି ବିଜେଡି ପ୍ରାର୍ଥୀଙ୍କ ପାଇଁ ପ୍ରଚାର କରି ସେମାନଙ୍କୁ ଜିତାଇଥିଲେ । କିନ୍ତୁ ତାଙ୍କ ପରିଶ୍ରମର ମୂଲ୍ୟ କିଛି ରହିଲା ନାହିଁ । ସମସ୍ତେ ଟଙ୍କା ଖାଇବାରେ ବ୍ୟସ୍ତ । ଲୋକଙ୍କୁ ସୁବିଧା ସୁଯୋଗ ଯୋଗାଇ ଦେବାକୁ ସେମାନେ ପଦକ୍ଷେପ

ନେଉନାହାନ୍ତି । ବରଂ ଓଲଟି ଲୋକଙ୍କୁ ହଇରାଣ କରୁଛନ୍ତି । ଆଉ ଲୋକ ହଇରାଣ ହେଲେ ଏମାନେ ପଇସା ଖାଇବେ । ଏମାନଙ୍କୁ ଭଗବାନ ସହିବେ ନାହିଁ । ଏମାନେ ଯଦି ଏହିଭଳି କାରବାର କରିବେ ତେବେ ଆସନ୍ତା ମହାନଗର ନିର୍ବାଚନରେ ସେ ଯେତେ ପ୍ରଚାର କଲେ ମଧ୍ୟ ବିଜେଡି ଜିତିବ ନାହିଁ । ହଠାତ୍ ନବୀନ ସେହି କର୍ପୋରେଟର ଆଡ଼କୁ ଚାହିଁ କହିଲେ- କେମିତି ତୁମେ ଲୋକଙ୍କ ବିଦ୍ୟୁତ୍ ଲାଇନ୍‌କୁ କାଟିଦେଲ । ବିଦ୍ୟୁତ୍ ଲାଇନ୍ କଟିଗଲେ କେତେ ଅସୁବିଧା ହୁଏ ତାହା ତୁମେ ଜାଣିନାହିଁ । କର୍ପୋରେଟର ହେବାକୁ ତୁମେ ଯୋଗ୍ୟ ନୁହଁ । ଏହି ସମୟରେ ଉକ୍ତ କର୍ପୋରେଟର ଜଣଙ୍କ କିଛି କହିବାକୁ ଚାହିଁଲେ । ନବୀନ ସେତେବେଳକୁ ରାଗରେ ଜର୍ଜରିତ । ସେ ତାଙ୍କୁ କୌଣସି କଥା କହିବାକୁ ଦେଲେନାହିଁ । ଓଲଟି ସେ କହିଲେ- ମୋ ଆଗରେ କିଛି ଫେରାଦ ହେବା ଦରକାର ନାହିଁ । ମୁଁ ଭଲ ରୂପେ ଜାଣିଛି ତମେ ବିଦ୍ୟୁତ୍ ଲାଇନ୍ କାଟି ଲୋକଙ୍କୁ ହଇରାଣ କରୁଛ । ଏହି ସମୟରେ ନବୀନ ଆହୁରି ଉତ୍ୟକ୍ତ ହୋଇପଡ଼ିଲେ । କହିଲେ ପିଇବାକୁ ପାଣି ଆଣ । ପାଣି ପିଇବା ପରେ ଟିକିଏ ଶାନ୍ତ ହେଲେ ନବୀନ । ତା'ପରେ ଡାକିଲେ- ସରୋଜ । ପାଖକୁ ଆସିଲେ ସରୋଜ । ନବୀନ କହିଲେ- ଏହି କର୍ପୋରେଟରଙ୍କୁ ସେପଟକୁ ନେଇ ବୁଝାଅ, ଲୋକେ ପାଉଥିବା ସର୍ବନିମ୍ନ ସୁବିଧାରୁ ତାଙ୍କୁ ବଂଚିତ କରାଯାଇପାରିବ ନାହିଁ । ଏହାପରେ କର୍ପୋରେଟର ଜଣଙ୍କ ସେଠାରୁ ଚାଲି ଯାଇଥିଲେ । ଏହି ସମୟରେ ସେଠାକୁ ଆସିଗଲେ ଆଉ ଜଣେ କର୍ପୋରେଟର । ସେ ନବୀନଙ୍କୁ ହାତ ଯୋଡ଼ି ନମସ୍କାର ହେଲେ । ନବୀନ କିଛି କହିବା ପୂର୍ବରୁ ସେ କହିଲେ- ଆଜ୍ଞା, ଗଛ ଲଗାଇବା ପାଇଁ ଜଙ୍ଗଲ ବିଭାଗ ସାହାଯ୍ୟ କରୁନାହିଁ । ସଙ୍ଗେସଙ୍ଗେ ନବୀନ ଗର୍ଜି ଉଠିଲେ । କହିଲେ ଏହା ମିଛ କଥା । ତମେ କେଉଁଠି ଗଛ ଲଗାଇବାକୁ ଚାହୁଁଥିଲ । କର୍ପୋରେଟର ଜଣଙ୍କ କହିଲେ- ଆଜ୍ଞା, ସରକାରୀ ଜାଗାରେ । ନବୀନ କହିଲେ- କିଏ କହିଲା, ତୁମକୁ ସରକାରୀ ଜାଗାରେ ଗଛ ଲଗାଇବାକୁ । ରାଜଧାନୀ ଭୁବନେଶ୍ୱରକୁ ସବୁଜିମା କରିବା ହେଉଛି ତାଙ୍କର ଲକ୍ଷ୍ୟ । ତେଣୁ ଘରୋଇ ଜାଗାରେ ଅଧିକ ଗଛ ଲାଗିଲେ ଏହି ଲକ୍ଷ୍ୟ ପୂରଣ ହୋଇପାରିବ । ତୁମେ ଘରୋଇ ଜାଗାରେ ନଲଗାଇ ସରକାରୀ ଜାଗାରେ ଗଛ ଲଗାଇବା ପାଇଁ କାହିଁକି ଆଗଭର ହେଲ । ସରକାର ତାଙ୍କ ଜାଗା କଥା ବୁଝିବେ । ନିଜ କର୍ତ୍ତବ୍ୟ ପାଳନ ନକରି ଅନ୍ୟମାନଙ୍କ ବିରୋଧରେ ଫେରାଦ ହେବାକୁ ତୁମେ ଆସିଛ ବୋଲି ନବୀନ ଜୋର୍‌ଦାର୍ ପାଟି କରି କହିଲେ । ଏହାପରେ ପୁଣି ପାଣି ଗ୍ଲାସଟେ ଆଣ ବୋଲି ନବୀନ କହିଲେ । ପାଣି ପିଇବା ପରେ ନବୀନ ପୁଣି ଡାକିଲେ- ସରୋଜ । ପାଖକୁ ଆସିଲେ ସରୋଜ । ନବୀନ କହିଲେ- ଏହାଙ୍କୁ ନେଇ କେଉଁଠି ଗଛ ଲଗା ହେବ ବୁଝାଅ । ଏହା ଥିଲା ଗୋଟିଏ ଦିନର କିଛି ମୁହୂର୍ତ୍ତର ନବୀନ ନିବାସରେ ନବୀନଙ୍କ ଦରବାର । ଏଥିରୁ ନବୀନ ରାଜନୀତିରେ କେତେ ଅଭିଜ୍ଞ ଆଉ ଶାସନରେ କେତେ ଦୃଢ଼ ତାହା ବେଶ୍ ବାରି ହୋଇଯାଉଛି । ■

# ଧୋତି ରାଜନୀତି

ଦିନଥିଲା ଯେଉଁ ନେତାମାନେ ପ୍ୟାଂଟ, ସାର୍ଟ, କୋଟ୍ ପିନ୍ଧି ରାଜନୀତିକୁ ଆସୁଥିଲେ ପରବର୍ତ୍ତୀ ସମୟରେ ସେମାନେ ଧୋତି, ପଂଜାବୀ ପିନ୍ଧିବା ଅଭ୍ୟାସ କରୁଥିଲେ । ରାଜନୀତିରେ ପ୍ୟାଂଟ, ସାର୍ଟ ପିନ୍ଧା ନେତା ହାତଗଣତି ଥିଲେ ଆଉ ଧୋତି, ପଂଜାବୀ ପିନ୍ଧୁଥିବା ନେତାଙ୍କ ସଂଖ୍ୟା ଅଧିକ ଥିଲା । କିନ୍ତୁ ବିଜୁ ଜନତା ଦଳରେ ଧୋତି, ପଂଜାବୀ ପିନ୍ଧୁଥିବା ନେତାଙ୍କ ସଂଖ୍ୟା ହ୍ରାସ ପାଇଚାଲିଛି । କ୍ରମେ ଧୋତି, ପଂଜାବୀ ପିନ୍ଧୁଥିବା ନେତାଙ୍କୁ ଆଉ ଦେଖିବାକୁ ବି ମିଳିବ ନାହିଁ । ସେଦିନ ବିଜୁ ଜନତା ଦଳର ପ୍ରତିଷ୍ଠା ଦିବସ ଦଳ କାର୍ଯ୍ୟାଳୟଠାରେ ପାଳିତ ହେଉଥିଲା । ହଠାତ୍ ଦେଖାଗଲା ଡାକ୍ତର ଦାମୋଦର ରାଉତ, ପ୍ରଫୁଲ ଚନ୍ଦ୍ର ଘଡ଼ାଇ, ସୁରେନ୍ଦ୍ର ନାଥ ନାୟକ, କାଳନ୍ଦୀ ବେହେରା ପ୍ରମୁଖ ଏକାଠି ହୋଇ କେଉଁ ସ୍ଥାନକୁ ଯାଉଛନ୍ତି । ବୁଝୁବୁଝୁ ଜଣାପଡ଼ିଲା ଧୋତିପିନ୍ଧୁଥିବା ଏହି ବରିଷ୍ଠ ନେତାମାନେ ଏକାଠି ହୋଇ ଫଟୋ ଉଠାଇବେ । ବିଜେଡ଼ି ରାଜନୀତିରେ କେତେବେଳେ କିଏ ପେଶି ହୋଇଯିବ ତାହା କେହି କହିପାରିବେ ନାହିଁ । ତେଣୁ ଧୋତି ପିନ୍ଧି ଦୀର୍ଘଦିନ ଧରି ରାଜନୀତି କରିଆସୁଥିବା ଏହି ଚାରିନେତାଙ୍କର ବନ୍ଧୁତ୍ୱକୁ ମନେରଖିବ କେବଳ ଫଟୋ । ଫଟୋ ଉଠାଇବାକୁ ଯାଉଥିବା ସମୟରେ ହଠାତ୍ ସେଠାରେ ପହଂଚିଲେ ବିଜେଡିର ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ସେ ମଧ ତାଙ୍କ ସହିତ ଫଟୋ ଉଠାଇଲେ । ଏହାପରେ ପ୍ୟାରୀମୋହନଙ୍କୁ ଛାଡ଼ି ଦାମୋଦର ରାଉତ ସେମାନଙ୍କ ଫଟୋ ଉଠାଇବାକୁ କହିଲେ । ଏହାର କାରଣ ପ୍ୟାରୀ ପଚାରିଲେ । କେହି କହିବା ପୂର୍ବରୁ ଦାମୋଦର ରାଉତ କହିଲେ- ଦଳରେ ଆଲୋଚନା ଚାଲିଛି ଯେ ବିଜେଡ଼ିରେ ଆଉ ଧୋତିପିନ୍ଧୁଥିବା ନେତାଙ୍କୁ ଦେଖିବାକୁ ମିଳିବ ନାହିଁ । ତେଣୁ ଆମେ ଚାରି ଧୋତିପିନ୍ଧା ବନ୍ଧୁ ଫଟୋଟିଏ ଉଠାଉଛୁ । ଦାମଙ୍କର ଏହି ମନ୍ତବ୍ୟଟି ସେଠାରେ ସମସ୍ତଙ୍କ ମନକୁ ପାଇଗଲା ଆଉ ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ରାଜନୀତିରେ ଘଡ଼ିକେ ଘୋଡ଼ା ଛୁଟେ । ଏହି ଦୃଷ୍ଟିରୁ ଧୋତିପିନ୍ଧା ରାଜନୀତିକୁ ବିଜେଡିରୁ ଦୂରେଇ ଦିଆଯିବ ବୋଲି ଆଜି ହେଉଥିବା ପ୍ରଚାର କାଲିକି ଯେ ଥିବ ତାହା ନୁହେଁ । କିନ୍ତୁ ବିଜୁ ଜନତା ଦଳରେ ଏହି ପ୍ରଚାର ଏମିତି ଦାନା ଧରିଛି ଯେ, ଏବେ ରାଜନୀତି କରୁଥିବା ଧୋତିପିନ୍ଧା ନେତାଙ୍କୁ ଆତଙ୍କିତ କରିଦେଇଛି । ଯେତବେଳେ ବିଜେଡ଼ିରେ ଧୋତିପିନ୍ଧା ନେତାଙ୍କୁ ଦେଖିବାକୁ ମିଳିବନାହିଁ ସେତେବେଳେ ଏହି ଚାରି ଧୋତିପିନ୍ଧା ବନ୍ଧୁଙ୍କର ଫଟୋଟି ସ୍ମରଣୀୟ ହୋଇ ରହିବ ହିଁ ରହିବ ।. ■






# ପଶୁପ୍ରିୟ ନେତା



ସାଧାରଣତଃ ନେତାମାନେ ମଣିଷ ପ୍ରିୟ ହୋଇଥା'ନ୍ତି । ଏହାର କାରଣ ମଧ୍ୟ ରହିଛି । ତାହାହେଲା ନେତାଙ୍କର ଦରକାର ଭୋଟ । ଆଉ ଭୋଟ ଦେବେ ମଣିଷ । ତେଣୁ ପଶୁଙ୍କୁ ଭଲପାଇଲେ ନେତାଙ୍କର ଭାଗ୍ୟ ଖରାପ ପଡ଼ିଲା ବୋଲି ଜାଣ । ତେବେ ଏ ଯେଉଁ ନେତାଙ୍କ କଥା ଏଠାରେ ଉଲ୍ଲେଖ କରାଯାଉଛି ସେ କିନ୍ତୁ ପଶୁଙ୍କୁ ଯେତେ ଭଲ ପାଉଛନ୍ତି ତାଙ୍କର ଉନ୍ନତି ସେତେ ଅଧିକ ହେଉଛି । ଏମିତି ପ୍ରଥମେ ସେ ବିଲେଇକୁ ଭଲ ପାଉଥିଲେ । ଏବେ ଦେଖାଗଲାଣି ସେ କୁକୁରକୁ ମଧ୍ୟ ଭଲ ପାଉଛନ୍ତି । ଅବସର ସମୟ ପାଇଲେ ସେ ବିଲେଇ, କୁକୁରଙ୍କ ସହିତ ଖେଳୁଛନ୍ତି । ସାଧାରଣତଃ ବ୍ୟବସାୟ କରୁଥିବା ବ୍ୟକ୍ତି କାଉ, ବିଲେଇ, କୁକୁର, ଗାଈଙ୍କୁ ଖାଇବାକୁ ଦେଲେ ତାଙ୍କର ବ୍ୟବସାୟ ବଢ଼େ ବୋଲି ଧରିନେଇଥା'ନ୍ତି । ଅବଶ୍ୟ ଏହି ନେତାଜଣଙ୍କ ପ୍ରଥମେ ବ୍ୟବସାୟୀ ଥିଲେ । କିନ୍ତୁ ଏବେ ପୁରାମାତ୍ରାରେ ନେତା । ଏବେ ପାଠକେ ବୁଝିସାରିବେଣି ପଶୁଙ୍କୁ ଭଲ ପାଉଥିବା ଏହି ନେତା ଜଣଙ୍କ କିଏ । ସେ ହେଲେ ସାଂସଦ ବୈଜୟନ୍ତ ପଣ୍ଡା । କୁଆଡ଼େ ଦିଲ୍ଲୀରେ ନେତାମାନେ କୁକୁର, ବିଲେଇଙ୍କୁ ପ୍ରେମ କରି ବଡ଼ ନେତା ବନିଯାଇଛନ୍ତି । ବୈଜୟନ୍ତ ଦିଲ୍ଲୀ ନେତାଙ୍କ ଢ଼ାଂଚାରେ କୁକୁର, ବିଲେଇଙ୍କୁ ପ୍ରେମ କରି ବଡ଼ ନେତା ହେବା ପାଇଁ ସପ୍ନ ଦେଖୁଛନ୍ତି । ଅବଶ୍ୟ କିଛି ସତ ହେଲାଣି । ନହେଲେ ବିଜେଡିରେ ସେ ତୃତୀୟ କ୍ଷମତାକେନ୍ଦ୍ର ହୋଇ ନଥା'ନ୍ତେ । ■

# ନବୀନ ବାଘ



ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏକାଦିକ୍ରମେ ତିନିଥର ମୁଖ୍ୟମନ୍ତ୍ରୀ ହୋଇସାରିବା ପରେ ଏବେ ଆଉ ରାଜନୀତିରେ ତାଙ୍କୁ କେହି ଅନଭିଜ୍ଞ ବୋଲି କହିବେ ନାହିଁ କି ଜଣେ ଦୁର୍ବଳ ନେତା ବୋଲି କହିବାକୁ ମଧ୍ୟ ସାହସ କରିବେ ନାହିଁ । ହ୍ୟାଟ୍ରିକ ମୁଖ୍ୟମନ୍ତ୍ରୀ ହୋଇଥିବାରୁ ନବୀନ ଏବେ ଓଡ଼ିଶା ରାଜନୀତିରେ ବାଘ ହୋଇଯାଇଛନ୍ତି । ତେବେ ଏହା ନବୀନ ନିଜଆଡୁ ପ୍ରଚାର କରୁନାହାନ୍ତି । ନବୀନ ନିବାସରେ ବାଘ ଫଟୋ ଏବେ ଲଗାଯାଇଛି । ଏହା ପୁଣି ନବୀନଙ୍କ ଇଚ୍ଛାକ୍ରମେ । ନବୀନଙ୍କୁ ଦେଖା କରିବା ପାଇଁ ଯେତେବେଳେ ଦଳର ବିଧାୟକ ହୁଅନ୍ତୁ କି ମନ୍ତ୍ରୀ ହୁଅନ୍ତୁ ନବୀନ ନିବାସକୁ ଯାଉଛନ୍ତି ସେତେବେଳେ କଥା ଛଳରେ ନବୀନ ସେମାନଙ୍କୁ ଫଟୋକୁ ଦେଖାଇ ତାହା କ'ଣ ବୋଲି ପଚାରି ବି ଦେଉଛନ୍ତି । ଏହାର ଭିତିରି ଅର୍ଥ ହେଲା- ନବୀନ ଏବେ ନିଜକୁ ରାଜନୀତିରେ ବାଘ ବୋଲି ପ୍ରମାଣିତ କରିସାରିଲେଣି । ତେଣୁ ବାଘ ଫଟୋକୁ ଦେଖାଇଦେଲେ ଅନ୍ୟମାନେ ନିଶ୍ଚିତ ଭାବେ ତରକି ଯିବେ । ବେଳେବେଳେ ବାଘକୁ ଦେଖି କାହା ପାଟିରୁ

ବାହାରି ଯାଉଛି- ଆଚ୍ଛା, ଏ ହେଲେ ଗଂଜାମ ବାଘ । ନବୀନ ବେଳେବେଳେ ପଚାରି ଦେଉଛନ୍ତି- ବାଘ ତ ବାଘ ପୁଣି ଗଂଜାମ ବାଘ କ'ଣ ? ନବୀନଙ୍କ ସହିତ ଖୁସିମଜାଜ୍ କଟାଉଥିବା କେତେକ ନେତା ମଧ୍ୟ ତାଙ୍କୁ ଚିହାଇବା ପାଇଁ ଏଥିରେ ଆଉ ଦୁଇପଦ ମଧ୍ୟ ଯୋଡ଼ି ଦେଉଛନ୍ତି । କିଏ କହିଲାଣି ଗୋଟିଏ ବାଘ ରାମକୃଷ୍ଣ ପଟ୍ଟନାୟକ ତ ଆଉ କିଏ କହିଲାଣି ଆର ବାଘଟି ସୂର୍ଯ୍ୟ ପାତ୍ର । କିନ୍ତୁ ନବୀନ ଏହା ଶୁଣିବା ପରେ ହସଖୁସିରେ କଟାଇବା ପରିବର୍ତ୍ତେ ବେଶ୍ ରାଗି ଯାଉଛନ୍ତି । ଗଂଜାମ ରାଜନୀତିରେ ନବୀନଙ୍କୁ ଛାଡ଼ିଦେଲେ ଆଉ କେହି ବାଘ ନାହାନ୍ତି । ଏହା ସେ ସ୍ପଷ୍ଟ କରିଦେବାକୁ ଚାହୁଁଛନ୍ତି । ତେଣୁ ଯେତେବେଳେ ନବୀନଙ୍କୁ ବାଘ ନକହି ଗଂଜାମ ରାଜନୀତିରେ ଅନ୍ୟମାନଙ୍କୁ ବାଘ କୁହାଯାଉଛି ସେତେବେଳେ ନବୀନ ରାଗିଯିବା ସ୍ୱାଭାବିକ । ଏମିତି ଗଂଜାମ ଜିଲାର ହିଂଜିଳି ନିର୍ବାଚନମଣ୍ଡଳୀକୁ ନବୀନ ପ୍ରତିନିଧିତ୍ୱ କରୁଛନ୍ତି । ନବୀନଙ୍କ ନିର୍ବାଚନ ଜିଲା ହେଲା ଗଂଜାମ । ପୁଣି ମୁଖ୍ୟମନ୍ତ୍ରୀ ହୋଇଥିବାରୁ ନବୀନଙ୍କୁ ଛାଡ଼ିଦେଲେ ଗଂଜାମ ଜିଲାରେ ବିଜେଡି ରାଜନୀତିରେ ଆଉ କେହି ବାଘ ରହିପାରିବେ ନାହିଁ । ଏମିତି ତ ସାଧାରଣରେ ଏକ ଚର୍ଚ୍ଚା ହୁଏ ଯେ, ଯେଉଁ ଜଙ୍ଗଲରେ ଗୋଟିଏ ବାଘ ରହିଥାଏ ସେହି ଜଙ୍ଗଲରେ ଆଉ ଗୋଟିଏ ବାଘ ରହେନାହିଁ । ଯଦି କୌଣସି ବାଘ ସେହି ଜଙ୍ଗଲ ଭିତରକୁ ପଶିଆସେ ତେବେ ଦୁଇ ବାଘ ମଧ୍ୟରେ ଲଢ଼େଇ ହୁଏ ଆଉ ଯିଏ ଜିତେ ସେ ହିଁ ସେହି ଜଙ୍ଗଲରେ ରହେ । ଅବଶ୍ୟ ବିଜେଡି ଜଙ୍ଗଲରେ ନବୀନ ହେଉଛନ୍ତି ଏକମାତ୍ର ବାଘ । ଯେଉଁ ବାଘମାନେ ଆଗରୁ ବିଜେଡି ରାଜନୀତି ଭିତରକୁ ପଶି ଆସିଥିଲେ ସେମାନଙ୍କୁ ନବୀନ ଖଣ୍ଡିଆଖାବରା କରି ବିଜେଡି ଜଙ୍ଗଲରୁ ବାହାର କରିଦେଇଛନ୍ତି । ଏହି ଦୃଷ୍ଟିରୁ ନବୀନ ନିବାସକୁ ଯାଉଥିବା ନେତାମାନେ ମୂଳରୁ ସତର୍କତା ଅବଲମ୍ବନ କରିବା ଉଚିତ । ଯଦି ନବୀନ କେବେବେଳେ ଫଟୋକୁ ଦେଖାଇ ପଚାରି ଦିଅନ୍ତି ତାହା କ'ଣ ବୋଲି ସେହି ସମୟରେ ସେଠାରେ ଥିବା ନେତାଙ୍କ ପାଟିରୁ ସଙ୍ଗେସଙ୍ଗେ ବାହାରି ଯିବା ଉଚିତ ଯେ, ତାହା ହେଉଛି ନବୀନ ବାଘ । ଏହା ହେଲେ ନବୀନ ଖୁସ୍ ହୋଇଯିବେ ନିଶ୍ଚିତ । ବିଜେଡି ନେତା ବିଧାୟକ, ସାଂସଦ, ମନ୍ତ୍ରୀମାନଙ୍କୁ ପରାମର୍ଶ ଯେ ସେମାନେ ନବୀନ ବାଘ, ନବୀନ ବାଘ ଘୋଷି ଚାଲନ୍ତୁ । ■

## ପାଟ୍ଟଶାଣୀ ଓ ବାଘ



ଏମିତି ତ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀଙ୍କୁ କେତେକ ମଧ୍ୟ ଚିକେନ୍‌ବାବା ବୋଲି ଡାକନ୍ତି । ଏଥିରେ ପ୍ରସନ୍ନଙ୍କର ଭାରି କ୍ଷୋଭ । କୁଆଡ଼େ ସେ ଚିକେନ୍ ଖାଆନ୍ତି ନାହିଁ କିନ୍ତୁ ତାଙ୍କୁ ଡକାଯାଉଛି ଚିକେନ୍‌ବାବା । କେଜାଣି କାହିଁକି ପ୍ରସନ୍ନ ପାଟ୍ଟଶାଣୀଙ୍କର ଜନ୍ତୁଜନ୍ତାଙ୍କ ପ୍ରତି ଦୁର୍ବଳତା ରହିଛି । ଏମିତି ତାଙ୍କ ନାମ ସହିତ ଚିକେନ୍ ଯୋଡ଼ି

ହୋଇଯାଉଛି । ପୁଣି ମଧ୍ୟ କେତେବେଳେ ସେ ଭାଲୁ ଉପରେ ପରିସ୍ରା କରିଛନ୍ତି । ଆଉ କେତେବେଳେ ପରିସ୍ରା କରିବାକୁ ଯାଉଥିବା ବେଳେ ବାଘ ମଧ୍ୟ ତାଙ୍କ ଉପରକୁ ଡେଇଁ ପଡ଼ିଛି । ଏବେ ଏମିତି ଏକ ପ୍ରସଙ୍ଗ ସମ୍ପର୍କରେ ପ୍ରସନ୍ନ ବଖାଣୁଥିଲେ । ପ୍ରସନ୍ନ ପାଟ୍ଟଣାଣୀ ଗୋଟିଏ ସମୟରେ ବିଧାୟକ ଜୟରାମ ପାଙ୍ଗିଙ୍କ ସହ ତାଙ୍କ ନିର୍ବାଚନମଣ୍ଡଳୀ ପଟାଙ୍ଗି ଯାଉଥିଲେ । ବାଟରେ ଜଙ୍ଗଲ ପଡ଼ିଲା । ହଠାତ୍ ଉଭୟେ ଜୟରାମ ଓ ପ୍ରସନ୍ନ ଗାଡ଼ି ରଖି ପରିସ୍ରା କରିବା ପାଇଁ ଚାହିଁଲେ । ଡ୍ରାଇଭର ଗାଡ଼ି ରଖିଲା । ଜଙ୍ଗଲ ଆଡ଼କୁ ଯାଇ ଉଭୟେ ପରିସ୍ରା କଲେ । ପରିସ୍ରା କରିବାକୁ ପ୍ରସନ୍ନ ଉଦ୍ୟମ କରୁଥା'ନ୍ତି । ହଠାତ୍ ଏକ ବାଘ ତାଙ୍କ ପାଖ ଦେଇ ଚାଲିଗଲା । ବାଘକୁ ଦେଖି ପ୍ରସନ୍ନଙ୍କର ପରିସ୍ରା ବନ୍ଦ ହୋଇଗଲା । ଜୀବନ ବଂଚାଇବା ପାଇଁ ସେ ଗାଡ଼ି ପାଖକୁ ଦୌଡ଼ିଲେ । ତେଣିକି ଜୟରାମଙ୍କୁ ପଛେ ବାଘ ଖାଇ ଦେଉ ସେଥିରେ ତାଙ୍କର ପରବାୟ ନଥିଲା । ଗାଡ଼ି ପାଖକୁ ଯିବା ବେଳକୁ ପ୍ରସନ୍ନ ଦେଖିଲେ ଜୟରାମ ମଧ୍ୟ ଧଇଁସଇଁ ହୋଇ ସେଠାରେ ପହଂଚିଛନ୍ତି । ମାନେ ବାଘକୁ ଦେଖି ଜୟରାମଙ୍କର ପରିସ୍ରା ମଧ୍ୟ ଠପ୍ ହୋଇଗଲା । ଭୟାତୁର ପ୍ରସନ୍ନ ଓ ଜୟରାମ ଗାଡ଼ି ଭିତରକୁ ତୁରନ୍ତ ଯାଇ ଗାଡ଼ି ଛାଡ଼ି ଦେବାକୁ ଡ୍ରାଇଭରକୁ କହିଲେ । କେଜାଣି କାହିଁକି ଭାଲୁ, ବାଘମାନେ ପ୍ରସନ୍ନଙ୍କ ଆଡ଼କୁ ବେଳେବେଳେ ମାଡ଼ି ଆସୁଛନ୍ତି । ଏମିତି ପ୍ରସନ୍ନ ଭବିଷ୍ୟବାଣୀ ମଧ୍ୟ ବେଳେବେଳେ କରନ୍ତି । ବୋଧହୁଏ ପ୍ରସନ୍ନ ଏମିତି ଭବିଷ୍ୟବାଣୀ କହୁଛନ୍ତି ବୋଲି ଭାଲୁ, ବାଘଙ୍କ ପାଖରେ ଖବର ପହଂଚିଯାଇଛି । ଏ ଜନ୍ମରେ ସେମାନେ ଭାଲୁ, ବାଘ ହୋଇଥିବାବେଳେ ପର ଜନ୍ମରେ ସେମାନେ କେଉଁ ପ୍ରାଣୀ ହେବେ ତାହା ଜାଣିବା ପାଇଁ ପାଟ୍ଟଣାଣୀଙ୍କ ପାଖକୁ ସେମାନେ ଚାଲି ଆସୁଛନ୍ତି । ଏମିତି ପ୍ରସନ୍ନ ଭାରି ବ୍ୟସ୍ତ ନେତା । ଘରେ ଥିଲେ ଦରବାର ସବୁବେଳେ ଫୁଲ୍ । ବାହାରକୁ ଗଲେ ତାଙ୍କ ଗେରୁଆ ବସ୍ତ୍ର ଓ ବାଡ଼ି ଛୁଇଁବା ପାଇଁ ଲୋକଙ୍କ ଭିଡ଼ । ସଭାକୁ ଗଲେ ତାଙ୍କ ଅନର୍ଗଳ ଭାଷଣ ଶୁଣିବା ପାଇଁ ଶ୍ରୋତାଙ୍କର ମଧ୍ୟ ଭିଡ଼ । ତେଣୁ ବାଘ, ଭାଲୁ ପ୍ରସନ୍ନଙ୍କୁ ଏକୁଟିଆ କେଉଁଠି ପାଇପାରୁନାହାନ୍ତି । ପରିସ୍ରା କରିବା ବେଳେ ତାଙ୍କ ପାଖରେ କେହି ରହନ୍ତି ନାହିଁ । ଏହି ସୁଯୋଗକୁ ବାଘ, ଭାଲୁ ସଦ୍‌ବ୍ୟବହାର କରିବା ପାଇଁ ଚାହୁଁଛନ୍ତି । ବୋଧହୁଏ ପ୍ରସନ୍ନ ଏହା ଜାଣିପାରୁନାହାନ୍ତି । ଯଦି ପରିସ୍ରା କରିବା ବେଳେ ତାଙ୍କ ପାଖକୁ ଆସୁଥିବା ବାଘ, ଭାଲୁଙ୍କୁ ପ୍ରେମରେ ଡାକି ସେମାନଙ୍କର ଭବିଷ୍ୟ ଗଣନା ପ୍ରସନ୍ନ କରିଦିଅନ୍ତେ ତେବେ ବାଘ, ଭାଲୁ ଭୟ ତାଙ୍କୁ ଘାରନ୍ତା ନାହିଁ ଆଉ ବାଘ, ଭାଲୁ ପାଖରେ ଥିଲେ ତାଙ୍କର ପରିସ୍ରା କରିବା ମଧ୍ୟ ସହଜ ହୁଅନ୍ତା । ■



## ଜାନକୀଙ୍କ ଫାଟକ

ଏମିତି ବାସ୍ତୁ ଶାସ୍ତ୍ରକୁ ଏବେ ପ୍ରାୟ ନେତା ମାନେ ଜୋରଦାର୍ ମାନୁଛନ୍ତି । ଜାନକୀ ବଲ୍ଲଭ ପଟ୍ଟନାୟକ ୨୦୦୪ ନିର୍ବାଚନ ସମୟରେ ଜ୍ୟୋତିଷଙ୍କ କହିବା ଅନୁଯାୟୀ କାମ କରିଥିଲେ । କୁଆଡ଼େ ତାଙ୍କୁ ସୂଚନା ମିଳିଥିଲା ଯେ, ତାଙ୍କ ମୁହଁରେ ଥିବା

କଳାଜାଇକୁ ଅସ୍ତ୍ରୋପ୍ରଚାର କରିଦେଲେ କ୍ଷମତା ମିଳିବ ବୋଲି । ଭବିଷ୍ୟବକ୍ତାଙ୍କ ପରାମର୍ଶକ୍ରମେ ଜାନକୀ ବଲ୍ଲଭ ସେହି କଳାଜାଇକୁ ଅସ୍ତ୍ରୋପ୍ରଚାର କରିଦେଲେ । ନିର୍ବାଚନରେ ଜାନକୀଙ୍କର ବିଜୟ ହେଲା ଆଉ ଜାନକୀ ହେଲେ ବିରୋଧୀ ଦଳ ନେତା । ନାଲିବତୀ ଗାଡ଼ି ତାଙ୍କୁ ମିଳିଲା ଏବଂ ତାଙ୍କର କାର୍ଯ୍ୟାଳୟ ପାଇଁ ସରକାରୀ ଅଫିସର ଯୋଗାଇ ଦିଆଗଲା । ଜ୍ୟୋତିଷଙ୍କ କହିବା ଅନୁଯାୟୀ ଜାନକୀ କ୍ଷମତା ପାଇଲେ । ୨୦୦୯ ନିର୍ବାଚନର କିଛିମାସ ପୂର୍ବରୁ ଜାନକୀଙ୍କୁ କେଉଁ ଜ୍ୟୋତିଷ କହିଦେଇଥିଲେ ଯେ ତାଙ୍କ ସରକାରୀ ବାସଭବନର ମୁଖ୍ୟ ଫାଟକଟିକୁ ବନ୍ଦ କରିଦେବା ପାଇଁ । ଜାନକୀ ଜ୍ୟୋତିଷଙ୍କୁ ମାନୁଥିବାରୁ ତୁରନ୍ତ ମୁଖ୍ୟ ଫାଟକକୁ ବନ୍ଦ କରିଦେଲେ ଏବଂ ତାହା ବଦଳରେ ଅନ୍ୟ ଏକ ଫାଟକ ଖୋଲାଗଲା । ୨୦୦୪ ନିର୍ବାଚନର ଅବ୍ୟବହିତ ପୂର୍ବରୁ ଜାନକୀଙ୍କୁ ଯେଉଁ ଜ୍ୟୋତିଷବାଣୀ ହୋଇଥିଲା ତାହାର ସତ୍ୟତା ଥିଲା । ଯେହେତୁ ଜାନକୀ ୩ ଥର ମୁଖ୍ୟମନ୍ତ୍ରୀ ଥିଲେ ତେଣୁ ତାଙ୍କୁ ଯେତେବେଳେ ଜ୍ୟୋତିଷ କ୍ଷମତା ପାଇବେ ବୋଲି ଭବିଷ୍ୟବାଣୀ କରିଥିଲେ ସେତେବେଳେ ଅନେକ ଭାବିଥିଲେ ଯେ, ଜାନକୀ ବୋଧହୁଏ ପୁଣିଥରେ ମୁଖ୍ୟମନ୍ତ୍ରୀ ହେବେବୋଲି । କିନ୍ତୁ ଜାନକୀ ବିରୋଧୀ ଦଳ ନେତା ହେଲେ । ଜ୍ୟୋତିଷଙ୍କ ଭବିଷ୍ୟବାଣୀ ଯେ ଅଯଥା ଥିଲା ତାହା ନୁହେଁ । ଜ୍ୟୋତିଷ କହିଥିଲେ- କ୍ଷମତା ମିଳିବ ବୋଲି । ଏମିତି ଦେଖିଲେ ଜାନକୀଙ୍କୁ ନାଲିବତୀ ଗାଡ଼ି ମିଳିଲା । କ୍ଷମତାର ପ୍ରତୀକ ହେଉଛି ନାଲିବତୀ ଗାଡ଼ି । ତେଣୁ ଜ୍ୟୋତିଷବାଣୀରେ ବିଶ୍ୱାସ ରଖୁଥିବା ଜାନକୀଙ୍କ ପାଇଁ ୨୦୦୯ ନିର୍ବାଚନ ବି ବେଶ୍ ସତ ହୋଇଥିଲା । ନିର୍ବାଚନ ପରେ ଜାନକୀ ହୋଇଗଲେ ଆସାମର ରାଜ୍ୟପାଳ । ଏବେ ଅନେକ କହୁଛନ୍ତି ଜ୍ୟୋତିଷଙ୍କ ପରାମର୍ଶ ଅନୁଯାୟୀ ଜାନକୀ ମୁଖ୍ୟଫାଟକ ବନ୍ଦ କରିଦେଇଥିବାରୁ ତାଙ୍କୁ ରାଜ୍ୟପାଳ ପଦବୀଟି ମିଳିଲା । ■

## ବୁଲେଟ୍ ମୋଟରସାଇକେଲ

କେଜାଣି କାହିଁକି କଂଗ୍ରେସ ନେତାଙ୍କର ବୁଲେଟ୍ ମୋଟରସାଇକେଲ ପ୍ରତି ଦୁର୍ବଳତା ରହୁଛି । କିଏ କହିଲାଣି ନିର୍ବାଚନ ପୂର୍ବରୁ ଯେଉଁ ବିଧାୟକ ବୁଲେଟ୍ ମୋଟରସାଇକେଲ ଚଢ଼ନ୍ତି ସେମାନଙ୍କର ଦେହରେ ଭୋଟ



ପିଟିହୁଏ । ଏମିତି ଦେଖିଲେ କଂଗ୍ରେସର ତାରାପ୍ରସାଦ ବାହିନୀପତି, ଅନୁପ ସାଏ ବୁଲେଟ୍ ମୋଟରସାଇକେଲ ଚଢ଼ନ୍ତି । ସେମାନେ ବୁଲେଟ୍ ମୋଟରସାଇକେଲ ଚଢ଼ି ନିର୍ବାଚନମଣ୍ଡଳୀର ଆଭ୍ୟନ୍ତରୀଣ ଅଂଚଳକୁ ଯିବାକୁ ପସନ୍ଦ ବି କରିଥା'ନ୍ତି । ପ୍ରଶ୍ନ ପଚରାଗଲେ ଉତର ମିଳେ ବୁଲେଟର ମଜା ଅନ୍ୟ କେଉଁ ଗାଡ଼ିରେ ନାହିଁ । ଯେଉଁ ଲୋକପାଖକୁ ବୁଲେଟ୍

ମୋଟରସାଇକେଲ ନେଇ ଯିବ ସେହି ଲୋକଠାରୁ ବୁଲେଟ୍ ଭଳି ଭୋଟ ତୁମକୁ ମିଳିବ । ଉପକୂଳବର୍ତ୍ତୀ ଅଂଚଳରେ ବୁଲେଟ୍ ମୋଟରସାଇକେଲ ଦେଖିବାକୁ ଲୋକଙ୍କର ସେମିତି ଭିଡ଼ ହୁଏନାହିଁ । କୋରାପୁଟ ଜିଲ୍ଲାରେ ବୁଲେଟ୍ ମୋଟରସାଇକେଲ ଚଢ଼ି ତାରାପ୍ରସାଦ ବାହିନୀପତି ଚାଲିଗଲେ ମୋଟରସାଇକେଲର ଶବ୍ଦ ଶୁଭିବା ପର୍ଯ୍ୟନ୍ତ ସେଠାର ଜନସାଧାରଣ ସେମିତି ଠିଆ ହୋଇଥା'ନ୍ତି । ତାରା ବିଧାୟକ ହେବାପରେ ବିଭିନ୍ନ ଚାରିଚକିଆ ଗାଡ଼ି ଚଢ଼ିଲେ । କିନ୍ତୁ ତାଙ୍କର ବୁଲେଟ୍ ମୋଟରସାଇକେଲ ଜନସାଧାରଣଙ୍କ ମାନସପଟରୁ ଲିଭିଲା ନାହିଁ । ସେହିପରି ଅନୁପ ସାଏ । ବୁଲେଟ୍ ମୋଟରସାଇକେଲକୁ ଧରି ତାଙ୍କ ନିର୍ବାଚନମଣ୍ଡଳୀ ବ୍ରଜରାଜନଗରେ ସେ ଚାଲିଗଲେ ସମସ୍ତେ ଜାଣିଯାଆନ୍ତି ଯେ, ଅନୁପ ସାଏ ଆସିଛନ୍ତି ବୋଲି । ମାନେ ଅନୁପଙ୍କ ଅପେକ୍ଷା ତାଙ୍କ ବୁଲେଟ୍ ମୋଟରସାଇକେଲ ଅଧିକ ପ୍ରିୟ ହୋଇଯାଇଛି ଜନସାଧାରଣଙ୍କ ମଧ୍ୟରେ । ଅବଶ୍ୟ ନେତାମାନଙ୍କ ପାଇଁ ଆଉ ମୋଟର ସାଇକେଲର ଆବଶ୍ୟକତା ନାହିଁ । ସମସ୍ତେ ଚାରିଚକିଆ ଚଢ଼ିବାରେ ଅଭ୍ୟସ୍ତ । ଏ କ୍ଷେତ୍ରରେ ଯେଉଁମାନେ ବୁଲେଟ ମୋଟରସାଇକେଲ ଚଢ଼ି ନିର୍ବାଚନମଣ୍ଡଳୀ ଗସ୍ତକରନ୍ତି ସେମାନଙ୍କୁ ଲୋକେ ମନରଖନ୍ତି । ଦେଖାଯାଉ ବୁଲେଟ ମୋଟର ସାଇକେଲ ପ୍ରୀତିକୁ ଅନ୍ୟବିଧାୟକମାନେ ଆପଣାଇ ନେଉଛନ୍ତି ନା ନାହିଁ । ■

## ସାର୍ ସାର୍



ରାଜ୍ୟ ବିଜେପିରେ ଜଣଙ୍କୁ ନେଇ ସାର୍ ରାଜନୀତି ଚାଲିଛି । ନ ହେଲେ ବିଜେପିରେ ଭାଇ, ଜୀ, ଚାଚା ରାଜନୀତି ଚାଲେ । ଏମିତି ମହିଳା ହେଲେ ଅପା କିମ୍ବା ଭଉଣୀ । କିନ୍ତୁ ସାର୍ କହିଲେ କେବଳ ବିଶ୍ୱଭୂଷଣ ହରିଚନ୍ଦନଙ୍କୁ ହିଁ ବୁଝାଏ । ତାଙ୍କୁ କେହି ଭାଇ, କି ଚାଚା କି ଜୀ ବୋଲି ସମ୍ବୋଧନ କରନ୍ତି ନାହିଁ । ଯଦି କିଏ ତାଙ୍କୁ ସାର୍ ନ କହି ଭାଇ, ଚାଚା କି ଜୀ କହିଦେଲେ ତେବେ କଥା ସରିଲା ଜାଣ । ବିଶ୍ୱଭୂଷଣଙ୍କୁ ଯଦି ସାର୍ ଡକାନଯିବ ତେବେ ତାଙ୍କ ମନରେ କୁଆଡ଼େ ଭାରି ଦୁଃଖ ଆସେ । ଏମିତି ବିଶ୍ୱଭୂଷଣ ସାର୍ ଡକାରେ ଅଭ୍ୟସ୍ତ ହୋଇଯାଇଥିବାରୁ ତାଙ୍କୁ ଭାଇ, ଚାଚା କି ଜୀ ଭଲ ଲାଗେ ନାହିଁ । ଯୁବ ବୟସରେ ୧୯୭୭ରେ ସେ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ । ପୁଣି ଗୋଟିଏ କି ଦୁଇଟି ନୁହଁ ଅସଂଖ୍ୟ ବିଭାଗ ତାଙ୍କ ଅଧିନରେ ଥିଲା । ସେତେବେଳେ ଜନସଂଘର ଓଡ଼ିଶା ନେତା ସେ ଥିଲେ । ବିଭାଗ ଯେମିତି ସାର୍ ସମ୍ବୋଧନ ବି ସେମିତି ମିଳୁଥିଲା । ସେହି ଦିନଠୁ ସେ ସାର୍ ହୋଇଯାଇଥିଲେ । କିନ୍ତୁ କେଜାଣି କାହିଁକି ବିଜେପି ନେତା ଆଉ କର୍ମୀଙ୍କୁ ଏହା ଭଲ ଲାଗୁ ନାହିଁ । ଅନେକ ମଧ୍ୟ ଚିନ୍ତାକରି ଯାଇଛନ୍ତି ଯେ ବିଶ୍ୱଭୂଷଣଙ୍କୁ ଯାଇ ଭାଇ, ଚାଚା କି ଜୀ ସମ୍ବୋଧନ କରିବେ ବୋଲି । କିନ୍ତୁ ପାଖକୁ ଗଲାବେଳକୁ ତାଙ୍କର ଖଣ୍ଡେଇତ ଚେହେରା ଦେଖି ସେମାନଙ୍କର ପିଳେହି ପାଣି ହୋଇଯାଏ । ଆଉ ପାଟିରୁ ବାହାରିଯାଏ ସାର୍ ସାର୍ ବୋଲି । ଏମିତି ବିଜୁ ଜନତା ଦଳରେ ସାର୍ ସମ୍ବୋଧନ

ବେଶ୍ ଦେହସୁହା ହୋଇଯାଇଛି । ନବୀନ ବାବୁଙ୍କୁ ସାର୍ ତ ପ୍ୟାରୀମୋହନ ମହାପାତ୍ରଙ୍କୁ ବି ସାର୍। ସେହିପରି କଂଗ୍ରେସରେ ମଧ୍ୟ ଏହା ବେଶ୍ ଦେହସୁହା । ଜାନକୀ ବଲ୍ଲଭଙ୍କୁ ସାର୍ ତ କାମାକ୍ଷା ପ୍ରସାଦ ସିଂହଦେଓଙ୍କୁ ସାର୍ । ପୁଣି ଗିରିଧରଙ୍କୁ ସାର୍ ତ ହେମାନନ୍ଦଙ୍କୁ ବି ସାର୍। ସବୁ ଦଳରେ ବହୁ ସାର୍ ଥିବାବେଳେ ବିଜେପିରେ ଜଣେ ସାର୍ ଅଛନ୍ତି । ତେଣୁ ବିଜେପି ନେତା ଓ କର୍ମୀମାନେ ଏଥିରେ ଖୁସି ହେବା କଥା । ପୁଣି କଂଗ୍ରେସ ହେଉ କି ବିଜେଡ଼ି ହେଉ ସେଠାରେ ଦଳୀୟ କର୍ମୀ ଓ ନେତାମାନେ ଯାହାଙ୍କୁ ସାର୍ ସମ୍ବୋଧନ କରନ୍ତି ସେମାନଙ୍କର ସାର୍ ପରି ଚେହେରା ନଥାଏ। କିନ୍ତୁ ବିଶ୍ୱଭୂଷଣଙ୍କର ଚେହେରାଟି ସାର୍‌ଙ୍କ ପରି ହୋଇଛି । କେବଳ ହାତରେ ବାଡ଼ିଟିଏ ଧରେଇଦେଲେ ହେଲା । ■



## ମର୍ଣ୍ଣିଂ ୱାକ୍

ଓଡ଼ିଆରେ ଯାହାକୁ କୁହାଯାଏ ସକାଳ ଚାଲି ଇଂରାଜୀରେ ତାହାକୁ କୁହାଯାଉଛି ମର୍ଣ୍ଣିଂ ୱାକ୍ । ଏମିତି ତ ମର୍ଣ୍ଣିଂ ୱାକ୍ ପ୍ରାୟ ସମସ୍ତେ କରୁଛନ୍ତି । କିନ୍ତୁ ଏଠି ଯାହାଙ୍କ କଥା କୁହାଯାଉଛି ସେ ଜଣେ ବରିଷ୍ଠ ନେତା । ୪ ଥର ଧର୍ମଶାଳାରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଛନ୍ତି। ହ୍ୟାଟ୍ରିକ୍ ଅର୍ଜନଧାରୀ ଏହି ବିଜେଡ଼ି ବିଧାୟକ ଜଣଙ୍କ ହେଉଛନ୍ତି କଳ୍ପତରୁ ଦାସ । ସେ ରହୁଛନ୍ତି ଭୁବନେଶ୍ୱରର ୧ ନମ୍ବର ଅଂଚଳରେ । ସକାଳ ହେବା ପୂର୍ବରୁ ତାଙ୍କ ନିଦ ଭାଙ୍ଗିଯାଏ । ସେ ତତ୍‌କ୍ଷଣାତ୍ ମର୍ଣ୍ଣିଂ ୱାକ୍‌ରେ ବାହାରି ଯାଆନ୍ତି । ଏମିତି ତ ଫରେଷ୍ଟ ପାର୍କରେ ମର୍ଣ୍ଣିଂ ୱାକ୍ କରିବାକୁ ସେ ଭାରି ଭଲ ପାଆନ୍ତି । ଅବଶ୍ୟ ଯାଜପୁର ଜିଲ୍ଲାରେ ଏବେ କଳ୍ପତରୁ କୁଆଡ଼େ ବିବାଦୀୟ ହୋଇଯାଇଛନ୍ତି । କିଏ କହିଲାଣି ତାଙ୍କର ପ୍ରଫୁଲ ଘଡ଼ାଇଙ୍କ ସହ ପଡୁନାହିଁ ତ ଆଉ କିଏ କହିଲାଣି ପ୍ରମିଳା ମଲ୍ଲିକଙ୍କ ସହିତ ତାଙ୍କର ପଡୁନାହିଁ। ଏମିତି ତ ଅଶୋକ ଦାସଙ୍କ ସହିତ ତାଙ୍କର ଅପଡ଼ ଥିଲା । ଏତେ ଅପଡ଼ ମଧ୍ୟରେ ରାଜନୀତି କରିବା ସହଜ ନୁହେଁ । କୁଆଡ଼େ ଜ୍ୟୋତିଷ କଳ୍ପତରୁଙ୍କୁ କହିଦେଇଛନ୍ତି ଯେ ମର୍ଣ୍ଣିଂ ୱାକ୍ କଲେ ତାଙ୍କର ସବୁ ଶତ୍ରୁ ବିନାଶ ହୋଇଯିବେ । ପୁଣି ଏଇଠି କଥା ରହିନାହିଁ । ମର୍ଣ୍ଣିଂ ୱାକ୍‌ରେ ମଧ୍ୟ ଶତ୍ରୁ ତାଙ୍କର ବନ୍ଧୁ ହୋଇଯିବେ ବୋଲି ଜ୍ୟୋତିଷ ମଧ୍ୟ କହିଛି । ଏମିତି ମର୍ଣ୍ଣିଂ ୱାକ୍ କରୁକରୁ ବହୁ ଲୋକଙ୍କ ସହିତ କଳ୍ପତରୁଙ୍କ ଦେଖାସାକ୍ଷାତ ହୋଇଯାଉଛି । ହାଏ,ବାଏ, ନମସ୍କାର କରି କଳ୍ପତରୁ ମର୍ଣ୍ଣିଂୱାକ୍ କରିଚାଲନ୍ତି। କ୍ରମେ ଦେଖାଗଲା ମର୍ଣ୍ଣିଂ ୱାକ୍ ସମୟରେ ତାଙ୍କର ଶତ୍ରୁ ମଧ୍ୟ ତାଙ୍କୁ ଚାହିଁ ଦେଇ ହସି ଦେଉଛନ୍ତି। ଆଉ କେତେକ ମଧ୍ୟ ସେ କିପରି ଅଛନ୍ତି ବୋଲି ପଚାରୁଛନ୍ତି । ଏହା କଳ୍ପତରୁଙ୍କ ପାଇଁ ବେଶ୍ ଖୋରାକ୍ ଯୋଗାଇଦେଉଛି । ଏବେ ସେ ମର୍ଣ୍ଣିଂ ୱାକ୍ ନିଶାରେ ଘାରି ହେଉଛନ୍ତି। ଜ୍ୟୋତିଷ ଯାହା କହିଥିଲା ତାହାର ଫଳ ମଧ୍ୟ ସେ ପାଇଲେଣି । ମାନେ ମର୍ଣ୍ଣିଂ ୱାକ୍‌ରେ ଶତ୍ରୁ ମିତ୍ର ହୋଇଯିବେ । କଳ୍ପତରୁ ସେହି ଜ୍ୟୋତିଷଙ୍କୁ ସେ ତାଙ୍କ ଦଳର ନେତା ନବୀନ ପଟ୍ଟନାୟକ, ପ୍ୟାରୀମୋହନ ମହାପାତ୍ର ଆଉ କଂଗ୍ରେସର

ନେତା ଜାନକୀ ବଲ୍ଲଭ ପଟ୍ଟନାୟକ, କାମାକ୍ଷା ସିଂହଦେଓ, ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର, ବିଜେପି ନେତା ଜୁଏଲ ଓରାମ, ସୁରେଶ ପୂଜାରୀ, ବିଶ୍ୱଭୂଷଣ ହରିଚନ୍ଦନ, ମନମୋହନ ସାମଲଙ୍କ ନିକଟକୁ ପଠାଇଦିଅନ୍ତୁ । କିଛିଦିନପରେ ଦେଖିବେ ଏହି ନେତାମାନେ ମର୍ଣ୍ଣିଂ ୱାକ୍‌ରେ ଫରେଷ୍ଟ ପାର୍କ ଆସୁଥିବେ ଆଉ ସମସ୍ତେ ସମସ୍ତଙ୍କୁ ଦେଖି ହସୁଥିବେ ଏବଂ ସେମାନଙ୍କ ମଧ୍ୟରେ ଥିବା ରାଜନୈତିକ ଶତ୍ରୁତା ବନ୍ଧୁତାରେ ପରିଣତ ହୋଇଯିବ ଆଉ ସମସ୍ତେ ଏକାଠି ମିଶି ଓଡ଼ିଶାକୁ ଶାସନ କରିବେ । ■



## ଜାନକୀଙ୍କ ସ୍ୱପ୍ନ


ଜାନକୀ ବଲ୍ଲଭ ପଟ୍ଟନାୟକ ହେଉଛନ୍ତି ଓଡ଼ିଶାର ତିନିଥର ମୁଖ୍ୟମନ୍ତ୍ରୀ । ଯଦିଓ ନବୀନ ପଟ୍ଟନାୟକ ଜାନକୀଙ୍କ ରେକର୍ଡ଼କୁ ଅତିକ୍ରମ କରିବାକୁ ଯାଉଛନ୍ତି କିନ୍ତୁ ଏଯାବତ୍ ଜାନକୀ ଯେତେ ସମୟ ମୁଖ୍ୟମନ୍ତ୍ରୀ ହୋଇଛନ୍ତି ସେହି ସମୟ ପର୍ଯ୍ୟନ୍ତ ସେ ପହଂଚି ନାହାନ୍ତି । ଜାନକୀ ପାଖାପାଖି ୧୪ ବର୍ଷର ମୁଖ୍ୟମନ୍ତ୍ରୀ । ନବୀନ ପଟ୍ଟନାୟକ ହ୍ୟାଟ୍ରିକ ମୁଖ୍ୟମନ୍ତ୍ରୀ ହୋଇ ରେକର୍ଡ଼ ସୃଷ୍ଟି କରିଥିବା ବେଳେ ଏଯାବତ୍ ତାଙ୍କର ମୁଖ୍ୟମନ୍ତ୍ରୀ କାର୍ଯ୍ୟକାଳ ହେଉଛି ୧୦ ବର୍ଷ । ଏମିତି ଜାନକୀ ବାହାବା ନେଉଛନ୍ତି ଯେ, ଯଦି ୧୯୮୦ ମସିହାରେ ସେ ମୁଖ୍ୟମନ୍ତ୍ରୀ ହୋଇ ନଥା'ନ୍ତେ ତେବେ ଓଡ଼ିଶାରେ ଏଯାବତ୍ ସ୍ଥିରଶାସନ ଚାଲି ନଥା'ନ୍ତା । ତାଙ୍କ ପୂର୍ବରୁ ଓଡ଼ିଶାରେ ସବୁବେଳେ ସରକାରରେ ଅସ୍ଥିରତା ଲାଗି ରହୁଥିଲା ।  ତେବେ ଜାନକୀ ଏବେ ବିଭିନ୍ନ ସଭାସମିତିରେ ଯୋଗ ଦେବାବେଳକୁ ତାଙ୍କର ଓଡ଼ିଶା ପାଇଁ ଆହୁରି କିଛି କରିବାକୁ ସ୍ୱପ୍ନ ରହିଯାଇଛି ବୋଲି ମଧ୍ୟ ଉଲ୍ଲେଖ କରିବା ନିମନ୍ତେ ପଛାଉ ନାହାନ୍ତି । ଏହାର ଅନ୍ୟ ଅର୍ଥ ହେଲା ଜାନକୀ ବଲ୍ଲଭଙ୍କ ଆଉ ଥରେ ମୁଖ୍ୟମନ୍ତ୍ରୀ ହେବାକୁ ଇଚ୍ଛା ରହିଛି । ଏମିତି ଯେ ଜନସାଧାରଣଙ୍କୁ ନେତାମାନେ ଯେଉଁ ପ୍ରତିଶ୍ରୁତି ଦେଇଥା'ନ୍ତି କ୍ଷମତାକୁ ଆସିବା ପରେ ତାହା ଯେ ପାଳନ କରିଦିଅନ୍ତି ତାହା ନୁହେଁ । ଅନେକ ପ୍ରତିଶ୍ରୁତି ପ୍ରତିଶ୍ରୁତିରେ ହିଁ ରହିଯାଏ । ତେବେ ଜନସାଧାରଣଙ୍କୁ କେଉଁ ପ୍ରତିଶ୍ରୁତିଟି ଭୋଟ ଦେବା ପାଇଁ ଆକୃଷ୍ଟ କରେ ତାହା ଏବେ ଆଉ ଭୋଟଗ୍ରହଣର ବହୁ ପୂର୍ବରୁ କୁହାଗଲେ କାମ ଦେଉନାହିଁ । ତୁରନ୍ତ ଦାନ ମହାପୂଣ୍ୟ ପରି ଏବେ ଭୋଟ ରାଜନୀତି ହୋଇଯାଇଛି । ମାନେ ୧୫-୨୦ ଦିନ ଭିତରେ ପ୍ରଚାର ସୀମିତ ରହିଯାଇଛି ଆଉ ସେଥିରେ ଯେଉଁ ନେତା ଭୋଟରଙ୍କ ମନ କିଣିପାରିଲେ ସେ ନିର୍ବାଚନରେ ବାଜିମାତ୍ ମାରିନେଲେ । ଏହା ହିଁ ହୋଇଛି ଏବେର ଭୋଟ ରାଜନୀତିର ମୁଖ୍ୟ ଅସ୍ତ୍ର । ତେବେ ଜାନକୀଙ୍କ ସ୍ୱପ୍ନ କ'ଣ ଅଛି ତାହା ଯେ ଖାଲି ଭାଷଣରେ କହିଦେଲେ ଲୋକେ ବୁଝିଯାଉଛନ୍ତି ତାହା ନୁହେଁ । ସୁଯୋଗ ମିଳିଲେ ସେ ତାଙ୍କ ସ୍ୱପ୍ନକୁ ସାକାର କରିବେ ବୋଲି କହୁଛନ୍ତି । ଏହି ସୁଯୋଗର ଅର୍ଥ ଅନ୍ୟ କିଛି ନୁହେଁ, ମାନେ ମୁଖ୍ୟମନ୍ତ୍ରୀ ପଦ ।

ଏମିତି ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପରେ ଓଡ଼ିଶା ପାଇଁ ଦ୍ୱିତୀୟ କଂଗ୍ରେସ ନେତା ଏଯାବତ୍ ସୃଷ୍ଟି ହୋଇପାରିନାହାନ୍ତି । ୧୯୮୦ରୁ ୧୯୮୯ ପର୍ଯ୍ୟନ୍ତ ଓଡ଼ିଶାରେ ଜାନକୀ ରାଜ ଚାଲିଥିଲା । ୧୯୯୦ ନିର୍ବାଚନରେ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରାର୍ଥୀ ହୋଇ ନଥିଲେ କିନ୍ତୁ ତାଙ୍କୁ ବାଦ୍ ଦେଇ ଓଡ଼ିଶାରେ କଂଗ୍ରେସ ରାଜନୀତି ଚାଲିପାରିଲା ନାହିଁ । ୧୯୯୫ ମସିହାରେ ପୁଣି ଆରମ୍ଭ ହେଲା ଓଡ଼ିଶା କଂଗ୍ରେସରେ ଜାନକୀ ରାଜ । ୧୯୯୯ରେ ଜାନକୀ ବଲ୍ଲଭ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । କିନ୍ତୁ ଓଡ଼ିଶା କଂଗ୍ରେସରେ ଜାନକୀ ରାଜ ଚାଲୁ ରହିଲା । ଯାହା ଫଳରେ ମୁଖ୍ୟମନ୍ତ୍ରୀ ଥିବା ଗିରିଧର ଗମାଙ୍ଗ ଇସ୍ତଫା ଦେଲେ । ୨୦୦୦ ଓ ୨୦୦୪ ନିର୍ବାଚନରେ ମଧ୍ୟ ଜାନକୀରାଜ ଚାଲିଥିଲା । କିନ୍ତୁ ୨୦୦୯  ନିର୍ବାଚନରେ ଜାନକୀଙ୍କୁ କେଜାଣି କାହିଁକି ନିର୍ବାଚନରୁ ପ୍ରାୟ ଦୂରେଇ ରଖାଗଲା ।  ନବୀନ ସରକାର କ୍ରମାଗତ ଭାବେ ଦୁଇଥର ଶାସନ କରିବା ପରେ ସାଧାରଣରେ ସରକାରୀ ବିରୋଧୀ ହାୱା ରହିବା ସ୍ୱାଭାବିକ । କିନ୍ତୁ ଜାନକୀଙ୍କୁ ନିର୍ବାଚନରେ ଦୂରେଇ ଦିଆଯାଇଥିବାବେଳେ ତାଙ୍କ ବଦଳରେ ଦ୍ୱିତୀୟ ନେତା ସୃଷ୍ଟି କରାଯାଇ ନଥିବାରୁ ଏହାର ଫାଇଦା ନବୀନ ପଟ୍ଟନାୟକ ମାରିନେଲେ । ୧୦୩ ଆସନରେ ବିଜେଡି ଜିତିଲା । ଏବେ ଅନେକ କଂଗ୍ରେସ ନେତା ସ୍ୱୀକାର କଲେଣି ଯେ, ଜାନକୀ ନିର୍ବାଚନ ପରିଚାଳନା କରିଥିଲେ ପରିସ୍ଥିତି ଭିନ୍ନ ହୋଇଥା'ନ୍ତା । ତେବେ ଜାନକୀ ବଲ୍ଲଭଙ୍କର ଯେଉଁ ସ୍ୱପ୍ନ ରହିଛି ତାହା ସାକାର ହେବ କି ନାହିଁ ଏହା କେବଳ ସମୟ ହିଁ କହିପାରିବ । କିନ୍ତୁ ଏହା ଦିବାଲୋକ ପରି ସ୍ପଷ୍ଟ ଯେ, ଏଯାବତ୍ ଜାନକୀଙ୍କ ପରେ ଓଡ଼ିଶା କଂଗ୍ରେସରେ ଦ୍ୱିତୀୟ ନେତା ସୃଷ୍ଟି ହୋଇପାରିନାହାନ୍ତି । ■



# ଉପହାର

ଭିନ୍ନ ଭିନ୍ନ କ୍ଷେତ୍ରରେ ଉପହାର ଦିଆଯାଇଥାଏ । କେଉଁଠି ବାହାଘର ହେଲାଣି ତ କେଉଁଠି ଜନ୍ମଦିନ କେଉଁଠି ବିବାହ ବାର୍ଷିକ ତ କେଉଁଠି ସଫଳତା । ତେବେ ଏ ଯେଉଁ ଉପହାର କଥା କୁହାଯାଉଛି ଏହା ଏସବୁ ସହିତ ସଂପୃକ୍ତ ନୁହେଁ । ଯିଏ ଉପହାର ଦେଇଛନ୍ତି ସେ କୌଣସି ସଫଳତା ଥିବା ଲୋକଙ୍କୁ ଉପହାର ଦେଇନାହାନ୍ତି । ଜାନକୀ ବଲ୍ଲଭ ପଟ୍ଟନାୟକ ବିରୋଧୀ ଦଳ ନେତା ପଦବୀରୁ ହଟିବା ପରେ ତାଙ୍କ ସ୍ଥାନରେ ଉଲ୍‌କା ରାମଚନ୍ଦ୍ର ବିରୋଧୀ ଦଳ ନେତା ହୋଇଥିଲେ । ଏମିତି ଜାନକୀ ବଲ୍ଲଭ ପଟ୍ଟନାୟକ ୨୦୦୦ ମସିହା ଠାରୁ ବିରୋଧୀ ଦଳ ନେତା ଥା'ନ୍ତୁ କି ନଥା'ନ୍ତୁ କିନ୍ତୁ ବିରୋଧୀ ଦଳ ନେତାଙ୍କ ପରି ଏକ କାର୍ଯ୍ୟାଳୟ ସେ କରିଆସିଛନ୍ତି । ତାଙ୍କର ଥାଟ ୯ ବର୍ଷ ହେଲାଣି ବିରୋଧୀ ଦଳ ନେତାଙ୍କ ପରି ଥିଲା । ଏହାର କାରଣ ମଧ୍ୟ ରହିଛି । ୨୦୦୦ ମସିହାରେ କଂଗ୍ରେସ ମାତ୍ର ୨୬ଟି ଆସନ ପାଇ ବିରୋଧୀ ଦଳରେ ରହିଲା । ବିରୋଧୀ ଦଳ ନେତା ହେଲେ ରମାକାନ୍ତ ମିଶ୍ର । ଯଦିଓ ରମାଙ୍କର ଏକ ବିରୋଧୀ ଦଳ

ନେତା କାର୍ଯ୍ୟାଳୟ ରହିଥିଲା କିନ୍ତୁ ତାଙ୍କ ପାଇଁ ନିଯୁକ୍ତି ପାଇଥିବା କିଛି ସରକାରୀ କର୍ମଚାରୀ ମଧ୍ୟ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଆବାସିକ କାର୍ଯ୍ୟାଳୟରେ କାମ କରୁଥିଲେ । ୨୦୦୪ରେ ଜାନକୀ ହେଲେ ବିରୋଧୀ ଦଳ ନେତା । ଏହି ଦୃଷ୍ଟିରୁ ତାଙ୍କୁ ଦୁଇଟି ସରକାରୀ ଗାଡ଼ି, ଜଣେ ଘରୋଇ ସଚିବ ଏବଂ ଅନ୍ୟାନ୍ୟ କର୍ମଚାରୀ ମିଳିଲେ । ବିରୋଧୀ ଦଳ ନେତା ପଦରୁ ଚାଲିଯିବା ପରେ ରାମଚନ୍ଦ୍ର ଉଲକା ବିରୋଧୀ ଦଳ ନେତା ହେବାରୁ ଜାନକୀଙ୍କ ଠାରେ ଥିବା କର୍ମଚାରୀ ଓ ଅଫିସରଙ୍କୁ ରାମଚନ୍ଦ୍ର ନିଜ ପାଖକୁ ନେବା କଥା । ନାମ ସିନା ତାଙ୍କର ରାମଚନ୍ଦ୍ର କିନ୍ତୁ ତାଙ୍କ ଦୃଷ୍ଟିରେ ପ୍ରକୃତ ରାମଚନ୍ଦ୍ର ହେଉଛନ୍ତି ଜାନକୀ ବଲ୍ଲଭ । ଅବଶ୍ୟ ରାମଚନ୍ଦ୍ର ଉଲକାଙ୍କ ଭାବନା ଠିକ୍ । ଜାନକୀବଲ୍ଲଭ ନାମର ଅର୍ଥ ହେଉଛି ଜାନକୀ ମାନେ ସୀତା ଆଉ ବଲ୍ଲଭମାନେ ସ୍ୱାମୀ ଆଉ ସେ ହେଉଛନ୍ତି ରାମଚନ୍ଦ୍ର । ଏହି ଦୃଷ୍ଟିରୁ ଜାନକୀ ବଲ୍ଲଭଙ୍କୁ ରାମଚନ୍ଦ୍ର ଭାବେ ଦେଖିଥିବା ରାମଚନ୍ଦ୍ର ଉଲକାଙ୍କ ଯୁକ୍ତିକୁ ମଧ୍ୟ ଅକାଟ୍ୟ ବୋଲି ଧରାଯାଇପାରେ । ତେଣୁ ରାମଚନ୍ଦ୍ର ଉଲକା ନିଜକୁ ରାମଚନ୍ଦ୍ର ନଭାବି ରାମ ଭକ୍ତ ହନୁମାନ ହେବାକୁ ଚାହିଁଲେ । ଯେଉଁଥିପାଇଁ ସେ ଜାନକୀ ବଲ୍ଲଭଙ୍କ ପାଖକୁ ଯାଇ ନିଜକୁ ସମର୍ପିଦେଲେ । ଆଉ ଜାନକୀ ବଲ୍ଲଭଙ୍କୁ ବିରୋଧୀ ଦଳ ନେତା ସମୟରେ ମିଳିଥିବା କର୍ମଚାରୀ ଓ ଗାଡ଼ି ରଖନ୍ତୁ ବୋଲି କୁଆଡ଼େ କହିଥିଲେ । ଅବଶ୍ୟ ରାମଚନ୍ଦ୍ର ଉଲକାଙ୍କ ଏଭଳି ପ୍ରସ୍ତାବକୁ ଜାନକୀ ବଲ୍ଲଭ ପ୍ରଥମେ ଗ୍ରହଣ କରିବାକୁ ଅମଙ୍ଗ ହୋଇଥିଲେ । କିନ୍ତୁ ରାମଚନ୍ଦ୍ର ଉଲକା ନିଜକୁ ହନୁମାନ କରି ଯେତେବେଳେ ଅକାଟ୍ୟ ଭକ୍ତି ପ୍ରଦର୍ଶନ କଲେ ସେତେବେଳେ ଜାନକୀ ବଲ୍ଲଭ ନିରୂପାୟ ହୋଇଗଲେ ଆଉ ରାମଚନ୍ଦ୍ର ଉଲକାଙ୍କୁ ବିରୋଧୀ ଦଳ ନେତା ଭାବେ ମିଳିଥିବା କିଛି କର୍ମଚାରୀଙ୍କୁ ନିଜ କାର୍ଯ୍ୟାଳୟରେ ରଖିବା ପାଇଁ ସମ୍ମତି ଦେଲେ । ଏହାପରେ ରାମଚନ୍ଦ୍ର ଉଲକା କୁଆଡ଼େ କହିଲେ ଯେ ତାଙ୍କୁ ଦୁଇଟି ଗାଡ଼ି ମିଳିଛି । ସେଥିରୁ ଗୋଟିଏ ଗାଡ଼ି ଜାନକୀ ବଲ୍ଲଭ ରଖନ୍ତୁ । ଦେଖଣାହାରି ଲୋକ କହନ୍ତି, ଏଥିରେ ମଧ୍ୟ ଜାନକୀ ବଲ୍ଲଭ ତଥାସ୍ତୁ କହିଲେ । ପ୍ରକୃତରେ ମାନିବାକୁ ପଡ଼ିବ ରାମଚନ୍ଦ୍ର ଉଲକାଙ୍କ ଭକ୍ତିକୁ । ନହେଲେ କଳିଯୁଗରେ ସବୁ ଓଲଟା ହେଉଥିବା ବେଳେ ରାମଚନ୍ଦ୍ର ଉଲକା ହନୁମାନ ହୋଇ ଜାନକୀ ବଲ୍ଲଭଙ୍କୁ ଏଭଳି ଭକ୍ତି ପ୍ରଦର୍ଶନ କରିନଥା'ନ୍ତେ । ପୁଣି ନିଜେ ପାଇଥିବା କ୍ଷମତାକୁ ସେ ଜାନକୀ ବଲ୍ଲଭଙ୍କୁ ଦାନ କରି ନଥା'ନ୍ତେ । ■

## ନାଗାବାବା



ଏମିତି ନେତାମାନଙ୍କର ବାବାଙ୍କ ପ୍ରତି ବହୁ ଦୁର୍ବଳତା ଥାଏ । ଅନେକ ତ ବାବାଙ୍କୁ ସନ୍ତୁଷ୍ଟ କରିବା ପାଇଁ ବିଭିନ୍ନ ହୋମଯଜ୍ଞର ଆୟୋଜନ ମଧ୍ୟ କରିଥା'ନ୍ତି । ପୁଣି କ୍ଷମତାରେ ରହିବା ପାଇଁ କି କ୍ଷମତାକୁ ଆସିବା ପାଇଁ ବାବାଙ୍କ ଶରଣାପନ୍ନ ହୋଇଥା'ନ୍ତି । କିନ୍ତୁ ଏ ଯେଉଁ ବାବାଙ୍କ କଥା କୁହାଯାଉଛି ସେ ଓଡ଼ିଶାର ନୁହଁନ୍ତି । ଓଡ଼ିଶା ବାହାରର ସେ ବାବା । ତାଙ୍କର ହୋମ, ଯଜ୍ଞ କରି ଆଶିର୍ବାଦ ଦେବାର ନାହିଁ କି କିଏ ଭୋଜନ କରିବାକୁ ନିମନ୍ତ୍ରଣ କଲେ ମଧ୍ୟ

ସେଠାକୁ ଯିବାର ନାହିଁ । ଏମାନେ ହେଲେ ନାଗାବାବା । କେବଳ ଯେ ଜଣେ ଏଭଳି ନାଗାବାବା ଓଡ଼ିଶାକୁ ଆସନ୍ତି ତାହା ନୁହେଁ । ଏମିତି ବହୁ ସଂଖ୍ୟାରେ ନାଗାବାବା ଓଡ଼ିଶାକୁ ବିଭିନ୍ନ ସମୟରେ ଆସିଥା'ନ୍ତି । ସେମାନେ ଲୋକଙ୍କୁ ଦେଖିଲା ମାତ୍ରେ ସେମାନଙ୍କର ପ୍ରକୃତିକୁ ଚିହ୍ନି ନିଅନ୍ତି । କାହାର ମନ କେତେ ନିର୍ମଳ ଆଉ କାହାର କେତେ ଜଟିଳ ତାହା ସେମାନେ ଭଲ ଭାବେ ପରଖି ନିଅନ୍ତି । ଯିଏ ନିର୍ମଳ ଆଉ ସରଳ ତାଙ୍କରି ପାଖକୁ ନାଗାବାବା ହିଁ ଯାଆନ୍ତି । ଏମିତି ସେ ଦିନ ଦରବାରରେ ବସିଥିଲେ ମନ୍ତ୍ରୀ ସଂଜୀବ ସାହୁ । ଲୋକ ଗହଳି ଭିତରେ ସଂଜୀବ ଥା'ନ୍ତି । ହଠାତ୍ ଦେଖାଗଲା ସେଠାରେ ଜଣେ ବାବାଙ୍କୁ । ଏହି ବାବା ଜଣଙ୍କୁ ସଂଜୀବ ଯେମିତି ଦେଖିଦେଲେ ସଙ୍ଗେସଙ୍ଗେ ସେ ତାଙ୍କୁ ପାଖକୁ ଡାକିଲେ । ହିନ୍ଦୀରେ ତାଙ୍କ ସହିତ କଥାବାର୍ତ୍ତା କଲେ- ବାବା କେମିତି ଅଛନ୍ତି । କେଉଁଠୁ ଆସିଲେଣି । ଏମିତି ଅନେକ କିଛି । ହଠାତ୍ ସଂଜୀବ କାହାକୁ ଡାକିଲେ । ସେ ପାଖକୁ ଆସିବା ପରେ କହିଲେ- ଆଜି କି ବାର ? ଉତର ମିଳିଲା- ବୁଧବାର । ଠିକ୍ ଅଛି । ମାଛ ତରକାରୀ କରିବ ଆଉ ବାବା ଆସି ଖାଇବେ । ସଂଜୀବ ମଧ୍ୟ ବାବାଙ୍କୁ ତାଙ୍କ ଘରେ ମଧ୍ୟାହ୍ନ ଭୋଜନ କରିବା ପାଇଁ ନିମନ୍ତ୍ରଣ କଲେ । ବାବା ହସି ଦେଇ ନିମନ୍ତ୍ରଣ ରକ୍ଷା କରିବେ ବୋଲି ପ୍ରତିଶ୍ରୁତି ଦେଇ ସେଠାରୁ ଚାଲିଗଲେ । ସଂଜୀବଙ୍କୁ ଘେରି ରହିଥିବା କେହିଜଣେ ଲୋକ ହଠାତ୍ ତାଙ୍କୁ ପ୍ରଶ୍ନ କଲେ- ଆଜ୍ଞା, ଏ କି ବାବା । ସେ ତ ମାଛ ଖାଉଛନ୍ତି, ତାଙ୍କୁ ବାବା ବୋଲି କାହିଁକି ଡକାଯିବ । ସଂଜୀବ ଅତି ସରଳ ଭାବେ କହିଲେ- ଇଏ ଆମ ଓଡ଼ିଶାର ବାବା ନୁହନ୍ତି । ଇଏ ହେଲେ ନାଗାବାବା । ଏମାନଙ୍କୁ ଅତିଥି କରିବା ସେତେ ସହଜ ନୁହେଁ । ମନରେ ଭକ୍ତି ନଥିଲେ ନାଗାବାବା ତୁମ ପାଖକୁ ଆସିବେ ନାହିଁ । ଏମାନେ ମାଛ ଖାଆନ୍ତି । ଏମାନଙ୍କର ଆଶିର୍ବାଦ ଯାହା ଉପରେ ରହିବ ସେ ଜୀବନରେ କୌଣସି କାମରେ ଅସଫଳ ହେବନାହିଁ । ଭାଗ୍ୟରେ ଥିଲେ ନାଗାବାବାଙ୍କର ଦର୍ଶନ ମିଳେ । ଏହି ସମୟରେ ସେଠାରେ ଥିବା କେତେକ ବ୍ୟକ୍ତି ନାଗାବାବାଙ୍କ ଭକ୍ତ ହେବା ପାଇଁ ତାଙ୍କୁ ଖୋଜିଲେ । ସେତେବେଳକୁ ନାଗାବାବା ସେଠାରୁ ଚାଲିଯାଇଥିଲେ । ସଂଜୀବ ସାମାନ୍ୟ ହସି କହୁଥା'ନ୍ତି ମନରେ ଆଶା ନରଖି ନାଗାବାବାଙ୍କୁ ଖୋଜିଲେ ସେ ମିଳିବେ କିନ୍ତୁ ଏମିତି ମୋ ଠାରୁ ଶୁଣି ତାଙ୍କୁ ଖୋଜିଲେ ପାଇବେ ନାହିଁ । ମାନିବାକୁ ପଡ଼ିବ ସଂଜୀବଙ୍କ ନାଗାବାବା ଭକ୍ତିକୁ । ■

## ମାଂସଝୋଳ ଓ ନବୀନ



ଏମିତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଓଡ଼ିଶାରେ ସାଙ୍ଗସାଥୀ ବୋଲି କେହିନାହାନ୍ତି ବୋଲି କହିଲେ ଚଳିବ । ଦିଲ୍ଲୀରେ ରହିଆସୁଥିବା ନବୀନ ଅତି ଆକସ୍ମିକ ଭାବେ ବାପା ବିଜୁ ପଟ୍ଟନାୟକଙ୍କ ମୃତ୍ୟୁପରେ ଓଡ଼ିଶା ରାଜନୀତିକୁ ଆସିଲେ । ପ୍ରାୟ ୧୦ ବର୍ଷରୁ ଅଧିକ ସମୟଧରି ସେ ଓଡ଼ିଶାର ଶାସନ ଡୋରି ଧରିଛନ୍ତି । ଏବେ ତାଙ୍କୁ

ବିସ୍ମୟପୁରୁଷ ବୋଲି କୁହାଯାଉଛି । ସେ କ'ଣ ଖାଆନ୍ତି ପୁଣି କେଉଁ ଖାଦ୍ୟ ତାଙ୍କର ପ୍ରିୟ, ତାଙ୍କର ଦୁର୍ବଳତା କ'ଣ ସେ ସବୁ ଜାଣିବା ପାଇଁ ଓଡ଼ିଶାର ଲୋକଙ୍କ ମଧ୍ୟରେ ଉତ୍ସୁକତା ଲାଗି ରହିଛି । ସେଦିନ ସୁବର୍ଣ୍ଣପୁର ଜିଲା ଗସ୍ତରେ ନବୀନ ଯାଇଥିଲେ । ଖାଇବା ପାଇଁ ତାଙ୍କର ସେଠାରେ ଆୟୋଜନ ହୋଇଥିଲା । ଆୟୋଜକ ଥିଲେ ମନ୍ତ୍ରୀ ସଂଜୀବ ସାହୁ । ଖାଇବା ସମୟରେ ନବୀନଙ୍କ ପାଖରେ କେହି ରହିଲେ ନାହିଁ । ହଟକେସ୍‌ରେ ତାଙ୍କର ଖାଇବା ପଦାର୍ଥ ରଖିଦିଆଗଲା । ସବୁ ହଟକେସ୍ ଉପରେ ଲେଖି ଦିଆଗଲା ଭିତରେ କେଉଁ ଖାଇବା ଅଛି ବୋଲି । ପ୍ରାୟ ୧୫ ପ୍ରକାରର ଆଇଟମ୍ ନବୀନଙ୍କ ପାଇଁ ହୋଇଥିଲା । କୁଆଡ଼େ ନବୀନଙ୍କର ଭେଣ୍ଡିଭଜା ଓ ପୁଡ଼ିଙ୍ଗ ପ୍ରତି ଦୁର୍ବଳତା ଥିବାରୁ ଏହାକୁ ଖାସ୍ ଭାବେ ପ୍ରସ୍ତୁତ କରାଯାଇଥିଲା । ତେବେ ଯେଉଁ ଆଇଟମ୍ ହୋଇଥିଲା ତାହାକୁ ହ୍ୱାଟ୍‌ନଟ୍ କହିଲେ ମଧ ଚଳିବ । ଅର୍ଥାତ୍ ଆମିଷର ସବୁ ରୋଷେଇ ହୋଇଥିଲା । ମାଛ, କୁକୁଡ଼ାମାଂସ, ଖାସିମାଂସ, ଚିଙ୍ଗୁଡ଼ି, କଙ୍କଡ଼ା ପ୍ରଭୃତି ବିଭିନ୍ନ ଆମିଷ ତରକାରୀ ହୋଇଥିଲା । ନବୀନ ଆଗ୍ରହ ସହକାରେ ସବୁ ଖାଦ୍ୟ ଖାଇଲେ । କିନ୍ତୁ ଖାସିମାଂସ ତରକାରୀରେ ତାଙ୍କର ମନ ଲାଗିଗଲା । ସେ ମାଗିଲେ ଖାସିମାଂସ ତରକାରୀ ଝୋଳ ଆଣ ବୋଲି । ଏହା ଶୁଣି ରାନ୍ଧୁଣୀଆର ମନ ଯେତିକି ଖୁସି ହୋଇଗଲା ତା' ଠାରୁ ଅଧିକ ଖୁସି ହୋଇଗଲେ ଆୟୋଜକ ସଂଜୀବ । କେବେ କେଉଁଠି ନବୀନ ମାଗିକରି ଖାଆନ୍ତି ନାହିଁ । କିନ୍ତୁ ସୁବର୍ଣ୍ଣପୁର ଜିଲାର ରୋଷେଇ ଏତେ ସ୍ୱାଦିଷ୍ଟ ହୋଇଥିଲା ଯେ ନବୀନ ତାହାକୁ ସେଠାରେ ମାଗିକରି ଖାଇଲେ । ଅବଶ୍ୟ ନବୀନଙ୍କ ବାପା ବିଜୁ ପଟ୍ଟନାୟକ ଜଣେ ଖାଦ୍ୟ ରସିକେସୁ ବୋଲି ସମସ୍ତେ ଜାଣିଥିଲେ । ତେଣୁ ବିଜୁଙ୍କୁ ଖାଇବାକୁ ଦେବା ପାଇଁ ସମସ୍ତେ ନିମନ୍ତ୍ରଣ କରିଥା'ନ୍ତି । ପୁଣି ଲୋକ ଚାରିପଟେ ଥିଲେ ବିଜୁ ବେଶ୍ ଭଲ ଭାବେ ଖାଇଥା'ନ୍ତି । ବିଜୁଙ୍କ ଖାଇବା ଦେଖିବାକୁ ଲୋକଙ୍କ ମଧ୍ୟରେ ଉତ୍ସାହ ଭରି ରହିଥାଏ । ଏହାର ଠିକ୍ ଓଲଟା ହେଉଛନ୍ତି ନବୀନ । ମାନେ ସେ ଖାଇବା ସମୟରେ ସେଠାରେ କେହି ଉପସ୍ଥିତ ରହିବେ ନାହିଁ । ଏମିତି ନୁହେଁ ଯେ, ବିଜୁଙ୍କ ପରି ନବୀନ ଖାଇବା ପ୍ରିୟ ନୁହଁନ୍ତି । ତେବେ ଲୋକ ରହିଲେ ନବୀନ ପେଟପୂରା ଖାଇପାରନ୍ତି ନାହିଁ । ଏହା ସୁବର୍ଣ୍ଣପୁରଜିଲ୍ଲାବାସୀ ବେଶ୍ ଠଉରେଇ ନେଇଥିଲେ । ଯେଉଁଥିପାଇଁ ନବୀନଙ୍କୁ ହଟକେସ୍ ଉପରେ ନାମଲେଖି ତା' ଭିତରେ ଖାଇବା ସାମଗ୍ରୀ ପରଶି ଦେଇଥିଲେ ଆଉ ନବୀନ ହଟକେସ୍ ପରଷା ପାଇ ସେଦିନ ଏତେ ଖୁସି ହୋଇଯାଇଥିଲେ ଯେ, ଫେରିବା ବେଳକୁ ସମସ୍ତଙ୍କୁ ସେଠାରେ ଧନ୍ୟବାଦ ଦେଇଥିଲେ । ନବୀନ ଫେରିଆସିବା ପରେ ତାଙ୍କର ଖାଇବାକୁ ନେଇ ସୁବର୍ଣ୍ଣପୁର ଜିଲାରେ ଚାଲିଲା ଚର୍ଚ୍ଚା । ପଡରଖିଆ ଛେଳିମାଂସର ଝୋଳ ବେଶ୍ ସ୍ୱାଦିଷ୍ଟ । ଏହା ଆଉ କେହି ଜାଣନ୍ତୁ ବା ନଜାଣନ୍ତୁ ନବୀନ ବେଶ୍ ଭଲ ଭାବେ ଜାଣିପାରିଛନ୍ତି । ନହେଲେ ସବୁ ଆଇଟମ୍ ଖାଇ ସେ ଖାସିମାଂସର ଝୋଳ ବାରମ୍ବାର ମାଗି ନଥା'ନ୍ତେ । ନବୀନଙ୍କ ଏହି ଖାସିମାଂସ ଝୋଳ ମାଗିବା ଘଟଣା ଆଉ ସୁବର୍ଣ୍ଣପୁର ଜିଲ୍ଲାରେ ସୀମିତ ନାହିଁ । ସାରା ରାଜ୍ୟରେ ଏହା ପ୍ରଚାରିତ ହୋଇଯାଇଛି । ଏବେ ନବୀନଙ୍କ ପାଖ

ହେବା ପାଇଁ ଖାସିମାଂସ ଝୋଳ ଖୁଆଇବାକୁ ନେତାଙ୍କ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୋଇଗଲାଣି । ଦେଖାଯାଉ ନବୀନ ଖାସିମାଂସ ତରକାରୀ ଓ ଝୋଳ ଖାଇ କେଉଁ ନେତାଙ୍କୁ କି ଆଶିର୍ବାଦ ଦେଉଛନ୍ତି । ■



# ଅପେରା ନିଶାରେ ସଂଜୀବ



ଏ ହେଲେ ସଂଜୀବ ସାହୁ । ନବୀନ ପଟ୍ଟନାୟକ ସରକାରରେ ସେ ମନ୍ତ୍ରୀ । ତାଙ୍କର ପସନ୍ଦ କିନ୍ତୁ ବଡ଼ ବିଚିତ୍ର । ଏମିତି ଜଳଖିଆ ହେଲେ ତାଙ୍କର ମୁଢ଼ି ପସନ୍ଦ । ଭାଷଣ କହିଲେ ତାଙ୍କର ଧାର୍ମିକ ଭାଷଣ ପସନ୍ଦ । ଆଉ ମନୋରଂଜନ କହିଲେ ତାଙ୍କର ଅପେରା ପସନ୍ଦ । ସେଦିନ ହଠାତ୍ ଖଣ୍ଡଗିରିରେ ସଂଜୀବ ସାହୁଙ୍କୁ ଦେଖିବାକୁ ମିଳିଲା । କଳିଙ୍ଗ ଗଣନାଟ୍ୟର ଅପେରା ପାର୍ଟିରେ ଚାଲିଥିବା 'ବନ୍ଧୁବାନ୍ଧିଥିଲେ ବନ୍ଧୁ ମହାନ୍ତି' ମଂଚସ୍ଥ ହେଉଥାଏ । ରାତି ସାଢ଼େ ବାରଟା ବେଳକୁ ଏହି ଅପେରା ଦେଖିବାକୁ ମନ୍ତ୍ରୀ ସଂଜୀବ ସେଠାରେ ହାଜର ହୋଇଗଲେ । ପ୍ରଥମେ ମେଲୋଡ଼ି ଆରମ୍ଭ ହେଲା । ଖୁବ୍ ଆଗ୍ରହର ସହ ସଂଜୀବ ମେଲୋଡିକୁ ଦେଖିଲେ । ଏହାପରେ ଅପେରାର ବିଷୟବସ୍ତୁ ଆସିଲା । ସଂଜୀବଙ୍କ ପାଟିରୁ ବେଳେବେଳେ ବାଃ ବାଃ ବାହାରିଯାଉଥାଏ । ଆଉବେଳେବେଳେ ସେ ହସୁଥା'ନ୍ତି । ବେଳେବେଳେ ମଧ୍ୟ ତାଙ୍କ ଆଖିରେ ଲୁହ ଆସିଯାଉଥିବାର ମଧ୍ୟ ଦେଖାଯାଉଥିଲା । ସଂଜୀବ ଯେ କେବଳ ଅପେରା ଦେଖିବାକୁ ଏକା ଯାଇଥିଲେ ତାହାନୁହେଁ । ଆଉ ଦୁଇଜଣ ଅପେରା ପ୍ରିୟ ବନ୍ଧୁଙ୍କୁ ସେ ସାଥିରେ ନେଇ ଯାଇଥିଲେ । କେହି ଅଧାରୁ ଉଠି ଆସିବା ପାଇଁ ଚାହୁଁନଥିଲେ । ସତେ ଯେମିତି ସେମାନଙ୍କର ଆଖି ଲାଖି ଯାଇଥିଲା ଅପେରା ଚରିତ୍ର ମାନଙ୍କ ଉପରେ । ଏମିତି କଳିଙ୍ଗ ଗଣନାଟ୍ୟ ହେଉଛି ସଂଜୀବଙ୍କ ବିଜେଡ଼ି ଦଳର ଅନ୍ୟତମ ବିଧାୟକ ପ୍ରଦୀପ ମହାରଥିଙ୍କର । ବେଳେବେଳେ ପ୍ରଦୀପ ବିଧାନସଭାରେ ଏମିତି ପାଟିତୁଣ୍ଡ କରନ୍ତି ଯେ ଅନ୍ୟମାନେ ତାଙ୍କୁ ଲକ୍ଷ୍ୟ ରଖି କଳିଙ୍ଗ ଗଣନାଟ୍ୟ ବୋଲି ମଧ୍ୟ କହିଥା'ନ୍ତି । ତେବେ ସଂଜୀବଙ୍କର ନିଶା ଯେ ଅପେରା ଦେଖିବା ତାହା ନୁହେଁ । ତାଙ୍କର କେହି ପରାମର୍ଶଦାତା ତାଙ୍କ କାନରେ ଫୁସ୍‌ଫୁସ୍ କରି କହିଦେଇଛନ୍ତି ନେତାମାନେ ଅପେରା ଦେଖିବାର ଆବଶ୍ୟକତା ରହିଛି । ଅପେରାରେ ହସ, କାନ୍ଦ, ସବୁ ଭରି ରହିଛି । ତେଣୁ ଅପେରା ଦେଖିବା ଅଭ୍ୟାସ କଲେ ସେହି ହସ, କାନ୍ଦକୁ ଶିଖିହେବ । ଆଉ ସଭାସମିତିକୁ ସେହି ନେତା ଅତିଥି ହୋଇଗଲେ କାନ୍ଦ ହେଉ କି ହସ ହେଉ ସବୁ ଡାଇଲଗ୍‌କୁ ସେ କହିପାରିବେ । ଅବଶ୍ୟ କେତେକ କ୍ଷେତ୍ରରେ ସଂଜୀବ ଅପେରା ଡାଇଲଗ୍ ଏମିତି କହୁଛନ୍ତି ଯେ ସେଠାରେ ଥିବା ଶ୍ରୋତାଙ୍କ ତାଳିରେ ସେ ପୋତିହୋଇଯାଉଛନ୍ତି । ସଂଜୀବଙ୍କର ଏହି ଚାଲ୍‌କୁ ବୋଧହୁଏ ଅନ୍ୟନେତାମାନେ ଜାଣିପାରିନାହାନ୍ତି । ସଂଜୀବ ତାଙ୍କର ଏହି ପୋତାଧନକୁ ସାଇତି ରଖିଥା'ନ୍ତୁ । ■



# ପ୍ୟାରୀଙ୍କ ଆଶିର୍ବାଦ



ବିଜେଡ଼ି ସଭାପତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ହୋଲି ଖେଳିଲେ ନାହିଁ । ଏହାର କାରଣ ହେଲା- ମା' ଜ୍ଞାନ ପଟ୍ଟନାୟକଙ୍କ ବିୟୋଗରେ ସେ ଶୋକ ପାଳୁଥିଲେ । ନିର୍ବାଚନ ମୁଣ୍ଡ ଉପରେ ଥିବାରୁ ବିଜେଡ଼ି କର୍ମୀ ଓ ନେତାଙ୍କର ଭିଡ଼ ଲାଗିରହିଲା ବିଜେଡ଼ିର ଦ୍ୱିତୀୟ କ୍ଷମତା କେନ୍ଦ୍ର ତଥା ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ସହିତ ହୋଲି ଖେଳିବା ପାଇଁ । କିନ୍ତୁ ହୋଲି ଖେଳରେ ଯେ ପ୍ୟାରୀମୋହନ ଅଭ୍ୟସ୍ତ ନୁହନ୍ତି ତାହା ସ୍ପଷ୍ଟ ହୋଇଯାଇଥିଲା । ସକାଳୁ ସକାଳୁ ବହୁନେତା ପ୍ୟାରୀମୋହନଙ୍କ ସହିଦନଗର ଘରକୁ ଯାଇ ପେଷିଲେ । କୁହାଗଲା ୧୧ଟାରୁ ୧୨ଟା ମାତ୍ର ଘଂଟାଏ ସମୟ ରଖାଯାଇଛି ପ୍ୟାରୀଙ୍କ ସହିତ ହୋଲି ଖେଳିବାକୁ । ଅନେକ ନେତା ଅପେକ୍ଷା କଲେ ହୋଲି ଖେଳିବାକୁ । ୧୧ଟା ବେଳେ ପ୍ୟାରୀମୋହନ ଆସି ତାଙ୍କ ଲନ୍‌ରେ ବସିଲେ ଆଉ ଗେଟ୍ ଖୋଲା ହେଲା । ନେତା ମାଡ଼ିଚାଲିଲେ । ସମସ୍ତେ ଅବିର ଦେଉଥା'ନ୍ତି ପ୍ୟାରୀମୋହନଙ୍କୁ । ହଠାତ୍ ଜଣେ ମହିଳା କହିଲେ- ମୁଁ ଆପଣଙ୍କ ମୁଣ୍ଡରେ ଅବିର ଦେବି । ଏହି ସମୟରେ ପ୍ୟାରୀମୋହନ ଟିକିଏ ଅପ୍ରସ୍ତୁତ ହୋଇଗଲେ । କହିଲେ- ମୁଁ ଏତେ ଡେଙ୍ଗା ଓ ଆପଣ ଏତେ ଛୋଟ । ତେଣୁ ମୋ ମୁଣ୍ଡକୁ ଆପଣଙ୍କ ହାତ ପାଇବ ନାହିଁ । ଅବିର ଏଇଠି ଦେଇଦିଅନ୍ତୁ । ପ୍ୟାରୀମୋହନ ହୋଲି ଖେଳୁଥିବା ସମ୍ବାଦ ସାରା ଭୁବନେଶ୍ୱରରେ ତଡ଼ିତ ବେଗରେ ପ୍ରଚାରିତ ହୋଇଗଲା । ଜୋରଦାର୍ ଭିଡ଼ ହୋଇଗଲା ପ୍ୟାରୀମୋହନଙ୍କ ସହିଦନଗର ବାସଭବନରେ । ସେଠାର ଦୃଶ୍ୟ ହୋଇଯାଇଥିଲା ପ୍ୟାରୀମୋହନଙ୍କ ପାଦ ଛୁଇଁ ଆଶିର୍ବାଦ ନେବା । କାହାକୁ ପ୍ୟାରୀମୋହନ କହିଲେଣି ତ ଯଶସ୍ୱୀଭବ ଆଉ କାହାକୁ ଦୀର୍ଘାୟୁଭବ । ପୁଣି କେତେବେଳେ କାହାକୁ ବିଜୟୀଭବ । ଏମିତି ପ୍ରଭାତ ବିଶ୍ୱାଳ, ମିହିର ମହାନ୍ତି ଆଉ କେତେଜଣ ନେତାଙ୍କ ଭାଗରେ ପଡ଼ିଗଲା ବିଜୟୀଭବ । ଆଶାୟୀ ଥିବାରୁ ପ୍ୟାରୀଙ୍କ ଠାରୁ ବିଜୟୀଭବ ଶୁଣିବାଟା ଆକାଶରୁ ତାରା ଖସିବା ପରି ତାଙ୍କ ପାଇଁ ହୋଇଥିଲା । ସେମାନେ ଭାବିନେଲେ ଯେ, ଟିକେଟ ନିଶ୍ଚିତ ଏବଂ ପ୍ୟାରୀଙ୍କ ଆଶିର୍ବାଦ ବିଜୟୀ ହେବା ପାଇଁ । ଏମିତି ଭଗବାନ ଶ୍ରୀକୃଷ୍ଣ ହୋଲି ଖେଳିଲା ବେଳେ ଏପରି ଅନେକ ଆଶିର୍ବାଦ କରିଥା'ନ୍ତି । କିନ୍ତୁ କୁଟଚକ୍ରୀ ଶ୍ରୀକୃଷ୍ଣଙ୍କ ଆଶିର୍ବାଦର ଅର୍ଥ ଗୋଟିଏ ହୋଇନଥାଏ । ତାହା ଭିନ୍ନଭିନ୍ନ ହୋଇଥାଏ । ସେହିପରି ପ୍ୟାରୀଙ୍କ ଆଶିର୍ବାଦର ଅର୍ଥ କେହି ବୁଝି ପାରନ୍ତିନାହିଁ । କେବଳ ସମୟ ହିଁ କହିବ ପ୍ୟାରୀଙ୍କ ଆଶିର୍ବାଦ କାହା ପାଇଁ କେମିତି ଦିଆଯାଇଥିଲା । ମାନିବାକୁ ପଡ଼ିବ ପ୍ୟାରୀଙ୍କ ହୋଲି ଖେଳ ଓ ଆଶିର୍ବାଦକୁ । ■

# ଆଜ୍ଞାବହ ପ୍ରଦୀପ





ପିପିଲି ବିଧାୟକ ପ୍ରଦୀପ ମହାରଥୀ ଯେ ଜଣେ ଆଜ୍ଞାବହ ତାହା ଆଉ ଜାଣିବାକୁ ବାକି ନାହିଁ । ମୁଖ୍ୟମନ୍ତ୍ରୀ ନବୀନ

ପଟ୍ଟନାୟକ ଯେତେବେଳେ ଯେଉଁ ସମୟରେ ଯେଉଁ ଆଦେଶ ତାଙ୍କୁ ଦିଅନ୍ତି ତାହାକୁ ସେ ତୁରନ୍ତ ପାଳନ କରନ୍ତି । ଏମିତି ତ ଚକ୍‌ଲେଟ ଦେବାଠାରୁ ଆରମ୍ଭ କରି ବିଧାନସଭାରେ ବିରୋଧୀ ଦଳର ମୁକାବିଲା କରିବାକୁ ସେ ନବୀନଙ୍କ ଆଜ୍ଞା ପାଳନ କରିଆସିଛନ୍ତି । ସେଦିନର ଆଦେଶ ଥିଲା କିନ୍ତୁ ଏକ ବ୍ୟତିକ୍ରମ । ରାଜଭବନକୁ ନବୀନଙ୍କ ସଂଖ୍ୟାଗରିଷ୍ଠତା ଅଛି ବୋଲି ଦର୍ଶାଇବା ପାଇଁ ବିଧାୟକଙ୍କୁ ନେଇ ରାଜ୍ୟପାଳଙ୍କୁ ସାକ୍ଷାତ କରିବାକୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯାଇଥିଲେ । ରାଜ୍ୟପାଳଙ୍କୁ ସାକ୍ଷାତ କରି ବିଧାୟକ ଦଳଙ୍କୁ ଧରି ଫେରିଲେ ନବୀନ । ବାଟରେ ଅଟକାଇଲେ ସାମ୍ବାଦିକମାନେ । ନବୀନ ସେଇଠାରେ ରହିଲେ । ଏପଟେ ଫଟୋ ଓ ଇଲେକ୍‌ଟ୍ରୋନିକ୍ସ ମିଡ଼ିଆରେ ସେମାନଙ୍କର ଚିତ୍ର ଉତ୍ତୋଳନ କରିବାକୁ ଉଦ୍ୟମ ଆରମ୍ଭ ହୋଇଥାଏ । ନବୀନ ସଙ୍ଗେସଙ୍ଗେ କହିଲେ- ଅଣବିଧାୟକମାନେ ହଟିଯାଆନ୍ତୁ । ଏହାପରେ ସେଠାରେ ଥିବା ପ୍ରଦୀପ ମହାରଥୀଙ୍କୁ ବିଧାୟକମାନଙ୍କୁ ବସାଇବା ଓ ଅଣବିଧାୟକମାନଙ୍କୁ ହଟାଇବା ଦାୟିତ୍ୱ ସେ ଦେଲେ । ଆଜ୍ଞାବହ ପ୍ରଦୀପ ସଙ୍ଗେସଙ୍ଗେ ଆଦେଶ ପାଳନ କଲେ । ସେ କହିଲେ- ବିଧାୟକ ବସନ୍ତୁ, ଅଣବିଧାୟକ ସାଇଡ୍ ହୁଅନ୍ତୁ, ସାମ୍ବାଦିକ ଏପଟକୁ ଆସନ୍ତୁ । କିନ୍ତୁ ଠେଲାପେଲାକୁ ରୋକିପାରୁ ନଥା'ନ୍ତି ପ୍ରଦୀପ । ଜୋର୍‌ଦାର୍ ଠେଲାପେଲା ହେବାରୁ ପ୍ରଦୀପ ମଧ୍ୟ ତାଙ୍କର ବଳ ଦେଖାଇବାକୁ ଲାଗିଲେ । ସେ ମଧ୍ୟ ଠେଲାପେଲା କରି ବିଧାୟକଙ୍କୁ ବସାଇଲେ, ଅଣବିଧାୟକଙ୍କୁ ଠେଲି ନେଲେ । ଏହି ସମୟରେ ପ୍ରଦୀପ ମହାରଥୀ ପିନ୍ଧିଥିବା ପାଇଜାମାଟି ଚିରିଗଲା । ସେତିକିରେ ପ୍ରଦୀପ ମହାରଥୀଙ୍କ ହୋସ୍ ଉଡ଼ିଗଲା । ସେ ଅଣବିଧାୟକମାନଙ୍କୁ ଠେଲାପେଲା କରି ବାହାରକୁ ନେବା ପରିବର୍ତ୍ତେ ଆଗ ନିଜ ପାଇଜାମାକୁ ଦେଖିଲେ । ସେପଟେ ମୁଖ୍ୟମନ୍ତ୍ରୀଙ୍କ ପାଖାପାଖି ରହି ବିଧାୟକମାନେ ଫଟୋ ଉଠାଇବା ପାଇଁ ପ୍ରତିଯୋଗିତା କରିଚାଲିଥା'ନ୍ତି । ଏପଟେ ସେମାନଙ୍କୁ ହଟାଇବା ପାଇଁ ଦାୟିତ୍ୱ ନେଇଥିବା ପ୍ରଦୀପ ମହାରଥୀଙ୍କ ପାଇଜାମା ଚିରିଗଲାଣି । ପ୍ରଦୀପ ଚିରା ପାଇଜାମାକୁ ଭଲ କରି ଦେଖିନେଲେ । ଠେଲାପେଲା ଜୋର୍‌ଦାର୍ ହେବାରୁ ନବୀନ ବଡ଼ପାଟିରେ ପ୍ରଦୀପ ବୋଲି ଡାକିଲେ । ଆଜ୍ଞାବହ ପ୍ରଦୀପ ସଙ୍ଗେସଙ୍ଗେ ବିଧାୟକମାନଙ୍କୁ ବସିବା ପାଇଁ କହିଲେ । ଫଟୋ ନେବା ଶେଷ ହେଲା । ନବୀନ ତାଙ୍କ ବାଟରେ ଗଲେ । ବିଧାୟକ ଓ ଅଣବିଧାୟକ ମଧ୍ୟ ସେମାନଙ୍କ ବାଟରେ ଚାଲିଗଲେ । ରାଜଭବନ ବାହାରକୁ ଆସିଲେ ପ୍ରଦୀପ । ଚିରା ପାଇଜାମାକୁ ସେ ଦେଖିଲେ ଆଉ ମନଦୁଃଖରେ ପାଇଜାମାକୁ ନେଇ ଗୁଣୁଗୁଣୁ ହୋଇ କ'ଣ କହିଲେ । ପ୍ରଦୀପଙ୍କ ଗୁଣୁଗୁଣୁ କଥା ଶୁଣିବାକୁ କିଛି ସାମ୍ବାଦିକ ତାଙ୍କ ପାଖକୁ ଚାଲିଆସିଲେ । ସେ କହୁଥିଲେ- ନବୀନ ତାଙ୍କ ଗାଦି ରକ୍ଷା କଲେ । କିନ୍ତୁ ପାଇଜାମାଟି ତାଙ୍କର ଚିରିଗଲା । ଭାଗ୍ୟ ତାଙ୍କର ଏହିପରି । ■



# ମହିଳା ଓ ପାଢ଼ଶାଣୀ



ଏମିତି କବିମାନେ ଟିକିଏ ରସିକ । ଅନେକ କବି ନିଜକୁ ପ୍ରେମିକ ବୋଲି ମଧ୍ୟ କହିଥା'ନ୍ତି । ବହୁ ନାମୀଦାମୀ କବି ମଧ୍ୟ କହନ୍ତି- କବିତା ଲେଖିବାକୁ ହେଲେ ପ୍ରେମ କରିବାକୁ ହୁଏ । ଅବଶ୍ୟ ଏହି କଥାର ସତ୍ୟତା କେତେଦୂର ଅଛି ତାହା କବି ଆଉ କବିତା ପଢୁଥିବା ବ୍ୟକ୍ତି ହିଁ ଜାଣିପାରିବେ । ଏଠାରେ ଏକ ନାମୀ କବିଙ୍କ ସମ୍ପର୍କରେ ଅବତାରଣା କରାଯାଉଛି । ପୁଣି କବି ଜଣଙ୍କ ବି ଜଣେ ନାମୀ ନେତା । ସେ ହେଲେ ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀ । ସେ ମଧ୍ୟ ଜଣେ ଆଶୁ କବି । ଭାଷଣ ଦେବା ବେଳକୁ ସେଠାକାରର ପରିସ୍ଥିତିକୁ ଦେଖି ସେ ମଧ୍ୟ ସଙ୍ଗେସଙ୍ଗେ କବିତା ବୋଲି ଦିଅନ୍ତି । ଏମିତି ପ୍ରସନ୍ନ ପାଟଶାଣୀ ଗେରୁଆ ବସ୍ତ୍ର, ଦାଢ଼ି ଲମ୍ବାବାଳ ସାଙ୍ଗକୁ ହାତରେ ବାଡ଼ି ଧରିଥା'ନ୍ତି । କୁଆଡ଼େ ସୁନ୍ଦରୀ ମହିଳାଙ୍କୁ ଦେଖିଦେଲେ ପ୍ରସନ୍ନଙ୍କ ପାଟିରୁ ଆପେଆପେ କବିତା ବାହାରିଯାଏ । କିନ୍ତୁ ନିର୍ବାଚନ ସମୟରେ ପ୍ରସନ୍ନ ଏଥିରୁ ବ୍ୟତିକ୍ରମ ଅଟନ୍ତି । ସେଦିନ ପ୍ରସନ୍ନଙ୍କ ଦରବାର ପୁରାପୁରି ଫୁଲ୍ । ଏହାସତ୍ତ୍ୱେ ଶହଶହ ଲୋକ ତାଙ୍କ ଦରବାରକୁ ଆସିବାକୁ ଲାଗିଥା'ନ୍ତି । ସମସ୍ତଙ୍କର ଲକ୍ଷ୍ୟ ଏକ । ବାବା ଆର୍ଶିବାଦ ଦେଲେ ବିଜୁ ଜନତା ଦଳରୁ ଟିକେଟ ମିଳିବ ଆଉ ସେମାନେ ଲଢ଼ି ବିଜୟୀ ହେବେ । ଏମିତି ଜଣେ ସୁନ୍ଦରୀ ମହିଳା ଆସି ବାବାଙ୍କର ପାଦ ଛୁଇଁଲେ । ସାଙ୍ଗରେ ତାଙ୍କ ସ୍ୱାମୀ ବି ଥା'ନ୍ତି । କବି ହୋଇଥିବାରୁ ରସିକ ପ୍ରସନ୍ନଙ୍କ ଆଖି ସେହି ସୁନ୍ଦରୀ ମହିଳାଙ୍କ ଉପରେ ଆଗ ପଡ଼ିଲା । ବାବା ଆର୍ଶିବାଦ ଦେବା ଛଳରେ ତାଙ୍କ ମୁଣ୍ଡରେ ହାତ ରଖିଲେ । ପଚାରିଲେ- କ'ଣ ହେଲା କି ତୋ'ର ମା' । ମହିଳା ଜଣକ କହିଲେ- ସେ ବିଜୁ ଜନତା ଦଳରୁ ଟିକେଟ ନେଇ ଲଢ଼ିବା ପାଇଁ ଆଗ୍ରହୀ । ଖାଲି ବାବା ଚାହିଁଲେ ହେଲା । ପ୍ରସନ୍ନ ମହିଳାଙ୍କ ମୁହଁକୁ କିଛି ସମୟ ଚାହିଁଲେ ଏବଂ କହିଲେ- ତୁ ଅତ୍ୟନ୍ତ ସୁନ୍ଦରୀ । ତୋତେ ଦେଖିଲେ ଯେକୌଣସି ପୁରୁଷର ଆଖି ଲାଖି ରହିବ । କବିଟିଏ ତୋତେ ଦେଖି ସଙ୍ଗେସଙ୍ଗେ କବିତାଟିଏ ମଧ୍ୟ ଲେଖିଦେବ । କିନ୍ତୁ ଏତେ ସୁନ୍ଦରୀ ମହିଳା ରାଜନୀତିକୁ ଆସିବା କଥା ନୁହେଁ । ଯାହା ଫଳରେ ସେ କେବଳ ବ୍ୟବହାର ହେବ କିନ୍ତୁ କେହି ତାକୁ ଟିକେଟ ଦେବା ପାଇଁ ଚାହିଁବେ ନାହିଁ । ତୁ ଯା ଘରସଂସାର କର । ଏହି ସମୟରେ କେହି ଜଣେ ତାଙ୍କର ପାଦ ଧରୁଥିବାର ସେ ଜାଣିବାକୁ ପାଇଲେ । ତଳକୁ ଦେଖିଲା ବେଳକୁ ସେ ଆଉ କେହି ନୁହନ୍ତି ସେହି ମହିଳା ଜଣଙ୍କର ସ୍ୱାମୀ । ପ୍ରସନ୍ନ ତାଙ୍କୁ ପଚାରିଲେ କ'ଣ ହେଲା । ସେ କହିଲେ- ଆପଣଙ୍କ ଭଳି ଜଣେ ମହାନ ପୁରୁଷ ମୁଁ କେବେବି ଦେଖିନାହିଁ । ମୁଁ ମୋର ପତ୍ନୀଙ୍କୁ ମନା କରୁଥିଲି ରାଜନୀତିକୁ ଆସିବାକୁ । କିନ୍ତୁ ସେ ମୋ କଥା ନମାନି ରାଜନୀତିକୁ ଆସିବା ପାଇଁ ଚାହିଁଲା । ଅନେକ ଜାଗା ମଧ୍ୟ ସେ ଗଲା । କିନ୍ତୁ

କେଉଁଠି ତାକୁ ସଫଳତା ମିଳିଲା ନାହିଁ । ତାକୁ କେହି ରାସ୍ତା ବି ଦେଖାଇଲେ ନାହିଁ । ସମସ୍ତେ ଖାଲି ପ୍ରତିଶ୍ରୁତି ଦେଲେ । ଆପଣ ଏବେ ତାଙ୍କୁ ଠିକ୍ କଥା କହିଛନ୍ତି । ମୁଁ କହିଲେ ସେ ଶୁଣୁନାହିଁ । ବାବା ସୁନ୍ଦରୀ ମହିଳାଙ୍କ ମୁଣ୍ଡରେ ସେହିପରି ହାତ ରଖିଥା'ନ୍ତି ଏବଂ ତାଙ୍କୁ ଭଲ ରୂପେ ଦେଖୁଥା'ନ୍ତି । ମହିଳା ଜଣଙ୍କ ବାବାଙ୍କ ମୁହଁକୁ ଚାହିଁଥା'ନ୍ତି । ବାବା କହିଲେ- ସ୍ୱାମୀଙ୍କ କଥାକୁ ତୁ ମାନୁନାହୁଁ କିନ୍ତୁ ମୋ କଥା ମାନେ । ରାଜନୀତି ନିଶା ମୁଣ୍ଡରୁ ଓହ୍ଲାଇ ଦେ । ଘରସଂସାର ଭିତରେ ରହ । ବାବାଙ୍କ ମୁହଁରୁ ଏହି କଥା ଶୁଣିବା ପରେ ମହିଳା ଜଣଙ୍କ ତାଙ୍କ ପାଦ ଛୁଇଁଲେ ଏବଂ ସ୍ୱାମୀ-ସ୍ତ୍ରୀ ଦୁଇଜଣ ଯାକ ସେଠାରୁ ଚାଲିଗଲେ । ଆଉ ଏକ ଘଟଣା । ଜଣେ ମହିଳା ଗେରୁଆ ବସ୍ତ୍ର ପିନ୍ଧି ବାବାଙ୍କ ପାଖକୁ ଆସିଥିଲେ । ଉଦ୍ଦେଶ୍ୟ ଭୁବନେଶ୍ୱରରୁ ବିଜୁ ଜନତା ଦଳ ଟିକେଟ ନେଇ ଲଢ଼ିବେ । ବାବା ସେହି ମହିଳା ଜଣଙ୍କ ମୁହଁକୁ ଚାହିଁଲେ ଏବଂ ସଙ୍ଗେସଙ୍ଗେ ଚିତ୍କାର କଲେ । କହିଲେ- ମୋତେ ଖୁସି କରିବା ପାଇଁ ବୋଧେ ତୁ ଗେରୁଆ ବସ୍ତ୍ର ପିନ୍ଧି ଆସିଛୁ । ତୋ ମୁହଁକୁ ଦେଖି ମୁଁ ଜାଣିପାରୁଛି ଗେରୁଆ ବସ୍ତ୍ର ପିନ୍ଧିବାକୁ ହେଲେ ଯେଉଁସବୁ ନୀତି ପାଳନ କରିବା କଥା ତୁ କରୁନାହୁଁ । ତୁଳସୀପତ୍ର ଖାଇବା ଠାରୁ ଆରମ୍ଭ କରି ଏମିତି ବହୁ ନୀତି ଅଛି ଗେରୁଆ ବସ୍ତ୍ର ପିନ୍ଧିଲେ କରିବାକୁ ପଡ଼େ । ନହେଲେ ଗେରୁଆ ବସ୍ତ୍ରଟି ଅପବିତ୍ର ହୋଇଯିବ । ତୁ ଯେଉଁ ଗେରୁଆ ବସ୍ତ୍ରଟି ପିନ୍ଧି ଆସିଛୁ ତାହା ଅପବିତ୍ର ହୋଇଯାଇଛି । କୌଣସି ନୀତିନିୟମ ତୁ ପାଳନ କରୁନାହୁଁ । ତୁରନ୍ତ ମୋ ଆଖିଆଗରୁ ଚାଲିଯା । ନଚେତ ଅଭିଶାପ ଦେବି । ମହିଳା ଜଣଙ୍କ କହିଲେ- ଆପଣ ଯାହା କହୁଛନ୍ତି ସତ ବାବା । ଆପଣ ଗେରୁଆ ବସ୍ତ୍ର ପିନ୍ଧିଥିବାରୁ ମୁଁ ଗେରୁଆ ବସ୍ତ୍ରଟିଏ ପିନ୍ଧି ଆପଣଙ୍କ ପାଖକୁ ଆସିଥିଲି । ଭାବିଥିଲି ଗେରୁଆ ବସ୍ତ୍ରକୁ ଦେଖି ଆପଣ ଖୁସି ହୋଇଯିବେ ଆଉ ମୋତେ ବିଜୁ ଜନତା ଦଳରୁ ପ୍ରତିଦ୍ୱନ୍ଦିତା କରିବା ପାଇଁ ଟିକେଟ ମିଳିଯିବ । ଗେରୁଆ ବସ୍ତ୍ର ପିନ୍ଧିବାକୁ ହେଲେ ଏତେ ନୀତିନିୟମ ଅଛି ବୋଲି ମୁଁ ଜାଣିନାହିଁ । ମୋତେ କ୍ଷମା କରିଦିଅନ୍ତୁ । ମୁଁ ଘରକୁ ଯାଇ ଗେରୁଆ ବସ୍ତ୍ର ବଦଳାଇ ଆସିବି । ଆପଣ ମୋତେ ଟିକେଟ ଦେବେ । ଏହି କଥା ଶୁଣି ପ୍ରସନ୍ନ ପାଟ୍ଟଶାଣୀ ଆହୁରି ରାଗିଗଲେ । କହିଲେ- ଯିଏ ଗେରୁଆବସ୍ତ୍ର ନୀତିକୁ ଉଲ୍ଲଂଘନ କରିଛି ତାକୁ ଭଗବାନଙ୍କର ଦଣ୍ଡ ଭୋଗିବାକୁ ପଡ଼ିବ । ଟିକେଟ ଫିକେଟ କିଛି ମିଳିବ ନାହିଁ । ତୁରନ୍ତ ମୋ ଆଖି ଆଗରୁ ଚାଲିଯା । ମହିଳା ଜଣଙ୍କ ସେଠାରୁ ତୁରନ୍ତ ଚାଲିଯାଇଥିଲେ । ଏମିତି ପ୍ରତିଦିନ ପ୍ରସନ୍ନଙ୍କ ଦରବାରକୁ ବହୁ ମହିଳା ଆସୁଛନ୍ତି । ଅବଶ୍ୟ ପ୍ରସନ୍ନ କବି ହେତୁ ମହିଳା ପ୍ରିୟ । ମହିଳାଙ୍କୁ ପ୍ରଶଂସାରେ ପୋତି ଦିଅନ୍ତି । ତବେ ପ୍ରଶଂସା କରୁକରୁ ଯଦି କୌଣସି ମହିଳା ବିଜୁ ଜନତା ଦଳରୁ ଟିକେଟ ନେବେ ବୋଲି କହି ଦେଉଛନ୍ତି ସେତିକିରେ ପ୍ରସନ୍ନଙ୍କର ପ୍ରଶଂସା ଗାନ ସରିଯାଉଛି ଆଉ ପ୍ରସନ୍ନ ହୋଇଯାଉଛନ୍ତି ଅପ୍ରସନ୍ନ । ରାଜନୀତି ଆଉ ମହିଳା ଏ ଦୁଇଟି ପ୍ରସନ୍ନଙ୍କ ପାଇଁ ଭିନ୍ନଭିନ୍ନ ଦିଗ ହୋଇଯାଇଛି । ■

# ଅନଙ୍ଗଙ୍କ ମୌନ ଅବତାର



ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ପାଟଣାଗଡ଼ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଗେହ୍ଲାପୁଅ ଅନଙ୍ଗ ଉଦୟ ସିଂହଦେଓ ଜଣେ ଅଭିଜ୍ଞ ନେତା । ୧୯୭୪ ମସିହାରେ ସେ ପ୍ରାର୍ଥୀ ହୋଇ ଲୋଇସିଂହାରୁ ବିଜୟୀ ହୋଇଥିଲେ । ସେହିଥର ବଲାଙ୍ଗିରରୁ ମଧ୍ୟ ତାଙ୍କ ବାପା ରାଜେନ୍ଦ୍ର ନାରାୟଣ ସିଂହଦେଓ ବିଧାୟକ ହୋଇଥିଲେ । ଏହାପରେ ଅନଙ୍ଗ ୧୯୯୦ ମସିହାରେ ଜନତା ଦଳରୁ ବଲାଙ୍ଗିରରୁ ନିର୍ବାଚିତ ହୋଇଥିଲେ । ୧୯୯୫, ୨୦୦୦, ୨୦୦୪ ଓ ୨୦୦୯ରେ ମଧ୍ୟ ସେ ବଲାଙ୍ଗିରରୁ ପ୍ରାର୍ଥୀ ହୋଇ ନିର୍ବାଚିତ ହୋଇଛନ୍ତି । ୫ ଥର ବିଧାୟକ ଅଭିଜ୍ଞତା ହାସଲ କରିଥିବା ଅନଙ୍ଗ ଏବେ ବିଜୁ ଜନତା ଦଳ ରାଜନୀତିରେ ଆଗଧାଡ଼ିରେ ଅଛନ୍ତି । ଏମିତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ସେ ଅନ୍ତରଙ୍ଗ ବନ୍ଧୁ । ୨୦୦୯ ନିର୍ବାଚନର କିଛିଦିନ ପୂର୍ବରୁ ହଠାତ୍ ଦେଖାଗଲା ଅନଙ୍ଗ କଥା କହୁନାହାନ୍ତି । ମାନେ ମୌନ ରହୁଛନ୍ତି । କିନ୍ତୁ ଅନଙ୍ଗ ଲୋକଙ୍କୁ ଦେଖାକରୁଛନ୍ତି । ଏମିତି ଲୋକଙ୍କ ସହିତ ଦେଖାହେଲେ ସାଧାରଣତଃ କଥାବାର୍ତ୍ତା ହେବାକୁ ପଡ଼ିଥାଏ । ଅନଙ୍ଗ ଲୋକଙ୍କ କଥା ଶୁଣନ୍ତି ଆଉ ତାଙ୍କର ଯାହା କହିବା କଥା ଇଂରାଜୀରେ ଲେଖି କାଗଜଟିକୁ ବଢ଼ାଇ ଦିଅନ୍ତି । କୁଆଡ଼େ ଅନଙ୍ଗଙ୍କ ଗଳା ଇନ୍‌ଫେକ୍‌ସନ୍ ହୋଇଥିବାରୁ ଡାକ୍ତର ତାଙ୍କୁ କଥା କହିବାକୁ ମନା କରିଥିଲେ । ଯେଉଁଥିପାଇଁ ଅନଙ୍ଗ ମୌନ ରହୁଥିଲେ । ଡାକ୍ତର କୁଆଡ଼େ ମଧ୍ୟ ଲୋକଙ୍କୁ ଦେଖା ନକରିବା ପାଇଁ ବି ପରାମର୍ଶ ଦେଇଥିଲେ । ଯଦି ଲୋକଙ୍କ ସହିତ ଅନଙ୍ଗଙ୍କର ଦେଖାହୁଏ ତେବେ ତାଙ୍କର ପାଟି ଖଲଖଲ ହେବ ଆଉ ସେ କଥା କହିଦେବେ । ସେଥିପାଇଁ ଡାକ୍ତର ଏଭଳି ପରାମର୍ଶ ଦେଇଥିଲେ । ତେବେ ଅନଙ୍ଗ ଲୋକଙ୍କୁ ଦେଖାକରୁଥିଲେ ଆଉ ଠାରରେ ସେ ତାଙ୍କର ମନୋଭବ ଜଣାଉଥିଲେ । ଏ ହେଲା ଅନଙ୍ଗଙ୍କ ଗଳା ଇନ୍‌ଫେକ୍‌ସନ୍ କଥା । କିନ୍ତୁ ରାଜନୀତିରେ ତିନିତୁଣ୍ଡରେ ଛେଳି କୁକୁର ହୋଇଯାଏ । ଅନଙ୍ଗ ମୌନ ରହୁଛନ୍ତି ବୋଲି ଜୋରଦାର୍ ପ୍ରଚାର ହୋଇଗଲା । ବିରୋଧୀ ଯେତେବେଳେ ଏହି ଖବର ପାଇଲେ ସେତେବେଳେ ସେମାନଙ୍କ ଠାରେ ଛନକା ପଶିଗଲା । ସାଧାରଣତଃ ରଜାମାନେ ଦେବୀଭକ୍ତ ଥା'ନ୍ତି ଆଉ ଯୁଦ୍ଧ ହେଲାକ୍ଷଣି ସେମାନେ ଦେବୀଙ୍କ ଉପାସନା କରିଥା'ନ୍ତି । ଏହି ସମୟରେ ମୌନ ମଧ୍ୟ ରହିଥା'ନ୍ତି । ନିର୍ବାଚନକୁ ଆଖିଆଗରେ ରଖି ଅନଙ୍ଗ ମୌନ ରହୁଛନ୍ତି ବୋଲି ପ୍ରଚାର ହେଲା । କିନ୍ତୁ ନିର୍ବାଚନ ପରେ ଏହି ପ୍ରଚାର ସତ ବୋଲି ପ୍ରମାଣିତ ହେଲା । ପୁଅ କଳିକେଶ ବଲାଙ୍ଗୀର ଲୋକସଭା ଆସନରୁ ଆଉ ନିଜେ ଅନଙ୍ଗ ବଲାଙ୍ଗୀର ବିଧାନସଭା ଅସନରୁ ବିଜୟୀ ହେଲେ । ଏହା କୁଆଡ଼େ ତାଙ୍କ ମୌନ ବ୍ରତ ଯୋଗୁ ହେଲା ବୋଲି ଚର୍ଚ୍ଚା ହେଲା। ମାନିବାକୁ ପଡ଼ିବ ଅନଙ୍ଗଙ୍କୁ । ନିର୍ବାଚନବେଳେ ମୌନ ରହିବାର କଷ୍ଟ କ'ଣ କେବଳ ସେ ହିଁ ଜାଣନ୍ତି । ■



# ପ୍ୟାରୀଙ୍କ ଶତ୍ରୁସଂହାର

ବିଜୁ ଜନତା ଦଳର ସଙ୍ଗଠନ କଥା କୁହାଗଲେ ବୁଝାଇବ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କୁ । କାହାକୁ ଟିକେଟ ଦିଆଯିବ ଆଉ କାହାର ଟିକେଟ କଟାଯିବ ସେ ଦିଗରେ ଗୋଟିଚାଳନା କରନ୍ତି ପ୍ୟାରୀମୋହନ ମହାପାତ୍ର । ୨୦୦୦ ମସିହାରୁ ପ୍ୟାରୀମୋହନ ବିଜେଡ଼ି ପାଇଁ ଗୋଟିଚାଳନା କରିଆସୁଛନ୍ତି । ସେ ଏମିତି ଗୋଟିଚାଳନା କରୁଛନ୍ତି ଯେ, ତାଙ୍କୁ ମୁକାବିଲା କରିବାକୁ କେହି ବି ସମ୍ମୁଖୀନ ହୋଇପାରୁନାହାନ୍ତି । ୨୦୦୦ ନିର୍ବାଚନରେ ବିଜୟ ମହାପାତ୍ରଙ୍କୁ ଟିକେଟ ଦେଇ ଶେଷ ମୁହୂର୍ତ୍ତରେ ଟିକେଟ କାଟି ଦିଆଯିବାରୁ ସେ ଆଉ ନିର୍ବାଚନ ଲଢ଼ିପାରିଲେ ନାହିଁ । ଏହା ପ୍ୟାରୀଙ୍କର କୁଆଡ଼େ ଚାଲ ଥିଲା । ୨୦୦୯ ନିର୍ବାଚନରେ ଅନୁରୂପ ପରିସ୍ଥିତି ଦେଖା ଦେଇଥିଲା । ବିଜେଡ଼ିର ବରିଷ୍ଠ ନେତା ସୁରେନ୍ଦ୍ର ନାଥ ନାୟକଙ୍କୁ ଟିକେଟ ଦିଆଯାଇ ଶେଷ ମୁହୂର୍ତ୍ତରେ ମଧ୍ୟ କାଟି ଦିଆଗଲା । ସେହିପରି କଟକ ଜିଲା ବିଜୁ ଜନତା ଦଳ ସଭାପତି ତଥା ଚୌଦ୍ୱାର ବିଧାୟକ ଧର୍ମାନନ୍ଦ ବେହେରାଙ୍କୁ ଟିକେଟ ଦିଆଯାଇ ଶେଷ ମୁହୂର୍ତ୍ତରେ କାଟି ଦିଆଗଲା । ଏହି ଦୁଇଜଣ ସ୍ୱାଧୀନ ପ୍ରାର୍ଥୀ ହେବା ପାଇଁ ପ୍ରାର୍ଥୀପତ୍ର ଦାଖଲ କରିବାକୁ ମଧ୍ୟ ସମୟ ପାଇଲେ ନାହିଁ । ସେପଟେ ଆଠଗଡ଼ରେ ରଣେନ୍ଦ୍ର ପ୍ରତାପ ସ୍ୱାଇଁ ପ୍ରାର୍ଥୀପତ୍ରରେ ଯେଉଁ ଟିକଟ ଦେଲେ ତାହା କୁଆଡ଼େ ମୂଳ କପି ନଥିଲା । ଆଠଗଡ଼ର ଉପଜିଲାପାଳ ରଣେନ୍ଦ୍ରଙ୍କର ପ୍ରାର୍ଥୀପତ୍ର ନାକଚ କରିବା ପାଇଁ ନିଷ୍ପତି ନେବାଟା ସେତେ ସହଜ ନଥିଲା । କିଛି ନହେଲେ ମଧ୍ୟ ଭୁବନେଶ୍ୱର ନବୀନ ନିବାସରୁ ପୁଣି ଏକ ମୂଳ ଟିକେଟ ନିଆଯାଇ ଦାଖଲ ହୋଇପାରିଥା'ନ୍ତା । କିନ୍ତୁ ତାହା ହେଲାନାହିଁ ।  ଟିକେଟ କଟିବାରେ ଅନେକ ରହସ୍ୟ ରହିଛି । ପ୍ୟାରୀମୋହନଙ୍କର ଅନେକ ଶତ୍ରୁ ଟିକେଟ ପାଇବାରୁ ବଂଚିତ ହୋଇଛନ୍ତି । ଏହାସତ୍ୱେ ହାତଗଣତି କେତେକ ଶତ୍ରୁ ମଧ୍ୟ ଟିକେଟ ନେଇଛନ୍ତି । ତେବେ ଶତ୍ରୁସଂହାର ଯୋଜନା କିପରି ହୁଏ ତାହା ପ୍ୟାରୀମୋହନ ଭଲ ରୂପେ ଜ୍ଞାନ ଅର୍ଜନ କରିଛନ୍ତି । କେହି ଯଦି କେବେ ପ୍ୟାରୀମୋହନ କେଉଁ ପୁସ୍ତକକୁ ପଢୁଥିବାର ଦେଖିବାକୁ ପାଆ'ନ୍ତି ତେବେ ସେଇଟି ହେଲା "୪୮ ଲଅଜ୍ ଅଫ୍ ପାୱାର" । ଏହାର ଲେଖକ ହେଉଛନ୍ତି - ରବର୍ଟ ଗ୍ରୀନ୍ । ଏହା ଇଂରାଜୀରେ ଲେଖାଯାଇଛି । ଏହି ପୁସ୍ତକରେ ଶତ୍ରୁଙ୍କୁ କିପରି ସଂହାର କରାଯାଇପାରିବ, ନେତାଙ୍କର କିପରି ବିଶ୍ୱସ୍ତ ହୋଇପାରିବ, ଶତ୍ରୁଙ୍କୁ କିପରି ବିନିଯୋଗ କରିପାରିବ, କ୍ଷମତା କିପରି ନିଜ ପାଖରେ ରଖିପାରିବ ସେ ଦିଗରେ ପୁଙ୍ଖାନୁପୁଙ୍ଖ ଭାବେ ଉଲ୍ଲେଖ କରାଯାଇଛି । ଏମିତି କେତେକ ଉଦାହରଣ ମଧ୍ୟ ଦିଆଯାଇଛି । ଏହି ଉଦାହରଣରେ ଦର୍ଶାଯାଇଛି ନେତାଙ୍କ ଆଗରେ ନିଜର ଟ୍ୟାଲେଂଟ କେବେ ଦେଖାଇବ ନାହିଁ । ସେହିପରି ସବୁ ଶତ୍ରୁଙ୍କୁ ସଂହାର କରିବ ନାହିଁ । ତେବେ ଏହାର ମୁଖ୍ୟ ବିଷୟ ବସ୍ତୁ

ହେଉଛି କ୍ଷମତାକୁ କିପରି ନିଜ ଅକ୍ତିଆରରେ ରଖିବ । ଶତ୍ରୁଙ୍କୁ ବିନିଯୋଗ କରି କ୍ଷମତାରେ ରହିବା ସମ୍ପର୍କରେ ମଧ୍ୟ ଏଥିରେ ଉଲ୍ଲେଖ ହୋଇଛି । ଏହି ପୁସ୍ତକଟିକୁ ପ୍ୟାରୀମୋହନ ପ୍ରାଂଜଳ ଭାବେ ଅଧ୍ୟୟନ କରିଛନ୍ତି । ଯେଉଁଥିପାଇଁ ତାଙ୍କର ଗୋଟିଚାଳନାରେ ନବୀନ ପଟ୍ଟନାୟକ ୧୦ ବର୍ଷ ଧରି ସଫଳ ନେତା ହୋଇଛନ୍ତି । ବିଫଳତାର ସ୍ୱାଦ ଚାଖିନାହାନ୍ତି । କ୍ରମାଗତ ଭାବେ ତିନିଥର ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ପୁଣି ବିଜେପି ମେଂଟକୁ ଗୋଟିଏ ମୁହୂର୍ତ୍ତରେ ଭାଙ୍ଗି ଦେଇଛନ୍ତି । ବୋଧହୁଏ ବିରୋଧୀ ଦଳ ନବୀନଙ୍କ ସଫଳତାର ରହସ୍ୟ ଜାଣି ପାରିନାହାନ୍ତି । ପ୍ୟାରୀମୋହନ ଯେଉଁ ପୁସ୍ତକକୁ ପାଠ କରି ଏତେବାଟ ଆଗେଇ ଯାଇଛନ୍ତି ସେହି ପୁସ୍ତକ ପଢ଼ିବାକୁ ସେମାନେ ସୁଯୋଗ ବୋଧହୁଏ ପାଇନାହାନ୍ତି । ମାନିବାକୁ ପଡ଼ିବ ପ୍ୟାରୀମୋହନଙ୍କ ପୁସ୍ତକ ପଠନକୁ । ଗପ, ଉପନ୍ୟାସ, ଜୀବନୀ ଏମିତି ପୁସ୍ତକ ପଢ଼ି କ୍ଷମତାରେ ରହି ହେବନାହିଁ । ନେତାମାନେ କ୍ଷମତାରେ ରହିବା, ଶତ୍ରୁସଂହାର କରିବା ଏବଂ ଶତ୍ରୁଙ୍କୁ ବିନିଯୋଗ କରିବାର ବୁଦ୍ଧି ପ୍ୟାରୀଙ୍କ ଠାରୁ ନିଅନ୍ତୁ ଆଉ ଗୁରୁଦିବସରେ ତାଙ୍କୁ ପୂଜା କରନ୍ତୁ । ■



## ନବୀନଙ୍କ ଥୋପ ରାଜନୀତି

୨୦୦୯ ନିର୍ବାଚନରେ ବିଜୁ ଜନତା ଦଳର ଟିକଟ ବଂଟନ ଦୁଇଟି ପର୍ଯ୍ୟାୟରେ ହେଲା । ପ୍ରଥମ ପର୍ଯ୍ୟାୟଟି ନବୀନଙ୍କ ପାଇଁ ସେତେ ସମସ୍ୟା ନଥିଲା । କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟଟି ଉପକୂଳବର୍ତ୍ତୀ ଅଂଚଳର ହୋଇଥିବାରୁ ଏଥିରେ ବହୁ ଟାଣୁଆ ନେତା ଟିକଟ ପାଇବା ପାଇଁ ଆଶାୟୀ ଥିଲେ । ଅନେକ ଦକ୍ଷ ଏବଂ ଟାଣୁଆ ନେତା ଟିକଟ ପାଇବାରୁ ବଂଚିତ ହେବାପରେ ସେମାନଙ୍କ ମନରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ଅନେକ ନବୀନ ନିବାସ ଯାଇ ନବୀନ ପଟ୍ଟନାୟକଙ୍କୁ ସାକ୍ଷାତ କରି ସେମାନଙ୍କର ଅସନ୍ତୋଷ ବ୍ୟକ୍ତ କଲେ । ନବୀନ ଯେ ଗଭୀର ଜଳର ମାଛ ତାହା ବୋଧହୁଏ ସେମାନେ ଜାଣିନଥିଲେ । ନଚେତ୍ ଦିଲ୍ଲୀବାସୀ ନବୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ କୁର୍ତ୍ତା ପାଇଜାମା ଓ ସାଧାରଣ ଚପଲ ପିନ୍ଧି ବିଜେଡ଼ି ନେତାମାନଙ୍କୁ ଚକ୍‌ମା ଦେଖାଉନଥା'ନ୍ତେ । ଆଉ ସେହି ଚକ୍‌ମା ଦେଖି ବିଜେଡି ନେତାମାନେ ଢ଼ଳିଯାଉନଥା'ନ୍ତେ । ସେଦିନ ଟିକଟ ପାଇନଥିବା ବହୁ ନେତା ନବୀନଙ୍କୁ ଯେତେବେଳେ ଦେଖାକଲେ ନବୀନ ସମସ୍ତଙ୍କ କାନ୍ଧରେ ହାତ ପକାଇ ବେଶ୍ ଖୁସ୍ ମିଜାଜରେ କଥାବାର୍ତ୍ତା କଲେ । କାହାକୁ ଆପଣ ଅତି ଟ୍ୟାଲେଂଟେଡ୍ ତ ଆଉ କାହାକୁ ଦକ୍ଷ ନେତା ବୋଲି ପ୍ରଶଂସା କରିବାକୁ ସେ ପଛାଇଲେ ନାହିଁ । ପ୍ରଶଂସାରେ ନବୀନ ସେଠାକୁ ଯାଇଥିବା ନେତାମାନଙ୍କୁ ପୋତି ପକାଇଲେ । ତେବେ ଟିକଟ ପାଇନଥିବାରୁ ସେହି ନେତାଙ୍କ ମନରୁ ଅସନ୍ତୋଷ ଗଲା ନାହିଁ । ନବୀନ ସେମାନଙ୍କୁ ଯେତେ ପ୍ରଶଂସା କଲେ ମଧ୍ୟ ସେମାନଙ୍କ ମୁହଁରୁ ହସ ବାହାରିଲା ନାହିଁ । ନବୀନ ଏହି ସମୟରେ ଆଉ ଗୋଟିଏ ଉପାୟ ଚିନ୍ତା

କଲେ । ସେ ଅଧିକାଂଶ ନେତାଙ୍କୁ ରାଜ୍ୟସଭାକୁ ପଠାଇଦେବେ ବୋଲି ପ୍ରତିଶ୍ରୁତି ଦେଲେ । ରାଜ୍ୟସଭା ସଭ୍ୟ ବୈଜୟନ୍ତ ପଣ୍ଡା କେନ୍ଦ୍ରାପଡ଼ା ଲୋକସଭା ଆସନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବାରୁ ତାଙ୍କ ସ୍ଥାନରେ ଜଣେ ରାଜ୍ୟସଭାକୁ ଯିବେ । କିନ୍ତୁ ନବୀନ ତାଙ୍କୁ ଯେଉଁ ନେତାମାନେ ଦେଖାକଲେ ସେମାନଙ୍କୁ ରାଜ୍ୟସଭାକୁ ପଠାଇଦେବେ ବୋଲି ପ୍ରତିଶ୍ରୁତି ଦେବା ସହିତ ଏହା କାହାକୁ କହିବ ନାହିଁ ବୋଲି ଫୁସ୍‌ଫୁସ୍ କରି କହିଲେ । ଏଥିରେ ମଧ୍ୟ ଅସନ୍ତୁଷ୍ଟ ନେତାମାନେ ସନ୍ତୁଷ୍ଟ ହେଲେ ନାହିଁ । ରାଜ୍ୟସଭା ଯିବା ପାଇଁ କେହିବି ଇଚ୍ଛୁକ ନଥିଲେ। ବିଧାନସଭା ଆସନରେ ଲଢୁଥିବା ନେତାଙ୍କୁ ରାଜ୍ୟସଭା ପଠାଇବା ପାଇଁ ନବୀନ ଯେଉଁ ଥୋପ ପକାଇଲେ ତାହାକୁ ସହଜରେ କେହି ଗିଳିଲେ ନାହିଁ ।  ଅବଶ୍ୟ ନବୀନ କେବଳ ରାଜ୍ୟସଭା ଥୋପ ଦେଇନଥିଲେ । ନିର୍ବାଚନ ଶେଷ ହେବାପରେ ବିଭିନ୍ନ ନିଗମରେ ଅଧ୍ୟକ୍ଷ ନିଯୁକ୍ତି ମିଳିଯିବ ବୋଲି ମଧ୍ୟ ପ୍ରତିଶ୍ରୁତି ସେ ଦେଇଥିଲେ । ନବୀନଙ୍କ ଏହି ପ୍ରତିଶ୍ରୁତିକୁ କେହି ବିଶ୍ୱାସକୁ ନେଉନଥିଲେ । ଏମିତି ବି ଟିକଟ ଦେବା ପୂର୍ବରୁ ତାଙ୍କୁ ଯେଉଁ ନେତାମାନେ ସାକ୍ଷାତ କରିବାକୁ ଯାଉଥିଲେ ସେମାନଙ୍କୁ ମଧ୍ୟରୁ ଅଧିକାଂଶଙ୍କୁ ସେ ଟିକଟ ମିଳିବ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଇଥିଲେ । ତେବେ ଟିକଟ ତା ବାଟରେ ଆଉ ପ୍ରତିଶ୍ରୁତି ତା ବାଟରେ । ମାନିବାକୁ ପଡ଼ିବ ନବୀନଙ୍କ ଥୋପ ପ୍ରଲୋଭନକୁ । ରାଜନୀତିର ପ୍ରଥମ ଅକ୍ଷର ତାଙ୍କୁ ଜଣାନାହିଁ ବୋଲି ସେ ଅଭିନୟ କରୁଥିଲେ । କିନ୍ତୁ ବିଜୁ ପଟ୍ଟନାୟକଙ୍କ ପରି ନେତା ତାଙ୍କର ବାପା ହୋଇଥିବାରୁ ଜଟିଳ ଠାରୁ ଆରମ୍ଭ କରି କୁଟିଳ ପର୍ଯ୍ୟନ୍ତ ସବୁ ରାଜନୀତି ତାଙ୍କର ମୁଖସ୍ଥ । ଅନେକ ସମୟରେ ରାଜନୀତିରେ ନୂଆ କହି ତାଙ୍କୁ ନେତାମାନେ କ୍ଷମା କରିଦେଉଥିଲେ । କିନ୍ତୁ ଯେବେଠାରୁ ନବୀନ ଓଡ଼ିଶା ରାଜନୀତିରେ ପାଦ ଦେଇଛନ୍ତି ସେବେଠାରୁ ସେ ପୋଖତ ରାଜନୀତି ଆରମ୍ଭ କରିଦେଇଛନ୍ତି । ନବୀନଙ୍କର ସବୁବେଳେ ଥୋପ ରାଜନୀତି ଚାଲେ । ଯିଏ ଏହି ଥୋପକୁ ଗିଳିଲା ସିଏ ମଲା ଆଉ ଯିଏ ନ ଗିଳିଲା ସିଏ ବି ମଲା । ଗୋଟିଏ ରାଜ୍ୟସଭା ପଦ ଖାଲି ହେଲେ ନବୀନ ଏକାଧିକଙ୍କୁ ରାଜ୍ୟସଭାକୁ ପଠାଇବେ ବୋଲି ଯେଉଁ ପ୍ରତିଶ୍ରୁତି ଦେଲେ ତାହା କିପରି  ସମ୍ଭବ  ସେ ନେଇ ମଧ୍ୟ ପ୍ରଶ୍ନବାଚୀ  ସୃଷ୍ଟି ହୋଇଥିଲା । କିନ୍ତୁ ନବୀନଙ୍କର ଥୋପ ରାଜନୀତିରେ ପ୍ରଶ୍ନବାଚୀ ଶବ୍ଦ ନାହିଁ । ଯେଉଁଥିପାଇଁ ସେ ରାଜନୀତିରେ ସଫଳତାର ଶୀର୍ଷରେ ଅଛନ୍ତି । ନେତାମାନେ ଭାଷଣ ଦେବା ପରିବର୍ତ୍ତେ ବରଂ ନବୀନଙ୍କ ଠାରୁ ଥୋପ ରାଜନୀତି ଶିଖିବାରେ  ସମୟ ଦିଅନ୍ତୁ । ■



## ହଳଦିଆ ବସ୍ତ୍ରଧାରୀ ବିଷ୍ଣୁ



ଏମିତି ସାଧାରଣତଃ ନେତାମାନେ ଭବିଷ୍ୟ ଗଣନାକାରୀଙ୍କୁ ସବୁବେଳେ ବିଶ୍ୱାସକୁ ନେଇଥା'ନ୍ତି । ସେହିପରି ଯଦି କେହି ତାନ୍ତ୍ରିକ କିମ୍ବା ଜ୍ୟୋତିଷ ନେତାଙ୍କୁ ନିର୍ବାଚନ ସମୟରେ କୌଣସି ନିର୍ଦ୍ଦିଷ୍ଟ ରଙ୍ଗର ବସ୍ତ୍ର ପରିଧାନ କରିଲେ  ନିର୍ବାଚନରେ ବିଜୟୀ ହେବେ ବୋଲି

କହିବେ, ତେବେ ସେ ଯେତେବଡ଼ ନାସ୍ତିକ ନେତା ହୁଅନ୍ତୁ ପଛେ ନିଶ୍ଚିତ ଭାବେ ସେହି ରଙ୍ଗର ବସ୍ତ୍ର ପରିଧାନ ନିର୍ବାଚନ ସମୟରେ ସେ କରିବେ ହିଁ କରିବେ । ଏଭଳି ଘଟଣା ଦେଖିବାକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ଜଗତ୍‌ସିଂହପୁର ବିଧାନସଭା ନିର୍ବାଚନମଣ୍ଡଳୀରେ ବିଜେଡିର ପ୍ରାର୍ଥୀ ହୋଇଥିଲେ ବିଷ୍ଣୁ ଦାସ । ଏମିତି ଜଗତ୍‌ସିଂହପୁର ଜିଲାରେ ଥିବା ପାରାଦ୍ୱୀପରୁ ପ୍ରାର୍ଥୀ ହୋଇ ଲଢୁଥିବା ଡାକ୍ତର ଦାମୋଦର ରାଉତ ଓ ବିଷ୍ଣୁ ଦାସଙ୍କ ମଧ୍ୟରେ ଯେଉଁ ଅହି-ନକୁଳ ସମ୍ପର୍କ ରହିଛି ତାହା ଉଣାଅଧିକେ ସମସ୍ତେ ଜାଣନ୍ତି । ଯଦିଓ ନିର୍ବାଚନ ସମୟରେ ଉଭୟ ପ୍ରାର୍ଥୀଙ୍କ ମଧ୍ୟରେ କଥାବାର୍ତ୍ତା ସମ୍ପର୍କ ସୃଷ୍ଟି ହୋଇଥିଲା । କିନ୍ତୁ କିଛିଦିନପରେ ସେମାନଙ୍କ ମଧ୍ୟରେ ଆଉ କଥାବାର୍ତ୍ତା ହେଲାନାହିଁ । କେହି ଜଣେ ତାନ୍ତ୍ରିକ କୁଆଡ଼େ ବିଷ୍ଣୁଙ୍କୁ ପରାମର୍ଶ ଦେଲେ ଯେ ହଳଦିଆ ବସ୍ତ୍ର ନିର୍ବାଚନ ସମୟରେ ପରିଧାନ କଲେ ତାଙ୍କର ବିଜୟ ସମ୍ଭାବନା ଅଧିକ ହେବ ଆଉ ଚିରଶତ୍ରୁ ପାଲଟିଯିବେ ମିତ୍ର । ବିଷ୍ଣୁ ଏହି ସମୟରେ ହଳଦିଆ ବସ୍ତ୍ର ପରିଧାନ କଲେ । ନିର୍ବାଚନରେ ବିଜୟୀ ମଧ୍ୟ ହେଲେ । ତେବେ ହଳଦିଆ ରଙ୍ଗ ବସ୍ତ୍ର ପରିଧାନ କରି ବିଷ୍ଣୁ କେବେ ମନ୍ତ୍ରୀପଦ ପାଉଛନ୍ତି ତାହା ହିଁ ଦେଖିବାକୁ ବାକି ରହିଛି । ■



## ଅତନୁ ବାବା

ଏ କୌଣସି ଯୋଗୀ କି ବାବା ନୁହନ୍ତି । ଏ ହେଉଛନ୍ତି ଅତନୁ ସବ୍ୟସାଚୀ ନାୟକ । ୨୦୦୪ ମସିହାରେ ପାଟକୁରାରେ ବିଜୟ ମହାପାତ୍ରଙ୍କୁ ହରାଇ ନିର୍ବାଚିତ ହେବାପରେ ତାଙ୍କର ନାମ ହୋଇଯାଇଥିଲା ଜାଏଂଟ କିଲର । ୨୦୦୯ରେ ସେ ପାଟକୁରାରୁ ନଲଢ଼ି ମହାକାଳପଡ଼ାରୁ ଲଢ଼ିଲେ । ଅତନୁଙ୍କର ବୟସ ସେମିତି କିଛି ଅଧିକ ନୁହେଁ । ଯେଉଁଥିପାଇଁ ସେ ପାରିବାରିକ ଜଂଜାଳରୁ ଦୂରେଇ ଯାଇ 'ବାବା'ହୋଇଯିବେ । ତାଙ୍କୁ ତାଙ୍କର ଦୁଇବର୍ଷର ଏକ ଶିଶୁପୁତ୍ର ଏବେ ଅତନୁ ବାବା ଡାକି ଚାଲିଛି । ଏହି ଶିଶୁପୁତ୍ରଙ୍କ ନାମ ହେଉଛି ଅସ୍ତୁ । ଆଉ ଏ ହେଉଛନ୍ତି ଅତନୁଙ୍କର ପୁତ୍ର । ଅସ୍ତୁ ଅମରେଶ ଋଷିଙ୍କ ନାମକୁ ସ୍ମରଣ କରି ନାତିଙ୍କ ନାମକରଣ କରିଛନ୍ତି ଅତନୁଙ୍କ ବୋଉ । ନିର୍ବାଚନ ସମୟରେ ଅତନୁଙ୍କ ଭୁବନେଶ୍ୱରସ୍ଥିତ ସତ୍ୟନଗର ବାସଗୃହରେ ବେଶ୍ ଗହଳି ଥିଲା । ଏହି ଗହଳିକୁ 'ଅସ୍ତୁ' ବେଶ୍ ଉପଭୋଗ କରିଥିଲେ । କିଏ ଅସ୍ତୁଙ୍କ ବାପାଙ୍କୁ ଅତନୁ ଡାକିଲାଣି ତ ଆଉ କିଏ ଅତନୁ ଭାଇ । ଅସ୍ତୁଙ୍କୁ ଯେତେ ଶିଖାଇଲେ ମଧ୍ୟ ସେ ଅତନୁଙ୍କୁ ସିଧାସଳଖ ବାପା ବୋଲି ଡାକୁନାହାନ୍ତି । ସେ ଲୋକଙ୍କ ଗହଳିରେ ଥାଇ ତାଙ୍କ ବାପାଙ୍କୁ ସମସ୍ତେ ଅତନୁ ଡାକୁଥିବାର ଶୁଣୁଥିବାରୁ ଅସ୍ତୁ ସେହି ଅତନୁ ଶବ୍ଦକୁ ଛାଡ଼ି ପାରୁନାହାନ୍ତି । ସେ ଡାକୁଛନ୍ତି- ଅତନୁବାବା । ଅବଶ୍ୟ ଅସ୍ତୁଙ୍କର ଏହି ଅତନୁବାବା

ଡାକ ଶୁଣିବା ମାତ୍ରେ ସେଠାରେ ଉପସ୍ଥିତ ଥିବା ଲୋକମାନେ ପ୍ରଥମେ କେହି ବାବା ଥାଇପାରନ୍ତି ବୋଲି ଭାବି ନେଉଛନ୍ତି । ଅନେକ ମଧ ବାବାଙ୍କୁ ଦେଖିବା ପାଇଁ ଇଆଡ଼େ ସିଆଡ଼େ ଚାହାଁନ୍ତି । କିନ୍ତୁ ଅସ୍ମୁ ଯେତେବେଳେ ଅତନୁବାବା କହି ଅତନୁଙ୍କୁ ଧରିପକାଏ ସେତେବେଳେ ସମସ୍ତେ ଜାଣିଯାଆନ୍ତି ଯେ, ବାବା ଆଉ କେହିନୁହନ୍ତି ସେ ହେଉଛନ୍ତି ଅତନୁ । ଅସ୍ମୁଙ୍କର ବୟସ ମାତ୍ର ଦୁଇବର୍ଷ । କିନ୍ତୁ ନିର୍ବାଚନ ରାଜନୀତି ତାଙ୍କୁ ମଧ ଛାଡ଼ିନାହିଁ । ଅତନୁଙ୍କ ପାଇଁ ଯେଉଁସବୁ ଗୀତ ରେକର୍ଡ଼ ହୋଇଥିଲା ତାହାକୁ ମଧ ଅସ୍ମୁ ବୋଲୁଥିଲେ । ଅନେକ ସମୟରେ ଅସ୍ମୁଙ୍କ ପାଟିରୁ ବାହାରି ଯାଉଛି ଅତନୁ ଭାଇ ଜିନ୍ଦାବାଦ୍, ବିଜେଡି ଜିନ୍ଦାବାଦ୍ । ଦୁଇବର୍ଷର ଏହି ଶିଶୁପୁତ୍ରଙ୍କୁ ଦେଖିଲେ କେହିବି ଭାବିପାରିବେ ନାହିଁ ସେ ଜଣେ ଅତନୁ ଓ ବିଜେଡିର ପ୍ରଚାରକ ବୋଲି । ଅବଶ୍ୟ ଅତନୁଙ୍କ ବାପା ରାଜକିଶୋର ନାୟକ ବିଧାୟକ ଥିଲେ । ଅସ୍ମୁ ହେଉଛନ୍ତି ପୂର୍ବତନ ବିଧାୟକଙ୍କ ନାତି ପୁଣି ବିଧାୟକଙ୍କ ପୁତ୍ର । ଅତନୁ ଯେପରି ତାଙ୍କ ବାପାଙ୍କର ରାଜନୈତିକ ଉତରାଧିକାରୀ ହେଲେ ସେହିପରି ଅତନୁଙ୍କ ରାଜନୈତିକ ଉତରାଧିକାରୀ ଅସ୍ମୁ ହେବେ ବୋଲି ଏବେଠାରୁ ତାଙ୍କର ଆଚାର, ବିଚାରରୁ ଜଣାପଡୁଛି । ତେବେ ସମୟ ଅସ୍ମୁଙ୍କୁ କେଉଁଆଡ଼କୁ ନେଉଛି ଆଉ ଅତନୁ ଅସ୍ମୁଙ୍କୁ ରାଜନୀତିରେ ସାମିଲ କରୁଛନ୍ତି କି ନାହିଁ ତାହା କେବଳ ଭବିଷ୍ୟତ ହିଁ କହିବ । କିନ୍ତୁ ଏହା ସତ ଯେ, ନେତା ଯାହା ମନେରଖି ପାରୁନାହାନ୍ତି ମାତ୍ର ଦୁଇ ବର୍ଷ ବୟସର ଅସ୍ମୁ ତାହା ମନେ ରଖି ପ୍ରଚାର କରୁଛନ୍ତି । ■

## ଠାକୁରାଣୀ ଭକ୍ତ ଦାମ



ନିର୍ବାଚନ ସମୟରେ ଡାକ୍ତର ଦାମୋଦର ରାଉତଙ୍କ ହାତରେ କିଛିଦିନ ପାଇଁ ଦେଖିବାକୁ ମିଳିଲା ଏକ ନାଲି ଫିତା । ଏହା ଏମିତି ସେମିତି ଫିତା ନୁହେଁ । ଏକ ଦେବୀଙ୍କର ଏହି ଫିତା । କୁଆଡ଼େ ଏହି ଫିତା ପିନ୍ଧିଲେ ସବୁ ଅସମ୍ଭବ ସମ୍ଭବ ହୋଇଯାଏ । ଏମିତି ମନ୍ତ୍ରୀ ପଦରୁ ଦାମୋଦର ଚାଲିଯିବା ପରେ ନିର୍ବାଚନରେ ତାଙ୍କୁ ଟିକେଟ ମିଳିବ କି ନାହିଁ ତାହା ନେଇ ସେ ଅନିଶ୍ଚିତ ଥିଲେ । ପାରାଦ୍ୱୀପରୁ ବିଜେଡି ପ୍ରାର୍ଥୀ ହେବାପରେ ତାଙ୍କ ପାଇଁ ସବୁ ପ୍ରକାର ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହେଲା । ସାଧୀନ ପ୍ରାର୍ଥୀଙ୍କୁ ତାଙ୍କ ବିରୋଧୀ ପକ୍ଷରୁ ପ୍ରଚୁର ଟଙ୍କା ଦେଇ ଲଢ଼ାଗଲା । ଏଥିରେ ଦାମ କୁଆଡ଼େ ବ୍ୟତିବ୍ୟସ୍ତ ହୋଇଯାଇଥିଲେ । ଏହି ସମୟରେ ଦାମଙ୍କୁ ଏକ ପ୍ୟାକେଟ୍‌ରେ ମିଳିଥିଲା ଦେବୀଙ୍କର ଫିତା । ଏହି ଫିତା କୁଆଡ଼େ ବୁଢ଼ୀ ଠାକୁରାଣୀଙ୍କର । ଫିତାକୁ ପିନ୍ଧିଦେଲେ ଶତ୍ରୁ ଆପେଆପେ ନାଶ ହୋଇଯିବ ବୋଲି ତାଙ୍କୁ କୁହାଗଲା । ଶତ୍ରୁବ୍ୟୁହରେ ଥିବା ଦାମ ଏହି ଫିତାକୁ ତୁରନ୍ତ ହାତରେ ବାନ୍ଧିଦେଲେ । କ୍ରମେ ଫିତା କାମ ଦେଲା ବୋଲି ସେ ଅନୁଭବ କଲେ । ଯେତେ ଟଙ୍କା ଖର୍ଚ୍ଚ କଲେ ମଧ ଶତ୍ରୁ ତାଙ୍କ ଆଗରେ ଫିକା ପଡ଼ିଗଲା । ଭୋଟଗ୍ରହଣ ଶେଷ ହେବା

ପର୍ଯ୍ୟନ୍ତ ଦାମ ଏହି ଠାକୁରାଣୀଙ୍କ ଫିତାକୁ ଖୁବ୍ ଯତ୍ନର ସହିତ ହାତରେ ବାନ୍ଧୁଥିଲେ । ଅନେକ ଭାବୁଥିଲେ ଦାମ ବୋଧହୁଏ ଏହି ଫିତାକୁ ଭୋଟଗ୍ରହଣ ପରେ ହାତରୁ ଓହ୍ଲାଇ ଦେବେ । କିନ୍ତୁ ଦାମ ତାହାକୁ ଓହ୍ଲାଉ ନଥିଲେ । ଦାମଙ୍କର ଠାକୁରାଣୀଙ୍କ ଫିତା ଉପରେ ଏତେଦୂର ବିଶ୍ୱାସ ହୋଇଯାଇଥିଲା ଯେ, ସେ ତାହାକୁ ହାତରୁ ଓହ୍ଲାଇବା ପାଇଁ ଆଦୌ ଚାହୁଁନଥିଲେ । ଭୋଟଗଣନା ହେଲା । ଦାମ ବିଜୟୀ ହେଲେ । ପୁଣି ମନ୍ତ୍ରୀ ବି ହେଲେ । ଜଣାପଡ଼ିଲା ସବୁ ସେହି ନାଲି ଫିତାର କରାମତି । ଏହି ଫିତା ବାନ୍ଧିବାର ଫଳ ମଧ ଦାମଙ୍କୁ ମିଳିଛି । ଶତ୍ରୁଙ୍କ ଚକ୍ରବ୍ୟୁହରୁ ଦାମ ନିର୍ବାଚନ ରାଜନୀତିରେ ଯେପରି ଖସିଆସିଛନ୍ତି ତାହା କେବଳ ଠାକୁରାଣୀଙ୍କ ଫିତା ଯୋଗୁ ହୋଇଛି ବୋଲି ତାଙ୍କର ଏକ ଧାରଣା ସୃଷ୍ଟି ହୋଇଥିଲା । ତେବେ ଦାମ ମାନନ୍ତୁ କିମ୍ବା ନ ମାନନ୍ତୁ ଏହା କିନ୍ତୁ ସତ ଯେ ଠାକୁରାଣୀଙ୍କ ଫିତା ହିଁ ତାଙ୍କ ପାଇଁ ରକ୍ଷାକବଚ ସାଜିଥିଲା । ■

# ଇଚ୍ଛା ମୃତ୍ୟୁ



ଇଚ୍ଛା ମୃତ୍ୟୁ ପ୍ରସଙ୍ଗ ଆସିଲେ ସାଧାରଣତଃ ମହାଭାରତ କଥା ଉଠିଥାଏ । ଏଥିରେ ପିତାମହ ଭୀଷ୍ମ ଇଚ୍ଛାମୃତ୍ୟୁ ବର ପାଇଥିଲେ । ଯେଉଁଥିପାଇଁ ଶରଶଯ୍ୟାରେ ରହି ସେ ମହାଭାରତ ଯୁଦ୍ଧ ଦେଖିଥିଲେ ଏବଂ ଇଚ୍ଛା ଅନୁଯାୟୀ ତାଙ୍କର ମୃତ୍ୟୁ ହୋଇଥିଲା । ତେବେ ଏହା ଥିଲା ମହାଭାରତ ଯୁଦ୍ଧର ଘଟଣା । କିନ୍ତୁ ଏଠାରେ ଯେଉଁ ଇଚ୍ଛାମୃତ୍ୟୁ ପ୍ରସଙ୍ଗ କୁହାଯାଉଛି ତାହା ଜନ୍ମ-ମୃତ୍ୟୁ ସମ୍ପର୍କରେ ନୁହେଁ । ଏହା ହେଉଛି ରାଜନୈତିକ ମୃତ୍ୟୁ । ଏମିତି କୌଣସି କାରଣ ବଶତଃ ସାଂସଦ ଡକ୍ଟର ପ୍ରସନ୍ନ ପାଟଶାଣୀ ଚମ୍ବଲ ଉପତ୍ୟକାକୁ ଯାଇଥିଲେ । ଅବଶ୍ୟ ପାଟଶାଣୀଙ୍କର ଅତୀତ ଜୀବନ ନକ୍ସଲ ବି ଥିଲା । ସେହି ଦୃଷ୍ଟିରୁ ପାଟଶାଣୀଙ୍କୁ ଚମ୍ବଲ ଉପତ୍ୟକା ଯିବା ପାଇଁ ଭୟ ବି ଲାଗି ନଥିଲା । ଶହଶହ ବାଙ୍କ ଦେଇ ଚମ୍ବଲ ଉପତ୍ୟକାର ଏକ ସ୍ଥାନରେ ପାଟଶାଣୀ ପହଂଚିଲେ । ସେଠାରେ ଜଣେ ଭବିଷ୍ୟ ଗଣନାକାରୀଙ୍କୁ ସେ ଭେଟିଲେ । ଏହି ଗଣନାକାରୀଙ୍କ ବିଦ୍ୟା ଦେଖି ପ୍ରସନ୍ନ ତାଜୁବ ହୋଇଯାଇଥିଲେ । ପ୍ରସନ୍ନଙ୍କ ଦେଖି ଗଣନାକାରୀ ତାଙ୍କ ବାପା, ମା', ପତ୍ନୀ, ପୁଅ ଓ ଝିଅଙ୍କ ନାମ, ଏପରିକି ତାଙ୍କ ଜେଜେବାପା, ଜେଜେମା'ଙ୍କ ନାମ ସହିତ ତାଙ୍କ ଗ୍ରାମ ନାମ ଏବଂ ତାଙ୍କ ପରିବାରର ଇତିହାସ ମଧ ବଖାଣି ଦେଇଥିଲେ । ଏହାପରେ ପ୍ରସନ୍ନଙ୍କର ଗଣନାକାରୀଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ ଆସିଲା । ଗଣନାକାରୀ ପ୍ରସନ୍ନଙ୍କୁ ଦୀର୍ଘ ସମୟ ଧରି ଦେଖିଲେ । ଏହାପରେ ସେ ଗଣନା କରିଥିବା ଗୋଟିଏ ଗୋଟିଏ ପ୍ରସଙ୍ଗକୁ ଆସିଲେ । ପ୍ରଥମେ କହିଲେ- ପ୍ରସନ୍ନ ପାଟଶାଣୀ ଜଣେ ଯୋଗଜନ୍ମା । ସେ ଯେତେଦିନ ପର୍ଯ୍ୟନ୍ତ ଚାହିଁଥିବେ ସେତେଦିନ ପର୍ଯ୍ୟନ୍ତ ରାଜନୀତିରେ ରହିବେ ଆଉ ବିଜୟର ମୁକୁଟ ପିନ୍ଧି ଚାଲିଥିବେ । ଯେବେ ଚାହିଁବେ ନାହିଁ ସେବେଠାରୁ ଆଉ ରାଜନୀତିରେ ତାଙ୍କୁ ଦେଖିବାକୁ ମିଳିବ ନାହିଁ । ଏହାକୁ ପ୍ରସନ୍ନଙ୍କ ପାଇଁ ରାଜନୈତିକ ଇଚ୍ଛାମୃତ୍ୟୁ ବର ବୋଲି ଗଣନାକାରୀ

କହିଥିଲେ । ଅବଶ୍ୟ ଗଣନାକାରୀଙ୍କ କେତେକ ଗଣନା ଏକ୍ଷେତ୍ରରେ ଠିକ୍ ବାଜିଛି । ୧୯୮୦ ମସିହାରୁ ପ୍ରସନ୍ନ ଖୋର୍ଦ୍ଧାର ବିଧାୟକ ହେବା ଦିନଠାରୁ ଆଉ ପଛକୁ ଫେରି ଚାହିଁନାହାନ୍ତି । ୧୯୮୦ରେ ସେ କଂଗ୍ରେସ, ୧୯୮୫ରେ ସ୍ୱାଧୀନ, ୧୯୯୦ ଓ ୧୯୯୫ରେ ଜନତା ଦଳରୁ ଖୋର୍ଦ୍ଧାର ବିଧାୟକ ଭାବେ ନିର୍ବାଚିତ ହୋଇଥିବା ବେଳେ ୧୯୯୮ ୧୯୯୯, ୨୦୦୪ ଓ ୨୦୦୯ରେ ସେ ଭୁବନେଶ୍ୱର ଲୋକସଭା ଆସନରୁ ବିଜୁ ଜନତା ଦଳରୁ କ୍ରମାଗତ ଭାବେ ନିର୍ବାଚିତ ହୋଇ ସାଂସଦ ହୋଇଛନ୍ତି । ପ୍ରସନ୍ନଙ୍କର ବୟସ ୬୭ ପାଖାପାଖି ହେଲାଣି । କିନ୍ତୁ ତାଙ୍କର ଚେହେରାରେ ବୟସର ଛାପ ଏଯାବତ୍ ପଡ଼ିନାହିଁ । ତେବେ ରାଜନୀତି ଯେଉଁ ଆଡ଼କୁ ଗଲାଣି ତାହା ପ୍ରସନ୍ନଙ୍କର ପସନ୍ଦ ନୁହେଁ । ପ୍ରସନ୍ନଙ୍କର ମତ ହେଲା- ଯେତେଦିନ ପର୍ଯ୍ୟନ୍ତ ରାଜନୀତି କରିବା ପାଇଁ ତାଙ୍କର ଇଚ୍ଛା ଥିବ ସେତେଦିନ ପର୍ଯ୍ୟନ୍ତ ତାଙ୍କର ବିଜୟକୁ କେହି ଅଟକାଇ ପାରିବେ ନାହିଁ ଆଉ ଯେବେ ରାଜନୀତିରୁ ସେ ଇଚ୍ଛାମୃତ୍ୟୁ ନେବେ ପରବର୍ତ୍ତୀ ସମୟରେ ସାହିତ୍ୟକୁ ନେଇ ସେ ତାଙ୍କର ଅବଶିଷ୍ଟ ଜୀବନ ବିତାଇବେ । ରାଜନୀତି ନୁହେଁ, ସାହିତ୍ୟ ହେଉଛି କାଳଜୟୀ । ଦେଖାଯାଉ ପ୍ରସନ୍ନ କେବେ ରାଜନୀତିରୁ ଇଚ୍ଛାମୃତ୍ୟୁ ନେଉଛନ୍ତି ଆଉ ସାହିତ୍ୟ ଚର୍ଚ୍ଚା କରି ସେ କାଳଜୟୀ ହୋଇପାରୁଛନ୍ତି କି ନାହିଁ । ■

## ପ୍ୟାରୀ ବନାମ ନବୀନ



ଓଡ଼ିଶା ରାଜନୀତିରେ ଏବେ ଗୋଟିଏ ପ୍ରସଙ୍ଗକୁ ନେଇ ଚାଲିଛି ଚର୍ଚ୍ଚା । ତାହା ହେଲା ଯଦି ପ୍ୟାରୀମୋହନ ମହାପାତ୍ର ନଥା'ନ୍ତେ ତେବେ ନବୀନ ପଟ୍ଟନାୟକ ୧୩ ବର୍ଷ ଧରି ସଫଳ ନେତା ହୋଇପାରି ନଥା'ନ୍ତେ । ପୁଣି କ୍ରମାଗତ ଭାବେ ୩ ଥର ମୁଖ୍ୟମନ୍ତ୍ରୀ ହୋଇ ଓଡ଼ିଶା ରାଜନୀତିରେ ରେକର୍ଡ଼ ସୃଷ୍ଟି କରି ନଥା'ନ୍ତେ । ଆଉ ବିଜେପି ସହିତ ମେଂଟ ଭାଙ୍ଗି ଦେଇ ବିଜେଡି ଏକାକୀ ନିର୍ବାଚନରେ ଲଢ଼ି ୧୦୩ ଆସନରେ ବିଜୟୀ ହୋଇ ନଥା'ନ୍ତା । ନବୀନଙ୍କୁ ମୁଖ୍ୟମନ୍ତ୍ରୀ ଚୌକିରେ ବସାଇବା ପଛରେ ପ୍ରଚ୍ଛନ୍ନ ହାତ ରହିଛି ପ୍ୟାରୀମୋହନଙ୍କର । ୨୦୦୯ ନିର୍ବାଚନରେ ସବୁ ଦଳ କିଏ କେତେ ଆସନ ପାଇବ ତାହାକୁ ନେଇ ଆକଳନ କଲେ । ବିଭିନ୍ନ ସଂସ୍ଥା ମଧ୍ୟ ସର୍ଭେ କଲେ । ସରକାରଙ୍କ ଗୋଇନ୍ଦା ସଂସ୍ଥା ମଧ୍ୟ ହିସାବ କଲା । ପ୍ୟାରୀ ମହାପାତ୍ର ମଧ୍ୟ ତାଙ୍କ ହିସାବ କଲେ । ଆଉ ମୁଖ୍ୟମନ୍ତ୍ରୀ ଭାବେ ନବୀନ ଗୋଇନ୍ଦା ବିଭାଗ ରିପୋର୍ଟକୁ ନେଇ ତାଙ୍କ ହିସାବ ମଧ୍ୟ କଲେ । କେବଳ ପ୍ୟାରୀମୋହନଙ୍କୁ ଛାଡ଼ି ଦେଲେ ଅନ୍ୟ କାହା ହିସାବରେ ବିଜେଡି ସଂଖ୍ୟା ଗରିଷ୍ଠତା ହାସଲ କରି ଏକାକୀ ସରକାର ଗଢ଼ିବ ବୋଲି ସ୍ପଷ୍ଟ ହେଉ ନଥିଲା । ପ୍ୟାରୀମୋହନ ପ୍ରଥମେ ୧୦୦ରୁ ଅଧିକ ଆସନରେ ବିଜେଡି ଜିତିବ ବୋଲି ଦୃଢ଼ତା ପ୍ରକାଶ କଲେ । ପ୍ୟାରୀମୋହନଙ୍କ ଏହି ଦୃଢ଼ତାକୁ ତାଙ୍କ ବିରୋଧୀମାନେ ଭିନ୍ନ ଭାବେ ବର୍ଣ୍ଣନା କଲେ ।

ଏପରିକି ପ୍ୟାରୀମୋହନଙ୍କୁ ପାଗଳ ବୋଲି ବିରୋଧୀ ଦଳର କେତେକ ବଡ଼ବଡ଼ ନେତା ବର୍ଣ୍ଣନା କରିବାକୁ ମଧ୍ୟ ପଛାଇଲେ ନାହିଁ । ଏଥିରେ ପ୍ୟାରୀମୋହନ ଦବିଗଲେ । ୧୦୦ରୁ ଅଧିକ ଆସନରେ ବିଜେଡି ଜିତିବ ବୋଲି କହୁଥିବା ପ୍ୟାରୀମୋହନ ତାଙ୍କ ସଂଖ୍ୟା ୮୪କୁ ଖସାଇ ଦେଲେ । କିନ୍ତୁ ପ୍ୟାରୀମୋହନଙ୍କୁ ଯେତେ ସମାଲୋଚନା କଲେ ମଧ୍ୟ ସେ ଆଉ ୮୪ରୁ ଖସିଲେ ନାହିଁ । ସେପଟେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମଧ୍ୟ ପ୍ୟାରୀମୋହନଙ୍କ ଆକଳନକୁ ସହଜରେ ଗ୍ରହଣ କରୁ ନଥା'ନ୍ତି । ମୁଖ୍ୟମନ୍ତ୍ରୀ ଥିବା ହେତୁ ତାଙ୍କ ପାଖକୁ ଜିଲାପାଳଙ୍କ ସମେତ ଗୋଇନ୍ଦା ରିପୋର୍ଟ ଯେଉଁ ଆସୁଥାଏ ତାହାକୁ ଭିତି କରି ନବୀନ ବିଜେଡି ୬୮ ଟି ଆସନରେ ଜିତିବ ବୋଲି ଆକଳନ କଲେ । ସେହି ଅନୁଯାୟୀ ସରକାର ଗଢ଼ିବା ପାଇଁ ଅବଶିଷ୍ଟ ସଂଖ୍ୟା ହାସଲ କରିବା ନିମନ୍ତେ ଉଦ୍ୟମ କରାଯିବା ଉପରେ ସେ ମଧ୍ୟ ଗୁରୁତ୍ୱ ଦେଲେ । ତେବେ ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ବେଳକୁ ପ୍ୟାରୀଙ୍କ ପ୍ରଥମ ଗଣନା ଯାହା ୧୦୦ରୁ ଅଧିକ ହେବ ବୋଲି କହିଥିଲେ ତାହା ହିଁ ସତ ହୋଇଥିଲା । କାହିଁକି ୧୦୦ରେ ନରହି ୮୪କୁ ଖସିଆସିଲେ ବୋଲି ମଧ୍ୟ ପ୍ୟାରୀଙ୍କୁ ପ୍ରଶ୍ନ ହୋଇଥିଲା । ମୁଖ୍ୟମନ୍ତ୍ରୀ ଭାବେ ନବୀନ ଯେତେବେଳେ ଗୋଇନ୍ଦା ରିପୋର୍ଟକୁ ଭିତି କରି ୬୮ ଟି ଆସନ ବିଜେଡି ପାଇବ ବୋଲି ମତ ଦେଲେ ସେତେବେଳୁ ହିଁ ପ୍ୟାରୀ ୧୦୦ରୁ ୮୪କୁ ଖସିଆସିଲେ । ତେବେ ପ୍ୟାରୀଙ୍କ ପ୍ରଥମ ଗଣନା ପୂରାପୂରି ଠିକ୍ ଥିଲା । ଏବେ ରାଜନୀତି ମହଲରେ ଚର୍ଚ୍ଚା ହେଉଛି ପ୍ୟାରୀ ଜଣେ ଭଲ ରାଜନୈତିକ ଜ୍ୟୋତିଷ ବୋଲି । ସେ ଗଣନା କରି ଯାହା କହି ଦେଉଛନ୍ତି ତାହା ହିଁ ହେଉଛି ।  ପ୍ୟାରୀଙ୍କୁ ଚାଣକ୍ୟ ଭାବେ ରାଜନୀତି ମହଲରେ ଚର୍ଚ୍ଚା କରାଯାଉଥିଲା । ଏହି ଚର୍ଚ୍ଚା ଏବେବି ଅଛି । ପ୍ୟାରୀଙ୍କର ଏହି ଚାଣକ୍ୟ ନାମକରଣ ସହିତ ଏବେ ଯୋଡ଼ି ହୋଇଯାଇଛି ଭବିଷ୍ୟ ଗଣନାକାରୀ ନାମକରଣ । ପ୍ୟାରୀ ୨୦୧୪ ନିର୍ବାଚନ ପାଇଁ ଏବେଠାରୁ ଭବିଷ୍ୟ ଗଣନା କରନ୍ତୁ । କେଉଁ ନେତା ଜିତିବେ  ସେ ଏବେଠାରୁ ତାଙ୍କର ଜ୍ୟୋତିଷ ବୁଦ୍ଧି ପ୍ରୟୋଗ କରନ୍ତୁ । ୨୦୦୪ରେ ୬୧, ୨୦୦୯ରେ ୧୦୩ ଆସନ ବିଜେଡିକୁ ମିଳିଥିବାବେଳେ ୨୦୧୪ରେ ୧୪୭ଟି ଆସନ ଯେପରି ବିଜେଡି ପାଇବ ସେ ସମ୍ପର୍କରେ ପ୍ୟାରୀମୋହନ ତାଙ୍କର ଭବିଷ୍ୟ ଗଣନାକୁ ଏବେଠାରୁ ଲଗାଇ ଦିଅନ୍ତୁ । ■

## ସିନେମା ଓ ସୂର୍ଯ୍ୟ



ଏମିତି ମନ୍ତ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ହିନ୍ଦୀ ସିନେମା ଦେଖିବାରେ ଓସ୍ତାଦ ଅଟନ୍ତି । ଏବେ ଦିନେ ଦେଖାଗଲା ସୂର୍ଯ୍ୟ ଓଡ଼ିଆ ସିନେମା ଦେଖିବାକୁ ସିନେମା ହଲ୍‌ରେ ବସିଛନ୍ତି । ପୁଣି ତାଙ୍କ ସହିତ ଅଛନ୍ତି ସିନେମା ଷ୍ଟାରରୁ ରାତାରାତି ନେତା ହୋଇଯାଇଥିବା ବ୍ରହ୍ମପୁର ସାଂସଦ ସିଦ୍ଧାନ୍ତ ମହାପାତ୍ର । ସିନେମାଟି ହେଲା 'ମୁଖ୍ୟମନ୍ତ୍ରୀ' । ଅବଶ୍ୟ ଏହି

ସିନେମାରେ ସିଦ୍ଧାନ୍ତ ନାୟକ ଭୂମିକାରେ ଅଛନ୍ତି । ପୂର୍ବରୁ କେବେହେଲେ ସୂର୍ଯ୍ୟ ସିନେମାରେ ଅଭିନୟ କରିଥିବା ନାୟକଙ୍କ ସହିତ ସିନେମା ଦେଖିବାକୁ ଯାଇ ନଥିଲେ । ଏହି ଦୃଷ୍ଟିରୁ ସୂର୍ଯ୍ୟଙ୍କ ପାଇଁ 'ମୁଖ୍ୟମନ୍ତ୍ରୀ' ସିନେମା ଦେଖିବା ଅନ୍ୟ ସିନେମା ଦେଖିବାଠାରୁ ବ୍ୟତିକ୍ରମ ଥିଲା । ରାଜସ୍ୱ ମନ୍ତ୍ରୀଭାବେ ସୂର୍ଯ୍ୟ ବେଶ୍ ପାୱାରଫୁଲ୍ । କିନ୍ତୁ ସିନେମା ହଲ୍‌ରେ ତାଙ୍କ ପାୱାରକୁ କେହି ଜାଣିବାର ନାହିଁ । ସେଠାରେ ତାଙ୍କଠାରୁ ପାୱାରଫୁଲ ହୋଇଯାଇଥିଲେ ସିଦ୍ଧାନ୍ତ । ସିନେମାର ନାୟକ ସିଦ୍ଧାନ୍ତଙ୍କୁ ସଶରୀରରେ ସିନେମା ହଲ୍‌ରେ ଦେଖିବା ପରେ ଦର୍ଶକଙ୍କ ଦୃଷ୍ଟି ସିଦ୍ଧାନ୍ତଙ୍କ ଉପରେ ରହିଲା । ସୂର୍ଯ୍ୟ ପ୍ରଥମେ ଭାବୁଥିଲେ ବୋଧହୁଏ ସେ ମନ୍ତ୍ରୀ ହୋଇ ସିନେମା ଦେଖିବାକୁ ଆସିଥିବାରୁ ଏହା ଦର୍ଶକଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । ଯେଉଁଥିପାଇଁ ଦର୍ଶକମାନେ ସିନେମା ନ ଦେଖି ତାଙ୍କରି ଆଡ଼କୁ ଚାହୁଁଛନ୍ତି । କିଛି ସମୟ ପରେ ସୂର୍ଯ୍ୟ ଜାଣିପାରିଲେ ଯେ ଦର୍ଶକମାନେ ତାଙ୍କୁ ଦେଖୁନାହାନ୍ତି । ତାଙ୍କ ପାଖରେ ବସିଥିବା ସିଦ୍ଧାନ୍ତଙ୍କୁ ସେମାନେ ଦେଖୁଛନ୍ତି । ସେଠାରେ ସିଦ୍ଧାନ୍ତଙ୍କୁ ସାଂସଦ ବୋଲି କେହି ଜାଣୁନାହାନ୍ତି । ଅନେକ ମଧ୍ୟ ସିଦ୍ଧାନ୍ତଙ୍କୁ ଦେଖିବା ପାଇଁ ପାଖକୁ ଚାଲିଆସିଲେ । କେତେକ ମଧ୍ୟ ହାଏ ବାଏ କଲେ । ଜଣେ ସିନେମା ଅଭିନେତାଙ୍କର କାଟ୍‌ତି କେତେ ଅଛି ତାହା ଏଯାବତ୍ ସୂର୍ଯ୍ୟ ଜାଣିପାରିନଥିଲେ । ଯେହେତୁ ସିଦ୍ଧାନ୍ତଙ୍କୁ ରାଜନୀତିକୁ ସୂର୍ଯ୍ୟ ଆଣିଛନ୍ତି ସେହି ଦୃଷ୍ଟିରୁ ତାଙ୍କୁ ରାଜନୀତିରେ ଗ୍ରହଣୀୟ ହେବା ନିମନ୍ତେ ସୂର୍ଯ୍ୟ ବିଭିନ୍ନ ସମୟରେ ପରାମର୍ଶ ଦେଇ ଆସୁଥିଲେ । କିନ୍ତୁ ସିନେମା ହଲ୍‌ରେ ଯେ ସୂର୍ଯ୍ୟଙ୍କ ଆଲୋକ ନିଷ୍ପ୍ରଭ ହୋଇଗଲା ଆଉ ସିଦ୍ଧାନ୍ତଙ୍କ ଆଲୋକ ଜୋରଦାର ଜଳିଲା ଏହା ଘଟଣାସ୍ଥଳରେ ଥିବା ଯେକୌଣସି ବ୍ୟକ୍ତି ହିଁ ଜାଣିପାରିବେ । ଅବଶ୍ୟ ଏଥିପାଇଁ ସୂର୍ଯ୍ୟ ନିଜକୁ ଗର୍ବିତ ମନେକଲେ । ତାଙ୍କ ସୁପାରିଶକ୍ରମେ ସିଦ୍ଧାନ୍ତଙ୍କୁ ବିଜେଡ଼ି ପକ୍ଷରୁ ଟିକଟ ମିଳିଥିଲା ଆଉ ସିଦ୍ଧାନ୍ତ ମଧ୍ୟ ବିଜୟୀ ହୋଇଥିଲେ । ସିଦ୍ଧାନ୍ତଙ୍କୁ ଯେତେବେଳେ ସିନେମା ହଲରେ ଦେଖିବା ପାଇଁ ଜୋରଦାର ଭିଡ଼ ହେଲା ସେତେବେଳେ ସୂର୍ଯ୍ୟପାତ୍ର ମନକୁ ମନ ନିଜକୁ ଧନ୍ୟବାଦ ଦେଉଥିଲେ । ଚଳଚ୍ଚିତ୍ର ତାରକା ସିଦ୍ଧାନ୍ତଙ୍କର ଏତେ ଦମ୍ ଅଛି ବୋଲି ସେ କେବେ ବି ଭାବିନଥିଲେ । ଯଦି 'ମୁଖ୍ୟମନ୍ତ୍ରୀ' ସିନେମା ଦେଖିବାକୁ ସିଦ୍ଧାନ୍ତଙ୍କ ସହିତ ସୂର୍ଯ୍ୟ ଯାଇ ନଥା'ନ୍ତେ ତାହାହେଲେ ସିଦ୍ଧାନ୍ତଙ୍କ କାଟ୍‌ତି ସୂର୍ଯ୍ୟ ଜାଣିପାରିନଥା'ନ୍ତେ । ଅବଶ୍ୟ ବ୍ରହ୍ମପୁର ଲୋକସଭା ନିର୍ବାଚନମଣ୍ଡଳୀରେ ଓଡ଼ିଆ ସିନେମାର ସେମିତି କିଛି କାଟ୍‌ତି ନାହିଁ । ବରଂ ହିନ୍ଦି କିମ୍ବା ତେଲୁଗୁ ସିନେମାର କାଟ୍‌ତି ଜୋରଦାର ଅଛି । ଯେଉଁଥିପାଇଁ ସିଦ୍ଧାନ୍ତଙ୍କୁ ଦେଖିବା ପାଇଁ ଭୁବନେଶ୍ୱରରେ ଯେତେ ଦର୍ଶକଙ୍କ ଗହଳି ହେଉଛି ବ୍ରହ୍ମପୁରରେ ସେତେ ନାହିଁ । ଆଉ ଯଦି କଟକ, ବାଲେଶ୍ୱର, କେନ୍ଦୁଝରକୁ ସିଦ୍ଧାନ୍ତ ଚାଲିଯିବେ ତାହାହେଲେ ଦର୍ଶକଙ୍କ ଗହଳି ଏଭଳି ହୋଇଯିବ ଯେ ସୋରିଷ ପକାଇବାକୁ ସେଠାରେ ଯାଗା ମିଳିବନାହିଁ । ସୂର୍ଯ୍ୟ ଏବେ ସିଦ୍ଧାନ୍ତଙ୍କୁ ନେଇ କଟକ, ବାଲେଶ୍ୱର, କେନ୍ଦୁଝର ଜିଲ୍ଲାରେ ତାଙ୍କ ଦ୍ୱାରା ଅଭିନୀତ ସିନେମା ଦେଖାନ୍ତୁ । ତାହାହେଲେ ସେ ଜାଣିପାରିବେ ସିଦ୍ଧାନ୍ତଙ୍କ ପାଣିବାର ପଣିଆ କେତେ ବୋଲି । ■

# ଗରିବ ନେତା



୨୦୦୯ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପ୍ରାୟ ସବୁ ନେତାଙ୍କୁ କୋଟିପତି ବୋଲି ଗଣନା କରାଯାଉଥିଲା । ଅବଶ୍ୟ ଯେଉଁ ପ୍ରାର୍ଥୀଙ୍କର ସ୍ଥାବର ଅସ୍ଥାବର ସମ୍ପତି କୋଟିଏ ଟଙ୍କା ହୋଇ ନଥାଇପାରେ କିନ୍ତୁ ନିର୍ବାଚନରେ ସେ କୋଟିଏରୁ ଅଧିକ ଟଙ୍କା ନିଶ୍ଚିତଭାବେ ବ୍ୟୟ କରିଥିବେ । ଏହି ଦୃଷ୍ଟିରୁ ଏଥର ନିର୍ବାଚନରେଯେଉଁମାନେ ବିଜୟୀ ହୋଇ ବିଧାୟକ ହୋଇଛନ୍ତି ସେମାନଙ୍କୁ ଆଉ ଗରିବ ବୋଲି କୁହାଯିବ ନାହିଁ । ଯେଉଁ ପ୍ରସଙ୍ଗଟି ଏଠାରେ କୁହାଯାଉଛି ତାହା ୨୦୦୯ ନୁହେଁ ୨୦୦୪ ନିର୍ବାଚନର । ୨୦୦୪ ନିର୍ବାଚନରେ ମାହାଙ୍ଗାରୁ ବିକ୍ରମ କେଶରୀ ବର୍ମା ବିଜେଡ଼ିରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । ଏମିତି ପ୍ରାର୍ଥୀ ହେବା ପୂର୍ବରୁ ସେ ଥିଲେ ଶିକ୍ଷକ ନେତା । ଅନେକ ସମୟରେ ମଧ ତାଙ୍କ ଗୋଡ଼ରେ ଚପଲ ବି ନଥାଏ । ଖାଲି ପାଦରେ ଚାଲିଚାଲି ସେ ଶିକ୍ଷକଙ୍କ ସଙ୍ଗଠନ କାର୍ଯ୍ୟ ବି କରୁଥିଲେ । ବିଧାୟକ ହୋଇଯିବା ପରେ ଯଦିଓ ତାଙ୍କ ଗୋଡ଼ରେ ଚପଲ ଦେଖିବାକୁ ମିଳିଲା କିନ୍ତୁ ତାଙ୍କର ଜୀବନ ଶୈଳୀରେ କୌଣସି ପରିବର୍ତ୍ତନ ଘଟିଲା ନାହିଁ । ୨୦୦୯ ନିର୍ବାଚନରେ ତାଙ୍କୁ ବିଜେଡ଼ି ମହାଙ୍ଗାରୁ ପ୍ରାର୍ଥୀ କଲା ନାହିଁ ଆଉ ଦଳର ନିଷ୍ପତିକୁ ସମ୍ମାନ ଦେଇ ବିକ୍ରମ ନିର୍ବାଚନ ବି ଲଢ଼ିଲେ ନାହିଁ । ନିର୍ବାଚନପରେ ବିକ୍ରମ ଯାଇଥିଲେ ନବୀନ ନିବାସ । ସେଠାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ସେ ସାକ୍ଷାତ କଲେ । ଏହି ସାକ୍ଷାତ ସମୟରେ ବିକ୍ରମ ଅଳ୍ପ ସମୟ ମଧ୍ୟରେ ବହୁ କଥା ମୁଖ୍ୟମନ୍ତ୍ରୀଙ୍କ କାନରେ ପକାଇବା ପାଇଁ ଉଦ୍ୟମ କଲେ । ଏମିତି ନିଜ ସମ୍ପର୍କରେ ମଧ ସେ କହିଚାଲିଲେ । ସତେଯେମିତି ସେ ବିଧାୟକ ଥିବା ସମୟରେ ତାଙ୍କୁ ନବୀନ ଚିହ୍ନି ନଥିଲେ । ବିକ୍ରମ କହିଚାଲିଥା'ନ୍ତି । ହଠାତ୍ ସେ ନିଜକୁ ଜଣେ ଗରିବ ନେତାବୋଲି ନବୀନଙ୍କ ଆଗରେ ବଖାଣିଲେ । ପୁଣି ବିଧାୟକ ହେବା ପୂର୍ବରୁ ଯେପରି ଗରିବ ସେ ଥିଲେ ସେହିପରି ଏବେ ଗରିବ ଅଛନ୍ତି ବୋଲି ସେ କହିଲେ । ଗରିବ ନେତା ଯୋଗୁ ତାଙ୍କ ପ୍ରତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଦୃଷ୍ଟି ପଡୁ ବୋଲି ସେ ମଧ ଅନୁରୋଧ କଲେ । ବିକ୍ରମ ନିଜକୁ ଗରିବ ନେତା ବୋଲି କହୁଥିବାବେଳେ ନବୀନ ତାଙ୍କ କାନ୍ଧରେ ହାତ ରଖି ମୁଁ ସବୁ ଜାଣିଛି ବୋଲି କହିବାକୁ ମଧ ପଛାଇ ନଥିଲେ । ଏବେ ବିକ୍ରମ ମୁଖ୍ୟମନ୍ତ୍ରୀଙ୍କୁ ନିଜର ଦାରିଦ୍ର୍ୟ ସମ୍ପର୍କରେ ଜଣାଇଦେଇ ବେଶ୍ ଆଶ୍ୱସ୍ତି ଅଛନ୍ତି । ■



# ହସ୍ତରେଖା ବିଶାରଦ ପ୍ୟାରୀ

ଭୁବନେଶ୍ୱର, କଟକ ଓ ବାରିପଦା ପୌର ନିର୍ବାଚନରେ ବିଜେଡ଼ି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଯେଉଁ ଗଣନା କରିଥିଲେ ତାହା ଶହେ ପ୍ରତିଶତ ସତ ହୋଇଥିଲା । କୁଆଡ଼େ ଭୋଟର ଭୋଟ ଦେଉଥିବା ଇଭିଏମ୍ ମେସିନ୍‌ରେ ପ୍ୟାରୀ ପ୍ରଶାସନ କଳକୁ ଚାପ

ପକାଇ ଏମିତି କାରବାର କରିଦେଇଥିଲେ ଯେ, କଂଗ୍ରେସ ଓ ବିଜେପି ଭୋଟର ସେମାନଙ୍କ ଚିହ୍ନରେ ଥିବା ବଟମ୍ ଚିପିଲା ବେଳକୁ ତାହା ବିଜେଡ଼ି ର ଶଙ୍ଖ ଚିହ୍ନକୁ ଚାଲିଯାଉଥିଲା । ପ୍ୟାରୀ ବିଜେଡ଼ି ଯେତିକି ଆସନ ପାଇବ ବୋଲି କହୁଥିଲେ ସେତିକିରୁ ଗୋଟିଏ ଅଧିକ କି ଗୋଟିଏ କମ୍ ହେଉ ନଥିବାରୁ ଇଭିଏମ୍ ମେସିନ୍‌କୁ ସେଭଳି କରିଦିଆଯାଇଥିବାର ସନ୍ଦେହ ପ୍ରକାଶ ପାଇବା ସ୍ୱାଭାବିକ । କିନ୍ତୁ ପ୍ୟାରୀ କେମିତି ଗଣନା କରୁଥିଲେ ତାହାର ଖୋଜଖବର ନେବାର ଆବଶ୍ୟକତା ରହିଛି । ପ୍ୟାରୀଙ୍କ ନୀତି ହେଲା ପଙ୍କକୁ ଯିବ କାହିଁକି ଗୋଡ଼ ଧୋଇବ କାହିଁକି । ଅର୍ଥାତ୍ ମୂଳରୁ କିଏ ଜିତିବ ଆଉ କିଏ ହାରିବ ଜାଣିଗଲେ ଆଉ ଅସୁବିଧା ନାହିଁ । କିନ୍ତୁ ଏହି ହାରଜିତ ଜାଣିବା ଏକ ଗହନ ବ୍ୟାପାର । ବୁଝୁବୁଝୁ ଜଣାପଡ଼ୁଛି ପ୍ୟାରୀମୋହନ କୁଆଡ଼େ ଭଲ ହାତ ଦେଖନ୍ତି । ହାତ ଦେଖିଦେଇ ସେ କହିଦେବେ ଜଣେ ବ୍ୟକ୍ତିଙ୍କର ଅତୀତ, ବର୍ତମାନ ଓ ଭବିଷ୍ୟତ କଥା । ଏହା କେହି ବି ଜାଣି ନଥିଲେ । ଏବେ ପ୍ୟାରୀଙ୍କ ନାମ ଆଗରେ ଏହି ବିଶେଷଣ ସହିତ ଯୋଡ଼ି ହୋଇଯାଇଛି ଆଉ ଏକ ପ୍ରସଙ୍ଗ । ତାହା ହେଲା ପ୍ୟାରୀ ମଣିଷ ଦେଖିବା ମାତ୍ରେ କୁଆଡ଼େ ତାଙ୍କର ପ୍ରକୃତି କ'ଣ ଜାଣିଯାଆନ୍ତି । ମାନେ କପାଳ ଦେଖିଦେଲେ ସେ କୁଆଡ଼େ ଜାଣିଯାଆନ୍ତି କେଉଁ ମଣିଷ କେଉଁ ପ୍ରକୃତିର । ତେବେ ପ୍ୟାରୀଙ୍କର ବିଶେଷ ଯୋଗ୍ୟତା ହେଲା ସେ ଭଲ ହାତ ଦେଖନ୍ତି, ହସ୍ତରେଖାକୁ ଅନୁଶୀଳନ କରନ୍ତି ଏବଂ ଭବିଷ୍ୟତରେ ସେହି ବ୍ୟକ୍ତି ବିଜୁ ଜନତା ଦଳ ଓ ନବୀନ ଏବଂ ତାଙ୍କ ପାଇଁ କେତେଦୂର ବିଶ୍ୱସ୍ତ ରହିବେ ସେ ଦିଗରେ ମଧ ନେତାଙ୍କ ହାତ ଦେଖିଲା ବେଳେ ସେ ଗଣନା କରିଦିଅନ୍ତି । କିଏ ଟିକେଟ ପାଇବ ନପାଇବ ତାହା ଦୂରର କଥା । ପୁଣି ଟିକେଟ ପାଇଲେ କିଏ ଜିତିବ ଆଉ ନଜିତିବ ତାହା ଅନ୍ୟ କଥା । ତେବେ ହସ୍ତରେଖା ବିଶାରଦ ପ୍ୟାରୀମୋହନ କାହାକୁ ଟିକେଟ ଦେଲେ ସେ ବିଜୟୀ ହେବେ ସେ ସମ୍ପର୍କରେ ହାତ ଦେଖି ଜାଣିପାରନ୍ତି । ତେଣୁ ପ୍ୟାରୀଙ୍କୁ ଟେନ୍‌ସନ୍ ଆସି ନଥାଏ । ସେ ପୂର୍ବରୁ ଜାଣିଥା'ନ୍ତି କାହାର ବିଜୟ ହେବ ବୋଲି । ନଚେତ ବିଜେପି ଆଉ ବିଜେଡ଼ି ମେଂଟ ଭାଙ୍ଗିବା ପାଇଁ ପ୍ୟାରୀ ସାହସ କରି ନଥା'ନ୍ତେ । ପୁଣି ବିଜେଡ଼ି ଉପରେ ଚାପ ଥାଇ ମଧ ପ୍ୟାରୀମୋହନଙ୍କ ମୁହଁରେ ହସ ନଥା'ନ୍ତା ଆଉ ଟେନ୍‌ସନ୍ ତାଙ୍କ ଠାରୁ ଦୂରରେ ନଥା'ନ୍ତା । ପ୍ୟାରୀମୋହନ ବୋଧହୁଏ ନବୀନଙ୍କ ହସ୍ତରେଖାକୁ ଅନୁଶୀଳନ କରିସାରିଛନ୍ତି ଆଉ ଏହି ଅନୁଶୀଳନରୁ ସେ ଜାଣିପାରିଥିଲେ ନବୀନ ତୃତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ହେବେ ବୋଲି । ଯେଉଁଥିପାଇଁ ବିଜେଡ଼ି ଓ ବିଜେପିର ମଧୁଚନ୍ଦ୍ରିକାକୁ ଭାଙ୍ଗି ଦେବା ପାଇଁ ସେ ନବୀନଙ୍କୁ ପରାମର୍ଶ ଦେଇଥିଲେ । ମାନିବାକୁ ପଡ଼ିବ ପ୍ୟାରୀଙ୍କର ହସ୍ତରେଖା ବିଶାରଦ ପଣିଆକୁ । ■



# ହନୁମାନ ଭକ୍ତ ଦାମ

ଅନ୍ଧ ଥରେ ବାଡ଼ି ହଜାଇବା ପରେ ଦ୍ୱିତୀୟ ଥର ଯେପରି ସେ ଭୁଲ କରେ ନାହିଁ ସେହିଭଳି ଅବସ୍ଥା ହୋଇଛି ଡାକ୍ତର ଦାମୋଦର ରାଉତଙ୍କର । ବହୁ ଘାତ ପ୍ରତିଘାତ ପରେ ଦାମୋଦର ପାରଦ୍ୱୀପରୁ ବିଜୟୀ ହୋଇଛନ୍ତି । ପୁଣି ମନ୍ତ୍ରୀମଣ୍ଡଳକୁ ଫେରିଛନ୍ତି । ଦାମୋଦରଙ୍କୁ ମିଳିଛି ଗତ ମନ୍ତ୍ରୀମଣ୍ଡଳରେ ବିଜେପିର ବରିଷ୍ଠ ମନ୍ତ୍ରୀଥିବା ବିଶ୍ୱଭୂଷଣ ହରିଚନ୍ଦନଙ୍କ ପ୍ରକୋଷ୍ଠ । ଏମିତି ତ ଏହି ପ୍ରକୋଷ୍ଠକୁ ଅଭିଶପ୍ତ ପ୍ରକୋଷ୍ଠ ବୋଲି କୁହାଯାଉଛି । ଏହି ପ୍ରକୋଷ୍ଠରେ ଯିଏ ବସନ୍ତି ପରବର୍ତ୍ତୀ ସମୟରେ ସେ ନିର୍ବାଚନରେ ପରାଜିତ ହୋଇଥା'ନ୍ତି କିମ୍ବା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ଟିକଟ ପାଇ ନଥା'ନ୍ତି। ବସନ୍ତ ବିଶ୍ୱାଳ ଏହି ପ୍ରକୋଷ୍ଠରେ ବସିଥିଲେ । ସେ ନିର୍ବାଚନରେ ପରାଜିତ ହୋଇଥିଲେ ଏବଂ ସମୟ ଏମିତି ଆସିଲା ସେ ଆଉ ନିର୍ବାଚନ ଲଢ଼ିପାରିଲେ ନାହିଁ । । ରାମକୃଷ୍ଣ ପଟ୍ଟନାୟକ ଏହି ପ୍ରକୋଷ୍ଠରେ ମଧ୍ୟ ବସୁଥିଲେ । ତାଙ୍କର ପରାଜୟ ଏମିତି ହେଉଛି ଯେ ବିଜୟର ଆଶା ବି ସେ ଦେଖିପାରୁନାହାନ୍ତି । ଏସବୁ କୁଆଡ଼େ ପ୍ରକୋଷ୍ଠର ଦୋଷବୋଲି କୁହାଯାଉଛି । ଏହି ପ୍ରକୋଷ୍ଠଟି ପ୍ରଥମେ ମିଳିଥିଲା ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କୁ । ସେ ତୁରନ୍ତ ଏହି ପ୍ରକୋଷ୍ଠରେ ନ ବସିବା ପାଇଁ ଲେଖିକରି ଜଣାଇଦେଲେ । ଏହାପରେ ଦାମୋଦରଙ୍କୁ ପ୍ରକୋଷ୍ଠଟି ମିଳିଲା । ଦାମୋଦରଙ୍କୁ ମଧ୍ୟ କୁହାଗଲା ଏହା ଏକ ଅଭିଶପ୍ତ ପ୍ରକୋଷ୍ଠ ବୋଲି । ପ୍ରଥମେ ଦାମୋଦର ଏଥିପ୍ରତି କାନ ଦେଲେନାହିଁ । ପ୍ରକୋଷ୍ଠରେ ବସି କାମଦାମ ଆରମ୍ଭ କଲେ । କେଜାଣି କାହିଁକି ତାଙ୍କ ମନକୁ ସନ୍ଦେହ ଘାରିଲା । ଏହାପରେ ପ୍ରକୋଷ୍ଠ ଭିତର କାନ୍ଥର ଚାରିଦିଗରେ ପଂଚମୁଖୀ ହନୁମାନଙ୍କର ଫଟୋ ରଖାଗଲା । ଦାମୋଦର ପ୍ରକୋଷ୍ଠରେ ପ୍ରବେଶ କରି ଚୌକିରେ ବସିବା ପୂର୍ବରୁ ଆଗ ଚାରିପଟେ ଲଗାହୋଇଥିବା ପଂଚମୁଖୀ ହନୁମାନଙ୍କୁ ମୁଣ୍ଡିଆ ମାରୁଛନ୍ତି । ତା'ପରେ ଚୌକିରେ ବସୁଛନ୍ତି । ଯେତେ ବିପଦ ଆସିଲେ ମଧ୍ୟ ହନୁମାନଙ୍କୁ ଜପିଲେ ସବୁ ଟଳିଯାଏ । ଏମିତି ଦାମୋଦରଙ୍କ ଗୋଟିଏ ଗୁଳିରେ ଦୁଇଟି ଶିକାର ହୋଇଛି । ମାନେ ପ୍ରକୋଷ୍ଠଟିକୁ ଅଭିଶପ୍ତରୁ ସେ ମୁକୁଳାଇବେ ଆଉ ମନ୍ତ୍ରୀଭାବେ ବିନା ବିପଦରେ କାମ କରିବେ । ଦେଖାଯାଉ ଦାମୋଦରଙ୍କ ପାଇଁ ହନୁମାନ ଭକ୍ତି କେତେଦୂର କାମ ଦେଉଛି । ■

# ନବୀନ - ପ୍ୟାରୀ ସମ୍ପର୍କ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏବଂ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ମଧ୍ୟରେ କ'ଣ ନିଗୂଢ଼ ସମ୍ପର୍କ ରହିଛି ତାହା ବୋଧହୁଏ କେହି ଜାଣନ୍ତି ନାହିଁ । ଏମିତି ତ ଚର୍ଚ୍ଚା ହୁଏ ନବୀନ ପଟ୍ଟନାୟକ ଯେତେବେଳେ ମୁଖ୍ୟମନ୍ତ୍ରୀ ହେଲେ ସେତେବେଳେ ଶାସନ ସମ୍ପର୍କରେ ତାଙ୍କର ଆଦୌ ଧାରଣା ନଥିଲେ ମଧ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ଯୋଗୁଁ ତାଙ୍କର କୌଣସି ସମସ୍ୟା ହେଉ ନଥିଲା । ମାନେ ମୁଖ୍ୟମନ୍ତ୍ରୀ ଚୌକିଟି ନବୀନଙ୍କର

ଆଉ ଶାସନ ଚଳାଇବା କାମଟି ଥିଲା ପ୍ୟାରୀମୋହନ ମହାପାତ୍ରଙ୍କର । ୨୦୦୦ ମସିହାରେ ଏମିତି ପ୍ୟାରୀମୋହନଙ୍କର ବିଶେଷ କିଛି ଶତ୍ରୁ ନଥିଲେ । ନବୀନଙ୍କୁ ଆଗରେ ରଖି ପ୍ୟାରୀମୋହନ ପଛରେ ରହି କାମ କରୁଥିଲେ । ଯେତେବେଳେ ନଳିନୀ ମହାନ୍ତି, କମଳା ଦାସ ମନ୍ତ୍ରିମଣ୍ଡଳରୁ ବାହାରିଗଲେ ସେତେବେଳେ ଜଣାପଡ଼ିଲା ଯେ, ପ୍ୟାରୀମୋହନ ମହାପାତ୍ରଙ୍କର ଭୂମିକା ବିଜେଡି ରାଜନୀତିରେ ଯଥେଷ୍ଟ ଅଛି ବୋଲି । ପୁଣି ଯେତେବେଳେ ରାମକୃଷ୍ଣ ପଟ୍ଟନାୟକ, ଦିଲୀପ ରାୟ, ଅର୍ଚ୍ଚନା ନାୟକ, ବ୍ରଜ ତ୍ରିପାଠୀ ଦଳରୁ ବାହାରିଗଲେ ସେତେବେଳେ ସ୍ପଷ୍ଟ ହୋଇଗଲା ଯେ, ପ୍ୟାରୀମୋହନ ମହାପାତ୍ର ହେଉଛନ୍ତି ବିଜେଡିରେ କରି କରାଉଥାଏ ମୁହିଁ ବୋଲି । ଅବଶ୍ୟ ୨୦୦୦ ନିର୍ବାଚନରେ ବିଜୟ ମହାପାତ୍ରଙ୍କ ଟିକେଟ ଯେତେବେଳେ କଟିଗଲା ସେତେବେଳ ଠାରୁ ସେ ପ୍ୟାରୀମୋହନ ମହାପାତ୍ରଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେ । କିନ୍ତୁ ବିଜୟ ମହାପାତ୍ରଙ୍କ ସେ ଅଙ୍ଗୁଳି ନିର୍ଦ୍ଦେଶକୁ କେହି ବୁଝିପାରି ନଥିଲେ । ପ୍ୟାରୀମୋହନ ମହାପାତ୍ର ୨୦୦୪ ମସିହା ବେଳକୁ ବିଜେଡି ରାଜନୀତିରେ ଆଗକୁ ଆସିଲେ ।




ଯେତେବେଳେ ସେ ନିର୍ଦ୍ଧାରିତ ସମୟର ଏକବର୍ଷ ପୂର୍ବରୁ ବିଧାନସଭା ନିର୍ବାଚନ କରାଇବା ପାଇଁ ନିଷ୍ପତି ନେଲେ ସେତେବେଳ ଠାରୁ ବିଜେଡିରେ କେତେକ ନେତା ତାଙ୍କୁ ବିରୋଧ କରିବା ଆରମ୍ଭ କରିଥିଲେ । ପୁଣି ଯେତେବେଳେ ସେ ରାଜ୍ୟସଭା ସଭ୍ୟ ଭାବେ ପ୍ରାର୍ଥୀ ହେଲେ ସେତେବେଳେ ମଧ୍ୟ ବିଜେଡିର କେତେକ ବରିଷ୍ଠ ନେତା ବି ତାଙ୍କୁ ବିରୋଧ କରିଥିଲେ । ପ୍ୟାରୀମୋହନ ମହାପାତ୍ରଙ୍କୁ ବିଜେଡିରେ ବିରୋଧ କରିବା ଆରମ୍ଭ ହୋଇଥିଲା ୨୦୦୪ ମସିହାରୁ । ସେହି ଦିନଠାରୁ ବିଜେଡିରେ କେତେକ ତୁଙ୍ଗନେତା ତାଙ୍କୁ ବିରୋଧ କରିଆସୁଛନ୍ତି । ଏମିତି ଯେଉଁମାନଙ୍କର ଟିକେଟ କଟିଯାଉଛି ପୁଣି ଯେଉଁମାନେ ଆଶାୟୀ ହୋଇ ଟିକେଟ ପାଉନାହାନ୍ତି ପୁଣି ଯେଉଁମାନେ ମନ୍ତ୍ରୀ ହୋଇପାରୁନାହାନ୍ତି ପୁଣି ମନ୍ତ୍ରୀ ହୋଇବି ସେମାନଙ୍କ ପସନ୍ଦ ବିଭାଗ ଯେଉଁମାନେ ପାଉନାହାନ୍ତି ସେମାନେ ପ୍ୟାରୀମୋହନ ମହାପାତ୍ରଙ୍କୁ ଏଥିପାଇଁ ଦାୟୀ କରୁଛନ୍ତି । ଉପରେ ଉପରେ ପ୍ୟାରୀମୋହନଙ୍କୁ ସେମାନେ ନମସ୍କାର କରୁଥିଲେ ମଧ୍ୟ ଭିତରେ ଭିତରେ ପ୍ୟାରୀମୋହନଙ୍କୁ ସେମାନେ ତୀବ୍ର ଘୃଣା କରୁଛନ୍ତି । ୨୦୦୯ ନିର୍ବାଚନ ପରେ ଏମିତି କିଛି ଘଟଣା ଘଟିଲା ଯେଉଁଥିପାଇଁ ପ୍ୟାରୀମୋହନ ଗୁରୁତ୍ୱ ହରାଇଛନ୍ତି ବୋଲି ବିଜେଡିରେ ଥିବା ତାଙ୍କର ବିରୋଧୀମାନେ ପ୍ରକାଶ୍ୟରେ କହିବାକୁ ପଛାଇଲେନାହିଁ । ତେବେ ପ୍ୟାରୀମୋହନ ଓ ନବୀନଙ୍କ ମଧ୍ୟରେ ଥିବା ଭିତିରି ସମ୍ପର୍କକୁ ଜାଣିଗଲେ ଆଉ କେହି ପ୍ୟାରୀମୋହନଙ୍କୁ ବିରୋଧ କରିବେ ନାହିଁ । ଏବେ ଦେଖିବା ସେହି ଭିତିରି ସମ୍ପର୍କଟି କ'ଣ । ଏମିତି ଜଣାପଡ଼ିଛି ଯେ, ନବୀନ ଓ ପ୍ୟାରୀମୋହନଙ୍କ ମଧ୍ୟରେ ଏକ ଅଲିଖିତ ଚୁକ୍ତିନାମା

ରହିଛି । ଆଉ ଏହି ଅଲିଖିତ ଚୁକ୍ତିନାମାର ମୁଖ୍ୟ ନାୟକ ହେଲେ ପ୍ୟାରୀମୋହନ ମହାପାତ୍ର । ନବୀନ ପଟ୍ଟନାୟକଙ୍କୁ ସେ ଆଗରେ ରଖିଛନ୍ତି । ଓଡ଼ିଶାର ବିକାଶ ପାଇଁ ନବୀନ ପଟ୍ଟନାୟକ ଆଗେଇ ଯାଆନ୍ତୁ, ସବୁ ଶ୍ରେୟ ନବୀନଙ୍କ ମୁଣ୍ଡରେ ଯାଉ ଆଉ ନିନ୍ଦା ଅପବାଦ ସବୁ ପ୍ୟାରୀମୋହନଙ୍କ ଆଡ଼କୁ ଆସୁ । ଏହା ହିଁ ହେଉଛି ନବୀନ ଓ ପ୍ୟାରୀମୋହନଙ୍କ ମଧ୍ୟରେ ଅଲିଖିତ ଚୁକ୍ତିନାମା । ଏହି ଦୃଷ୍ଟିରୁ ନବୀନ ଓ ପ୍ୟାରୀ ଅଲଗା ବୋଲି କୁହାଯାଇପାରିବ ନାହିଁ । ନବୀନଙ୍କୁ ମୁଖ୍ୟମନ୍ତ୍ରୀ କରାଇବାରେ ପ୍ୟାରୀଙ୍କର ଭୂମିକାକୁ କେହି ଅସ୍ୱୀକାର କରିବେ ନାହିଁ । ଯେଉଁଠି ନିନ୍ଦା, ଅପବାଦକୁ ନିଜ ଆଡ଼କୁ ଆଣି ପ୍ରଶଂସାକୁ ନବୀନଙ୍କୁ ଦେବାରେ ପ୍ୟାରୀ ଅହରହ ଉଦ୍ୟମରତ ସେ କ୍ଷେତ୍ରରେ ନବୀନ ପଟ୍ଟନାୟକଙ୍କର ପ୍ୟାରୀମୋହନଙ୍କ ପ୍ରତି ଅବିଶ୍ୱାସ ଭାବ ସୃଷ୍ଟି ହେବାର କୌଣସି କାରଣ ନାହିଁ । ଯଦି ପ୍ୟାରୀମୋହନ କ୍ଷମତାଲୋଭୀ ହୋଇଥା'ନ୍ତେ ଆଉ ନବୀନଙ୍କ ସହିତ ତାଙ୍କର ହୋଇଥିବା ଅଲିଖିତ ଚୁକ୍ତିନାମାକୁ ଭଙ୍ଗ କରିବାର ପ୍ରୟାସ କରନ୍ତେ ତେବେ ନବୀନ ଓ ପ୍ୟାରୀଙ୍କ ମଧ୍ୟରେ ଥିବା ସମ୍ପର୍କ ତୁଟନ୍ତା । ଏହା ବୋଧହୁଏ ବିଜେଡିରେ ଅଧିକାଂଶ ନେତା ଓ କର୍ମୀ ଜାଣନ୍ତି ନାହିଁ । ଅବଶ୍ୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ହୁଅନ୍ତୁ କି ପ୍ୟାରୀମୋହନ ମହାପାତ୍ର ହୁଅନ୍ତୁ ସେମାନଙ୍କ ପାଖକୁ ସାଧାରଣ କର୍ମୀ କିମ୍ବା ନେତା ପହଂଚିବା ସମ୍ଭବ ହୁଏନାହିଁ । ଯେଉଁ ତୁଙ୍ଗନେତା ସେମାନଙ୍କ ନିକଟକୁ ଯାଆନ୍ତି ସେମାନେ ନବୀନ ଓ ପ୍ୟାରୀଙ୍କ ମଧ୍ୟରେ ସମ୍ପର୍କ କ'ଣ ତାହା ଖୋଜିବାକୁ ସାମାନ୍ୟତମ ଉଦ୍ୟମ ବି କରି ନଥା'ନ୍ତି । ନିଜ ସ୍ୱାର୍ଥ ପାଇଁ ସେମାନେ ଯାଇଥା'ନ୍ତି । ତେଣୁ ପ୍ୟାରୀମୋହନ ଓ ନବୀନଙ୍କ ମଧ୍ୟରେ ସମ୍ପର୍କ କ'ଣ ତାହା ମଧ୍ୟ ବିଜେଡି ମହଲରେ ରହସ୍ୟ ହୋଇରହିଯାଇଛି । ଏବେ ନବୀନ ଓ ପ୍ୟାରୀଙ୍କ ମଧ୍ୟରେ ଶୀତଳଯୁଦ୍ଧ ଚାଲିଛି ବୋଲି ପ୍ୟାରୀଙ୍କର ବିରୋଧୀମାନେ ବେଳେବେଳେ ଯେଉଁ ପ୍ରଚାର କରନ୍ତି ସେଥିରେ ଯେ ଆଦୌ ସତ୍ୟତା ନାହିଁ ଏହା ଅତ୍ୟନ୍ତ ସ୍ପଷ୍ଟ । ଯିଏ ନବୀନଙ୍କ ପାଖକୁ ଯାଉଥିବ ଆଉ ପୁଣି ପ୍ୟାରୀଙ୍କ ପାଖକୁ ମଧ୍ୟ ଯାଉଥିବ ପୁଣି ଉଭୟଙ୍କ ପାଖରେ ରହି ପ୍ୟାରୀ ଓ ନବୀନଙ୍କର ସମ୍ପର୍କ କ'ଣ ତାହା ଜାଣିବା ପାଇଁ ଉତ୍ସୁକତା ପ୍ରକାଶ କରୁଥିବ ସେ ହିଁ ଜାଣିପାରିବ ଯେ, ପ୍ୟାରୀ ଓ ନବୀନଙ୍କ ମଧ୍ୟରେ ରହିଛି ଏକ ଅଲିଖିତ ଚୁକ୍ତିନାମା । ଆଉ ଏହି ଅଲିଖିତ ଚୁକ୍ତିନାମା ଅନୁଯାୟୀ ବିଜେଡିରେ ଚାଲିଛି ନବୀନ-ପ୍ୟାରୀ ରାଜନୀତି । ■

## ଢ଼ାଲି ଓ ବେଦ୍ଦୁ




ଏମିତି ବେଳେବେଳେ ଜଣେଜଣେ ବ୍ୟକ୍ତିଙ୍କ ପାଇଁ ନିର୍ଦ୍ଦିଷ୍ଟ ବ୍ୟକ୍ତି ଅଶୁଭ ହୋଇଯା'ନ୍ତି । ସେମିତି ଘଟଣା ଘଟିଛି ଅରବିନ୍ଦ ଢ଼ାଲିଙ୍କ ଠାରେ । ୨୦୦୦ ମସିହାରେ ଅରବିନ୍ଦ ଢ଼ାଲି ମନ୍ତ୍ରୀ ଥିଲେ । ଦଳ ତାଙ୍କର ବିଜେପି ଥିଲା । ସେହି ସମୟରେ ବିଜେପିର ବେଦପ୍ରକାଶ ଅଗ୍ରୱାଲ ମଧ୍ୟ ମନ୍ତ୍ରୀ ଥିଲେ । ୨୦୦୪ରେ ଉଭୟ ହାରିଲେ । ଏମିତି ଅରବିନ୍ଦଙ୍କର ପାଗଯୋଗ ଠିକ୍ ହୋଇଯାଇଥିଲା ଯେ ସେ ଯୋଜନା

ବୋର୍ଡ଼ ଉପାଧ୍ୟକ୍ଷ ହେବେବୋଲି । ସେ ମଧ୍ୟ ତୟାର ହୋଇଯାଇଥିଲେ । କିନ୍ତୁ ଅତି ଆକସ୍ମିକଭାବେ ଧୂମକେତୁ ପରି ପଶିଆସିଲେ ବେଦପ୍ରକାଶ ଅଗ୍ରୱାଲ । ସେ ରାତାରାତି ହୋଇଗଲେ ଯୋଜନା ବୋର୍ଡ ଉପାଧ୍ୟକ୍ଷ । ଢ଼ାଲିଙ୍କ ପାଇଁ ବେଦପ୍ରକାଶ କେବଳ ଯେ ଧୂମକେତୁ ଥିଲେ ତାହାନୁହେଁ । ତାଙ୍କ ପାଇଁ ଢ଼ାଲିଙ୍କର ରାଜନୀତିରେ ପତନ ବି ଘଟିଲା । ସେ ବିଜେପି ଛାଡ଼ିଲେ ଏବଂ ଭାରତୀୟ ଜନଶକ୍ତି ପାର୍ଟି ଓ ପରେ ସମାଜବାଦୀ ପାର୍ଟିରେ ଯୋଗଦେଲେ । ଏହି ଦୁଇପାର୍ଟି ଛାଡ଼ିବା ପରେ ଢ଼ାଲି ବିଜେଡ଼ିକୁ ଆସିଲେ । ବହୁ କୁସ୍ତି କସରତ କରି ସେ ଜୟଦେବରୁ ବିଜେଡ଼ି ଟିକଟରେ ନିର୍ବାଚିତ ହେଲେ । ୪ ଥର ବିଧାୟକ ହୋଇଥିବା ଢ଼ାଲିଙ୍କ ଭାଗରେ ଏଥର ମନ୍ତ୍ରୀପଦ ପଡ଼ିବ ବୋଲି ସେ ଭାବିନେଇଥିଲେ । କିନ୍ତୁ କେନ୍ଦ୍ରାପଡ଼ା ରାଜନୀତି ତାଙ୍କ ପାଇଁ ବାଧକ ହେଲା । ଆଉ କାକତଳୀୟ ନ୍ୟାୟରେ ଢ଼ାଲିଙ୍କ ପାଇଁ ବାଧକ ହେଲେ ସେହି ପୁରୁଣା ବେଦ ପ୍ରକାଶ ଅଗ୍ରୱାଲ । ବିଜେଡ଼ିରେ ଅତନୁ ସବ୍ୟସାଚୀ ନାୟକ ୨୦୦୦ ମସିହାରେ ପ୍ରାର୍ଥୀ ହୋଇଥିଲେ । ସେ ବିଜୟ ମହାପାତ୍ରଙ୍କୁ କାଟି ଟିକଟ ନେଇଥିଲେ କିନ୍ତୁ ହାରିଥିଲେ । ୨୦୦୪ରେ ପାଟକୁରାରୁ ଅତନୁ ବିଜୟ ମହାପାତ୍ରଙ୍କୁ ହରାଇ ବିଜୟୀ ହୋଇଥିଲେ । ଏଥର ମହାକାଳପଡ଼ାରୁ ସେ ବିଜୟୀ ହେବାପରେ ମନ୍ତ୍ରୀ ହେବା ସୁନିଶ୍ଚିତ ଥିଲା । କିନ୍ତୁ ବେଦ ପ୍ରକାଶ ମନ୍ତ୍ରୀ ହେବା ପାଇଁ ଜୋରଦାର ଯୋଜନା ଚଳାଇଲେ । ଏହାପରେ ଆରମ୍ଭ ହୋଇଗଲା ମନ୍ତ୍ରୀ ହେବାପାଇଁ କେଉଁ ଯୋଗ୍ୟତା ଥିବା ଦରକାର । ବେଦ୍ ପ୍ରକାଶଙ୍କୁ ଆଖି ଆଗରେ ରଖି ଯୋଜନା ହେଲା ଅନ୍ୟଦଳ ଛାଡ଼ି ଆସିଥିବା ନେତାଙ୍କୁ ମନ୍ତ୍ରୀ କରାଯିବ ନାହିଁ । ଏଥିରେ କିନ୍ତୁ ବିଚରା ଅରବିନ୍ଦ ବଳି ପଡ଼ିଲେ । ଆଉ ସେ ମନ୍ତ୍ରୀ ହୋଇପାରିଲେ ନାହିଁ । ଏଥର ମଧ୍ୟ ମନ୍ତ୍ରୀ ହେବାରେ ତାଙ୍କ ପାଇଁ ବାଧକ ହୋଇଗଲେ ବେଦ ପ୍ରକାଶ । ଏମିତି ବେଦପ୍ରକାଶଙ୍କ ସହିତ ଅରବିନ୍ଦଙ୍କର ସେମିତି କିଛି ଖରାପ କି ଭଲ ସମ୍ପର୍କ ନାହିଁ । କିନ୍ତୁ କ'ଣ ହୋଇଛି କେଜାଣି ଅରବିନ୍ଦଙ୍କ ପାଇଁ ବେଦପ୍ରକାଶ ସବୁବେଳେ ବାଧକ ହେଉଛନ୍ତି । ବୋଧହୁଏ ପୂର୍ବଜନ୍ମରେ ଉଭୟେ ପରସ୍ପରର ଶତ୍ରୁଥିଲେ । ଏ ଜନ୍ମରେ ତାର ପୁନରାବୃତ୍ତି ଘଟୁଛି । ଭବିଷ୍ୟତରେ ଯେପରି ବେଦପ୍ରକାଶ ଆଉ ବାଧକ ନ ହୁଅନ୍ତି ସେଥିପାଇଁ ଏବେଠାରୁ ଅରବିନ୍ଦ ପୂଜାର୍ଚ୍ଚନା କରନ୍ତୁ । ■

## ବିଧବା ନେତା

ଭୁବନେଶ୍ୱରକୁ ପୂର୍ବତନ ବିଧାୟକମାନେ ଆସିଲେ ସେମାନଙ୍କ ରହିବା ପାଇଁ ବିଧାନସଭା ପକ୍ଷରୁ ବ୍ୟବସ୍ଥା ହୋଇଛି । ବିଧାୟକ ଅତିଥିଭବନ କରାଯାଇଛି । ଏଥିରେ ପୂର୍ବତନ ବିଧାୟକମାନେ ବିଭିନ୍ନ ସମୟରେ ଡେରା ପକାଇଥା'ନ୍ତି । ସାଧାରଣତଃ ବିଧାୟକମାନେ ଧଳା ପୋଷାକ ପ୍ରାୟତଃ ପିନ୍ଧିଥା'ନ୍ତି । ବିଧାୟକ ଥିବାବେଳେ ଏହି ଧଳା ପୋଷାକ କେତେବେଳେ କେମିତି ଲୋଟାକୋଟା କିମ୍ବା ମଇଳା ହୋଇଯାଇଥାଏ । କିନ୍ତୁ

ବିଧାୟକ ଯେତେବେଳେ ପୂର୍ବତନ ବିଧାୟକ ହୋଇଯା'ନ୍ତି ସେତେବେଳେ ପୋଷାକ ପ୍ରତି ସେମାନେ ବେଶ୍ ଯତ୍ନବାନ ହୋଇ ଉଠନ୍ତି । ଏହା ଦେଖିବାକୁ ଅନ୍ୟ କେଉଁଠିକୁ ଯିବାକୁ ପଡ଼ିବ ନାହିଁ । ଅପରାହ୍ନରେ ଭୁବନେଶ୍ୱର ୪ ନମ୍ବରସ୍ଥିତ ବିଧାୟକ ଅତିଥି ଭବନକୁ ଚାଲିଗଲେ ତାହା ବେଶ୍ ବାରି ହୋଇଯିବ । ସେଠାରେ ଥିବା ପୂର୍ବତନ ବିଧାୟକମାନେ କଡ଼ା ଇସ୍ତ୍ରୀ ଦିଆ ଧଳା ପୋଷାକ ପିନ୍ଧି ବାହାରକୁ ଆସିଥା'ନ୍ତି । ସେମାନେ ଯେ କୁଆଡ଼େ ଗସ୍ତ କରିବେ ତାହା ନୁହେଁ । ଭବନ ବାହାରକୁ ଆସି ଖଟି କରିଥା'ନ୍ତି । ଟିକିଏ ଚା'ପାନ ଓ ଜଳଖିଆରେ ଖଟି ଚାଲେ । କିନ୍ତୁ ପୂର୍ବତନ ବିଧାୟକ ଯେଉଁ ଧଳା ପୋଷାକ ପିନ୍ଧିଥା'ନ୍ତି ତାକୁ ଦେଖିଲେ ଆଖି ଲାଖି ରହେ । ଏମିତି ଆମର ଧଳା ପୋଷାକ କେଉଁମାନେ ପିନ୍ଧନ୍ତି ସେ ସମ୍ପର୍କରେ ଯଦି ପଚରାଯାଏ ତେବେ ତାହାର ଉତର ମିଳିବ ବିଧବା । ସାଧାରଣତଃ ଆମ ସମାଜରେ ବିଧବାମାନେ ଧଳାରଙ୍ଗ ଶାଢ଼ୀ ବ୍ୟତୀତ ଅନ୍ୟ କେଉଁ ରଙ୍ଗର ଶାଢ଼ୀ ପିନ୍ଧନ୍ତି ନାହିଁ । ଧଳାରଙ୍ଗ ପୋଷାକ ପିନ୍ଧିଥିବା ଏହି ପୂର୍ବତନ ବିଧାୟକମାନଙ୍କୁ ଦେଖିଲେ ବିଧବାଙ୍କ ପୋଷାକ କଥା ମନେପଡ଼ିଯାଏ । ଅବଶ୍ୟ ତଫାତ୍ ଏତିକି ଯେ ବିଧବାମାନେ ଧଳା ରଙ୍ଗର ଶାଢ଼ୀକୁ କଡ଼ା ଇସ୍ତ୍ରୀ ଦେଇ ପିନ୍ଧିନଥା'ନ୍ତି । କିନ୍ତୁ ପୂର୍ବତନ ବିଧାୟକମାନେ ପିନ୍ଧିଥିବା ଧଳା ପୋଷାକ କଡ଼ା ଇସ୍ତ୍ରୀ ଦିଆ ହୋଇଥାଏ ଆଉ ଯେମିତି ପୋଷାକରେ ଦାଗ ନ ଲାଗିବ ଏବଂ ଲୋଚାକୋଚା ହୋଇ ନଥିବ ସେ ଦିଗରେ ସେମାନେ ବେଶ୍ ଯତ୍ନବାନ ଥା'ନ୍ତି । ଏମିତି ଯେତେବେଳେ କଡ଼ା ଇସ୍ତି ଦିଆ ଧଳାପୋଷାକ ପିନ୍ଧି ପୂର୍ବତନ ବିଧାୟକ ମାନେ ବିଧାୟକ ଅତିଥିଭବନରୁ ଗେଟ୍ ବାହାରକୁ ଆସନ୍ତି ସେତେବେଳେ ସମ୍ମୁଖରେ ଥିବା ଜଳଖିଆ ଓ ଚା' ଦୋକାନରେ ବିଧବା ବୋଲି କେହି କେହି ସମ୍ବୋଧନ କରୁଥିବାର ଦେଖାଯାଏ । ପ୍ରଥମେ ବିଧାୟକ କ'ଣ ବିଧବା ବୋଲି ମନରେ ପ୍ରଶ୍ନ ଉଙ୍କିମାରିଥାଏ । କିନ୍ତୁ ସେମାନଙ୍କ ଧଳା ପୋଷାକକୁ ଦେଖିଦେବାପରେ ପୂର୍ବତନ ବିଧାୟକଙ୍କୁ ବିଧବା ବୋଲି ଯେଉଁ ନାମକରଣ ହୋଇଛି ତାହାର ଯଥାର୍ଥତା ଅଛି ବୋଲି ଯେ କେହି ନିଶ୍ଚିତଭାବେ କହିବେ । ■

## ପ୍ଲଟ୍ ନଂ ଏ/୧ ୧ ୧

ପ୍ଲଟ୍ ନଂ ଏ/ ୧ ୧ ୧ କଥା ଯଦି କିଏ କହନ୍ତି ତାହାହେଲେ କାଁ ଭାଁ କେତେକ ବିଜେଡ଼ି ନେତାଙ୍କୁ ଛାଡ଼ିଦେଲେ ସଙ୍ଗେସଙ୍ଗେ ସେହି ପ୍ଲଟ୍‌କୁ କେହି ଠଉରେଇପାରିବେ ନାହିଁ । କିନ୍ତୁ ଏହି ପ୍ଲଟ୍‌ରେ ରହୁଥିବା ନେତାଙ୍କ ନାମ କହିଦେଲେ ସଙ୍ଗେସଙ୍ଗେ ସମସ୍ତେ ବୁଝିଯା'ନ୍ତି । ଏବେ ଆସିବା ପ୍ଲଟ୍ ନଂ ଏ/ ୧ ୧ ୧ କୁ । ଏହି ପ୍ଲଟ୍‌ଟିର ଅବସ୍ଥିତି ହେଉଛି ଶହୀଦନଗରରେ । ଏଠାରେ ରହନ୍ତି ବିଜେଡ଼ିର ସୁପର ପାୱାରଫୁଲ୍ ନେତା ତଥା ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ନିର୍ବାଚନ ପୂର୍ବରୁ ଟିକଟ ନେବା ନିମନ୍ତେ ବିଜେଡ଼ି ନେତାଙ୍କର ଏଠାରେ ଜୋରଦାର ଭିଡ଼ ହେଉଥିଲା । ନିର୍ବାଚନ ପରେ କାଁ ଭାଁ ନେତାଙ୍କର ଏଠାରେ ଦେଖା ମିଳିଲା । ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରେ ନିର୍ବାଚିତ ବିଜେଡ଼ି ବିଧାୟକ

ଓ ନେତାଙ୍କର ଜୋରଦାର ଭିଡ଼ ହେଲା ଏହି ଫ୍ଲାଟ୍‌ରେ । କିଏ ପ୍ୟାରୀମୋହନଙ୍କର ପାଦଧୂଳି ନେଲେଣି ତ ଆଉ କିଏ ଶତପ୍ରଶଂସା କଲେଣି । ୧୦୩ଟି ଆସନ ବିଜେଡ଼ି ପାଇଥିବାରୁ ତାହା କେବଳ ପ୍ୟାରୀମୋହନ ମହାପାତ୍ରଙ୍କ ଗୋଟିଚାଳନା ଯୋଗୁଁ ସମ୍ଭବ ହୋଇଛି ବୋଲି ପ୍ୟାରୀଙ୍କ ପ୍ରଶଂସକ ନୁହଁନ୍ତି ନିନ୍ଦୁକମାନେ ମଧ କହିଚାଲିଲେ । ମନ୍ତ୍ରୀ ଆଶାୟୀ ପ୍ୟାରୀଙ୍କୁ ଦେଖାକରିବା ପାଇଁ ଅହରହ ଉଦ୍ୟମ କଲେ । ମନ୍ତ୍ରୀମଣ୍ଡଳ ଗଠନ ସରିବା ପରେ ବିଭାଗ ବଂଟନରେ ମଧ ଅନୁରୂପ ଅବସ୍ଥା । ଆଶା କରାଯାଉଥିଲା ବିଭାଗ ବଂଟନ ପରେ ପ୍ୟାରୀଙ୍କ ଏ/୧୧୧ ଫ୍ଲାଟ୍ ଘରେ ଆଉ ପୂର୍ବପରି ଭିଡ଼ ଜମିବ ନାହିଁ । କିନ୍ତୁ ଏବେ ଭିଡ଼ ଦିନକୁ ଦିନ ବଢ଼ିବାରେ ଲାଗିଛି । ଏହାର କାରଣ ଦୁଇଟି । ଗୋଟିଏ ହେଲା କ୍ଷମତା ଅନ୍ୟଟି ହେଲା ଆଗରେ ନିଗମ ଥିଇଥାନ । ଏବେ ଯିଏ ଫ୍ଲାଟ୍ ନଂ ୧୧୧ କୁ ଯିବ ତାଙ୍କ ଆଖି ଗୋଟିଏଠାରେ ଲାଖିରହିବ । ଲେଖାହୋଇଛି ଉପହାର ଓ ମହାପ୍ରସାଦ ଆଣନ୍ତୁ ନାହିଁ । ବୋଧହୁଏ ଉପହାର ଓ ମହାପ୍ରସାଦ ଆଣୁଥିବା ନେତାମାନେ ପ୍ୟାରୀଙ୍କ ପାଖରେ ହାଉଯାଉ ହେଉଥିବାରୁ ଏହାକୁ ପ୍ୟାରୀ ସହଜରେ ଗ୍ରହଣ କରିପାରୁନାହାନ୍ତି । ଅବଶ୍ୟ ପ୍ୟାରୀମୋହନ ଜାତିରେ ବ୍ରାହ୍ମଣ । ତେଣୁ ମହାପ୍ରସାଦ ସେବନ କରିବାରେ ତାଙ୍କର ଆଗ୍ରହ ରହିବ ନିଶ୍ଚିତ । କିନ୍ତୁ ଶହଶହ ମହାପ୍ରସାଦ କୁଡ଼ିଆ ଯଦି ପ୍ୟାରୀମୋହନଙ୍କ ପାଖକୁ ଗୋଟିଏ ଦିନରେ ଆସିବ ତେବେ ସେ ବ୍ରାହ୍ମଣ ହୋଇ ଖାଦ୍ୟ ରସିକେସୁ ହେଲେ ମଧ ସମସ୍ତ ପ୍ରସାଦକୁ ଭୋଜନ କରିପାରିବେ ନାହିଁ । ଖାଲି ଘର ଭିତରେ ପ୍ରସାଦ ଠୁଳ ହୋଇ ରହିବ । ସେହିପରି ଉପହାର ଅବସ୍ଥା ମଧ । ଯେତେବେଳେ କ୍ଷମତା କହିଲେ ବୁଝାଯାଉଛି ପ୍ୟାରୀମୋହନଙ୍କୁ ସେତେବେଳେ କାମ ଥାଉ କି ନଥାଉ ପଛେ ପ୍ୟାରୀମୋହନଙ୍କୁ ଉପହାରଟିଏ ଦେଇଦେଲେ ସେ କର୍ମଚାରୀ ହୁଅନ୍ତୁ କି ନେତା ହୁଅନ୍ତୁ କି କର୍ମୀ ହୁଅନ୍ତୁ ସମସ୍ତେ ବେଶ୍ ଖୁସ୍ ହୋଇଯିବା ସାଭାବିକ୍ । ଏହି ଦୃଷ୍ଟିରୁ ଉପହାର ସଂଖ୍ୟା ବହୁ ଅଧିକ ହେଉଥିବ ନିଶ୍ଚିତ । କ୍ଷମତାର ଶୀର୍ଷରେ ଥିବା ବ୍ୟକ୍ତିଙ୍କ ପାଇଁ ପ୍ରତିଦିନ ଆସୁଥିବା ଉପହାରକୁ ଘରେ ରଖିବା ନିମନ୍ତେ ସ୍ଥାନ ବି ରହିବ ନାହିଁ । ଯେଉଁଥିପାଇଁ ଉପହାର ଓ ମହାପ୍ରସାଦ ଏବେ ପ୍ୟାରୀଙ୍କ ପାଇଁ ଚିନ୍ତାର କାରଣ ହୋଇଯାଇଛି ଆଉ ପ୍ୟାରୀଙ୍କ ନିର୍ଦ୍ଦେଶକ୍ରମେ ଉପହାର ଓ ମହାପ୍ରସାଦ ନ ଆଣିବା ପାଇଁ ଲେଖାଯାଇଛି । ତେବେ ପ୍ୟାରୀଙ୍କର ଅନ୍ୟ ଏକ ପ୍ରସଙ୍ଗକୁ ନେଇ ଫ୍ଲାଟ୍ ନଂ ଏ/୧୧୧ ଏବେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଯାଇଛି । ଏମିତି ପ୍ୟାରୀମୋହନଙ୍କର ପୁଅ ଝିଅ ଥିବାରୁ ତାଙ୍କର ନାତିନାତୁଣୀ ରହିବା ସାଭାବିକ୍ । ଯେଉଁ ନାତି ନାତୁଣୀଙ୍କ କଥା ଏଠାରେ ଉଲ୍ଲେଖ କରାଯାଉଛି ସେମାନେ ତାଙ୍କ ନିଜ ନାତି ନାତୁଣୀ ନୁହଁନ୍ତି । କିନ୍ତୁ ନିଜ ନାତି ନାତୁଣୀଙ୍କ ଠାରୁ ପ୍ୟାରୀ ସେମାନଙ୍କୁ ଅଧିକ ଗୁରୁତ୍ୱ ଦିଅନ୍ତି । ଏମିତି ଅନେକ ସମୟରେ ଦେଖାଯାଇଛି ଟେଲିଫୋନ କଲ୍‌ଟିଏ ପାଇ ପ୍ୟାରୀମୋହନ ବହୁ ବିଚଳିତ ହୋଇଯାଆନ୍ତି । ବୁଝୁବୁଝୁ ଜଣାପଡ଼େ ପ୍ୟାରୀମୋହନଙ୍କର କେହିଜଣେ ନାତି କିମ୍ବା ନାତୁଣୀ ଅସୁସ୍ଥ ହୋଇଯାଇଛନ୍ତି । ଆଉ ଏହି ନାତିନାତୁଣୀ ହେଉଛନ୍ତି କେନ୍ଦୁଝରର ମନୋଜ ମଂଜରୀ ଶିଶୁଭବନର ବାସିନ୍ଦା ।

ସେହି ଶିଶୁଭବନକୁ ପ୍ୟାରୀ ନିଜ ଘରଠାରୁ ଅଧିକ ଭଲ ପାଆନ୍ତି । ଏଠାରେ ଥିବା ଅନାଥ ଶିଶୁମାନଙ୍କୁ ମଣିଷ କରିବାର ଶପଥ ନେଇଛନ୍ତି ପ୍ୟାରୀମୋହନ । ଏହି ଶିଶୁଭବନରେ ରହୁଥିବା ଶିଶୁମାନଙ୍କୁ ପ୍ୟାରୀମୋହନ ନାତିନାତୁଣୀଭାବେ ଦେଖିଥାନ୍ତି । ମନୋଜ ମଂଜରୀ ଶିଶୁଭବନର ନାତି ନାତୁଣୀ ଯଦି କେହି ଅସୁସ୍ଥ ହୋଇଗଲେ ତାହାହେଲେ ପ୍ୟାରୀଙ୍କର ମୁଣ୍ଡ ସେଇଠି ବିଗିଡ଼ି ଯିବ । ଆଉ ସେମାନଙ୍କ କଥା ନ ବୁଝିବା ପର୍ଯ୍ୟନ୍ତ ପ୍ୟାରୀମୋହନ ଅନ୍ୟ କୌଣସି ପ୍ରସଙ୍ଗକୁ ଯାଆନ୍ତି ନାହିଁ । ଗୋଟିଏ ପଟେ ଉପହାର ଓ ମହାପ୍ରସାଦ ଅନ୍ୟପଟେ ମନୋଜ ମଂଜରୀ ଶିଶୁଭବନ ନାତିନାତୁଣୀ । ଏହି ଦୁଇଟି ପ୍ରସଙ୍ଗକୁ ନେଇ ପ୍ୟାରୀମୋହନ ଏବେ ବେଶ୍ ଚର୍ଚ୍ଚିତ । ■

## ନବୀନ ନିବାସ ଆଲୋଚନା

ନବୀନ ନିବାସକୁ ନିର୍ମାଣ କରିଥିଲେ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ । ଏଠାରେ ବିଜୁ ପଟ୍ଟନାୟକ ପ୍ରାୟ ସବୁବେଳେ ରହୁଥିଲେ । ତାଙ୍କ ସାନପୁଅ ନବୀନଙ୍କ ନାମରେ ଏହି ଘରର ନାମକରଣ ସେ କରିଥିଲେ । ବିଜୁ ବଂଚିଥିବା ବେଳେ ନବୀନ ନିବାସ ଯେପରି ଚଳଚଂଚଳ ଥିଲା ତାଙ୍କ ଅବର୍ତ୍ତମାନରେ ମଧ୍ୟ ସେପରି ଚଳଚଂଚଳ ଅଛି । ନବୀନ ନିବାସରେ ହେଉଥିବା ଆଲୋଚନା ବିଜୁଙ୍କ ସମୟରେ ହେଉ କି ନବୀନଙ୍କ ସମୟରେ ହେଉ ତାହା ରାଜ୍ୟସାରା ବ୍ୟାପିଥାଏ । ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରର ଏହି ଘଟଣା । ବିଜେଡିକୁ ଆଶାତୀତ ସଫଳତା ମିଳିଥିବା ଯୋଗୁ ନବୀନଙ୍କୁ ଦେଖାକରିବା ପାଇଁ ନବନିର୍ବାଚିତ ବିଜେଡି ବିଧାୟକ ଓ ସାଂସଦଙ୍କ ସମେତ ବହୁନେତା ନବୀନ ନିବାସକୁ ଯାଇଥିଲେ । ସେଠାରେ ନବୀନଙ୍କୁ ସାକ୍ଷାତ କରି ସେମାନେ ଫେରୁଥିଲେ । ଅନେକ ନବୀନଙ୍କ ଲୋକପ୍ରିୟତା ଯୋଗୁ ବିଜେଡିକୁ ଏପରି ସଫଳତା ମିଳିଛି ବୋଲି କହି ନବୀନଙ୍କୁ ପ୍ରଶଂସାରେ ଅଜାଡ଼ି ଦେଉଥିଲେ । ସେଠାରେ ଉପସ୍ଥିତ ଥିଲେ ଦୁଇଜଣ ଚତୁର୍ଥଶ୍ରେଣୀ କର୍ମଚାରୀ । ବର୍ଷବର୍ଷ ଧରି ସେମାନେ ନବୀନଙ୍କ ସେବା କରିଆସୁଛନ୍ତି । ବୋଲ ହାକ କାମ ମଧ୍ୟ କରନ୍ତି । ଅନ୍ୟମାନଙ୍କ ଅପେକ୍ଷା ସେମାନେ ନବୀନଙ୍କର ବେଶ୍ ବିଶ୍ୱସ୍ତ ଅଟନ୍ତି । ଏହି ଦୁଇଜଣଙ୍କ ମଧ୍ୟରେ ଆଲୋଚନା ଚାଲିଥାଏ । ଏମିତି ତ ରାଜନୀତିରେ ନଥିବା ବହୁବ୍ୟକ୍ତି ରାତାରାତି ବିଜେଡି ଟିକେଟ ନେଇ ବହୁ ଭୋଟ ବ୍ୟବଧାନରେ ବିଜୟୀ ହୋଇଛନ୍ତି । କେବେବି ସେମାନେ ଭାବି ନଥିବେ କି ସ୍ୱପ୍ନ ବି ଦେଖି ନଥିବେ ବିଧାୟକ ହେବେ ବୋଲି । ଏହା କେବଳ ସମ୍ଭବ ହୋଇଛି ନବୀନ ପଟ୍ଟନାୟକଙ୍କ ଯୋଗୁ । ଦୁଇଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀ ବେଶ୍ ହାଲକା ମନରେ କଥାବାର୍ତ୍ତା ହେଉଥା'ନ୍ତି । ସେତେବେଳକୁ ନବୀନଙ୍କୁ ଦେଖାକରିବା ପାଇଁ ବିଜେଡି ବିଧାୟକ ଓ ସାଂସଦଙ୍କ ସଂଖ୍ୟା ବଢ଼ି ଚାଲିଥାଏ । ଏହି ଦୁଇଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀ ଯେଉଁ ଆଲୋଚନା କରୁଥିଲେ ତାହାକୁ ମଧ୍ୟ କେତେକ ବରିଷ୍ଠ ବିଧାୟକ ମନଧ୍ୟାନ

ଦେଇ ଶୁଣୁଥା'ନ୍ତି । ସେମାନେ କହୁଥା'ନ୍ତି ଚିହ୍ନାଜଣା ନାହିଁ ଆଉ ରାତାରାତି ଟିକେଟ ନେଇ ଏବେ ବିଧାୟକ । ଆମେ ନବୀନ ପଟ୍ଟନାୟକଙ୍କ ସେବା କରିଆସୁଛେ । ଆମେ ବି ଚାହିଁଥିଲେ ନବୀନ ପଟ୍ଟନାୟକଙ୍କୁ କହି ଟିକେଟ ନେଇ ପାରିଥା'ନ୍ତେ । ଯେଉଁ ବ୍ୟକ୍ତିମାନେ ରାତାରାତି ଟିକେଟ ନେଇଛନ୍ତି ସେମାନଙ୍କଠାରୁ ଏମାନେ ରାଜନୀତିକୁ ବହୁପାଖରୁ ଦେଖିଆସୁଛନ୍ତି । ଏହି ଦୃଷ୍ଟିରୁ ରାଜନୀତି ସେମାନଙ୍କ ପାଇଁ କଷ୍ଟଦାୟକ ହୋଇ ନଥା'ନ୍ତା । ଯଦି ଚିହ୍ନା ପରିଚୟ ନଥାଇ ନବୀନଙ୍କ ଠାରୁ ଟିକେଟ ନେଇପାରୁଛନ୍ତି ତେବେ ନବୀନଙ୍କର ସେବାଶୁଶ୍ରୁଷା କରିଥିବାରୁ ସେମାନେ ମଧ୍ୟ ଟିକେଟ ନେଇପାରିଥା'ନ୍ତେ । ନିର୍ବାଚନରେ କେହି କାହା ବଳରେ ନିର୍ବାଚିତ ହୋଇନାହାନ୍ତି । ସମସ୍ତେ ନବୀନଙ୍କ ନାଁରେ ବିଜୟୀ ହୋଇଛନ୍ତି । ତେଣୁ ସେମାନଙ୍କ ପାଇଁ ଏଥରର ନିର୍ବାଚନ କିଛି ଫରକ ପଡ଼ି ନଥା'ନ୍ତା । ଖାଲି ଟିକେଟ ନେଇଯାଇଥିଲେ ନବୀନଙ୍କ ନାଁରେ ବିଜୟୀ ହୋଇଯାଇଥା'ନ୍ତେ ଆଉ ନବୀନଙ୍କ ସେବା ବହୁଦିନ ଧରି କରୁଥିବାରୁ ସେମାନଙ୍କୁ ନବୀନଙ୍କ ଖାସ୍‌ଲୋକ ଭାବି ଜନସାଧାରଣ ଭୋଟ ଅଜାଡ଼ି ଦେଇଥା'ନ୍ତେ । ନବୀନ ନିବାସରେ ଏହି ଦୁଇଜଣ ଚତୁର୍ଥଶ୍ରେଣୀ କର୍ମଚାରୀଙ୍କ ଆଲୋଚନାରେ ବାସ୍ତବତା ରହିଛି । ଓଡ଼ିଶାର ଜନସାଧାରଣ ବିଜେଡି ପ୍ରାର୍ଥୀଙ୍କୁ ଭୋଟ ଦେଇନାହାନ୍ତି । ଭୋଟ ନବୀନଙ୍କୁ ଦେଇଛନ୍ତି । ତେଣୁ ନବୀନ ନିବାସରେ କାମ କରୁଥିବା ଏହି ଚତୁର୍ଥ ଶ୍ରେଣୀ କର୍ମଚାରୀ ମଧ୍ୟ ଟିକେଟ ପାଇଥିଲେ ନବୀନଙ୍କ ନାମରେ ପାରି ହୋଇଯାଇଥା'ନ୍ତେ । ମହାଭାରତ ଯୁଦ୍ଧ ପରି ଏହି ନିର୍ବାଚନ ବିଜେଡି ପାଇଁ ହୋଇଛି । ମହାଭାରତରେ ଯେପରି ବେଲାଳସେନକୁ ପଚରାଗଲା କିଏ ଏହି ଯୁଦ୍ଧରେ ଶ୍ରେଷ୍ଠ ଯୋଦ୍ଧା ବୋଲି ସେତେବେଳେ ବେଲାଳସେନଙ୍କ ଉତର ଥିଲା- ସେ କାହାକୁ ଯୋଦ୍ଧା ଭଳି ଦେଖିପାରିଲେ ନାହିଁ । ସବୁଆଡ଼େ ଚକ୍ର । କେବଳ ଚକ୍ର ହିଁ ଯୁଦ୍ଧ କରୁଥିଲା । ଏହାର ଅନ୍ୟ ଅର୍ଥ ହେଲା ଶ୍ରୀକୃଷ୍ଣଙ୍କ ଚକ୍ର ହିଁ ଯୁଦ୍ଧ କରୁଥିଲା ଆଉ ସେହି ଚକ୍ର ହିଁ କୌରବଙ୍କୁ ପରାଜିତ କରିଥିଲା । ୨୦୦୯ ନିର୍ବାଚନ ମଧ୍ୟ ମହାଭାରତ ଯୁଦ୍ଧ ପରି ହୋଇଛି । ନବୀନ ଚକ୍ର ପରି ଏଠାରେ କାମ ଦେଇଛନ୍ତି । ଯାହା ନବୀନ ନିବାସର ସେହି ଚତୁର୍ଥ ଶ୍ରେଣୀ କର୍ମଚାରୀ ବୁଝିପାରିଛନ୍ତି । ■

## ଦର୍ପଣ ବିଧାୟକ



ବିଧାୟକ ତ ବିଧାୟକ ପୁଣି ଦର୍ପଣ ବିଧାୟକ କ'ଣ ? ତେବେ ନୟାଗଡ଼ ବିଧାୟକ ଅରୁଣ ସାହୁଙ୍କୁ ମିଳିଥିବା କ୍ୱାର୍ଟରରେ ଖୋଲାଯାଇଥିବା କାର୍ଯ୍ୟାଳୟକୁ ଚାଲିଗଲେ ଏହି ଦର୍ପଣ ବିଧାୟକର ଅର୍ଥ ବେଶ୍ ବାରିହୋଇଯିବ । ସେଠାରେ ବିଧାୟକ ଅରୁଣ ଯେଉଁ କାର୍ଯ୍ୟାଳୟ ଖୋଲିଛନ୍ତି ତାହା ବେଶ୍ ଆକର୍ଷଣୀୟ । ତାଙ୍କର ଯେଉଁଠି ଚୌକି ପଡ଼ିଛି ସେହି ନିକଟରେ ସେ ଗୋଟିଏ ବଡ଼ ଦର୍ପଣ ଲଗାଇଛନ୍ତି । ଏମିତି ତ ଅରୁଣ ସବୁବେଳେ

ନିଜକୁ ଫିଟ୍‌ଫାଟ ରଖିବାରେ ଯତ୍‌ପରୋନାସ୍ତି ଉଦ୍ୟମ କରିଥା'ନ୍ତି । କେତେବେଳେ ମର୍ଣ୍ଣିଂ ୱାକ୍ ତ କେତେବେଳେ ଖାଇବା ପିଇବାରେ ଆକଟ । ସବୁବେଳେ ସେ ଚେହେରାକୁ ସଜେଇ ରଖିଥା'ନ୍ତି । ପେଟ ଯେମିତି ବାହାରିବ ନାହିଁ, ମୁହଁରୁ ଯେମିତି ଚକାଚକ୍ ଲାବଣ୍ୟ ବାହାରୁଥିବ ସେ ଦିଗରେ ଅରୁଣ ସବୁବେଳେ ଯତ୍ନବାନ । ନିର୍ବାଚନ ପରେ ଅରୁଣ ଟିକେ ଚେହେରା ପ୍ରତି ଅଧିକ ଯତ୍ନବାନ ହୋଇଯାଇଛନ୍ତି । ସେ ତାଙ୍କ ବାସଭବନରେ ଥିବା କାର୍ଯ୍ୟାଳୟରେ ବସିଥିବାବେଳେ ବିଭିନ୍ନ ସମୟରେ ଦର୍ପଣକୁ ଚାହାଁନ୍ତି । ଯଦି କେଉଁଠି ଚେହେରାରେ କିଛି ଖଟ୍‌କା ଆସିଯାଏ ତେବେ ସେ ତାହାକୁ ତୁରନ୍ତ ସଜାଡ଼ି ନିଅନ୍ତି । ସତେ ଯେମିତି ଦର୍ପଣ ହିଁ ଅରୁଣଙ୍କ ସାଥି ବନିଯାଇଛି । ଏବେ ଅରୁଣଙ୍କ ପାଖକୁ ଯାଉଥିବା ବ୍ୟକ୍ତିମାନେ ତାଙ୍କୁ ଦର୍ପଣ ବିଧାୟକ ବୋଲି କହିଲେଣି । ■

## ପାଂଚ ବିଧାୟକ ପ୍ରଭାତ



ଏମିତି ପ୍ରଭାତ ବିଶ୍ୱାଳ ହେଉଛନ୍ତି ଚୌଦ୍ୱାର-କଟକର ବିଜେଡ଼ି ବିଧାୟକ । ଏହି ଦୃଷ୍ଟିରୁ ଚୌଦ୍ୱାର-କଟକ ନିର୍ବାଚନମଣ୍ଡଳୀର ସମସ୍ୟା ଓ ବାସିନ୍ଦାଙ୍କ କଥା ପ୍ରଭାତ ବୁଝିବାର ଆବଶ୍ୟକତା ରହିଛି । କିନ୍ତୁ ପ୍ରଭାତ ଏବେ ଛନ୍ଦି ହୋଇଗଲେଣି ୫ଟି ନିର୍ବାଚନମଣ୍ଡଳୀରେ । ଏହି ନିର୍ବାଚନମଣ୍ଡଳୀ ଗୁଡ଼ିକ ହେଲା ଆଠଗଡ଼, କଟକ-ବାରବାଟୀ, କଟକ ସଦର, ଚୌଦ୍ୱାର-କଟକ, ନିଆଳୀ । କଟକ ସଦର ପୂର୍ବରୁ ପ୍ରଭାତଙ୍କ ନିର୍ବାଚନମଣ୍ଡଳୀ ଥିଲା । ୨୦୦୪ ନିର୍ବାଚନରେ ସେ ସେଠାରୁ ସ୍ୱାଧୀନ ପ୍ରାର୍ଥୀ ହୋଇ ବିଜୟୀ ହେବାପରେ ବିଜେଡ଼ିର ସହଯୋଗୀ ସଭ୍ୟ ହୋଇଥିଲେ । କଟକ ସହର ଓ କଟକସଦର ନିର୍ବାଚନମଣ୍ଡଳୀର ଦାୟିତ୍ୱ ତାଙ୍କ ଉପରେ ପଡ଼ିଥିଲା । ନୂତନଭାବେ ଗଠିତ ହୋଇଥିବା ନିଆଳି ନିର୍ବାଚନମଣ୍ଡଳୀ ଦାୟିତ୍ୱ ମଧ ସେ ବୁଝୁଥିଲେ । ଚୌଦ୍ୱାର-କଟକରୁ ବିଜେଡ଼ି ପ୍ରାର୍ଥୀ ହେବାପରେ ସେ ଚୌଦ୍ୱାର-କଟକ ସମେତ ଆଠଗଡ଼ ସହ ମଧ ସାମିଲ ହୋଇଗଲେ । ଏମିତି ଆଠଗଡ଼ର କଛି ଅଂଚଳ ତାଙ୍କ ନିର୍ବାଚନମଣ୍ଡଳୀ ଭିତରକୁ ପଶି ଆସିଛି । ଉଣାଅଧିକେ ୫ଟି ନିର୍ବାଚନମଣ୍ଡଳୀର ବାସିନ୍ଦାମାନେ ଏବେ ସବୁ କଥା ପାଇଁ ପ୍ରଭାତଙ୍କ ନିକଟରେ ହାଜିର ହୋଇଯାଉଛନ୍ତି । ସତେ ଯେମିତି ପ୍ରଭାତ ୫ଟି ନିର୍ବାଚନମଣ୍ଡଳୀର ବିଧାୟକ । ପ୍ରଭାତ କ'ଣ କରିବେ କିଛି ବି ଭାବିପାରୁନାହାନ୍ତି । ସବୁବେଳେ ଲୋକ ହାଉଯାଉ । ନିଜ ନିର୍ବାଚନମଣ୍ଡଳୀ ଚୌଦ୍ୱାର-କଟକ କଥା ବୁଝିବା ହେଉଛି ତାଙ୍କର ରାଜନୈତିକ ଧର୍ମ । କିନ୍ତୁ ଧର୍ମ ପାଳନ କରିପାରୁନାହାନ୍ତି ପ୍ରଭାତ । ୫ଟି ନିର୍ବାଚନମଣ୍ଡଳୀ ଏବେ ତାଙ୍କ ପାଇଁ ସମସ୍ୟା ହୋଇଯାଇଛି । ■

# ବିଜୁଙ୍କ ବୁଲେଟ୍





ଜୁ ପଟ୍ଟନାୟକ ଯେତେବେଳେ ଜୀବିତ ଥିଲେ ତାଙ୍କୁ କୁହାଯାଉଥିଲା ଦୟାର ସାଗର ବୋଲି । କାହାକୁ ସେ ପାଟିତୁଣ୍ଡ କରନ୍ତି ତ କାହାକୁ ସେ ଚାପୁଡ଼ା ମାରନ୍ତି । ଏହାସତ୍ତ୍ୱେ ଦାୟା ତାଙ୍କ ପାଖରୁ ଉଭେଇ ଯାଏନାହିଁ । ମୃତ୍ୟୁପରେ ତାଙ୍କର ଏହି ଦୟା କେତେ ଅଧିକ ଥିଲା ତାହା ପଦାକୁ ଆସିଥିଲା । ଶତାଧିକ ପିଲାଙ୍କୁ ସେ ପାଠ ପଢ଼ାଉଥିଲେ । ଅନେକଙ୍କୁ ସେ ଚାକିରି କରାଇ ଦେଇଥିଲେ । ଅନେକ ଗରିବ ମେଧାବୀ ଛାତ୍ରଙ୍କୁ ସେ ବୃତ୍ତି ଦେଉଥିଲେ । ଏହାସତ୍ତ୍ୱେ ରାଜନୀତିକୁ ସେ ଭୁଲି ଯାଉ ନଥିଲେ । ସେ ନେତୃତ୍ୱ ନେଉଥିବା ଦଳର ଯେପରି ସଂଗଠନ ମଜଭୁତ ହେବ ସେ ଦିଗରେ ସେ ମଧ୍ୟ ପଦକ୍ଷେପ ନେଉଥିଲେ । ଏଥିପାଇଁ ବିଭିନ୍ନ ନେତାଙ୍କୁ ସେ ଗାଡ଼ି ଯୋଗାଇ ଦେଉଥିଲେ । କାହାକୁ ଚାରିଚକିଆ ଗାଡ଼ି ତ କାହାକୁ ଦୁଇଚକିଆ ଗାଡ଼ି । ଏମିତି ତ ନଳିନୀ ମହାନ୍ତି, ବିଜୟ ମହାପାତ୍ର ପ୍ରଭୃତିଙ୍କୁ ସେ ସଂଗଠନ କରିବା ପାଇଁ ଚାରିଚକିଆ ଗାଡ଼ି ଦେଇଥିଲେ । କିନ୍ତୁ ଯେଉଁ ପ୍ରସଙ୍ଗ ଏବେ ଚର୍ଚ୍ଚାକୁ ଆସିଛି ତାହା ହୋଇଛି ବୁଲେଟ୍ ମୋଟର ସାଇକେଲ । ସେତେବେଳେ ଜୟରାମ ପାଙ୍ଗୀ ଓ ଯାଦବ ମାଝୀ ଅବିଭକ୍ତ କୋରାପୁଟ ଜିଲାରେ ସଂଗଠନ ଜାରି ରଖିଥା'ନ୍ତି । ଜୟରାମ ଥିଲେ ଯୁବ ଜନତା ଦଳର ଅବିଭକ୍ତ କୋରାପୁଟ ଜିଲାର ସଭାପତି । ଯାଦବ ଥିଲେ ଜନତା ଦଳର ଅବିଭକ୍ତ କୋରାପୁଟ ଜିଲାର ସଭାପତି । କୋରାପୁଟ ଜିଲାରେ ଯେପରି ଜନତା ଦଳର ସଂଗଠନ ଜୋର୍‌ଦାର୍ ହେବ ସେ ଦିଗରେ ସବୁବେଳେ ବିଜୁ ପଟ୍ଟନାୟକ ଗୁରୁତ୍ୱ ଦେଇଆସିଥିଲେ । ବିଜୁଙ୍କ ନିର୍ଦ୍ଦେଶ ଥିଲା ବୁଲେଟ୍ ଧରି ଗାଁଗହଳି ବୁଲ । ସବୁ ଖର୍ଚ୍ଚ ଦିଆଯିବ । ଉଭୟ ଯାଦବ ଓ ଜୟରାମ ବୁଲେଟ୍ ଧରି ସାରା କୋରାପୁଟ ଜିଲା ସେତେବେଳେ ଖେଦି ଯାଇଥିଲେ । କିନ୍ତୁ ସମୟ ଓ ଭାଗ୍ୟ ଯାଦବଙ୍କ ସପକ୍ଷରେ ରହିଲା । ଯେହେତୁ ଯାଦବ ଥିଲେ ଅବିଭକ୍ତ କୋରାପୁଟ ଜିଲାର ଜନତା ଦଳ ସଭାପତି ତେଣୁ ସବୁ ଶ୍ରେୟ ତାଙ୍କ ଆଡ଼କୁ ଯାଇଥିଲା । ତେବେ ସେଦିନର ବୁଲେଟ୍ ମୋଟର ସାଇକେଲ ସଂଗଠନକୁ ଭୁଲି ପାରିନାହାନ୍ତି ଜୟରାମ ପାଙ୍ଗୀ । କୋରାପୁଟ ଲୋକସଭା ନିର୍ବାଚନମଣ୍ଡଳୀରେ ବିଜୁ ଜନତା ଦଳର ପ୍ରାର୍ଥୀ ହୋଇ ଏଥର ଯେପରି ସେ ଗିରିଧର ଗମାଙ୍ଗଙ୍କୁ ହରାଇଲେ ତାହା କେବଳ ଓଡ଼ିଶା ନୁହେଁ ଭାରତ ରାଜନୀତି ଆଶ୍ଚର୍ଯ୍ୟ ହୋଇଯାଇଛି । ଏମିତି ତ ଜୟରାମ ଲୋକସଭା ଆସନରୁ ପ୍ରାର୍ଥୀ ହେବା ନେଇ ଦ୍ୱରେଇ ଯାଇଥିଲେ । ଏହାର କାରଣ ହେଉଛି- ସେ ବହୁବାର ଲୋକସଭା ଆସନରୁ ପ୍ରାର୍ଥୀ ହୋଇ ପରାଜିତ ହୋଇଥିଲେ । ଯେଉଁଥିପାଇଁ ସେ ପଟାଙ୍ଗୀ ବିଧାନସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବା ପାଇଁ ଶ୍ରେୟ ମନେ କରୁଥିଲେ । ତେବେ ଅବିଭକ୍ତ

କୋରାପୁଟ ଜିଲାରେ ଜୟରାମ ଓ ଯାଦବ ଯେଉଁ ବୁଲେଟ୍ ମଟର ସାଇକେଲରେ ବିଜୁଙ୍କ ସଂଗଠନକୁ ଦୃଢ଼ କରିବା ପାଇଁ ଉଦ୍ୟମ କରୁଥିଲେ ସେ ସବୁକୁ ଏଯାବତ୍ ଜନସାଧାରଣ ଭୁଲିନାହାନ୍ତି । ବିଜୁଙ୍କ ମୃତ୍ୟୁ ହେବାପରେ ଏହି ମୋଟର ସାଇକେଲ ସଂଗଠନ ଅବିଭକ୍ତ କୋରାପୁଟ ଜିଲାବାସୀଙ୍କ ମଧ୍ୟରେ ଆଦର୍ଶ ହୋଇରହିଛି । ଅବଶ୍ୟ ଲୋକସଭା ନିର୍ବାଚନରେ ଏହା ସାଂଗଠନିକ ରୂପ ନେଇପାରୁ ନଥିଲା । ଏଥର ଗିରିଧରଙ୍କୁ ହରାଇବା ପରେ ଜୟରାମଙ୍କ ଆଖିଆଗରେ ସେହି ମୋଟର ସାଇକେଲ ରାଜନୀତି ଜଳଜଳ ହୋଇ ଦେଖାଯାଉଛି । ତାଙ୍କର ଅନ୍ୟତମ ସାଥୀ ଯାଦବ ମାଝୀ ଏବେ ଆଉ ଇହଜଗତରେ ନାହାନ୍ତି । କେବଳ ସେ ହିଁ ମୂକସାକ୍ଷୀ ଅଛନ୍ତି । ବିଜୁ ଦେଇଥିବା ବୁଲେଟ୍ ମୋଟର ସାଇକେଲରେ ଜୟରାମ ଯେଉଁ ସଂଗଠନର ମଂଜି ବୁଣିଥିଲେ ତାହାର ଫଳ ଏବେ ସେ ପାଇଛନ୍ତି । ଜନସାଧାରଣଙ୍କ ମଧ୍ୟରେ ଯେଉଁ ଚର୍ଚ୍ଚା ହେଉଛି ତାହା ହେଲା- ବିଜୁଙ୍କ ବୁଲେଟ୍‌ରେ ଉଭୟ ଯାଦବ ଓ ଜୟରାମ ସଫଳତା ହାସଲ କରିଥିଲେ । ଉଭୟେ ତାଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ବି ହୋଇଥିଲେ । ଯାଦବଙ୍କ ମୃତ୍ୟୁପରେ ଏବେ ତାଙ୍କ ପୁଅ ରମେଶ ମାଝୀ ନବୀନ ପଟ୍ଟନାୟକ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ । ପୁଣି ଯାହା କେବେ କେହି ସ୍ୱପ୍ନ ଦେଖି ନଥିଲେ ଗିରିଧରଙ୍କୁ ହରାଇ ସେହି ସ୍ୱପ୍ନକୁ ସାକାର କରିଛନ୍ତି ଜୟରାମ । ଏହାସବୁ ବିଜୁଙ୍କ ବୁଲେଟ୍ ମଟର ସାଇକେଲ ଯୋଗୁ ହୋଇଛି ବୋଲି ଏବେ ଯେଉଁ ଚର୍ଚ୍ଚା ହେଉଛି ତାହାର ସତ୍ୟତା ରହିଛି ବୋଲି କୁହାଗଲେ କୌଣସି ଅତ୍ୟୁକ୍ତି ହେବନାହିଁ । ■



## ପାଟ୍ଟଶାଣୀଙ୍କ ଘୋଡ଼ାଚଢ଼ା



ଏମିତି ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ହେଉଛନ୍ତି ପାଇକ ପୁଅ । ଏହି ଦୃଷ୍ଟିରୁ ତାଙ୍କ ପୂର୍ବପୁରୁଷଙ୍କର ଘୋଡ଼ା ଚଢ଼ିବାର ଅଭିଜ୍ଞତା ରହିବ ନିଶ୍ଚିତ । କିନ୍ତୁ ପ୍ରସନ୍ନ ପାଟ୍ଟଶାଣୀ ଘୋଡ଼ା ଦେଖିଥିଲେ ମଧ୍ୟ କେବେବି ଚଢ଼ି ନଥିଲେ । ତାଙ୍କ ବାପା ତାଙ୍କୁ ଘୋଡ଼ାଚଢ଼ା ଉପରେ ଏକ ପରାମର୍ଶ ବି ଦେଇଥିଲେ । ତାହା ଥିଲା- କଳା ଘୋଡ଼ା ଉପରେ କେବେ ଚଢ଼ିବୁ ନାହିଁ । ପ୍ରସନ୍ନ ଘୋଡ଼ା ଚଢୁ ନ ଥିବାରୁ ତାଙ୍କ ବାପାଙ୍କ ପରାମର୍ଶ ତାଙ୍କର ମନେପଡୁ ନଥିଲା । ଏମିତି ଧର୍ମ କାର୍ଯ୍ୟରେ ହଠାତ୍ ଚାଲିଗଲେ ସେ ମୋରିସସ୍ । ସେଠାରେ ଧର୍ମ ସଂକ୍ରାନ୍ତୀୟ ଭାଷଣ ଦେଉଦେଉ ହଠାତ୍ କେହି ଜଣେ କହିଲେ- ପାହାଡ଼ ଉପରେ ଥିବା ବୁଦ୍ଧଙ୍କ ମୂର୍ତ୍ତିକୁ ଦର୍ଶନ କଲେ ବହୁ ଧର୍ମର ମାଲିକ ସେ ହେବେ । ଏହା ଶୁଣିବା ପରେ ପ୍ରସନ୍ନଙ୍କର ନିଶା ଲାଗିଲା ପାହାଡ଼ ଉପରକୁ ଯାଇ ବୁଦ୍ଧମୂର୍ତ୍ତିର ଦର୍ଶନ କରିବେ ବୋଲି । କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ସେଠାରେ ପାହାଡ଼ ଉପରକୁ ଯିବାକୁ ହେଲେ ଘୋଡ଼ାରେ ବସି ଯିବାକୁ ହୁଏ । ପ୍ରସନ୍ନଙ୍କୁ ମଧ୍ୟ ଏହି ଘୋଡ଼ା ଚଢ଼ା ଭାରି କୁତୁକୁତୁ ଲାଗିଥିଲା । ଗୋଟିଏ ହୃଷ୍ଟପୃଷ୍ଟ ଯୁଆନ କଳା ଘୋଡ଼ା ପ୍ରସନ୍ନଙ୍କ ପାଇଁ ଯୋଗାଡ଼

ହେଲା । ପ୍ରସନ୍ନ ଘୋଡ଼ା ଉପରେ ଚଢ଼ି ଯେମିତି ତା' ଦେହରେ ହାତ ମାରିଦେଇଛନ୍ତି ଘୋଡ଼ା ତୁରନ୍ତ ଦୌଡ଼ିଲା । କିଛିବାଟ ଯାଇଛନ୍ତି କି ନାହିଁ ପ୍ରସନ୍ନ ଘୋଡ଼ାରୁ ତଳକୁ ଖସିପଡ଼ିଲେ । ସେତିକିବେଳେ ତାଙ୍କର ମନେ ପଡ଼ିଲା ବାପାଙ୍କ ପରାମର୍ଶ କଥା । ସେତେବେଳ ପର୍ଯ୍ୟନ୍ତ ସେ ଜାଣି ନଥିଲେ ଯେ, ସେଇଟି ଥିଲା କଳା ଘୋଡ଼ା ବୋଲି । ପ୍ରସନ୍ନ ଭାରି କଷ୍ଟ ଅନୁଭବ କଲେ । ତୁରନ୍ତ ତାଙ୍କୁ ଡାକ୍ତରଙ୍କ ପାଖକୁ ନିଆଗଲା । ଡାକ୍ତର ତାଙ୍କୁ ଇଂଜେକ୍‌ସନ୍‌ଟିଏ ଦେଇ କହିଲେ- ଏତିକିରେ ଭାରତ ଯାଇ ହେବ । ଆପଣ ଭାରତ ଚାଲି ଯାଆନ୍ତୁ ଆଉ ସେଠାରେ ଚିକିତ୍ସିତ ହେବେ । ଇଂଜେକ୍‌ସନ୍ ନେଇ ପ୍ରସନ୍ନ ଆସିଲେ ଦିଲ୍ଲୀ । ସେଠାରେ ତୁରନ୍ତ ଡାକ୍ତରଙ୍କ ପାଖକୁ ଚିକିତ୍ସା ପାଇଁ ଗଲେ । କଳା ଘୋଡ଼ା ଚଢ଼ି ପ୍ରସନ୍ନଙ୍କ ଅବସ୍ଥା ଏମିତି ହୋଇଥିଲା ଯେ, ତାଙ୍କୁ ତୁରନ୍ତ ଅସ୍ତ୍ରୋପଚାର ହେବାକୁ ପଡ଼ିଥିଲା । ଏପଟେ ଭୁବନେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରେ ଥିବା ୭ଟି ବିଧାନସଭା ନିର୍ବାଚନମଣ୍ଡଳୀରେ ପ୍ରସନ୍ନଙ୍କର ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥାଏ । ଅସ୍ତ୍ରୋପଚାରକୁ ପ୍ରସନ୍ନ ଲୁଚାଇ ରଖିଲେ । ଯେତିକିଦିନ ସେ ଡାକ୍ତରଖାନାରେ ରହିଲେ ତା' କେହି ଜାଣିପାରିଲେ ନାହିଁ । ପ୍ରଚାର ହେଲା- ବାବା ପ୍ରସନ୍ନ ପାଟଣାଣୀ ହିମାଳୟ ଯାଇଛନ୍ତି ତପସ୍ୟା କରିବାକୁ । ଲୋକଙ୍କ ମନରେ ପ୍ରସନ୍ନଙ୍କ ପ୍ରତି ଯେତିକି ଧର୍ମ ଭାବନା ଥିଲା ତାହା ଆହୁରି ବଢ଼ିଗଲା । ପ୍ରସନ୍ନ ସିନା ଯୁବ ବୟସରେ ହିମାଳୟରେ ଥିଲେ କିନ୍ତୁ ସେଠାରେ ସେ ତପସ୍ୟା କରୁ ନଥିଲେ । ସେତେବେଳେ ସେ ଥିଲେ ଜଣେ ଛୋଟ ନକ୍ସଲ । କିନ୍ତୁ ଏବେ ସେ ହିମାଳୟରେ ତପସ୍ୟା କରୁଛନ୍ତି ବୋଲି ଜାଣିବା ପରେ ଅଧିକାଂଶ ଲୋକ ତାଙ୍କ ଆସିବାକୁ ଅପେକ୍ଷା କଲେ । ପ୍ରସନ୍ନ ଡାକ୍ତରଖାନାରୁ ବାହାରିବା ପରେ ଭୁବନେଶ୍ୱର ଆସିଲେ । ଏମିତି ତାଙ୍କୁ ବିଭିନ୍ନ କାର୍ଯକ୍ରମକୁ ଯିବା ପାଇଁ ନିମନ୍ତ୍ରଣ ମଧ କରାଗଲା । କିନ୍ତୁ ସେଥିପ୍ରତି ପ୍ରସନ୍ନଙ୍କର ସେତେ ଆଗ୍ରହ ରହିଲା ନାହିଁ । କେବଳ ଆଗ୍ରହ ରହିଲା ପଇଡ଼ପାଣି ପିଇବାରେ । ଏହାକୁ ନେଇ ମଧ ଚର୍ଚ୍ଚା ଚାଲିଲା । ବାବା ପ୍ରସନ୍ନ ତ ଏତେ ପଇଡ଼ପାଣି ପିଅନ୍ତି ନାହିଁ । କ'ଣ ହୋଇଛି ବୋଲି ସମସ୍ତେ ଜାଣିବାକୁ ଚାହିଁଲେ । କେତେକ କହିଲେ- ଭୁବନେଶ୍ୱରରେ ତାତି ଜୋରଦାର୍ । ଥଣ୍ଡା ହିମାଳୟରୁ ବାବା ଆସିଛନ୍ତି ତ ତେଣୁ ଗରମ ସହି ପାରୁନାହାନ୍ତି । ପଇଡ଼ପାଣି ଗରମକୁ କାଟିବ । ବାବା ପ୍ରସନ୍ନଙ୍କ ପାଖକୁ ଆସୁଥିବା ଭକ୍ତମାନେ ପଇଡ଼ ପରେ ପଇଡ଼ ଆଣି ଦେଉଥା'ନ୍ତି । ବାବା ପଇଡ଼ପାଣି ପିଉଥିଲେ ମଧ ତାଙ୍କ ଅସ୍ତ୍ରୋପଚାର ସମ୍ପର୍କରେ କାହାକୁ କହୁ ନଥା'ନ୍ତି । ସେପଟେ ଅନେକ ପ୍ରଶ୍ନ କରୁଥା'ନ୍ତି ଯେ, ବାବା ହିମାଳୟ ଏବେ କେମିତି ଅଛି ? ବରଫ ତଳ ପର୍ଯ୍ୟନ୍ତ ଆସିଛି ନା ଅଧାରେ ଅଛି ? ବାବା ତାଙ୍କ ସ୍ୱଭାବସୁଲଭ ଢଙ୍ଗରେ ଏହି ପ୍ରଶ୍ନର ଉତ୍ତର ଦେଉଥା'ନ୍ତି- ହିମାଳୟ ଯେମିତି ଥିଲା ସେମିତି ଅଛି । ତେବେ ଅତି ନିଜର ଲୋକଙ୍କୁ ଦେଖି ବାବା ତାଙ୍କ ଅସ୍ତ୍ରୋପଚାର କଥା କହିଦେଲେ । କଥାଟି

ଅବଶ୍ୟ ଫିଟି ଗଲା । ବାବା କାହିଁକି ଏହି ଅସ୍ତ୍ରୋପଚାର କଥା ଫିଟାଉ ନଥିଲେ ତାହାର କାରଣ ମଧ୍ୟ ରହିଛି । କୁଆଡ଼େ କାହାକୁ ନକହି ସେ ବିଦେଶ ଚାଲିଯାଇଥିଲେ । ବିଦେଶ ଯାଉଥିବାରୁ ପ୍ରସନ୍ନଙ୍କ ନାମରେ ଅତୀତରେ ବହୁ କେଳେଙ୍କାରି ଅଭିଯୋଗ ଆସିଛି । ଏଭଳି ଅଭିଯୋଗ ମଧ୍ୟରେ ସେ ଆଉ ଛନ୍ଦି ହେବାକୁ ଚାହୁଁନାହାନ୍ତି । ସେଥିପାଇଁ ଅସ୍ତ୍ରୋପଚାର କଥା ସେ ଖୋଲୁ ନଥିଲେ । ନହେଲେ କୁଆଡ଼େ ଯାଇଥିଲେ, କେଉଁ ଜାଗାରେ ଘଟଣା ଘଟିଲା, ଘୋଡ଼ାର ରଙ୍ଗ କେମିତି ଥିଲା ଏମିତି ଅନେକ ପ୍ରଶ୍ନ ବାବାଙ୍କୁ ପଚରା ଯାଇଥା'ନ୍ତା । ବାବା ଏସବୁକୁ ଲୁଚାଇବା ପାଇଁ ଚାହିଁଥିଲେ ମଧ୍ୟ ଏବେ କହୁକହୁ ସତକଥା କହିଦେଲେଣି । ତେବେ ସେ ଯାହା ହେଉନା କାହିଁକି ପ୍ରସନ୍ନ କିନ୍ତୁ ତାଙ୍କ ବାପାଙ୍କ ପରାମର୍ଶକୁ ଏବେ ମନେ ପକାଉଛନ୍ତି । ଯଦି ବାପା କହିଥିବା-କଳା ଘୋଡ଼ା ଉପରେ କେବେ ଚଢ଼ିବୁ ନାହିଁକୁ ସେ ମାନିଥା'ନ୍ତେ ତେବେ ତାଙ୍କର ଏଭଳି ଅବସ୍ଥା ହୋଇ ନଥା'ନ୍ତା । ଏବେ ପ୍ରସନ୍ନ ହଲପ୍ ନେଇଛନ୍ତି ବାପା ଯେଉଁସବୁ ପରାମର୍ଶ ଦେଇଛନ୍ତି ତାହାକୁ ମାନି ଚଳିବେ ବୋଲି । ■

## ଟିଭି ନଥିବା ବିଧାୟକ



ସାଧାରଣତଃ ବିଧାୟକମାନେ ରାଜନୀତିର ଟିକ୍‌ନିଖ୍ ଖବର ରଖିଥା'ନ୍ତି। ଏଥିପାଇଁ ସକାଳ ହେଲେ ସେମାନେ ସମ୍ବାଦପତ୍ର ପଢ଼ନ୍ତି ଆଉ ବିଭିନ୍ନ ସମୟରେ ଟିଭିରେ ସମ୍ବାଦମାନ ଦେଖିଥା'ନ୍ତି । ବିଧାୟକଙ୍କ ଘରେ ଟିଭି ନାହିଁ କହିଲେ ବୋଧହୁଏ ଯେକୌଣସି ବ୍ୟକ୍ତି ଆଶ୍ଚର୍ଯ୍ୟ ହେବେ ନିଶ୍ଚିତ । କିନ୍ତୁ ଏହା ଜଣେ ବିଧାୟକଙ୍କ ପାଇଁ ସତ ହୋଇଛି । ସେ ପୁଣି ଥରେ କି ଦୁଇ ଥର ନୁହଁନ୍ତି ୪ ଥର ବିଧାୟକ ହେଲେଣି ପୁଣି ମନ୍ତ୍ରୀ ବି ହୋଇଛନ୍ତି । ନକ୍ସଲ ଉପଦ୍ରୁତ ଅଂଚଳର ବିଧାୟକ ହୋଇଥିବାବେଳେ ଏବେ ବନ୍ୟା ପ୍ରପୀଡ଼ିତ ଅଂଚଳ ଜୟଦେବର ସେ ବିଧାୟକ । ଏହି ବିଧାୟକଙ୍କ ନାମ ସମସ୍ତେ ଜାଣିସାରିବେଣି । ସେ ହେଲେ ଅରବିନ୍ଦ ଢ଼ାଲି । ଏମିତି ତ ଅରବିନ୍ଦ ସିନେମାରେ ଅଭିନୟ ବି କରନ୍ତି । ପୁଣି ସିନେମା ଦେଖିବାକୁ ଭଲ ପାଆନ୍ତି । ଏହାସତ୍ତ୍ୱେ ଟିଭି କାହିଁକି ଘରେ ରଖିନାହାନ୍ତି ତାହା ମଧ୍ୟ ଆଶ୍ଚର୍ଯ୍ୟଜନକ । କୁଆଡ଼େ ବୁଝୁବୁଝୁ ଜଣାପଡ଼ିଛି ଯେ ତାଙ୍କର ପିଲାମାନଙ୍କର ଆଖି ଖରାପ ହେଲା । ସେ ସେମାନଙ୍କୁ ନେଇ ଡାକ୍ତରଙ୍କ ପାଖକୁ ଗଲେ । ଥରେ କି ଦୁଇଥର ନୁହେଁ । ବହୁ ଥର ସେ ଡାକ୍ତରଙ୍କ ପାଖକୁ ପିଲାମାନଙ୍କୁ ନେଇ ଆଖିପରୀକ୍ଷା କରାଇଲେ । ଡାକ୍ତର କହିଲେ ଟିଭି ଦେଖୁଥିବାରୁ ପିଲାଙ୍କ ଆଖି ଖରାପ ହୋଇଯାଉଛି । ଯଦି ଟିଭି ଦେଖା ଚାଲିବ ତେବେ ପିଲାଙ୍କ ଆଖି କଥା ଭୁଲିଯାଅ । ସେହିଦିନ ଠାରୁ ଅରବିନ୍ଦ ଶପଥ ନେଇଛନ୍ତି ଯେ ଘରେ ଆଉ ଟିଭି ରଖିବେ ନାହିଁ । ଯାହାହେଲେ ବି ପିଲାଙ୍କୁ ସେ ଆଖି ଖରାପରୁ ରକ୍ଷା କରିଛନ୍ତି । ଅବଶ୍ୟ ଅରବିନ୍ଦଙ୍କ ଠାରୁ ଏହି ଶିକ୍ଷା ଅନ୍ୟମାନେ ନେବା ଉଚିତ୍ । ■



# ଭାଗିରଥୀଙ୍କ ଭୋଜି



ଗିରଥୀ ଓରଫ ମିଟୁ ବଡ଼ଜେନା ଏବେ ଉତର ଭୁବନେଶ୍ୱରର ବିଜେଡ଼ି ବିଧାୟକ । ବହୁ ଦିନରୁ ଭୁବନେଶ୍ୱରରୁ ବିଧାୟକ ହେବେ ବୋଲି ଯେଉଁ ସ୍ୱପ୍ନ ଭାଗିରଥୀ ଦେଖିଥିଲେ ତାହା ୨୦୦୯ ନିର୍ବାଚନରେ ସଫଳ ହୋଇଛି । ଏମିତି ଭାଗିରଥୀଙ୍କ ସାମ୍ବାଦିକମାନଙ୍କ ସହିତ ଧୁ ସମ୍ପର୍କ ରହିଛି । ଦୀର୍ଘ ଦିନ ହେଲାଣି ସେ ସାମ୍ବାଦିକମାନଙ୍କ ସହିତ ସମ୍ପର୍କ ରକ୍ଷା କରିବା ସହିତ ବିଭିନ୍ନ ସମୟରେ ଖାଇବା ପିଇବାର ମଧ ସେ ଆୟୋଜନ କରିଥା'ନ୍ତି । ଏଥର ବିଧାୟକ ହେବାପରେ ସାମ୍ବାଦିକଙ୍କୁ ଆପ୍ୟାୟିତ କରିବା ପାଇଁ ସେ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ପ୍ରଥମେ ମନ୍ଦିରରେ ସାମ୍ବାଦିକଙ୍କୁ ପ୍ରସାଦ ସେବନ କରାଇବେ ବୋଲି ସ୍ଥିର ହେଲା । ପରେ ଆମିଷ ପ୍ରସଙ୍ଗ ଆସିବାରୁ ତାହାକୁ ସ୍ଥଗିତ ରଖାଗଲା । ତେବେ 'ନିୟୁ ମାରିଅନ' ହୋଟେଲରେ ସାମ୍ବାଦିକଙ୍କ ପାଇଁ ଭାଗିରଥୀ ଖାଇବା ପିଇବାର ବନ୍ଦୋବସ୍ତ କଲେ । ଏମିତି ଭାଗିରଥୀଙ୍କ ଭୋଜି ସବୁବେଳେ ହ୍ୱାଟ୍ ନଟ୍ ଥାଏ । ଏଥର ଭୋଜି ମଧ ସେହିପରି ଥିଲା । ମାନେ ଖାସି ମାଂସ , ଚିଙ୍ଗୁଡ଼ି ତରକାରୀ, ମାଛ ବେସର, ପନିର ତରକାରୀ, ଶାଗ, ସାଧା ଘାଂଟ, ପରିବା ଭଜା, ଏମିତି ବହୁ ଆଇଟମ୍‌ରେ ଭୋଜିଟି ଭରପୁର ହୋଇଯାଇଥିଲା । ସାମ୍ବାଦିକମାନଙ୍କୁ ଭାଗିରଥୀ ଦିନ ୧୨ ଟାରୁ ଅପରାହ୍ନ ୩ଟା ପର୍ଯ୍ୟନ୍ତ ଭୋଜି ଖୁଆଇବା ପାଇଁ ଅପେକ୍ଷା କରିଥିଲେ । ଭୋଜି ଖାଇସାରିବା ପରେ ଭାଗିରଥୀ ସମସ୍ତଙ୍କୁ କେମିତି ଖାଇବା ହୋଇଥିଲାବୋଲି ପଚାରିବାକୁ ମଧ ଭୁଲିନଥିଲେ । ଆମିଷ ଭିତରେ ଯିଏ ଯାହା ଖାଇବ ସେଥିରେ କିଛି ଯାଏ ଆସେ ନାହିଁ ବୋଲି ଭାଗିରଥୀ ସମସ୍ତଙ୍କୁ କହୁଥା'ନ୍ତି । ଭାଗିରଥୀ ଭଲରୂପେ ଜାଣିଛନ୍ତି ଯେ ରାଜଧାନୀର ସାମ୍ବାଦିକମାନଙ୍କୁ ହାତରେ ରଖିଦେଲେ ତେଣିକି କାହାକୁ ପରବାୟ ନାହିଁ । ଏମିତି ବହୁ ଦିନ ଧରି ସାମ୍ବାଦିକମାନଙ୍କ ସହିତ ଭାଗିରଥୀଙ୍କର ସମ୍ପର୍କ ରହିଆସିଛି । ଏବେ ବିଧାୟକ ହେବାପରେ ଭୋଜିରୁ ଆରମ୍ଭ ହେଲା ଭାଗିରଥୀଙ୍କର ଏହି ସମ୍ପର୍କ । ■

# ସିରିଏଲ ବିଧାୟକ



ଦି କାହାକୁ ସିରିଏଲ ବିଧାୟକ ବୋଲି କୁହାଯିବ ତେବେ ସମସ୍ତେ ବୁଝିବେ ଯେ, କ୍ରମାଗତ ଭାବେ ନିର୍ବାଚିତ ହୋଇ ଆସିଥିବା କୌଣସି ବିଧାୟକଙ୍କୁ । କିନ୍ତୁ ଏ କ୍ଷେତ୍ରରେ ଅର୍ଥ ତାହା ନୁହେଁ । ଏବେ ପ୍ରକୃତ ଘଟଣାକୁ ଯିବା । ଆସିକାର ବିଜେଡି ବିଧାୟକ ହେଉଛନ୍ତି ଦେବରାଜ ମହାନ୍ତି । ସେ ୨୦୦୦ ମସିହାରେ ମଧ ବିଜେଡିରୁ ଟିକେଟ ପାଇ ସେଠାରେ ବିଧାୟକ ହୋଇଥିଲେ । କିନ୍ତୁ ୨୦୦୪ରେ ତାଙ୍କୁ ଟିକେଟ



ମିଳିଲା ନାହିଁ । ସ୍ୱାଧୀନ ପ୍ରାର୍ଥୀ ହୋଇ ମଧ୍ୟ ସେ ହାରିଲେ । ୨୦୦୯ରେ ତାଙ୍କୁ ପୁଣି ବିଜେଡି ଟିକେଟ ମିଳିଲା ଆଉ ସେ ଦ୍ୱିତୀୟ ଥର ପାଇଁ ଆସିବାରୁ ବିଧାୟକ ହେଲେ । କିନ୍ତୁ ଯେଉଁ ୨୦୦୪ରୁ ୨୦୦୯ ପାଂଚବର୍ଷ ସେ ବିଧାୟକ ହେଲେନାହିଁ ସେତେବେଳେ ତାଙ୍କର କିଛି ଅନ୍ୟ ଅଭ୍ୟାସ ହୋଇଗଲା । ଏମିତି ଦେଖିଲେ ଲୋକଙ୍କ ସହିତ ଯଦିଓ ଦେବରାଜ ମିଶନ୍ତି କିନ୍ତୁ ବିଧାୟକ ନଥିବା ବେଳେ ଏଥିରେ ଶିଥିଳତା ଆସିଯାଇଥିଲା । ଏହି ପାଂଚବର୍ଷ ସମୟ କାଟିବା ପାଇଁ ନେତାଙ୍କ ନିମନ୍ତେ ଭାରି କଷ୍ଟ ହୋଇଥାଏ । ଦେବରାଜ ଏହି ପାଂଚବର୍ଷ ମଧ୍ୟରେ ତାଙ୍କର ଅଭ୍ୟାସ ବି ବଦଳାଇ ଦେଲେ । ସଂଧ୍ୟା ହେଲେ ସେ ଘରେ ଟିଭି ପାଖରେ ଆସର ଜମାନ୍ତି । ତାଙ୍କର ତିନୋଟି ସିରିଏଲ ଦେଖିବା ପାଇଁ ନିଶା ହୋଇଗଲା । ସେଗୁଡ଼ିକ ହେଲା- ଇଟିଭିରେ ପ୍ରଦର୍ଶିତ ହେଉଥିବା ସଂସ୍କାର, ତୁଳସୀ, ଗାୟତ୍ରୀ । ଏହି ସିରିଏଲ ଦେଖିଲା ବେଳେ ତାଙ୍କୁ କେହି ଡିଷ୍ଟର୍ବ କରିବେ ନାହିଁ । ସଂଧ୍ୟା ସାଢ଼େ ୭ଟାରୁ ଆରମ୍ଭ ହେଉଥିବା ଏହି ସିରିଏଲ ରାତି ୯ଟାରେ ସରେ । ପ୍ରତିଦିନ ତିନୋଟି ସିରିଏଲ ଦେଖୁଥିବା ଦେବରାଜଙ୍କର ନିଶା ଏବେ ଜୋରଦାର୍ ହୋଇଯାଇଛି । ସଂଧ୍ୟା ହେଲାମାତ୍ରେ ସେ ଆଉ ତାଙ୍କର ରାଜନୈତିକ କାର୍ଯ୍ୟକ୍ରମ ରଖୁନାହାନ୍ତି । ସମସ୍ତଙ୍କୁ ସେ କହିଦେଇଛନ୍ତି ବାବୁ ସଂଧ୍ୟା ସାଢ଼େ ୭ରୁ ୯ଟା ଛାଡ଼ିଦେଲେ ଆଉ ସାଢ଼େ ୨୨ ଘଂଟା ସେ ରାଜନୀତି ପାଇଁ ସମୟ ଦେବେ । ସିରିଏଲ ଦେଖିବା ନିଶା ଦେବରାଜଙ୍କୁ ଏମିତି ଘାରିଛି ଯେ, ବିଧାୟକ ହେବାପରେ ମଧ୍ୟ ସେ ସେହି ନିଶାକୁ ଛାଡ଼ିବାକୁ ବହୁ ଉଦ୍ୟମ କରିଥିଲେ ବି ସେ ଛାଡ଼ି ପାରିନାହାନ୍ତି । ଏବେ ରାଜନୀତି ମହଲରେ ଦେବରାଜଙ୍କୁ ନେଇ ବେଶ୍ ଚର୍ଚ୍ଚା ହେଉଛି । ଅବଶ୍ୟ ତାଙ୍କର ଖରାପ ଦିଗ ପ୍ରତି ଏହି ଚର୍ଚ୍ଚା ନୁହେଁ । ଚର୍ଚ୍ଚା କେବଳ ସିରିଏଲ ଦେଖାକୁ ନେଇ । ଦେବରାଜଙ୍କ ଅନ୍ୟନାମ ଏବେ ସିରିଏଲ ବିଧାୟକ ହୋଇଯାଇଛି । ■

## ବିଧାୟକଙ୍କ କୁକୁର ଭୟ



ଏମିତି ବହୁ ନେତା ଓ ବିଧାୟକ ଅଛନ୍ତି ଯେଉଁମାନେ କି କୁକୁର ରଖିବାକୁ ପସନ୍ଦ କରନ୍ତି । ସେମାନେ ପୁଣି ଗୋଟିଏ କି ଦୁଇଟି ନୁହେଁ ବହୁ କୁକୁର ମଧ୍ୟ ରଖିଥା'ନ୍ତି । କିନ୍ତୁ ଜୟଦେବ ନିର୍ବାଚନମଣ୍ଡଳୀର ବିଧାୟକ ଅରବିନ୍ଦ ଢାଲି କୁକୁର ଭୁକିବା ଶୁଣିଦେଲେ ଛାନିଆ ହୋଇଯାଆନ୍ତି । ସତେ ଯେମିତି କୁକୁର ଭୁକିଦେଲେ ଯମରାଜ ତାଙ୍କ ପାଖରେ ଆସି ହାଜର ହୋଇଯାଇଛନ୍ତି ବୋଲି ସେ ଭାବନ୍ତି । ପାଖକୁ ଯଦି କୁକୁରଟିଏ ଆସିଗଲା ତେବେ ଅରବିନ୍ଦଙ୍କର ଦେହରୁ ଝାଳପରେ ଝାଳ ବାହାରିଯାଏ । ବୁଝୁବୁଝୁ ଜଣାପଡ଼ିଲା ପିଲାଦିନେ ଅରବିନ୍ଦଙ୍କୁ କୁକୁରଟିଏ କାମୁଡ଼ି ଦେଇଥିଲା । ଏହି କୁକୁରକାମୁଡ଼ା ଚିକିତ୍ସା ହେବା ପାଇଁ ତାଙ୍କୁ ବହୁ କଷ୍ଟ ସହିବାକୁ ପଡ଼ିଥିଲା । ସେହି କଷ୍ଟ ଏବେବି ତାଙ୍କ ମନରୁ ଯାଇନାହିଁ । ଦ୍ୱିତୀୟବାର ଯେପରି କୁକୁର ତାଙ୍କୁ ନକାମୁଡ଼େ ସେଥିପାଇଁ ସେ

ସବୁବେଳେ କୁକୁରଠାରୁ ବହୁ ଦୂରରେ ରହୁଛନ୍ତି । ଏମିତି ଫାଇଲ କାମ ହେଉ କି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଉ ସେଥିରେ ସେ ମନ ଦେଇଥିବାବେଳେ କୁକୁର ଭୁକୁଥିବାର ଯଦି ସେ ଶୁଣିବାକୁ ପାଇଲେ ତେବେ ସେହିଠାରେ ହିଁ ତାଙ୍କର ସବୁ କାମ ଅଟକି ଯିବ । ଅରବିନ୍ଦଙ୍କୁ ନକ୍ସଲ ଭୟ ଘାରୁଥିଲା ବୋଲି ସମସ୍ତେ ପ୍ରାୟ ଜାଣିଥିଲେ । କିନ୍ତୁ କୁକୁର ଭୟ ତାଙ୍କୁ ଘାରିଛି ବୋଲି କେହି ଜାଣି ନଥିଲେ । ଏମିତି 'ପହିଲି ରଜ' ଚଳଚ୍ଚିତ୍ରରେ ସେ ଅଭିନୟ କରିବାର ଥାଏ । ଏଥିରେ ଜମିଦାର ଭୂମିକାରେ ଅଭିନୟ କରିବା ପାଇଁ ତାଙ୍କୁ ସୁଯୋଗ ମିଳିଲା । ପୂର୍ବରୁ ଚାରୋଟି ଚଳଚ୍ଚିତ୍ରରେ ସେ ଅଭିନୟ କରିସାରିଛନ୍ତି । କିନ୍ତୁ ଏହି ଜମିଦାର ଭୂମିକାରେ ଅଭିୟନ କରିବା ବେଳେ ତାଙ୍କ ପାଖରେ କୁକୁର ଥିବାର ଦୃଶ୍ୟ ଥିଲା । କୁକୁର ନାଁ ଶୁଣି କୁଆଡ଼େ ଅରବିନ୍ଦ ଛାନିଆ ହୋଇଗଲେ । ଅଭିନୟ କରିବା ତ ଦୂରର କଥା । କୁକୁର ରହିଲେ ଅଭିନୟ ସେ କରିପାରିବେ ନାହିଁ ବୋଲି ମଧ୍ୟ ଜଣାଇଲେ । କୁକୁର ବିଶ୍ୱସ୍ତ ହୋଇଥିବାରୁ ଅରବିନ୍ଦଙ୍କର କୁକୁରକୁ ଡରିବାର ନାହିଁ ବୋଲି କୁହାଗଲା । ଅରବିନ୍ଦ ରାଜି ହେଲେ କିନ୍ତୁ ମନରୁ ତାଙ୍କର କୁକୁର ଭୟ ଗଲାନାହିଁ । ପିଲାଦିନେ କୁକୁର କାମୁଡ଼ିଥିବା ଦୃଶ୍ୟ ତାଙ୍କର ଆଖିଆଗରେ ନାଚି ଉଠିଲା । ଭୟରେ ଥାଇ ସେ ଅଭିନୟ କଲେ । ଯେତେ ବିଶ୍ୱସ୍ତ କୁକୁର ହେଲେ ମଧ୍ୟ ଅରବିନ୍ଦ କୁକୁର ପ୍ରତି ବିଶ୍ୱସ୍ତ ହୋଇପାରୁନାହାନ୍ତି । ନକ୍ସଲଙ୍କ ଭୟ ଅପେକ୍ଷା କୁକୁର ଭୟ ଅରବିନ୍ଦଙ୍କୁ ସାରାଜୀବନ ଘାରିଛି । ଅରବିନ୍ଦଙ୍କର ଦୁଇଟି ଭୟ । ଗୋଟିଏ ହେଲା କୁକୁର ଏବଂ ଅନ୍ୟଟି ହେଲା ନକ୍ସଲ । କିନ୍ତୁ ନକ୍ସଲଙ୍କୁ ମୁକାବିଲା କରିବା ପାଇଁ ପୁଲିସ ଅଛନ୍ତି ହେଲେ କୁକୁରକୁ କେହି ମୁକାବିଲା କରିପାରିବେ ନାହିଁ । ଏହା ଭଲ ରୂପେ ଜାଣିଛନ୍ତି ଅରବିନ୍ଦ । ତେଣୁ ଦୂରରୁ ସେ ଜୁହାର ପକାଉଛନ୍ତି କୁକୁରକୁ । ■

## ପୂଜା ପ୍ରିୟ ବଦ୍ରି



କେନ୍ଦୁଝର ଜିଲ୍ଲାର ଘସିପୁରା ନିର୍ବାଚନମଣ୍ଡଳୀରୁ ବିଜେଡି ଟିକେଟରେ ପ୍ରତିଦ୍ୱନ୍ଦିତା କରି କଂଗ୍ରେସର ମହାଦ୍ରୁମ ବୋଲି କୁହାଯାଉଥିବା ନିରଂଜନ ପଟ୍ଟନାୟକଙ୍କୁ ହରାଇ ବଦ୍ରି ହୋଇଯାଇଛନ୍ତି ଜାଏଂଟ କିଲର । ପୁଣି କେନ୍ଦୁଝର ଜିଲାରେ କଂଗ୍ରେସର ଖାତା ନଖୋଲିବାରେ ମଧ୍ୟ ବଦ୍ରିଙ୍କର ବି ଅବଦାନ ରହିଛି । ଅବଶ୍ୟ ବିଜେଡି ହାଇକମାଣ୍ଡ ବଦ୍ରିଙ୍କୁ ଏଥିପାଇଁ ପୁରସ୍କୃତ କରିଛନ୍ତି । ମନ୍ତ୍ରିମଣ୍ଡଳରେ ତାଙ୍କୁ ସାମିଲ କରାଯାଇ ଗୁରୁତ୍ୱପୂର୍ଣ୍ଣ ନଗର ଉନ୍ନୟନ ଓ ଗୃହ ନିର୍ମାଣ ବିଭାଗ ଦିଆଯାଇଛି । ବଦ୍ରିଙ୍କ ସଚିବାଳୟ ପ୍ରକୋଷ୍ଠକୁ ଚାଲିଗଲେ ଯେକୌଣସି ବ୍ୟକ୍ତିଙ୍କର ଆଖି ପଡ଼ିଯିବ ତାଙ୍କ ଟେବୁଲ ଉପରକୁ । ଟେବୁଲରେ ପଡ଼ିଥିବା କାଚ ତଳେ ଜଗନ୍ନାଥଙ୍କର ଫଟୋ ଅଛି । ସେହି ଫଟୋ ଉପରେ ଫୁଲଟିଏ ଥୁଆ ହୋଇଥିବ ନିଶ୍ଚିତ । ଏମିତି ତ ତାଙ୍କ ନିର୍ବାଚନମଣ୍ଡଳୀରେ ତାରିଣୀ ପୀଠ ଘଟଗାଁ ଅଛି । ପ୍ରତିଦିନ ତାରିଣୀଙ୍କୁ

ଦର୍ଶନ କରିବା ପାଇଁ ହଜାର ହଜାର ଭକ୍ତ ସେଠାକୁ ଯାଆନ୍ତି । ପୁଣି ପୂଜା ପାଇଁ ସାରାରାଜ୍ୟରୁ ସେଠାକୁ ଭକ୍ତମାନେ ନଡ଼ିଆ ପଠାଇଥା'ନ୍ତି । ତାରିଣୀ ଯେ କେବଳ ଓଡ଼ିଶାରେ ଖ୍ୟାତ ତାହା ନୁହେଁ । ସାରା ଦେଶବିଦେଶରେ ମଧ୍ୟ ଖ୍ୟାତ । ତାରିଣୀ ପୀଠରୁ ବିଧାନସଭାକୁ ଆସି ମନ୍ତ୍ରୀ ହୋଇଥିବା ବଦ୍ରିଙ୍କର ଭକ୍ତି ମନୋଭାବ ଏବେ ବେଶ୍ ସ୍ପଷ୍ଟ ହୋଇଯାଇଛି । ସେ ସଚିବାଳୟ କାର୍ଯ୍ୟାଳୟକୁ ଆସନ୍ତୁ କିମ୍ବା ନଆସନ୍ତୁ ସେଥିରେ ଯାଏଆସେ ନାହିଁ । କିନ୍ତୁ ତାଙ୍କ ପ୍ରକୋଷ୍ଠରେ ଦେବାଦେବୀ ପୂଜା ସବୁଦିନ ହେବ ହିଁ ହେବ । ବଦ୍ରି ପ୍ରକୋଷ୍ଠକୁ ଆସିବା ବେଳକୁ ତାଙ୍କ ଟେବୁଲର କାଚ ତଳେ ଥିବା ଜଗନ୍ନାଥଙ୍କର ପୂଜା ସରିଥିବ ଆଉ କାଚ ଉପରେ ଫୁଲ ଥୁଆଯାଇଥିବ । ସାମ୍ନାରେ ମଧ୍ୟ ବଦ୍ରି ଜଗନ୍ନାଥଙ୍କୁ ରଖିଛନ୍ତି । ଏକ ସମୟରେ ଟେବୁଲରେ ଥିବା ଜଗନ୍ନାଥ ଆଉ ସାମ୍ନାରେ ଥିବା ଜଗନ୍ନାଥଙ୍କୁ ମଧ୍ୟ ପୂଜା କରାଯାଉଛି । ବଦ୍ରି ଯେତେବେଳେ ଫାଇଲରେ ନିଷ୍ପତି ନିଅନ୍ତି ସେତେବେଳେ ମଧ୍ୟ ଠାକୁରଙ୍କୁ ସ୍ମରଣ କରନ୍ତି । ଏମିତି ବି ଟେବୁଲରେ ତାଙ୍କ ଡାହାଣପାଖରେ ଥିବା ଜଗନ୍ନାଥଙ୍କୁ ଚାହିଁ ସେ ନିଷ୍ପତି ନେଉଥିବାର ବି ଦେଖାଯାଉଛି । କୁଆଡ଼େ ବଦ୍ରି ନିଜକୁ ଠାକୁରଙ୍କ ପାଖରେ ସମର୍ପି ଦେଇଛନ୍ତି । ନିନ୍ଦୁକ ମହଲ କହୁଛନ୍ତି ବଦ୍ରିନାରାୟଣଙ୍କୁ କୁଆଡ଼େ ନିରଂଜନ ପଟ୍ଟନାୟକଙ୍କୁ ହରାଇବାକୁ ଭାରି କଷ୍ଟ କରିବାକୁ ପଡ଼ିଥାଏ । ଏଠାରେ ନିର୍ବାଚନ ତ ହୁଏ ନାହିଁ । ସତେ ଯେପରି ଭାରତ, ପାକିସ୍ତାନ ଯୁଦ୍ଧ ହୁଏ । ତେଣୁ ପ୍ରଥମରୁ ହିଁ ବଦ୍ରି ନିଜକୁ ଠାକୁରଙ୍କ ପାଖରେ ସମର୍ପି ଦେଇଥା'ନ୍ତି । ଏଥର ଜିତିବା ପରେ ବଦ୍ରିଙ୍କର ଠାକୁର ପୂଜା ଆଉପାଦେ ଆଗକୁ ଚାଲିଯାଇଛି । ଏହା ତାଙ୍କ ସଚିବାଳୟ କାର୍ଯ୍ୟାଳୟରେ ଟେବୁଲ ଉପରେ ରଖାଯାଇଥିବା ଜଗନ୍ନାଥଙ୍କ ପୂଜା ପାଠରୁ ସ୍ପଷ୍ଟ ହୋଇଯାଇଛି । ■

## ପ୍ୟାରୀଙ୍କ ଗୁରୁ



ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ହେଉଛନ୍ତି ବିଜେଡିର ଦ୍ୱିତୀୟ କ୍ଷମତା କେନ୍ଦ୍ର । ପୁଣି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ସେ ହେଉଛନ୍ତି ପରାମର୍ଶଦାତା । ଏମିତି ବି ତାଙ୍କୁ ଅନେକ ସମୟରେ ନବୀନଙ୍କର ଗୁରୁ ବୋଲି ମଧ୍ୟ ଚର୍ଚ୍ଚା ହେଉଛି । କିନ୍ତୁ ପ୍ୟାରୀମୋହନଙ୍କର ଯେ ଗୁରୁ ଅଛନ୍ତି ତାହା ବୋଧହୁଏ କେହି ଜାଣନ୍ତି ନାହିଁ । ଏମିତି ଏକ ସମ୍ବାଦପତ୍ରର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ପ୍ୟାରୀମୋହନ । ସତେ ଯେମିତି କିଛି ସତ୍ୟ କଥା କହିବା ପାଇଁ ପ୍ୟାରୀମୋହନ ଦୀର୍ଘଦିନରୁ ଅପେକ୍ଷା କରି ରହିଥିଲେ । କହୁକହୁ ପ୍ରଥମେ କହିଦେଲେ ତାଙ୍କର ଗୁରୁ ଥିଲେ କମ୍ୟୁନିଷ୍ଟ ନେତା ପ୍ରାଣନାଥ ପଟ୍ଟନାୟକ । ଆଉ ତାଙ୍କର ସେ ଚେଲା ଥିଲେ । ଏହା କହିବାର ଅନ୍ୟ ଦିଗଟି ହେଲା ଗୋଟିଏ ସମୟରେ ସେ କମ୍ରେଡ଼ ବି ଥିଲେ । ଅବଶ୍ୟ ଯେବେଠାରୁ ବିଜେଡିକୁ କ୍ୟାଡ଼ର ପାର୍ଟିରେ ପରିଣତ କରିବା ପାଇଁ

ପ୍ୟାରୀମୋହନ ଉଦ୍ୟମ କଲେ ସେବେଠାରୁ କମ୍ୟୁନିଷ୍ଟ ପ୍ରତି ତାଙ୍କର ଦୁର୍ବଳତା ଥିଲା ବୋଲି ଏକ ଧାରଣା ମଧ୍ୟ ସାଧାରଣରେ ସୃଷ୍ଟି ହୋଇଥିଲା । ଏବେ ଗୁମର କଥାକୁ ଫିଟାଇ ଦେଇଛନ୍ତି ନିଜେ ପ୍ୟାରୀମୋହନ । କେବଳ ଯେ ଏହି ଗୋଟିଏ ଗୁମର କଥା ସେ ଫିଟାଇବା ପାଇଁ ଉଚିତ ମଣିଥିଲେ ତାହା ନୁହେଁ । ଏମିତି ଆଉ କେତେକ ଗୁମର କଥା ମଧ୍ୟ ସେ ସେଠାରେ ଫିଟାଇ ଦେଇଥିଲେ । ସେ କହୁକହୁ କହିଦେଇଥିଲେ ସମ୍ବାଦପତ୍ରଗୁଡ଼ିକ ସରକାରର ଉଭୟ ଖରାପ ଓ ଭଲ ଦିଗ ଖୋଲିଦେବା ଉଚିତ । ତା' ହେଲେ ଯାଇ ସମ୍ବାଦପତ୍ର ସରକାରର ଉପକାର କରୁଛନ୍ତି ବୋଲି କୁହାଯିବ । ନହେଲେ ସମ୍ବାଦପତ୍ର ଯଦି ଖୁସାମତିଆ ହୋଇଯିବ ତେବେ ସବୁ ସରିଲା । ମିତ୍ରତା ଗଠନମୂଳକ ହେବା ଉଚିତ, ଖୁସାମତିଆ ନୁହେଁ । ଅନେକ କ୍ଷେତ୍ରରେ ସମ୍ବାଦପତ୍ର ମଧ୍ୟ ସତ୍ୟ ପରିବେଷଣ ନାମରେ ଡାହ ମିଛ ଲେଖୁଛନ୍ତି । ତାଙ୍କ ନାମରେ ମଧ୍ୟ ଏଭଳି ଡାହ ମିଛକଥା ଲେଖାଯାଉଛି । ଏହାକୁ ସେ ଆଦୌ ଭ୍ରୁକ୍ଷେପ କରନ୍ତି ନାହିଁ । ଏମିତି କହୁକହୁ ମଧ୍ୟ ସେ କହିଦେଲେ ତାଙ୍କ ମାଲିକାନାରେ 'ଖବର' ସମ୍ବାଦପତ୍ର ପ୍ରକାଶ ପାଉଥିବାବେଳେ ସେଥିରେ ମଧ୍ୟ ସରକାର ବିରୋଧୀ ଖବର ପ୍ରକାଶିତ ହେଉଛି । ଯାହା ସତ ତାହା ହିଁ ପ୍ରକାଶ ପାଇବାର ଆବଶ୍ୟକତା ରହିଛି । ସକାଳ ହେଲାମାତ୍ର ସେ ୧୮ଟି ସମ୍ବାଦପତ୍ର ପାଠ କରନ୍ତି । ଯେହେତୁ ରାଜନୀତିରେ ଅଛନ୍ତି ତେଣୁ ତାଙ୍କୁ ସମ୍ବାଦପତ୍ର ପଢ଼ିବାକୁ ହେବ । ସମ୍ବାଦପତ୍ରଟିଏ ପ୍ରକାଶ କରିବାକୁ ହେଲେ ତାହାର ଯେଉଁ କଷ୍ଟ ତାହାକୁ ସେ ଭଲ ଭାବେ ହୃଦୟଙ୍ଗମ କରିଛନ୍ତି । ଏମିତି ପ୍ୟାରୀମୋହନ ସଭାରେ ଅନେକ କଥା ବଖାଣି ଦେଇଗଲେ । ତେବେ ପ୍ୟାରୀମୋହନଙ୍କର ବକ୍ତବ୍ୟରୁ ତାଙ୍କର ଦୁଇଟି କଥା ସ୍ପଷ୍ଟ ହୋଇଗଲା । ତା' ହେଲା ସେ ଏକଦା କମ୍ୟୁନିଷ୍ଟ ଥିଲେ, ଅନ୍ୟଟି ହେଲା ତାଙ୍କ ବିରୋଧରେ ଯେତେ ଯିଏ ଯାହା ଲେଖିଲେ ମଧ୍ୟ ତାହାକୁ ସେ ଖାତିର କରନ୍ତି ନାହିଁ । ପ୍ୟାରୀମୋହନଙ୍କ ବୟସ ଏବେ ୭୦ ଟପିଗଲାଣି । କିନ୍ତୁ ଏହି ସଭାରେ ସେ ଯେଉଁ ବକ୍ତବ୍ୟ ରଖିଲେ ତାହା ବେଶ୍ ଦୃଢ଼ ଥିଲା । କମ୍ୟୁନିଷ୍ଟମାନଙ୍କର ଭାଷଣ ଯେପରି ହୋଇଥାଏ ସେହିପରି ବକ୍ତବ୍ୟ ଥିଲା ପ୍ୟାରୀମୋହନଙ୍କର । ଏମିତି ପ୍ୟାରୀମୋହନ ବକ୍ତବ୍ୟ ଦେଇ ସଙ୍ଗେସଙ୍ଗେ ଦିଲ୍ଲୀ ଚାଲିଗଲେ । କିନ୍ତୁ ତାଙ୍କ ବକ୍ତବ୍ୟକୁ ନେଇ ଚାଲିଲା ଚର୍ଚ୍ଚା । କିଏ କହିଲା ୭୦ ପରେ ପ୍ୟାରୀମୋହନଙ୍କର ଏହି ଦୃଢ଼ତା ଆଦୌ ଶୋଭା ପାଉନାହିଁ । ଯଦି ପ୍ୟାରୀମୋହନ ଚାକିରି ନକରି ମୂଳରୁ ରାଜନୀତି କରିଥା'ନ୍ତେ ତେବେ ଯୁବ ଅବସ୍ଥାରେ ତାଙ୍କ ପାଟିରେ ଏହି ବକ୍ତବ୍ୟ ସେତେବେଳେ ବେଶ୍ ଶୋଭା ପାଇଥା'ନ୍ତା । ଅନ୍ୟ କେତେକ ମଧ୍ୟ ପ୍ୟାରୀମୋହନଙ୍କ ବକ୍ତବ୍ୟ ସଂପର୍କରେ ଅନୁଶୀଳନ କରି କହିଲେ ଯଦି ସବୁ ଦଳରେ ପ୍ୟାରୀମୋହନଙ୍କ ପରି ଜଣେ ଜଣେ ନେତା ରହନ୍ତେ ତା' ହେଲେ ଓଡ଼ିଶାରେ ରାଜନୀତି ବେଶ୍ ଜମି ଯାଆନ୍ତା । ଯେମିତି ୭୦ ବର୍ଷ ପରେ ମଧ୍ୟ ପ୍ୟାରୀମୋହନ ୨୦ ବର୍ଷ ବୟସର ଯୁବକଙ୍କ ପରି ନିର୍ଭିକ ଭାଷଣ ଦେଇପାରୁଛନ୍ତି ସେହିପରି ଅନ୍ୟ ଦଳର ପରିସ୍ଥିତି ମଧ୍ୟ ହୁଅନ୍ତା । ତେବେ ସେ ଯାହା ହେଉନା

କାହିଁକି ପ୍ୟାରୀମୋହନଙ୍କ ରକ୍ତରେ ଯେ ବିଜେଡି ସହିତ କମ୍ୟୁନିଷ୍ଟ ପ୍ରବାହିତ ହେଉଛି ଏହା ସ୍ପଷ୍ଟ ହୋଇଯାଇଛି ୨୦୦୯ ନିର୍ବାଚନରେ । ନଚେତ କମ୍ୟୁନିଷ୍ଟ ସହିତ ବିଜେଡି ବୁଝାମଣା କରି ନଥା'ନ୍ତା । ସବୁ ପ୍ୟାରୀମୋହନଙ୍କର କମାଲ । ■

## ଦାମଙ୍କୁ ଭୋଜି ମନା



ଦାମୋଦର ରାଉତ କିଛି ବର୍ଷ ବ୍ୟବଧାନ ପରେ ଏବେ ପୁଣି ମନ୍ତ୍ରୀ ହୋଇଛନ୍ତି । କିନ୍ତୁ ପୂର୍ବର ମନ୍ତ୍ରୀ ଆଉ ଏବର ମନ୍ତ୍ରୀ ମଧ୍ୟରେ ତଫାତ୍ ଦେଖିବାକୁ ମିଳୁଛି । ପୂର୍ବରୁ ଦାମୋଦର ରାଉତଙ୍କୁ କୌଣସି ଭୋଜିକୁ ନିମନ୍ତ୍ରଣ କଲେ ସେ ସେଠାକୁ ଯା'ନ୍ତି ଏବଂ ଭୋଜି ଖାଇ ଫେରନ୍ତି । ଏବେ କିନ୍ତୁ ଦାମୋଦର ରାଉତଙ୍କର ଆଉ ଭୋଜି ନିଶା ନାହିଁ । ସେ ଭୋଜିକୁ ଗଲେ ଖାଇବାର ନାଁ ଧରୁନାହାନ୍ତି । ଏହାର କାରଣ ମଧ୍ୟ ସେ ଖୋଲାଖୋଲି କହିବାକୁ ପଛାଉ ନାହାନ୍ତି । କୁଆଡ଼େ ଡାଇବେଟିସ୍‌ର ମାତ୍ରା ଅଧିକ ଥିବାରୁ ସେ ଭୋଜିରେ ଖାଉନାହାନ୍ତି । ଏମିତି ଅଳ୍ପ ଖାଇବେ ବୋଲି ଭାବି ଯେତେବେଳେ ସେ ଭୋଜି ଖାଆନ୍ତି ସେତେବେଳେ ମାପ ଚୁପ କିଛି ରହେ ନାହିଁ । ଭୋଜିରେ ତାଙ୍କର ଭୂରିଭୋଜନ ହୋଇଯାଏ । ଏହା ସ୍ୱାସ୍ଥ୍ୟପ୍ରତି କ୍ଷତିକାରକ ବୋଲି ଡାକ୍ତର କହିଦେବା ପରେ ଦାମୋଦର ଏବେ ନିଜ ସ୍ୱାସ୍ଥ୍ୟପ୍ରତି ବେଶ୍ ଯତ୍ନବାନ ହୋଇଯାଇଛନ୍ତି । ଯେଉଁଥିପାଇଁ ସେ ଭୋଜିକୁ ଯାଉଛନ୍ତି ସିନା କିନ୍ତୁ ଖାଉନାହାନ୍ତି । ଖାଲି ମୁହଁ ଦେଖାଇ ଫେରୁଛନ୍ତି । ଅବଶ୍ୟ ଦାମଙ୍କ ନିନ୍ଦୁକ ମାନେ ଏହାକୁ ଅନ୍ୟ ରୂପ ଦେଉଛନ୍ତି । କୁଆଡ଼େ ପଂଚାୟତିରାଜ ବିଭାଗ ହାତକୁ ନ ଆସିବା ପର୍ଯ୍ୟନ୍ତ ଦାମୋଦର ଏଭଳି ଭୋଜିରେ ଅଖିଆ ହୋଇ ରହିବେ । ଏହା କୁଆଡ଼େ ତାଙ୍କୁ ଜ୍ୟୋତିଷ ପରାମର୍ଶ ଦେଇଛନ୍ତି । ତେବେ ଦାମ ପଂଚାୟତି ରାଜ ବିଭାଗ ବଦଳରେ ୪ଟି ବିଭାଗ ପାଇଛନ୍ତି । ପ୍ରଥମେ ଯଦିଓ ତାଙ୍କର ମନ ଟିକିଏ ଉଣା ହୋଇଥିଲା ଏବେ କିନ୍ତୁ ଆଉ ସେ ମନୋଭାବ ନାହିଁ । ଜ୍ୟୋତିଷଙ୍କ ପରାମର୍ଶ ପାଳନ କରୁଥିବାରୁ ଦାମଙ୍କୁ ଭବିଷ୍ୟତରେ ପଂଚାୟତିରାଜ ବିଭାଗ ମିଳୁଛି ନା ନାହିଁ ତାହା ଦେଖିବାକୁ ବାକି ରହିଛି । ■

## ଡିନର ରାଜନୀତି

ଏମିତି ଦେଖିଲେ କଟକ ସାଂସଦ ଭର୍ତ୍ତୃହରି ମହତାବ ଓ କେନ୍ଦ୍ରାପଡ଼ା ସାଂସଦ ବୈଜୟନ୍ତ ପଣ୍ଡାଙ୍କ ମଧ୍ୟରେ ସମ୍ପର୍କ ଅହି-ନକୁଳ ପରି । କୁଆଡ଼େ ଭର୍ତ୍ତୃହରିଙ୍କୁ ହଟାଇଦେଇ କଟକରୁ ଏଥର ନିର୍ବାଚନରେ ବିଜେଡି ପ୍ରାର୍ଥୀ ହୋଇ ଲଢ଼ିଥା'ନ୍ତେ ବୋଲି ଆଶା କରୁଥିଲେ ବୈଜୟନ୍ତ । କିନ୍ତୁ ଭର୍ତ୍ତୃହରିଙ୍କ ଶାଣିତ ଯୁଦ୍ଧରେ ବୈଜୟନ୍ତଙ୍କୁ କଟକ ଛାଡ଼ିବାକୁ ପଡ଼ିଲା ଆଉ ସେ କେନ୍ଦ୍ରାପଡ଼ାରୁ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ଏମିତି କିଛିମାସ ହେଲାଣି ଭର୍ତ୍ତୃହରି ଓ ବୈଜୟନ୍ତଙ୍କ ମଧ୍ୟରେ ଚାଲିଛି ଶୀତଳଯୁଦ୍ଧ । ଉଭୟଙ୍କ ପାଖରେ ରହିଛି ମିଡ଼ିଆ । ଭର୍ତ୍ତୃହରିଙ୍କ ପାଖରେ ପ୍ରିଂଟ ମିଡ଼ିଆ 'ପ୍ରଜାତନ୍ତ୍ର'

ରହିଥିବା ବେଳେ ବୈଜୟନ୍ତଙ୍କ ପାଖରେ ରହିଛି ଇଲେକ୍‌ଟ୍ରୋନିକ୍ସ ମିଡ଼ିଆ 'ଓଟିଭି' । ତେବେ ଦିଲ୍ଲୀରେ ଭର୍ତ୍ତୃହରି ବନାମ ବୈଜୟନ୍ତଙ୍କୁ ନେଇ ଏବେ ଚାଲିଛି ରାଜନୀତି ମହଲରେ ଚର୍ଚ୍ଚା । ଭର୍ତ୍ତୃହରି ହେଉଛନ୍ତି ଲୋକସଭାରେ ବିଜେଡି ସଂସଦୀୟ ଦଳର ସଚେତକ । କିଛିଦିନ ପୂର୍ବରୁ ଭର୍ତ୍ତୃହରି ତାଙ୍କ ପକ୍ଷରୁ ଏକ ଡିନର ପାର୍ଟିର ଆୟୋଜନ କଲେ । ଏଥିରେ ସେ ନିର୍ଦ୍ଦିଷ୍ଟ ଭାବେ ଓଡ଼ିଶାର ସାଂସଦମାନଙ୍କୁ ଡାକିଥିଲେ । ଉଦ୍ଦେଶ୍ୟ ଥିଲା- ଓଡ଼ିଶାର ସ୍ୱାର୍ଥ ସମ୍ପର୍କରେ ଲୋକସଭାରେ ଆଲୋଚନା କରିବା ପାଇଁ । ଡିନର ପାର୍ଟିରେ ଓଡ଼ିଶାର ସବୁ ସାଂସଦ ମିଳିତ ହେଲେ । ଭର୍ତ୍ତୃହରିଙ୍କ ଏହି ଡିନର ପାର୍ଟିର କିଛିଦିନ ନଯାଉଣୁ ଲୋକସଭା ସାଂସଦ ବୈଜୟନ୍ତ ପଣ୍ଡା ଏକ ଡିନର ପାର୍ଟିର ଆୟୋଜନ କଲେ ।



ଏଥିରେ ସେ ନାମୀଦାମୀ ନେତାଙ୍କୁ ନିମନ୍ତ୍ରଣ କଲେ । ବୈଜୟନ୍ତଙ୍କ ଉଦ୍ଦେଶ୍ୟ ଥିଲା ଯେ, ତାଙ୍କ ଡିନର ପାର୍ଟି ଭର୍ତ୍ତୃହରିଙ୍କ ଡିନର ପାର୍ଟି ଅପେକ୍ଷା ବହୁ ଉପରେ ବୋଲି ପ୍ରମାଣିତ କରିବା । ଏମିତି ଏହି ଡିନର ପାର୍ଟିରେ ଓଡ଼ିଶାର ସାଂସଦମାନେ ଯୋଗ ଦେଲେ । ପୁଣି କେନ୍ଦ୍ରମନ୍ତ୍ରୀ ପ୍ରଫୁଲ ପଟେଲ, ଜ୍ୟୋର୍ତିଆଦିତ୍ୟ ସିନ୍ଧିଆ, ସଚିନ ପାଇଲଟ, ରବିଶଙ୍କର ପ୍ରସାଦ, ରାହୁଲ ବଜାଜ ପରି ଅନେକ ନେତା ଓ ଶିଳ୍ପପତି ମଧ୍ୟ ଯୋଗ ଦେଇଥିଲେ । ଦିଲ୍ଲୀରେ ଡିନର ପାର୍ଟି ଦେବାରେ ବୈଜୟନ୍ତ ହେଉଛନ୍ତି ଓସ୍ତାଦ । ଏମିତି ଅତୀତରେ ଅନେକ ଡିନର ପାର୍ଟି ସେ ଦେଇସାରିଛନ୍ତି । କିନ୍ତୁ ଭର୍ତ୍ତୃହରି ଡିନର ପାର୍ଟି ଦେବାପରେ ତାହା ବୈଜୟନ୍ତଙ୍କର ଦେହସୁହା ହେଲାନାହିଁ । ଡିନର ପାର୍ଟି କଥା କହିଲେ ବୈଜୟନ୍ତଙ୍କୁ ବୁଝାଉଥିବାବେଳେ ଭର୍ତ୍ତୃହରି କୁଆଡୁ ଆସିଲେ ବୋଲି ବୈଜୟନ୍ତଙ୍କ କାନରେ ତାଙ୍କର କେତେକ ନିକଟତମ ନେତା କହିଲେ । ଏଥିରେ ବୈଜୟନ୍ତ କୁଆଡ଼େ ଅତି ଉତ୍ସାହିତ ହୋଇଗଲେ ଏବଂ ସଙ୍ଗେସଙ୍ଗେ ଆୟୋଜନ ହେଲା ଡିନର ପାର୍ଟି ଆଉ ଏହି ପାର୍ଟି ଓଡ଼ିଶା ସାଂସଦଙ୍କ ମଧ୍ୟରେ ସୀମିତ ନରହି ଭାରତ ବର୍ଷର ସାଂସଦଙ୍କ ଆଡ଼କୁ ବ୍ୟାପିଗଲା । କେନ୍ଦ୍ରମନ୍ତ୍ରୀ ମଧ୍ୟ ଯୋଗ ଦେବାରୁ ବୈଜୟନ୍ତଙ୍କର କାଟ୍‌ତି କେତେ ତାହା ମଧ୍ୟ ସେ ଦେଖାଇଦେଲେ । ଏମିତି ବୈଜୟନ୍ତ କହୁକହୁ କୁଆଡ଼େ କହିଦେଇଛନ୍ତି ଯେ, ଏଥର ସିନା କେନ୍ଦ୍ରାପଡ଼ା କିନ୍ତୁ ଆସନ୍ତା ଥର ସେ କଟକରୁ ପ୍ରାର୍ଥୀ ହେବେ । ଯେମିତି ହେଲେ ତାଙ୍କୁ କଟକ ଗଡ଼ରୁ ବିଜୟୀ ହେବକୁ ପଡ଼ିବ । ବୈଜୟନ୍ତଙ୍କର ଏହି କଥା କୁଆଡ଼େ ହାଟରେ ପଡ଼ି ଦାଣ୍ଡରେ ଗଡ଼ିଲାଣି । ଭର୍ତ୍ତୃହରି ଆଉ ବୈଜୟନ୍ତ ବିବାଦ ଦିନକୁ ଦିନ ମଧ୍ୟ ତେଜିବାରେ ଲାଗିଛି । ଏବେ ଦେଖାଯାଉ ଏହି ବିବାଦ ଯୋଗୁ କେତେଥର ଡିନର ରାଜନୀତି ହେଉଛି । ■

# ଅମରଙ୍କ ପକେଟ୍



ସାଧାରଣତଃ ସାର୍ଟଟିଏ ଜଲେ ସମସ୍ତେ ସେଥିରେ ପକେଟ୍ ରଖିବାକୁ ପସନ୍ଦ କରିଥା'ନ୍ତି । କିଏ ସେହି ପକେଟ୍‌ରେ ପେନ୍ ରଖିଲାଣି ତ ଆଉ କିଏ ସେହି ପକେଟ୍‌ରେ ପରିଚୟପତ୍ର ତ ପୁଣି କିଏ ମୋବାଇଲ ରଖିଲାଣି । କିନ୍ତୁ ଏ ଯେଉଁ ପକେଟ୍ କଥା କୁହାଯାଉଛି ସେଥିରେ ଏସବୁ ରଖାଯାଏ ନାହିଁ । ଏହି ପକେଟ୍ ପ୍ରସଙ୍ଗରେ ବଡ଼ଚଣା ବିଧାୟକ ଅମର ସତପଥୀ ଆପେଆପେ ଯୋଡ଼ି ହୋଇଯାଇଛନ୍ତି । ଅମର ସବୁବେଳେ କୁର୍ତା, ପାଇଜାମା ପିନ୍ଧିଥା'ନ୍ତି । ତାଙ୍କ କୁର୍ତାରେ ଚାରୋଟି ପକେଟ୍ ଥାଏ । ଦୁଇଟି ପକେଟ୍ ଛାତି ପାଖରେ ଏବଂ ଅନ୍ୟ ଦୁଇଟି ପକେଟ୍ ଅଂଟା ପାଖରେ ଥାଏ । ସାଧାରଣତଃ କୁର୍ତାରେ ଅଂଟା ପାଖରେ ପକେଟ୍ ରଖାଯାଏ । କିନ୍ତୁ ଅମରଙ୍କ ଷ୍ଟାଇଲ ହେଲା ଛାତି ପାଖରେ ମଧ୍ୟ ଦୁଇଟି ପକେଟ୍ ରହିବ । ପୁଣି ସେହି ପକେଟ୍ ସାଧାରଣ ପକେଟ୍ ହେବନାହିଁ । ପକେଟ୍ ଉପରେ କଭର ରହିବ । ଏମିତି ଅମରଙ୍କ ସେହି ପକେଟ୍‌କୁ ଯଦି କେହି ଅଣ୍ଡାଳି ଦେବ ତେବେ ସେଥିରୁ କାଗଜପତ୍ର ବି ଗୋଟିଏ ବାହାରିବ ନାହିଁ । ଛାତି ପକେଟ୍ ସବୁବେଳେ ଖାଲି । କାଁ ଭାଁ କେତେବେଳେ ଅଂଟାପାଖ ପକେଟ୍‌ରେ କାଗଜପତ୍ର ଥାଏ । ତେବେ ଅମର ବିଧାୟକ ହେବା ସମୟରୁ କୁର୍ତାକୁ ଯେପରି ଷ୍ଟାଇଲରେ ସେ ତିଆରି କରୁଥିଲେ ଏବେବି ୨୦ ବର୍ଷ ପରେ ସେହି ଷ୍ଟାଇଲର କୁର୍ତା ସେ ତିଆରି କରି ପିନ୍ଧୁଛନ୍ତି । ଅମରଙ୍କ ପାଖଲୋକମାନେ କହୁଛନ୍ତି ଯୁଗ ବଦଳି ଯାଇଛି, ରାଜନୀତି ମଧ୍ୟ ବଦଳି ଗଲାଣି କିନ୍ତୁ ଅମର ଯେଉଁ ଅମରକୁ ସେହି ଅମର ହୋଇରହିଛନ୍ତି । ତାଙ୍କର ଷ୍ଟାଇଲ ଆଦୌ ବଦଳି ନାହିଁ । ଯେଉଁ ପକେଟ ଥିବା କୁର୍ତା ସେ ପିନ୍ଧୁଥିଲେ ଏବେବି ସେହି କୁର୍ତା ପିନ୍ଧୁଛନ୍ତି । ଯଦିଓ ସେହି ଷ୍ଟାଇଲ ଆଉ ନାହିଁ । ପକେଟ୍ ଥିବା କୁର୍ତା ପିନ୍ଧି ଅମର ତାଙ୍କ ଷ୍ଟାଇଲରେ ଅମର ହୋଇ ରହିଛନ୍ତି । ଏବେ ଦେଖାଯାଉ ଯୁଗର ପରିବର୍ତନ ହେଉଥିବାବେଳେ ଅମର ତାଙ୍କର ଏହି ଷ୍ଟାଇଲକୁ ଭବିଷ୍ୟତରେ କେତେଦିନ ବଜାୟ ରଖୁଛନ୍ତି । ■



# ଶାନ୍ତି ବିଧାୟକ

ଏମିତି ସେ ବିଧାୟକ ହୁଅନ୍ତୁ କିମ୍ବା ଅନ୍ୟ ଯାହାକିଛି ହୁଅନ୍ତୁ ମଣିଷ ହୋଇଥିଲେ ସମସ୍ତେ ଶାନ୍ତିରେ ରହିବାକୁ ଚାହାନ୍ତି । ଅନେକ ମଧ୍ୟ ଖୋଲାଖୋଲି ଭାବେ ଶାନ୍ତିରେ ରହିବା ପାଇଁ ଇଚ୍ଛାପ୍ରକାଶ କରନ୍ତି । ଓଡ଼ିଶା ବିଧାନସଭାର ଜଣେ ବିଧାୟକ ଏବେ ଶାନ୍ତିରେ ରହିବା ପାଇଁ ଇଚ୍ଛାପ୍ରକାଶ କରୁଥିବାର ଦେଖାଯାଇଛି । ସେ ହେଲେ ଗୋପାଳପୁର ବିଧାୟକ ଡକ୍ଟର ପ୍ରଦୀପ ପାଣିଗ୍ରାହୀ । ଏମିତି ପ୍ରଦୀପ ବିଧାୟକ ହେବା ପୂର୍ବରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ନିର୍ବାଚନମଣ୍ଡଳୀ

ହିଂଜିଳିରେ ତାଙ୍କର ପ୍ରତିନିଧି ହୋଇଥିଲେ । ମୁଖ୍ୟମନ୍ତ୍ରୀ ମଧ୍ୟ ପ୍ରଦୀପଙ୍କର ଯେପରି ବିଜୟ ହେବ ସେ ଦିଗରେ ବି ଉଦ୍ୟମ ଜାରି ରଖିଥିଲେ । ଏମିତି ଗଂଜାମ ଜିଲାରେ ବିଜେଡିର ଗୋଷ୍ଠୀକନ୍ଦଳ ବେଶ୍ ବାରି ହୋଇଯାଏ । ଏହି ଗୋଷ୍ଠୀ ଯେ ଅନ୍ୟ କେଉଁ କାରଣ ପାଇଁ ହୋଇଛି ତାହା ନୁହେଁ । କେବଳ ମନ୍ତ୍ରୀ ପଦକୁ ନେଇ । ଗଂଜାମ ଜିଲାରେ ତିନିଥରରୁ ଅଧିକ ଥର ବିଜୟୀ ହେବା ବିଧାୟକ ଓ ବିଧାୟିକାଙ୍କ ସଂଖ୍ୟା ଅଧିକ ଅଟେ । ପୁଣି ଏହି ଜିଲାରେ ୧୩ଟି ନିର୍ବାଚନମଣ୍ଡଳୀ ରହିଛି । ପ୍ରାୟ ଛୋଟଛୋଟ ତିନୋଟି ଜିଲା ସହିତ ଏହି ଜିଲାର ବିଧାୟକଙ୍କ ସଂଖ୍ୟା ସମାନ । ଏହି ଦୃଷ୍ଟିରୁ ତିନୋଟି ଜିଲାରେ ଯେପରି ମନ୍ତ୍ରୀ ପ୍ରତିନିଧିତ୍ୱ ରହୁଛନ୍ତି ଅନୁରୂପ ଭାବେ ଏହି ଜିଲାକୁ ସେହିପରି ମନ୍ତ୍ରିମଣ୍ଡଳରେ ସ୍ଥାନ ଦିଆଯିବାର ଆବଶ୍ୟକତା ରହିଛି । ଏହା ହେଲେ ଆଉ ଗୋଷ୍ଠୀବିବାଦ ରହିବ ନାହିଁ । ସମସ୍ତେ ଏକ ହୋଇ କାମ କରିବେ । ତେବେ ନିର୍ବାଚନ ସମୟରେ ପ୍ରଦୀପ ପାଣିଗ୍ରାହୀଙ୍କୁ ଗୋଟିଏ ଗୋଷ୍ଠୀ ନିଜର ବୋଲି କହିଲେ । ଅନ୍ୟ ଗୋଷ୍ଠୀ ତାଙ୍କୁ ହରାଇବା ପାଇଁ ଉଦ୍ୟମ କରୁଛି ବୋଲି ମଧ୍ୟ ପ୍ରଚାର କରାଗଲା । ତେବେ ପ୍ରଦୀପଙ୍କ ମତ ଏ ଦିଗରେ ଭିନ୍ନ । ତାଙ୍କର ସିଧାସଳଖ ମନ୍ତବ୍ୟ ହେଲା- ରାଜସ୍ୱମନ୍ତ୍ରୀ ତଥା ଜିଲାର ବରିଷ୍ଠ ବିଜେଡ଼ି ନେତା ସୂର୍ଯ୍ୟନାରାୟଣ ପାତ୍ରଙ୍କ ସହିତ ତାଙ୍କର ବେଶ୍ ସୁସମ୍ପର୍କ ରହିଛି । ନିର୍ବାଚନ ସମୟରେ ଯେଉଁ ପ୍ରଚାର ହେଲା ତାହାର କୌଣସି ସତ୍ୟତା ନଥିଲା । ଏବେ ସେ ନିଜେ ଗୋପାଳପୁର ବିଧାୟକ ଆଉ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ବାଚନମଣ୍ଡଳୀ ହିଞ୍ଜିଳିରେ ମଧ୍ୟ ସେ ତାଙ୍କର ପ୍ରତିନିଧିଭାବେ କାମ କରୁଛନ୍ତି । ତାଙ୍କୁ ଦୁଇଟି ନିର୍ବାଚନମଣ୍ଡଳୀ ବୁଝିବାକୁ ପଡୁଛି । ଏହି ଦୃଷ୍ଟିରୁ ତାଙ୍କର କାମ କରିବାକୁ ସମୟ ଅଣ୍ଟୁନାହିଁ । ସେ ଅଯଥାରେ ବିବାଦ ମଧ୍ୟକୁ ପେଶି ହୋଇଯିବାକୁ ଚାହୁଁନାହାନ୍ତି । 'ଲୋ ପ୍ରୋଫାଇଲ'ରେ ସେ ରହିବା ପାଇଁ ଚାହୁଁଛନ୍ତି । ଏହି ମନ୍ତବ୍ୟ ପ୍ରଦୀପ କ୍ରମେ ବିଭିନ୍ନ ସ୍ଥାନରେ ଦେଉଥିବାର ଦେଖାଗଲାଣି । ଏହା ଫଳରେ ଗଂଜାମ ଜିଲାରେ ସୂର୍ଯ୍ୟ ପାତ୍ର ଓ ପ୍ରଦୀପଙ୍କ ମଧ୍ୟରେ ବିବାଦ ଉପୁଜିଥିଲା ବୋଲି ଯେଉଁ ପ୍ରଚାର ଚାଲିଥିଲା ତାହ ଅପପ୍ରଚାର ଥିଲା ବୋଲି ଏବେ ଜଣାପଡୁଛି । ତେବେ ପ୍ରଦୀପଙ୍କର ଗୋଟିଏ ମନ୍ତବ୍ୟ ବେଶ୍ ଗୁରୁତ୍ୱବହନ କରୁଛି । ତାହା ହେଲା- ସେ ଶାନ୍ତିରେ ରହିବାକୁ ଚାହୁଁଛନ୍ତି । ମାନେ ସେ ହେବେ ଶାନ୍ତି ବିଧାୟକ । ଦେଖାଯାଉ ଅଶାନ୍ତିର ଜିଲା ବୋଲି କୁହାଯାଉଥିବା ଗଂଜାମ ଜିଲାରୁ ନିର୍ବାଚିତ ହୋଇ ପ୍ରଦୀପ ଶାନ୍ତି ବିଧାୟକ ହୋଇପାରୁଛନ୍ତି କି ନାହିଁ । ■

## ଦାମାଙ୍କୁ ଚିଠି



ସାଧାରଣତଃ ଚିଠି ପଢୁଥିବା ଲୋକଙ୍କ ପାଖକୁ ହିଁ ଚିଠି ଆସିଥାଏ । ନବୀନ ପଟ୍ଟନାୟକଙ୍କ ତୃତୀୟ ମନ୍ତ୍ରିମଣ୍ଡଳରେ ଡାକ୍ତର ଦାମୋଦର ରାଉତ କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶର ମନ୍ତ୍ରୀ ହୋଇଛନ୍ତି । ଏହି ସବୁ ବିଭାଗଗୁଡ଼ିକ ଗାଁ ଗହଳି ପାଇଁ ଉଦ୍ଦିଷ୍ଟ । ଆଉ ସାଧାରଣତଃ

ଗାଁ ଗହଳିର ଲୋକମାନେ ସହର ଲୋକଙ୍କ ଅପେକ୍ଷା ଅଧିକ ଚିଠି ଲେଖିଥା'ନ୍ତି । ତେଣୁ ମନ୍ତ୍ରୀ ଭାବେ ଦାମଙ୍କ ପାଖକୁ ଚିଠି ଆସିବା ସ୍ୱାଭାବିକ । ଏମିତି ଦାମ ସେଦିନ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ବସି ଫାଇଲ କାମ କରୁଥିଲେ । ବିଧାନସଭା ଅଧିବେଶନ ଶେଷ ହୋଇଯାଇଥିବାରୁ ମାଳମାଳ ବିଧାୟକ ସେମାନଙ୍କ କାମ ପାଇଁ ଦାମଙ୍କୁ ସାକ୍ଷାତ କରୁଥା'ନ୍ତି । ହଠାତ୍ ଦାମଙ୍କର ଆଖି ପଡ଼ିଲା ଟେବୁଲ ଉପରେ ପଡିଥିବା ଏକ ପୋଷ୍ଟକାର୍ଡ଼ ଚିଠି ଉପରେ । ଦାମ ସେହି ପୋଷ୍ଟକାର୍ଡ଼ଟିକୁ ଆମୂଳଚୂଳ ପଢ଼ିଲେ ଏବଂ ସଙ୍ଗେସଙ୍ଗେ ଦୁଇଜଣଙ୍କୁ ଟେଲିଫୋନ୍ ଲଗାଅ ବୋଲି ନିର୍ଦ୍ଦେଶ ଦେଲେ । ଟେଲିଫୋନ୍‌ରେ ଦାମ ସେମାନଙ୍କୁ କହିଲେ- ଚିଠି ଆସିଛି କୁଆଡ଼େ କୃଷି ଋଣ ଦେବାରେ ପାତରଅନ୍ତର ହେଉଛି । ଯିଏ ଲାଂଚ ଦେଲା ତାକୁ ଅଧିକ ଋଣ ମିଳୁଛି ଆଉ ଯିଏ ଲାଂଚ ନଦେଲା ତାକୁ କମ୍ ଋଣ ମିଳୁଛି । ପୁଣି ଚିଠିରେ ଲେଖାହୋଇଛି ଯେଉଁମାନେ ଏହି କାମ କରୁଛନ୍ତି ସେମାନଙ୍କ ହାତ ଲମ୍ବା । ତେଣୁ ଅଭିଯୋଗ କଲେ ତାର ମୂଲ୍ୟ କିଛି ମିଳିବ ନାହିଁ । ଚିଠିରେ ଲେଖା ହୋଇଥିବା ଧାଡ଼ିଟିଏ ସମ୍ପର୍କରେ ମଧ ସେ ଟେଲିଫୋନ୍‌ରେ ପଢ଼ିଦେଲେ । ତାହା ଥିଲା- ତୁ ଗୁହାରି କରିବୁ ଯାହାକୁ, ମୁଁ ଘଇତା କରିଛି ତାହାକୁ । ଏହା ଶୁଣାଇ ଦେଇ ଦାମ ଚୁପ୍ ହୋଇ ରହିଲେ ନାହିଁ । ଯେଉଁ ଅଭିଯୋଗ ହୋଇଛି ତାହାର ତୁରନ୍ତ ତଦନ୍ତ କରିବାକୁ ସେ ନିର୍ଦ୍ଦେଶ ଦେଲେ । ସେତିକିରେ ବି ଦାମ ଅଟକିଗଲେ ନାହିଁ । ଯଦି ଅଭିଯୋଗ ମିଥ୍ୟା ବୋଲି ପ୍ରମାଣିତ ହୁଏ ତେବେ ଅଭିଯୋଗକାରୀଙ୍କ ନାମରେ ମଧ ଏତଲା ଦିଆଯିବା ଉଚିତ ବୋଲି ଦାମ ପ୍ରକାଶ କଲେ । ଗୋଟିଏ ପୋଷ୍ଟକାର୍ଡ଼ ଯେ, ଜଣେ ମନ୍ତ୍ରୀଙ୍କ ପାଇଁ କେତେ ଗୁରୁତ୍ୱ ତାହା ଏଥିରୁ ବେଶ୍ ସ୍ପଷ୍ଟ ହୋଇଯାଉଛି । ଯେଉଁଥିପାଇଁ ଦାମ ସବୁବେଳେ ତାଙ୍କ ପାଖକୁ ଆସୁଥିବା ଚିଠିକୁ ଟିକିନିଖି କରି ପଢ଼ିଥା'ନ୍ତି । ଶାସନରେ ଥିଲେ ସାମାନ୍ୟ ଅଭିଯୋଗକୁ ଗୁରୁତ୍ୱ ଦିଆଯିବାର ଆବଶ୍ୟକତା ରହିଛି । ଏମିତି ଦାମଙ୍କ ନାମ ସହିତ ଅତୀତରେ ବହୁ ବିଶେଷଣ ଯୋଡ଼ି ହୋଇଯାଇଛି । ମନ୍ତ୍ରୀ ହେଉହେଉ ଦାମଙ୍କ କ୍ଷେତ୍ରରେ ଯେଉଁ ବିଶେଷଣ ଯୋଡ଼ି ହୋଇଯାଇଛି ତାହା ହେଲା- ଚିଠି ପଢ଼ା ମନ୍ତ୍ରୀ ଦାମ । ■

## ପ୍ୟାରୀ ବନାମ ଖବର



ବିଜେଡ଼ିର ଦ୍ୱିତୀୟ କ୍ଷମତାକେନ୍ଦ୍ର ପ୍ୟାରୀମୋହନ ମହାପାତ୍ରଙ୍କୁ ଦଳର ମନ୍ତ୍ରୀ ଓ ବିଧାୟକ ସମସ୍ତଙ୍କର ଏବେ ଭୟ । ଏମିତି ତ ବିଭିନ୍ନ ସଭା ସମିତିରେ ପ୍ୟାରୀମୋହନ ତାଙ୍କ ମାଲିକାନାରେ 'ଖବର' ପ୍ରକାଶ ପାଉଛି ବୋଲି ଖୋଲାଖୋଲି ଭାବେ କହିବାକୁ ପଛାଉନାହାନ୍ତି । ତେବେ ପ୍ୟାରୀମୋହନଙ୍କୁ କିପରି 'ଖବର' ନାମଟି ମିଳିଲା ସେକଥା ଊଣାଅଧିକେ ପ୍ରାୟ କେହି ଜାଣନ୍ତି ନାହିଁ । ଏମିତି ଦେଖିଲେ ଖବର ସମ୍ବାଦପତ୍ରର ମାଲିକ ଥିଲେ ଦିବାକର ମିଶ୍ର । ତାଙ୍କର ସାନ ଜ୍ୱାଇଁ ହେଉଛନ୍ତି ରବି ନାରାୟଣ ପାଣି । ଯେହେତୁ ରବି ନାରାୟଣ ଜଣେ

ଓକିଲ ଥିଲେ ଏବଂ ରାଜନୀତି ସହିତ ସମ୍ପୃକ୍ତ ଥିଲେ ସେହି ଦୃଷ୍ଟିରୁ 'ଖବର' ସମ୍ବାଦପତ୍ରର ଦେଖାଶୁଣା କରିପାରିବେ ବୋଲି ତାଙ୍କ ଶ୍ୱଶୁର ଭାବିନେଲେ ଏବଂ ତାଙ୍କରି ହାତରେ 'ଖବର' ର ସମସ୍ତ ଦାୟିତ୍ୱ ସମର୍ପି ଦେଲେ । ଅବଶ୍ୟ ପୂର୍ବରୁ ଏହାର ବୁଝାସୁଝା କରିବା ପାଇଁ ଦିବାକର ତାଙ୍କର ପୁଅମାନଙ୍କୁ ମଧ୍ୟ ଦାୟିତ୍ୱ ଦେଇଥିଲେ । କିନ୍ତୁ ସେମାନେ ବୁଝାବୁଝି ଠିକ୍ ଭାବେ ନ କରିବାରୁ ରବିଙ୍କ ପାଖକୁ ଦାୟିତ୍ୱ ଆସିଥିଲା । ରବି ମଧ୍ୟ ତାହାର ଦାୟିତ୍ୱ ଠିକ୍ ଭାବେ ତୁଲାଇପାରୁନଥିଲେ । ମଣିକାଂଚନ ସଂଯୋଗ ପରି ପ୍ୟାରୀମୋହନ ମହାପାତ୍ରଙ୍କ ସହିତ ରବି ନାରାୟଣ ପାଣିଙ୍କର ସଂଯୋଗ ହେଲା । ପ୍ରସଙ୍ଗକ୍ରମେ 'ଖବର' କଥା ଉଠିଲା । ପ୍ୟାରୀମୋହନ 'ଖବର'ର ମାଲିକାନା କିଣିନେଲେ ଏବଂ 'ଖବର'କୁ ଦୈନିକ ସମ୍ବାଦପତ୍ରରେ ପ୍ରକାଶ କରିବା ପାଇଁ ସ୍ୱପ୍ନ ଦେଖିଲେ । ସାପ୍ତାହିକ ଭାବେ 'ଖବର' ପ୍ରକାଶ ପାଇବା ପରେ ତାହା ସମସ୍ତଙ୍କ ଦୃଷ୍ଟିକୁ ଆସିଥିଲା । ପରେ ଏହା ଦୈନିକ ହୋଇଛି । ତେବେ ରବି ପାଣି 'ଖବର'କୁ ପ୍ୟାରୀମୋହନଙ୍କ ହାତରେ ଟେକି ଦେଇଥିବାରୁ ସେ ଯେ ଏ ବାବଦରେ ପୁରସ୍କାର ପାଇନାହାନ୍ତି ତାହାନୁହେଁ । ଏମିତି ରବି ୧୯୮୯ ମସିହାରେ ଦେବଗଡ଼ରୁ ଜନତା ଦଳରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । ମାତ୍ର ୨ ବର୍ଷ ପାଇଁ ରବି ହୋଇଥିଲେ ଲୋକସଭା ସାଂସଦ । ଏହାପରେ ସେ ୩ ଥର ପ୍ରାର୍ଥୀ ହୋଇଥିଲେ ମଧ୍ୟ ଜିତିପାରି ନଥିଲେ । ୧୯୯୧ରୁ ୨୦୦୯ । ୧୮ ବର୍ଷ ଧରି ରବି ଆଉ ନିର୍ବାଚିତ ପ୍ରତିନିଧି ନଥିଲେ । ୧୮ ବର୍ଷର ବ୍ୟବଧାନ ପରେ ସେ ପୁଣି ସକ୍ରିୟ ରାଜନୀତିକୁ ଆସିବେ ବୋଲି ମଧ୍ୟ ଭାବି ନଥିଲେ । ଏମିତି ସେ ଲୋକସଭା ନିର୍ବାଚନରେ ଲଢୁଥିବାରୁ ଏଥର ଢେଙ୍କାନାଳ ଲୋକସଭା ଆସନରୁ ପ୍ରାର୍ଥୀ ହେବାପାଇଁ ଆଶାୟୀ ଥିଲେ । କିନ୍ତୁ ତାଙ୍କୁ ଟିକଟ ମିଳିଲା ପାଲଲହଡ଼ା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବା ପାଇଁ । ସେ ଆଗପଛ ନଭାବି ବିଜେଡ଼ିରୁ ପ୍ରାର୍ଥୀ ହେଲେ ଏବଂ ଜିତିଲେ । ପ୍ରଥମଥର ପାଇଁ ବିଧାନସଭାକୁ ଆସିଥିବାବେଳେ ରବିଙ୍କୁ ମିଳିଛି ସରକାରୀ ଦଳର ମୁଖ୍ୟସଚେତକ ପଦ । ଏମିତି ଅନେକ ଅଭିଜ୍ଞ ବିଧାୟକ ଅଛନ୍ତି । ଏହାସତ୍ତ୍ୱେ ରବି ମୁଖ୍ୟସଚେତକ ହୋଇଛନ୍ତି । ରବି କିପରି ଏଭଳି ଗୁରୁତ୍ୱପୂର୍ଣ୍ଣ ପଦବୀ ପାଇଲେ ଏବଂ ୧୮ ବର୍ଷ ପରେ ତାଙ୍କୁ ବିଧାୟକଭାବେ ଲଢ଼ିବା ନିମନ୍ତେ କିପରି ସୁଯୋଗ ମିଳିଲା ତାହାକୁ ନେଇ ରାଜନୀତି ମହଲରେ ଚର୍ଚ୍ଚା ଚାଲିଛି । ତେବେ ଏ ସବୁ ପଛରେ 'ଖବର' ରହିଛି । ରବି 'ଖବର' ସମ୍ବାଦପତ୍ରଟିକୁ ପ୍ୟାରୀମୋହନଙ୍କୁ ଦେଇଥିବାରୁ ବୋଧହୁଏ ରବିଙ୍କର ସେହି ଋଣକୁ ପ୍ୟାରୀମୋହନ ସୁଝିଛନ୍ତି । ■

## ଦିନରାତି ମନ୍ତ୍ରୀ



ମନ୍ତ୍ରୀଙ୍କ ପାଇଁ ଦିନ ଯାହା ରାତି ବି ସେଇଆ । ମାନେ ଦିନରେ ସେ ମନ୍ତ୍ରୀ ଆଉ ରାତିରେ ବି ମନ୍ତ୍ରୀ । ଏହାକୁ ଭଲ ଭାବେ ହୃଦୟଙ୍ଗମ କରିଛନ୍ତି ଯୋଗାଣମନ୍ତ୍ରୀ ସାରଦା ପ୍ରସାଦ ନାୟକ । ଯୋଗାଣ ବିଭାଗକୁ ସାଧାରଣତଃ ଖାଉଟୀ ବିଭାଗ ବୋଲି କୁହାଯାଇଥାଏ । କିନ୍ତୁ

ନିନ୍ଦୁକମାନେ ଏହାକୁ ଖାଉ ବିଭାଗ ବୋଲି କହିଥା'ନ୍ତି । କୁଆଡ଼େ ଏହି ବିଭାଗରେ ଖାଉ କାରବାର ବହୁ ଅଧିକ ଆଉ ଖାଇଖାଇ ବ୍ୟବସାୟୀମାନଙ୍କର ଚମଡ଼ା ମଧ ମୋଟା ହୋଇଯାଏ । ଯୋଗାଣ ବିଭାଗ ପାଇବା ପରେ ସାରଦା ଏହି ବିଭାଗକୁ ଅନ୍ୟତମ ଶ୍ରେଷ୍ଠ ବିଭାଗରେ ପରିଣତ କରିବେ ବୋଲି ପ୍ରତିଜ୍ଞାବଦ୍ଧ ହେଲେ । ଚାଲିଲା ତାଙ୍କର ସମୀକ୍ଷା ବୈଠକ । କେଉଁଠି ଖାଉ କାରବାର ହେଉଛି ତାହାକୁ ସେ ଭଲ ଭାବେ ପରଖି ନେଲେ । ପରିସ୍ଥିତି ଏପରି ଅବସ୍ଥାକୁ ଆସିଲା ଯେ, ସେ ଯୁଆଡ଼େ ହାତ ମାରିଲେ ସିଆଡ଼େ ଗଳିଆ । ସେ ବର୍ଷା ହେଉ କିମ୍ବା ନହେଉ । ଟାଇଁଟାଇଁ ଖରାରେ ଏହି ବିଭାଗରେ ବଡ଼ବଡ଼ ଗଳିଆ ମଧ ହୋଇଯାଏ । ପ୍ରଥମେ ଏହି ଗଳିଆକୁ ବନ୍ଦ କରିବା ପାଇଁ ସାରଦା କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ତେବେ ଗୋଟିଏ ଗଳିଆ ବନ୍ଦ ହୋଇଯିବା ବେଳକୁ ଆଉ ଗୋଟିଏ ଗଳିଆ ଫିଟି ଯାଉଥିବାର ତାଙ୍କ ଦୃଷ୍ଟିକୁ ଆସିଲା । ଗଳିଆ ବନ୍ଦ କରିବା ପାଇଁ ଦିନରାତି ପରିଶ୍ରମ କରିବାକୁ ପଡ଼ିବ ବୋଲି ସାରଦା ଧରିନେଲେ । ଯେଉଁଥିପାଇଁ ସାରଦାଙ୍କ ନିମନ୍ତେ ଆଉ ଦିନରାତିରେ ତଫାତ୍ ନାହିଁ । ଯେଉଁ କାମ ସେ ଦିନ ୧୧ଟାରେ କରିବା କଥା ତାହା ରାତି ୧୧ଟାରେ କଲେ । ଯେଉଁ ଅଫିସରଙ୍କୁ ଦିନରେ ଫୋନ୍ କରିବା କଥା ତାଙ୍କୁ ସେ ରାତିରେ ଫୋନ୍ କଲେ । ଯେଉଁ ଅଫିସରଙ୍କୁ ଦିନବେଳେ ଡାକି ସମୀକ୍ଷା କରିବା କଥା ତାଙ୍କୁ ସେ ସଂଧ୍ୟାବେଳେ ଡାକିଲେ । ଦିନଯାକ ବିଭାଗର ସୁପରିଚାଳନା ପାଇଁ ସେ ସମୟ ଦେଲେ । ଅବଶ୍ୟ ସାରଦାଙ୍କ ନୂତନ ଢାଂଚାକୁ ପ୍ରଥମେ ବିଭାଗର ବହୁ ଅଫିସର ନାପସନ୍ଦ କଲେ । ଏହାସତ୍ତ୍ୱେ ସେମାନେ ବିଭାଗ ଛାଡ଼ି ଯିବାକୁ ଚାହିଁଲେ ନାହିଁ । କୁଆଡ଼େ ଖାଉ ଅଫିସରଙ୍କୁ ସାରଦା ହାତରେ ନମାରି ଭାତରେ ମାରିବେ । ଏମିତି ଖାଉ ଅଫିସରମାନେ ଅନ୍ୟ ଅଧିକାରୀଙ୍କ ଠାରୁ ବେଶ୍ ଚାଲାକ ଚତୁର ଥା'ନ୍ତି । ସାରଦା ଏବେ ଏହି ଖାଉ ଅଫିସରଙ୍କୁ ଦମନ କରିବା ପାଇଁ ନିଜକୁ ବିଭାଗ ସମ୍ପର୍କରେ ଶିକ୍ଷିତ କରାଉଛନ୍ତି । ବିଭାଗର ଟିକିନିଖି ତଥ୍ୟ ନଜାଣିଲେ ଖାଉ ଅଫିସରମାନେ ତାଙ୍କୁ ଯେକୌଣସି ସମୟରେ ଅସୁବିଧା ମଧ୍ୟକୁ ଠେଲି ଯେ ନଦେବେ ତାହା କହି ହେବନାହିଁ । ଯୋଗାଣ ବିଭାଗକୁ ଖାଉଶୂନ୍ୟ ...ାରଦା ପ୍ରତିଜ୍ଞାବଦ୍ଧ ହୋଇଥିବା ବେଳେ ଏବେ ଏଥିପାଇଁ ତାଙ୍କୁ ଦିନରାତି ପରିଶ୍ରମ କରିବାକୁ ପଡୁଛି ଆଉ ସେ ହୋଇଯାଇଛନ୍ତି ଦିନରାତି ମନ୍ତ୍ରୀ । ■



## ପିଙ୍କୁ ନେତା

ପିଙ୍କୁ ନେତା କହିଲେ ସାଧାରଣତଃ କେହି ବୁଝିପାରିବେ ନାହିଁ । କିନ୍ତୁ ଏ ସମ୍ପର୍କରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ବେଶ୍ ଜ୍ଞାନ ରହିଛି । ଏମିତି ବେଳେବେଳେ ସେ ବିଜେଡିର କେତେକ ନେତାଙ୍କୁ ପିଙ୍କୁ ନେତା ବୋଲି କହୁଛନ୍ତି । ଏହି ନେତାମାନଙ୍କ ମଧ୍ୟରେ ଅଛନ୍ତି ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ, ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ

ମହାପାତ୍ର, ଗ୍ରାମ୍ୟ ଉନ୍ନୟନ, ଆଇନ ମନ୍ତ୍ରୀ ବିକ୍ରମ କେଶରୀ ଆରୁଖ । କୁଆଡ଼େ କଥା ଛଳରେ କହୁକହୁ ନବୀନ କହିଦେଲେ ଯେ, ପ୍ରଫୁଲ ଚନ୍ଦ୍ର ଘଡ଼ାଇ ଜଣେ ଟ୍ରେଡ୍ ୟୁନିୟନ ନେତା । ପୁଣି ଗୋଟିଏ ସମୟରେ ସେ ନିଖିଳ ଉତ୍କଳ ଛାତ୍ର ଫେଡ଼େରେସନର ସଭାପତି ଥିଲେ । ମଧୁସୂଦନ ଆଇନ କଲେଜ ଛାତ୍ରସଂସଦର ସଭାପତି ମଧ୍ୟ ସେ ଥିଲେ । ଖଣି ମଜଦୁର ସଂଘର ମଧ୍ୟ ସେ ନେତା ଥିଲେ । ଅବଶ୍ୟ ଯୁବକ ଥିବା ସମୟରେ ପ୍ରଫୁଲଙ୍କ ଯେଉଁ ଜୋସ୍ ଥିଲା ତାହା ଏବେ କମି ଗଲାଣି । ସେତେବେଳେ ତାଙ୍କର ଜୋସ୍‌କୁ ନାଲିରଙ୍ଗ ସହିତ ତୁଳନା କରାଯାଉଥିଲା । ଏବେ ତାହା ଫିକା ହୋଇ ଲୋହିତ ହୋଇଗଲାଣି । ଏହି ଲୋହିତର ଇଂରାଜୀ ନାମକରଣ ହେଉଛି ପିଙ୍କ୍ । ଆଉ ପ୍ରଫୁଲ ହୋଇଛନ୍ତି ପିଙ୍କ୍‌ରୁ ପିଙ୍କୁ ନେତା । ପ୍ରଫୁଲଙ୍କ ପାଖରେ ମଧ୍ୟ ନବୀନ ଅଟକି ଯାଇନାହାନ୍ତି । ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କର ଅତୀତକୁ ମଧ୍ୟ ସେ ବେଶ୍ ଭଲ ଭାବେ ବଖାଣି ଥିଲେ । ଛାତ୍ର ସମୟରେ ପ୍ୟାରୀମୋହନ ଥିଲେ ଜଣେ କମ୍ରେଡ୍ । ମାନେ କମ୍ୟୁନିଷ୍ଟ ରକ୍ତ ତାଙ୍କ ଦେହରେ ପ୍ରବାହିତ ହେଉଥିଲା । ଅର୍ଥାତ୍ ଲାଲ ଝଣ୍ଡା ହିଁ ତାଙ୍କର ଆଦର୍ଶ ଥିଲା । ଛାତ୍ର ଜୀବନ ପରେ ପ୍ୟାରୀ ହୋଇଗଲେ ଆଇଏଏସ୍ ଅଫିସର । ଚାକିରିରୁ ଅବସର ଗ୍ରହଣ କରିବା ପରେ ସେ ବିଜେଡିରେ ନେତା ହୋଇଯାଇଛନ୍ତି । ଛାତ୍ର ଜୀବନରୁ ବିଜେଡି ନେତା ପର୍ଯ୍ୟନ୍ତ ବହୁ ବ୍ୟବଧାନ ଭିତରେ ପ୍ୟାରୀମୋହନଙ୍କର ସେହି ଲାଲ ଝଣ୍ଡା ଆଦର୍ଶ ଏବେ ଆଉ ନାହିଁ । ଯେଉଁଥିପାଇଁ ତାଙ୍କୁ ମଧ୍ୟ ଲୋହିତ ତଥା ପିଙ୍କ୍ ବୋଲି ନବୀନ ବର୍ଣ୍ଣନା କରିଛନ୍ତି । ଭଂଜନଗର ବିଧାୟକ ବିକ୍ରମ କେଶରୀ ଆରୁଖଙ୍କ ଚେହେରା ଦେଖିଲେ ଯେକୌଣସି ଲୋକ ଭାବିବ ଯେ, ସେ ଜଣେ କମ୍ୟୁନିଷ୍ଟ ନେତା ବୋଲି । ତାଙ୍କର ସିଧାସଳଖ କଥା । ଛାତ୍ର ଜୀବନରେ ଯୁବକମାନଙ୍କ ପାଇଁ ସେ ଆଗକୁ ଡେଇଁ ପଡୁଥିଲେ । ଗରିବ ଲୋକଙ୍କ ସମସ୍ୟା ସମାଧାନ ପାଇଁ ସେ ଉଦ୍ୟମ କରୁଥିଲେ । ଭଂଜନଗର କବିସୂର୍ଯ୍ୟ ଉପେନ୍ଦ୍ର ମହାବିଦ୍ୟାଳୟ ଛାତ୍ରସଂସଦର ସେ ସଭାପତି ଥିଲେ । ତାଙ୍କୁ ମଧ୍ୟ ନବୀନ 'ପିଙ୍କୁ' ବୋଲି ବର୍ଣ୍ଣନା କରୁଛନ୍ତି । ଅର୍ଥାତ୍ ଛାତ୍ର ସଂସଦ ସଭାପତି ଥିବାବେଳେ ତାଙ୍କର ଯେପରି ରକ୍ତ ଗରମ ଥିଲା ଏବେ ଆଉ ସେପରି ନାହିଁ । ମାନେ ଏହା ଗାଢ଼ଲାଲ୍‌ରୁ ଲୋହିତ ହୋଇଗଲାଣି । ଏତିକିରେ ଯେ ପିଙ୍କୁ ପ୍ରସଙ୍ଗକୁ ନବୀନ ପଟ୍ଟନାୟକ ଶେଷ କରିଦେଇଛନ୍ତି ତାହା ନୁହେଁ । ସେ ନିଜକୁ ମଧ୍ୟ ପିଙ୍କୁ ବୋଲି ବର୍ଣ୍ଣନା କରିଛନ୍ତି । ମାନେ ବିଜେଡି ରାଜନୀତିରେ ଚାରିଜଣ ହେଉଛନ୍ତି ପିଙ୍କୁ । ସେ ନିଜେ ଆଉ ପ୍ୟାରୀମୋହନ, ପ୍ରଫୁଲ ଓ ବିକ୍ରମ । ତାଙ୍କ ଜୁଆନ ସମୟରେ କୁଆଡ଼େ ସେ ବେଶ୍ ପ୍ରତିକ୍ରିୟାଶୀଳ ଥିଲେ । ତାଙ୍କ ରକ୍ତ ସେତେବେଳେ ଲାଲ ଥିଲା । ଏବେ ଆଉ ସେ ସେପରି ନାହାନ୍ତି । ତାଙ୍କ ରକ୍ତ ବି ଲୋହିତ ହୋଇଗଲାଣି । ମାନେ ପିଙ୍କୁ । ■

# ସିରିଡ଼ି ସାଇ ଭକ୍ତ



ଏମିତି ନେତା ହେଲେ ସାଧାରଣତଃ ଜ୍ୟୋତିଷଶାସ୍ତ୍ର ବିଶ୍ୱାସୀ ଓ ଠାକୁର ଠାକୁରାଣୀଙ୍କର ଭକ୍ତ ପ୍ରାୟ ଅଧିକାଂଶ ହୋଇଥା'ନ୍ତି । ତେଣୁ କିଏ କେଉଁ ଜ୍ୟୋତିଷଙ୍କ ପରାମର୍ଶ ନେଉଛନ୍ତି ତ ଆଉ କିଏ କେଉଁ ଠାକୁର ଠାକୁରାଣୀଙ୍କ ଭକ୍ତ ପାଲଟିଯାଇଛନ୍ତି ତାହା ଆଲୋଚନା କରାଯିବା କଥା ନୁହେଁ । କିନ୍ତୁ ଏଠାରେ ଦୁଇ ମନ୍ତ୍ରୀଙ୍କର କିପରି ଠାକୁର ବିଶ୍ୱାସ ରହିଛି ତାହା ଆଲୋଚନା କରାଯିବାର ଆବଶ୍ୟକତା ରହିଛି । ଏମିତି ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପୂର୍ବରୁ ଅତନୁ ସବ୍ୟସାଚୀ ନାୟକ ସିରିଡ଼ି ଯାଇ ସାଇବାବା ମନ୍ଦିର ଦର୍ଶନ କରି ଆସିଥିଲେ । ସେ କ'ଣ ବାବାଙ୍କୁ ମାଗିଥିବେ ତାହା ଭିନ୍ନ କଥା । କିନ୍ତୁ ସେ ବିଜୟୀ ହେଲେ ଆଉ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇବା ସହିତ ଗୁରୁତ୍ୱପୂର୍ଣ୍ଣ ଶକ୍ତି ବିଭାଗର ମନ୍ତ୍ରୀ ହେଲେ । ବିଧାନସଭା ଅଧିବେଶନ ପରେ ଅତନୁ ସିରିଡ଼ି ଯାଇ ସାଇବାବାଙ୍କୁ ଦର୍ଶନ କଲେ । କେବଳ ଅତନୁଙ୍କ ପାଖରେ ଏହି ସିରିଡ଼ି ଯାଇ ଦର୍ଶନ ଅଟକି ଗଲା ଯେ ତାହା ନୁହେଁ । ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ସଂଜୀବ ସାହୁ ମଧ୍ୟ ବିଧାନସଭା ଅଧିବେଶନ ପରେ ସିରିଡ଼ି ଯାଇ ସାଇବାବାଙ୍କ ଦର୍ଶନ କଲେ । ଗତ ମନ୍ତ୍ରିମଣ୍ଡଳରେ ସମସ୍ୟାବହୁଳ ଗଣଶିକ୍ଷା ବିଭାଗ ସଂଜୀବଙ୍କୁ ମିଳିଥିଲା । ଏଥର ତାଙ୍କୁ ପ୍ରାଇଜ ବିଭାଗ ବାଣିଜ୍ୟ ଓ ପରିବହନ ମିଳିଛି । ବୋଧହୁଏ ମନେମନେ ଏହି ବିଭାଗ ପାଇଲେ ସିରିଡ଼ି ଯାଇ ସାଇବାବାଙ୍କୁ ଦର୍ଶନ କରିବେ ବୋଲି ସଂଜୀବ ସ୍ଥିର କରିଥିଲେ । ଏବେ ଦୁଇ ମନ୍ତ୍ରୀ ଅତନୁ ଓ ସଂଜୀବ ସିରିଡ଼ି ଯାଇ ସାଇବାବାଙ୍କୁ ଦର୍ଶନ କରିସାରିଛନ୍ତି । ସେମାନେ ମଧ୍ୟ ବେଶ୍ ମନଖୁସିରେ ବିଭାଗର କାମ କରୁଛନ୍ତି । ସତେ ଯେମିତି ସାଇବାବାଙ୍କ ଦର୍ଶନ କରିବା ପରେ କାମ କରିବା ପାଇଁ ସେମାନଙ୍କ ମନରେ ଶତଗୁଣ ବଳ ଆସିଯାଇଛି । ଅତନୁ ଓ ସଂଜୀବଙ୍କ ପରେ ଏବେ କେଉଁ ମନ୍ତ୍ରୀ ସିରିଡ଼ି ଯାଇ ସାଇବାବାଙ୍କ ଦର୍ଶନ କରୁଛନ୍ତି ତାହା ଦେଖିବାକୁ ବାକି ରହିଛି । ■



# ବଦ୍ରିଙ୍କ ରାଜଧାନୀ ପ୍ରୀତି

ବଦ୍ରି ନାରାୟଣ ପାତ୍ର ତିନି ଥର ବିଧାୟକ ହେବାପରେ ଏବେ ନଗର ଉନ୍ନୟନ ମନ୍ତ୍ରୀ । ଏମିତି ବଦ୍ରି ନାରାୟଣଙ୍କୁ ନିର୍ବାଚନମଣ୍ଡଳୀ ପ୍ରିୟ ବିଧାୟକ ବୋଲି କୁହାଯାଇଥାଏ । ଯେତେବେଳେ ଟିକିଏ ସମୟ ପାଆନ୍ତି ସେ କେନ୍ଦୁଝର ଜିଲାରେ ଥିବା ତାଙ୍କ ନିର୍ବାଚନମଣ୍ଡଳୀକୁ ଗସ୍ତରେ ଚାଲିଯିବେ । କିନ୍ତୁ ମନ୍ତ୍ରୀ ହେବାପରେ ବଦ୍ରିଙ୍କର ପରିବର୍ତ୍ତନ ଆସିଛି । ସେ ତାଙ୍କୁ ମିଳିଥିବା ବିଭାଗ ନଗର ଉନ୍ନୟନରେ ବେଶ୍ ମନଧ୍ୟାନ ଦେଉଥିବାର ଦେଖାଯାଉଛି । ବଦ୍ରି ଗୋଟିଏ ନୂଆ ଫର୍ମୁଲା ବାହାର କରିଛନ୍ତି । ଏମିତି ରାଜଧାନୀର ଗଳିକନ୍ଦି ମଧ୍ୟ ରାଜରାସ୍ତା ପରି ଚକଚକିଆ

ହୋଇଥିବ ବୋଲି ତାଙ୍କର ଏକ ଧାରଣା ଥିଲା । ମନ୍ତ୍ରୀ ହେବାପରେ ସେ ରାଜଧାନୀର ବିଭିନ୍ନ ଅଂଚଳ ସବୁଦିନ ଗସ୍ତ କଲେ । ସଚିବାଳୟକୁ ଯେତେବେଳେ ସେ ଆସନ୍ତି ତା ପୂର୍ବରୁ ରାଜଧାନୀ ଭୁବନେଶ୍ୱରର ବିଭିନ୍ନ ଅଂଚଳ ବୁଲନ୍ତି । ପୁଣି ସଚିବାଳୟରୁ କ୍ୱାର୍ଟରକୁ ଫେରିବା ବେଳକୁ ଅନୁରୂପ ଭାବେ ରାଜଧାନୀର ବିଭିନ୍ନ ଅଂଚଳକୁ ମଧ୍ୟ ସେ ବୁଲି ଦେଖିଲେ ।  ବଦ୍ରିଙ୍କର ଏକ ବଦ୍ଧଧାରଣା ହେଲାଣି ଯେ ରାଜଧାନୀ ଭୁବନେଶ୍ୱର ଦେଖିବାକୁ ଯାହା ପ୍ରକୃତରେ ଭିତର ଅଂଚଳ ତାହା ନୁହେଁ । ମାନେ ଏହା ଏକ ମହାକାଳଫଳ । ଭୁବନେଶ୍ୱର ରାଜରାସ୍ତା ଦେଖିବାକୁ ବେଶ୍ ସୁନ୍ଦର । ଆଉ ଟିକିଏ ଭିତରକୁ ଚାଲିଗଲେ ଏକଦମ୍ ଅସ୍ୱାସ୍ଥ୍ୟକର ପରିବେଶ । ଏସବୁ ଆଖିରେ ପଡ଼ିଛି ବଦ୍ରି ପାତ୍ରଙ୍କର । ସେ ସତେଯେମିତି ନଛୋଡ଼ ବନ୍ଧା । ଯେମିତି ହେଲେ ଭୁବନେଶ୍ୱରକୁ ନିର୍ମଳ ଓ ସୁନ୍ଦର ସହରରେ ସେ ପରିଣତ କରିବେ । ବଦ୍ରିଙ୍କର ଭୁବନେଶ୍ୱର ପ୍ରୀତି ଏମିତି ଯଦି ଜୋରଦାର୍ ହୁଅନ୍ତା ତେବେ ଭୁବନେଶ୍ୱର ଗଳିକନ୍ଦି ମଧ୍ୟ ଚାକଚକ୍ୟ ହୋଇଉଠନ୍ତା । ଦେଖାଯାଉ ଭୁବନେଶ୍ୱର ଗଳିକନ୍ଦିକୁ ଚାକଚକ୍ୟ କରିବା ପାଇଁ ବଦ୍ରିଙ୍କୁ ଯେଉଁ ନିଶା ଘାରିଛି ତାହା କେତେଦିନ ରହୁଛି । ■

## ବର୍ଷା ମନ୍ତ୍ରୀ



ବର୍ଷା ସହିତ ବୋଧହୁଏ ଡାକ୍ତର ଦାମୋଦର ରାଉତଙ୍କର ନିବିଡ଼ ସମ୍ପର୍କ ରହିଛି । ଦାମୋଦର ହେଉଛନ୍ତି କୃଷି, ସମବାୟ, ମତ୍ସ୍ୟ, ପଶୁସମ୍ପଦ ବିକାଶ ମନ୍ତ୍ରୀ । ଏହି ସବୁ ବିଭାଗର ବର୍ଷା ସହିତ ସମ୍ପର୍କ ରହିଛି । ଏମିତି ବର୍ଷା ହେଉ ନଥାଏ । ଦାମୋଦର ଗସ୍ତରେ ଗଲେ ନୂଆପଡ଼ା ଜିଲା । ସତେ ଯେମିତି ବର୍ଷାକୁ ସାଥିରେ ନେଇ ଦାମୋଦର ଯାଇଥିଲେ । ନୂଆପଡ଼ାରେ ପହଂଚୁ ପହଂଚୁ ସେଠାରେ ବର୍ଷାର ତାଣ୍ଡବଲୀଳା ଆରମ୍ଭ ହୋଇଗଲା । କୃଷିମନ୍ତ୍ରୀ ଭାବେ ଏହି ବର୍ଷାକୁ ଦେଖି ଦାମୋଦର ଯେତିକି ଖୁସି ହୋଇ ନଥିଲେ ତା'ଠାରୁ ଅଧିକ ଖୁସି ହୋଇଥିଲେ ନୂଆପଡ଼ା ଜିଲାର ଚାଷୀମାନେ । ମରୁଡ଼ି ଆଶଙ୍କାରେ ସେମାନେ ଥିଲେ କିନ୍ତୁ କୃଷିମନ୍ତ୍ରୀ ଦାମୋଦର ଯେ ସାଥିରେ ବର୍ଷାକୁ ନେଇଯାଇଥିଲେ ତାହା ସେମାନେ ବା ଜାଣିବେ କେମିତି । ଦାମୋଦର ପହଂଚିବା କ୍ଷଣି ବର୍ଷା ହେବା ଯୋଗୁ ଚାଷୀମାନେ ଦାମଙ୍କର ବେଶ୍ ପ୍ରଶଂସା କରିଥିଲେ । ଦାମ ନୂଆପଡ଼ାରୁ ରାଜଧାନୀକୁ ଫେରିଆସିଲେ । ଢେଙ୍କାନାଳ ଜିଲାକୁ ଗସ୍ତରେ ଯିବା ପାଇଁ ଦାମୋଦର ବାହାରିଲେ । ଢେଙ୍କାନାଳରେ ପହଂଚିବା କ୍ଷଣି ସେଠାରେ ଆରମ୍ଭ ହେଲା ଜୋରଦାର୍ ବର୍ଷା । ସତେ ଯେମିତି ଦାମୋଦର ବର୍ଷାକୁ ସାଥିରେ ନେଇ ଯାଇଥିଲେ । ଚାଷୀକୁଳ ବେଶ୍ ଆଶ୍ୱସ୍ତି ଅନୁଭବ କଲେ ।  ଦାମ ଢେଙ୍କାନାଳ ଗସ୍ତ ସାରି ରାଜଧାନୀକୁ ଫେରିଆସିଲେ । ଏମିତି ବାଲେଶ୍ୱର ଜିଲା ବିଜୁ ଜନତା ଦଳ ସଭାପତି ତଥା ଭୋଗରାଇ

ବିଧାୟକ ଦାମଙ୍କୁ ତାଙ୍କ ନିର୍ବାଚନମଣ୍ଡଳୀ ଭୋଗରାଇକୁ ନେବା ପାଇଁ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ସେତେବେଳକୁ ଭୋଗରାଇ ଅଂଚଳରେ ଦୀର୍ଘଦିନ ହେଲା ବର୍ଷା ନଥାଏ । କାର୍ଯ୍ୟକ୍ରମ ଅନୁଯାୟୀ ଦାମ ପୂର୍ବଦିନ ରାତିରେ ଯାଇ ପହଂଚିଲେ ବାଲେଶ୍ୱରରେ । ରାତ୍ରିଯାପନ କଲେ ସର୍କିଟ୍ ହାଉସ୍‌ରେ । ସକାଳେ କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ବାହାରିବା ପୂର୍ବରୁ ଭୋଗରାଇରୁ ଖବର ଆସିଲା ମନ୍ତ୍ରୀ ବିଳମ୍ବରେ ଆସନ୍ତୁ ବୋଲି । ଭୋଗରାଇରେ ବର୍ଷା ଏତେ ଜୋର୍‌ରେ ହେଉଛି ଯେ, ସେଥିରେ ଉତ୍ସବ ଆୟୋଜନ କରିବା ମୁସ୍‌କିଲ୍ ହୋଇଯିବ । ବର୍ଷା ନାଁ ଶୁଣି ଦାମ ବେଶ୍ ଉତ୍‌ଫୁଲିତ ହେଲେ । ଏତେ ପର୍ଯ୍ୟନ୍ତ ସେ ଜାଣିପାରୁ ନଥିଲେ ଯେ, କୃଷିମନ୍ତ୍ରୀ ଭାବେ ସେ ଯେଉଁ ଅଂଚଳକୁ ଯାଉଛନ୍ତି ସେଠାକୁ ବର୍ଷାକୁ ସାଙ୍ଗରେ ନେଇ ଯାଉଛନ୍ତି ବୋଲି । ପ୍ରଥମେ ନୂଆପଡ଼ା ପରେ ଢେଙ୍କାନାଳ, ପୁଣି ଭୋଗରାଇ । ବର୍ଷା ଛାଡ଼ିବା ପରେ ଦାମ ଭୋଗରାଇ ଗସ୍ତରେ ଗଲେ । ସେଠାରୁ ଫେରି ବାଲେଶ୍ୱରରେ ରାତ୍ରିଯାପନ କଲେ । ଏପଟେ ବାଲେଶ୍ୱର ନେତା ଦାମଙ୍କୁ ଅନୁରୋଧ କରୁଥା'ନ୍ତି ଯେ, ଭୋଗରାଇକୁ ତ ବର୍ଷା ନେଲେ ଏବେ ବାଲେଶ୍ୱରକୁ ବର୍ଷା ଆଣନ୍ତୁ । ବାଲେଶ୍ୱରରେ ରହୁଥିବା ଯୋଗୁ ବର୍ଷା ଆସିଯିବ । ପ୍ରକୃତରେ ତାହା ହିଁ ହେଲା । ଦାମ ବାଲେଶ୍ୱରରେ ରାତ୍ରିଯାପନ କରିବା ସମୟରେ କୁଆଡୁ କେଜାଣି ଆକାଶରେ ମେଘ ଚାଲିଆସିଲା ଆଉ ବର୍ଷା ବି ହୋଇଗଲା । ଏହା ହୋଇପାରେ କାକତଳୀୟ କିନ୍ତୁ ସାଧାରଣରେ ଏକ ବିଶ୍ୱାସ ହୋଇଯାଇଥିଲା ଯେ, କୃଷିମନ୍ତ୍ରୀ ଭାବେ ଦାମ ଯେଉଁ ଜିଲାକୁ ଯିବେ ସେହି ଜିଲାରେ ବର୍ଷା ହେଉଛି ବୋଲି । ଦାମଙ୍କୁ ଏହି ସମୟରେ ଡକାଗଲା ବର୍ଷା ମନ୍ତ୍ରୀ ବୋଲି । ■

## ଶ୍ରୀକାନ୍ତ ଓ ରାଜଭବନ



ଶ୍ରୀକାନ୍ତ ଜେନା ହେଉଛନ୍ତି କଂଗ୍ରେସର ଜଣେ ପାରିବାର ମନ୍ତ୍ରୀ । ଏମିତି କଂଗ୍ରେସରେ ବହୁ ଟାଣୁଆନେତା ଥିବା ବେଳେ ଜନତା ଦଳରୁ ଆସି କଂଗ୍ରେସରେ ଯୋଗ ଦେଇ ଶ୍ରୀକାନ୍ତ କଂଗ୍ରେସ ନେତାମାନଙ୍କୁ ଟପି ଯାଇଛନ୍ତି । ପୂର୍ବତନ କେନ୍ଦ୍ରମନ୍ତ୍ରୀ, ପୂର୍ବତନ ମୁଖ୍ୟମନ୍ତ୍ରୀ, କଂଗ୍ରେସ ଟିକେଟରେ ଓଡ଼ିଶାରୁ ସାଂସଦ ହୋଇଥିଲେ ମଧ୍ୟ ଶ୍ରୀକାନ୍ତ ସେମାନଙ୍କୁ କଳକୌଶଳ ସବୁ ଦିଗରେ ଟପି ଯାଇଛନ୍ତି ଆଉ କେନ୍ଦ୍ରରେ ହୋଇଯାଇଛନ୍ତି ସାର ଓ ରସାୟନ ବିଭାଗର ରାଷ୍ଟ୍ରମନ୍ତ୍ରୀ । ଗୋଟିଏ ସମୟରେ ଶ୍ରୀକାନ୍ତଙ୍କର ଭାତହାଣ୍ଡି ବରି-ଡେରାବିଶ ଥିଲା । ଏହାପରେ କେନ୍ଦ୍ରାପଡ଼ା ଲୋକସଭା ଆସନ ହେଲା । ସମୟକ୍ରମେ କେନ୍ଦ୍ରାପଡ଼ା ପରିବର୍ତ୍ତନ ହୋଇଯାଇ କଟକ ଲୋକସଭା ଆସନ ହେଲା । ସମୟ ଆସିଲା ଶ୍ରୀକାନ୍ତ ପୁଣି କେନ୍ଦ୍ରାପଡ଼ା ମୁହାଁ ହେଲେ । କିନ୍ତୁ ଏଥର ନିର୍ବାଚନରେ ବାଲେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀ ସହିତ ଶ୍ରୀକାନ୍ତଙ୍କର କୌଣସି

ସମ୍ପର୍କ ନଥିବା ବେଳେ ତାଙ୍କୁ ସେଠାରୁ ପ୍ରତିଦ୍ୱନ୍ଦିତା କରିବା ପାଇଁ କଂଗ୍ରେସରୁ ଟିକେଟ ମିଳିଲା । ଦୁଇ ଅଣକଂଗ୍ରେସ ନେତା ଅରୁଣ ଦେ' ଓ ଐରୋଖୋରବେଳ ସାଇଁଙ୍କ ଲଢ଼େଇରୁ ଫାଇଦା ନେଲେ ଶ୍ରୀକାନ୍ତ ଆଉ କଂଗ୍ରେସ ଭୋଟକୁ ଏକାଠି କରି ସେ ହେଲେ ସେଠାରୁ ସାଂସଦ । ସାଂସଦ ଅଭିଜ୍ଞତା ଯେ ଶ୍ରୀକାନ୍ତଙ୍କର ଏହା ପ୍ରଥମ ତାହା ନୁହେଁ । ଗୋଟିଏ ସମୟରେ ସେ କେନ୍ଦ୍ରରେ ଅଣକଂଗ୍ରେସ ସରକାରରେ କ୍ୟାବିନେଟ ମନ୍ତ୍ରୀ ଥିଲେ । ସେତେବେଳେ ସେ ଓଡ଼ିଶା ରାଜନୀତିରେ ଆଦୌ ମୁଣ୍ଡ ଖେଳାଉ ନଥିଲେ । ଦିଲ୍ଲୀ ରାଜନୀତିକୁ ହାତରେ ରଖିଲେ ଶ୍ରୀକାନ୍ତ ହୋଇଯିବେ ପ୍ରଖ୍ୟାତ ନେତା ବୋଲି ସେ ଭାବି ନେଇଥିଲେ । କିନ୍ତୁ ଏବେ ଆଉ ଶ୍ରୀକାନ୍ତ ଏହି ଆଦର୍ଶରେ ନାହାନ୍ତି । ସ୍ୱାଧୀନତା ଦିବସରେ ଲାଲକିଲାଠାରେ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ପତକା ଉତୋଳନ କରିବା ସମୟରେ କେନ୍ଦ୍ରମନ୍ତ୍ରୀ ଭାବେ ସେଠାରେ ଉପସ୍ଥିତ ଥିଲେ ଶ୍ରୀକାନ୍ତ ଜେନା । ପତକା ଉତୋଳନ ଶେଷ ହେବାମାତ୍ରେ ଶ୍ରୀକାନ୍ତ ସଙ୍ଗେସଙ୍ଗେ ଦୌଡ଼ିଲେ ବିମାନ ବନ୍ଦରକୁ । ସେଠାରୁ ସିଧାସଳଖ ଆସି ଭୁବନେଶ୍ୱରରେ ପହଂଚିଲେ । ଶ୍ରୀକାନ୍ତଙ୍କର ଉଦ୍ଦେଶ୍ୟ ଥିଲା ଯେମିତି ହେଲେ ଭୁବନେଶ୍ୱର ରାଜଭବନରେ ରାଜ୍ୟପାଳ ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଦ୍ୱାରା ଆୟୋଜିତ 'ଆଟ୍‌ହୋମ୍'ରେ ଯୋଗ ଦେବେ । କେନ୍ଦ୍ରମନ୍ତ୍ରୀ ଭାବେ ତାଙ୍କର ରାଷ୍ଟ୍ରପତି ଭବନରେ ରାଷ୍ଟ୍ରପତି ପ୍ରତିଭା ପାଟିଲଙ୍କ ଦ୍ୱାରା ଆୟୋଜିତ 'ଆଟ୍‌ହୋମ୍'ରେ ଯୋଗ ଦେବା କଥା । କିନ୍ତୁ ଶ୍ରୀକାନ୍ତ ସେଠାକୁ ନଯାଇ ଚାଲିଆସିଲେ ଭୁବନେଶ୍ୱର ରାଜଭବନକୁ । ଏବେ ଶ୍ରୀକାନ୍ତ ଜାଣିସାରିଲେଣି ଯେ, କଂଗ୍ରେସ ରାଜନୀତିରେ ତାଙ୍କର ସ୍ଥିତି କ'ଣ । ନଚେତ୍ ପୂର୍ବରୁ କେନ୍ଦ୍ରରେ କ୍ୟାବିନେଟ ମନ୍ତ୍ରୀ ହୋଇଥିବା ବେଳେ ଏଥର ତାଙ୍କୁ ରାଷ୍ଟ୍ରମନ୍ତ୍ରୀ ପାହ୍ୟା ମନ୍ତ୍ରୀ ହେବାକୁ ପଡ଼ି ନଥା'ନ୍ତା । ରାଜ୍ୟ ରାଜନୀତିକୁ ହାତରେ ନରଖିଲେ କେତେବେଳେ ମଧ ତାଙ୍କର ମନ୍ତ୍ରୀ ପଦ ଚାଲିଯାଇପାରେ । 'ଆଟ୍‌ହୋମ୍'ରେ ଯାହା ହେଲେ ମଧ କଂଗ୍ରେସ ନେତାଙ୍କୁ ଦେଖିବାକୁ ନିଶ୍ଚିତ ମିଳିବ । ଏହାର କାରଣ ହେଉଛି ରାଜ୍ୟପାଳ ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଦଳ ହେଉଛି କଂଗ୍ରେସ । ଅବଶ୍ୟ ଶ୍ରୀକାନ୍ତ ରାଜଭବନ 'ଆଟ୍‌ହୋମ୍'ରେ ଯୋଗ ଦେଇ ବେଶ୍ ଖୁସି ଥିବାର ଦେଖାଯାଉଥିଲା । ବୋଧହୁଏ ଶ୍ରୀକାନ୍ତ ତାଙ୍କର ରାଜ୍ୟ ରାଜନୀତିକୁ ଏହି 'ଆଟ୍‌ହୋମ୍'ରୁ ଆରମ୍ଭ କରିଦେଇଛନ୍ତି । ■



## ଦାମଙ୍କ କଟକ ପ୍ରୀତି

ଡା କ୍ତର ଦାମୋଦର ରାଉତ ୧୯୭୭ ମସିହାରେ ଏରସମାରୁ ନିର୍ବାଚିତ ହୋଇ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ଗଠିତ ହୋଇଥିବା ଜନତା ମନ୍ତ୍ରିମଣ୍ଡଳର ଦ୍ୱିତୀୟ ସଂପ୍ରସାରଣରେ ସୂଚନା, ଲୋକସମ୍ପର୍କ, ସିଡି ଓ ସମାଜ କଲ୍ୟାଣ ବିଭାଗର ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ଏହାପରେ ୧୯୯୦ ମସିହାରେ ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ସେ ପଂଚାୟତିରାଜ ମନ୍ତ୍ରୀ

ହୋଇଥିଲେ । ୨୦୦୦ ମସିହାରେ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ହୋଇଥିବା ମନ୍ତ୍ରିମଣ୍ଡଳର ଦ୍ୱିତୀୟ ସଂପ୍ରସାରଣ ୨୦୦୨ ମସିହାରେ ହୋଇଥିବା ବେଳେ ସେଥିରେ ଡାକ୍ତର ଦାମୋଦର ରାଉତ ପଂଚାୟତିରାଜ, ସୂଚନା, ଲୋକସମ୍ପର୍କ ଓ ସଂସ୍କୃତି ବିଭାଗର ମନ୍ତ୍ରୀ ହୋଇଥିଲେ । ୨୦୦୪ ମସିହାରେ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ହୋଇଥିବା ସରକାରରେ ମଧ୍ୟ ଦାମୋଦର ମନ୍ତ୍ରୀ ବି ହୋଇଥିଲେ । ଯଦିଓ କିଛିବର୍ଷ ପାଇଁ ସେ ମନ୍ତ୍ରୀ ପଦରୁ ବାଦ୍ ପଡ଼ିଥିଲେ ତେବେ ୨୦୦୯ରେ ଦାମୋଦର ପୁଣି ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହୋଇଛନ୍ତି । ଏମିତି ଦେଖିଲେ ଦାମୋଦର ହେଉଛନ୍ତି ଜଣେ ବରିଷ୍ଠ ମନ୍ତ୍ରୀ । ମନ୍ତ୍ରୀ ହେବାପରେ ଯେଉଁ ସ୍ୱାଧୀନତା ଦିବସ ଆସିଲା ସେଥିରେ କିଏ, କେଉଁଠି ପତକା ଉତୋଳନ କରିବେ ସେ ସମ୍ପର୍କରେ ତାଲିକା ପ୍ରସ୍ତୁତ ହେବା ପୂର୍ବରୁ ମନ୍ତ୍ରୀମାନଙ୍କର ପସନ୍ଦ ମଗାଯାଇଥିଲା । ଏଥିରେ ଦାମୋଦର ଉତ୍ସାହ ପ୍ରକାଶ କରି ତାଙ୍କର ପସନ୍ଦ ଉଲ୍ଲେଖ କରିଥିଲେ । ଯେହେତୁ ସେ ଜଣେ ବରିଷ୍ଠ ମନ୍ତ୍ରୀ ସେହି ଦୃଷ୍ଟିରୁ ତାଙ୍କୁ କଟକରୁ ପତକା ଉତୋଳନ କରାଯିବା ଉପରେ ସେ ଗୁରୁତ୍ୱ ଦେଇଥିଲେ । ଯଦି କଟକରେ ତାଙ୍କୁ ପତକା ଉତୋଳନ କରିବାର ସୁଯୋଗ ନମିଳେ ତେବେ ପୁରୀରେ ପତକା ଉତୋଳନ କରିବା ପାଇଁ ସୁଯୋଗ ଦିଆଯାଉ ବୋଲି ସେ ମଧ୍ୟ ଉଲ୍ଲେଖ କରିଥିଲେ । ସାଧାରଣତଃ ସ୍ୱାଧୀନତା ଦିବସରେ ମୁଖ୍ୟମନ୍ତ୍ରୀ ଭୁବନେଶ୍ୱରରେ ପତକା ଉତୋଳନ କରିଥା'ନ୍ତି । ପୂର୍ବରୁ ମୁଖ୍ୟମନ୍ତ୍ରୀଙ୍କ ପରେ ରାଜସ୍ୱମନ୍ତ୍ରୀଙ୍କୁ ଦ୍ୱିତୀୟ ମନ୍ତ୍ରୀ ଭାବେ ଗଣନା କରାଯାଉଥିଲା । ଅବଶ୍ୟ ଏଭଳି ଗଣନା ଆଉ ଏବେ ହେଉନାହିଁ । କିନ୍ତୁ ପରମ୍ପରା ରହିଆସିଛି । ଯିଏ ରାଜସ୍ୱମନ୍ତ୍ରୀ ହେବେ ସିଏ କଟକରେ ପତକା ଉତୋଳନ କରିବେ । ଏହି ଦୃଷ୍ଟିରୁ ରାଜସ୍ୱ ମନ୍ତ୍ରୀ ଭାବେ ସୂର୍ଯ୍ୟନାରାୟଣ ପାତ୍ର କଟକରେ ପତକା ଉତୋଳନ କରିବା ପାଇଁ କାର୍ଯ୍ୟକ୍ରମ ଚୂଡ଼ାନ୍ତ ହେଲା । ଆଉ ଏକ ଧାରଣା ରହିଆସିଛି ଯେ, ମୁଖ୍ୟମନ୍ତ୍ରୀଙ୍କ ପରେ ରାଜସ୍ୱମନ୍ତ୍ରୀ ଦ୍ୱିତୀୟ ମନ୍ତ୍ରୀ ହେଉଥିବା ବେଳେ ତୃତୀୟ ମନ୍ତ୍ରୀ ଭାବେ ମୁଖ୍ୟମନ୍ତ୍ରୀ ଯାହାକୁ ଗୁରୁତ୍ୱ ଦେଉଥିବେ ତାଙ୍କୁ ପୁରୀରେ ପତକା ଉତୋଳନ କରିବାର ସୁଯୋଗ ମିଳିଥାଏ । ଏହି ଦୃଷ୍ଟିରୁ ଦାମଙ୍କ ପ୍ରସ୍ତାବ  ମଧ୍ୟ ଯୁକ୍ତିଯୁକ୍ତ ଥିଲା । କଟକ ନହେଲେ ମଧ୍ୟ ପୁରୀରେ ପତକା ଉତୋଳନ କରିବାର ସୁଯୋଗ ମିଳିବ ବୋଲି ଦାମ ଭାବି ନେଇଥିଲେ । କିନ୍ତୁ ଦାମଙ୍କୁ ପୁରୀରେ ପତକା ଉତୋଳନ କରିବାର ମଧ୍ୟ ସୁଯୋଗ ମିଳିଲା ନାହିଁ । ଦାମଙ୍କୁ ଢେଙ୍କାନାଳରେ ପତକା ଉତୋଳନ କରିବା ନିମନ୍ତେ ସୁଯୋଗ ଦିଆଗଲା । ପୁରୀରେ ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କୁ ପତକା ଉତୋଳନ କରିବାକୁ ସୁଯୋଗ ଦିଆଗଲା । ଏମିତି ଦାମଙ୍କର ଯୁକ୍ତି ଥିଲା ମନ୍ତ୍ରୀ ଭାବେ ଅନ୍ୟ ଦୁଇମନ୍ତ୍ରୀ ସୂର୍ଯ୍ୟନାରାୟଣ ଓ ପ୍ରଫୁଲ ଘଡ଼ାଇଙ୍କ ଠାରୁ ସେ ବରିଷ୍ଠ ଅଟନ୍ତି । ଯେତେବେଳେ ସେ କ୍ୟାବିନେଟ ମନ୍ତ୍ରୀ ସେତେବେଳେ ସୂର୍ଯ୍ୟ ଓ ପ୍ରଫୁଲ ରାଷ୍ଟ୍ରମନ୍ତ୍ରୀ । ପୁଣି ଅବିଭକ୍ତ କଟକ ଜିଲାରେ ଦାମଙ୍କ ରାଜନୀତି ଗୋଟିଏ ସମୟରେ ଜୋରଦାର୍ ଥିବାରୁ କଟକରେ  ପତକା ଉତୋଳନ କଲେ ତାଙ୍କର ଗୁରୁତ୍ୱ

ରହିବ ବୋଲି ସେ ଭାବି ନେଇଥିଲେ । ଏହାସତ୍ତ୍ୱେ ଦାମଙ୍କ ଇଚ୍ଛା ପୂରଣ ହେଲାନାହିଁ । ମନ୍ତ୍ରୀ ଭାବେ ଦାମ ଦୁଇମନ୍ତ୍ରୀ ସୂର୍ଯ୍ୟ ଓ ପ୍ରଫୁଲ୍ଲଙ୍କର ବହୁବର୍ଷ ପୂର୍ବରୁ ଦାୟିତ୍ୱ ନେଇଥିଲେ । ଦାମ ମନ୍ତ୍ରୀ ହେବାର ୧୧ ବର୍ଷ ପରେ ସୂର୍ଯ୍ୟ ଆଉ ପ୍ରଫୁଲ୍ଲ ମନ୍ତ୍ରୀ ହୋଇଥିଲେ । ପୁଣି ସେହି ମନ୍ତ୍ରିମଣ୍ଡଳରେ ଦାମ କ୍ୟାବିନେଟ ମନ୍ତ୍ରୀ ଥିବାବେଳେ ସୂର୍ଯ୍ୟ ଓ ପ୍ରଫୁଲ୍ଲ ଥିଲେ ରାଷ୍ଟ୍ରମନ୍ତ୍ରୀ । ଏହି ଦୃଷ୍ଟିରୁ ଦାମ ଭାବି ନେଇଥିଲେ ଯେ, ଏଥର ପୂର୍ବ ପରମ୍ପରାକୁ ଭାଙ୍ଗିଦେଇ ସେ କଟକରେ ପତକା ଉତୋଳନ କରିବେ ବୋଲି । କିନ୍ତୁ ବରିଷ୍ଠ ମନ୍ତ୍ରୀ ହୋଇଥିଲେ ମଧ୍ୟ ବିଜେଡି ରାଜନୀତିରେ ଦାମ ଯେ ସୂର୍ଯ୍ୟ ଆଉ ପ୍ରଫୁଲ୍ଲଙ୍କ ପଛକୁ ଠେଲି ହୋଇଯାଇଛନ୍ତି ତାହା ଏଥିରୁ ସ୍ପଷ୍ଟ ହୋଇଯାଇଛି । ■

## ନାରାୟଣ, ନାରାୟଣ



ନାରାୟଣ ସାହୁ ୧୯୮୦ ମସିହା ସପ୍ତମ ଲୋକସଭା ନିର୍ବାଚନରେ ଦେବଗଡ଼ ଲୋକସଭା ଆସନରୁ କଂଗ୍ରେସ ଟିକେଟରେ ବିଜୟୀ ହୋଇ ସାଂସଦ ହୋଇଥିଲେ । ୧୯୭୧ ମସିହାରେ ନାରାୟଣ ପାଲଲହଡ଼ାରୁ ବିଧାୟକ ହୋଇଥିବା ବେଳେ ୧୯୭୪ରେ ମଧ୍ୟ କଂଗ୍ରେସ ଟିକେଟରେ ସେ ପାଲଲହଡ଼ାରୁ ବିଧାୟକ ହୋଇଥିଲେ । ଏମିତି ଦେଖିଲେ ନାରାୟଣଙ୍କ ରାଜନୈତିକ ଜୀବନ ବେଶ୍ ଉଲ୍ଲେଖନୀୟ। ୧୯୩୮ ମସିହା ମାର୍ଚ୍ଚ ୩୧ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ୧୯୬୩ ମସିହାରେ ରେଭେନ୍ସା କଲେଜରୁ ଅର୍ଥନୀତିରେ ସମ୍ମାନ ସହ ଉନ୍ନୀତ ହୋଇଥିଲେ । ତାଙ୍କର ଦର୍ଶନ ଶାସ୍ତ୍ର ପାସ୍ ବିଷୟ ଥିଲା । ଏଥିରେ ମଧ୍ୟ ସେ ଡିଷ୍ଟିଙ୍କ୍ସନ୍ ପାଇଥିଲେ । ୧୯୬୬ ମସିହାରେ ସେ ବିଇଡି ପାସ୍ କରିଥିଲେ । ୧୯୭୦ ମସିହାରେ ପରଜଙ୍ଗ ବ୍ଲକ୍‌ର ସେ ଅଧ୍ୟକ୍ଷ ହୋଇଥିଲେ । ୧୯୭୬ରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ଥିଲେ । ରାଜ୍ୟପାଳଙ୍କ ନୋମିନି ଭାବେ ସେ ଏହି ସିଣ୍ଡିକେଟ୍ ସଭ୍ୟ ହୋଇଥିଲେ । ଜନକଂଗ୍ରେସର ସଭାପତି ତଥା ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନଙ୍କୁ ସେ ନିର୍ବାଚନରେ ସେତେବେଳେ ହରାଇ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଯାଇଥିଲେ । କଂଗ୍ରେସ ନେତା ଭାବେ ସେ ବେଶ୍ ଜଣାଶୁଣା ଥିବାବେଳେ ଅତି ଆକସ୍ମିକ ଭାବେ ସେ ବିଜେଡିକୁ ଆସିଥିଲେ । ଏଥର ପରଜଙ୍ଗରୁ ସେ ବିଜେଡି ଟିକେଟ ପାଇ ପ୍ରତିଦ୍ୱନ୍ଦିତା କରିବେ ବୋଲି ଆଶା କରିଥିଲେ । କିନ୍ତୁ ଶେଷ ମୁହୂର୍ତ୍ତରେ ତାଙ୍କୁ ଟିକେଟ ମିଳିଲା ନାହିଁ । ଥରେ ସାଂସଦ ଏବଂ ଦୁଇଥର ବିଧାନସଭାକୁ ନିର୍ବାଚିତ ହୋଇଥିବା ନାରାୟଣଙ୍କ ବୟସ ଏବେ ୭୨ ବର୍ଷକୁ ଟପିଗଲାଣି । ତାଙ୍କର ଆଉ ଏକ ପରିଚୟ ହେଉଛି କଂଗ୍ରେସର ଯୁବନେତା ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କର ସେ ହେଉଛନ୍ତି ଶ୍ୱଶୁର । କିନ୍ତୁ ରାଜନୀତିରେ ଯେ ପାରିବାରିକ ସମ୍ପର୍କ କିଛି କାମ ଦିଏନାହିଁ ଏହା ନାରାୟଣଙ୍କ ଠାରେ ସ୍ପଷ୍ଟ ହୋଇଯାଇଛି ।

ଗୋଟିଏ ସମୟରେ ଉଭୟ ଶ୍ୱଶୁର ଓ ଜ୍ୱାଇଁ କଂଗ୍ରେସରେ ଥିଲେ । ଏବେ ଉଭୟଙ୍କ ଦଳ ଭିନ୍ନ ହୋଇଯାଇଛି । ନାରାୟଣ ବିଜେଡିରେ ଆଉ ଲଲାଟେନ୍ଦୁ କଂଗ୍ରେସରେ । ନାରାୟଣ ସବୁବେଳେ ରାଜନୀତିରେ ରହିବା ପାଇଁ ଭଲ ପାଇଥା'ନ୍ତି ଆଉ ଯେଉଁଠିକୁ ସେ ଯାଆନ୍ତି ସେଠାରେ ଯୁବପୀଢ଼ିଙ୍କୁ ନେଇ ରାଜନୀତି କରନ୍ତି । ବିଜେଡି ଟିକେଟ ନମିଳିବାରୁ ନାରାୟଣ ଯେ ହତୋତ୍ସାହିତ ହୋଇଯାଇଛନ୍ତି ତାହା ନୁହେଁ । ତାଙ୍କ ମନ ଲାଗିଛି ଏବେ ଛାତ୍ର ରାଜନୀତିରେ । ଏମିତି ଥରେ ସାଂସଦ, ଦୁଇଥର ବିଧାୟକ ହୋଇଥିବା ନାରାୟଣଙ୍କ ପାଇଁ ଛାତ୍ର ରାଜନୀତି ଗୁରୁତ୍ୱବହନ କରୁନାହିଁ । ବରଂ ଛାତ୍ର ନେତାଙ୍କର ସେ ପରାମର୍ଶଦାତା ହେବା ଉଚିତ । କିନ୍ତୁ ପରାମର୍ଶଦାତା ନହୋଇ ସେ ନିଜେ ଛାତ୍ର ରାଜନୀତିକୁ ଓହ୍ଲାଇବା ପାଇଁ ନିଷ୍ପତି ନେଇଛନ୍ତି । ବାଣୀବିହାରରେ ନାରାୟଣ ଦର୍ଶନ ଶାସ୍ତ୍ର ଏମ୍.ଏ. ଶ୍ରେଣୀରେ ଅତି ଆକସ୍ମିକଭାବେ ନାମ ଲେଖାଇଲେ । ଏମିତି କଥାରେ ଅଛି ଯାହା ନହୋଇଛି ବାଲ୍ୟ କାଳେ ତାହା କି ହେବ ବୃଦ୍ଧ କାଳେ । କିନ୍ତୁ ଏହି ଲୋକକଥାକୁ ନାରାୟଣ ଭୁଲ୍ ବୋଲି ପ୍ରମାଣିତ କରିବାକୁ ଆଗେଇ ଆସିଛନ୍ତି । ବାଣୀବିହାରରେ ଦର୍ଶନ ଶାସ୍ତ୍ର ପାଠ୍ୟକ୍ରମରେ ନାମ ଲେଖାଇ ବାଣୀବିହାର ଛାତ୍ର ରାଜନୀତିରେ ଅଂଶଗ୍ରହଣ କରିବାପାଇଁ ନରାୟଣ ଚାହୁଁଥିଲେ ମଧ୍ୟ ଲିଙ୍ଗଡୋ କମିଟିଙ୍କ ରିପୋର୍ଟ ପ୍ରତିବନ୍ଧକ ହୋଇଯାଇଛି । ଏବେ ଦେଖାଯାଉ ପରିଣତ ବୟସରେ ନାରାୟଣ ବାଣୀବିହାରରେ ନାମ ଲେଖାଇ ବିଜେଡ଼ି ଛାତ୍ର ରାଜନୀତିକୁ ହାତ ମୁଠାରେ ରଖିପାରୁଛନ୍ତି ନା ନାହିଁ । ■



## ପୁଷ୍ପେନ୍ଦ୍ରଙ୍କ ଡ୍ରାଇଭିଂ ନିଶା

ଶ୍ରମ ଓ ନିଯୁକ୍ତି ମନ୍ତ୍ରୀ ହେଉଛନ୍ତି ପୁଷ୍ପେନ୍ଦ୍ର ସିଂହଦେଓ । ଏମିତି କାହାର କ'ଣ ନିଶା ଥାଏ । କିନ୍ତୁ ପୁଷ୍ପେନ୍ଦ୍ରଙ୍କର ନିଶା ହେଉଛି ଗାଡ଼ି ଚଳାଇବା । ମନ୍ତ୍ରୀ ହେବାପରେ ମଧ୍ୟ ସେ ଏହି ନିଶାରୁ ଦୂରରେ ରହିନାହାନ୍ତି । ଏମିତି ମନ୍ତ୍ରୀ ହେବାପରେ ତାଙ୍କୁ ନାଲିବତି ଗାଡ଼ି ମିଳିଛି । ପୁଣି ଭଲ ଡ୍ରାଇଭର ବି ମିଳିଛି । ଏହା ସତ୍ତ୍ୱେ ପୁଷ୍ପେନ୍ଦ୍ରଙ୍କୁ ବେଳେବେଳେ ଗାଡ଼ି ଡ୍ରାଇଭିଂ କରିବା ନିଶା ଘାରିଥାଏ । ଯଦି କୌଣସି ଗାଡ଼ିରେ ସେ କେଉଁ ବନ୍ଧୁଙ୍କ ସହିତ ଯାଉଥା'ନ୍ତି ଆଉ ଯଦି ଗାଡ଼ି ସେହି ବନ୍ଧୁ ଚଳାଉଥାନ୍ତି ତେବେ ପୁଷ୍ପେନ୍ଦ୍ର ସେଠାରେ ନିଜେ ଗାଡ଼ି ଚଳାଇବାକୁ ପସନ୍ଦ କରିଥା'ନ୍ତି । ପୁଷ୍ପେନ୍ଦ୍ରଙ୍କ ଯୁକ୍ତି ହେଉଛି ସେ ନିଜେ ଜଣେ ଭଲ ଡ୍ରାଇଭର । ତେଣୁ ଅନ୍ୟ ଭାଗ୍ୟ ଉପରେ ସେ ନିର୍ଭର କରିବା ଉଚିତ ନୁହେଁ । ଏମିତି ତାଙ୍କର ଜଣେ ଭଲ ବନ୍ଧୁ ହେଉଛନ୍ତି ସରୋଜ ସାମଲ । ୨୦୦୪ ନିର୍ବାଚନରେ ସରୋଜ ଗଁଦିଆରୁ ବିଜେଡ଼ି ଟିକଟରେ ବିଧାୟକ ହୋଇଥିଲେ । ୨୦୦୯ରେ ତାଙ୍କୁ ଟିକଟ ମିଳିନଥିଲା । ସରୋଜ ନିଜେ ଗାଡ଼ି ଚଳାନ୍ତି । ଏମିତି ସେଦିନ ସନ୍ଧ୍ୟାରେ ପୁଷ୍ପେନ୍ଦ୍ର ପଂହଚିଯାଇଥିଲେ ସରୋଜଙ୍କ ବାସଭବନରେ । ସେଠାରେ ପୁଷ୍ପେନ୍ଦ୍ରଙ୍କ ମନ୍ତ୍ରୀଗାଡ଼ି ତାଙ୍କୁ ଛାଡ଼ି ଦେଇ ଚାଲିଯାଇଥିଲା ।

କିଛି ସମୟ ଗପିବା ପରେ ସେ ବାହାରିଲେ ତାଙ୍କ ଘରକୁ । ଏହି ସମୟରେ ସରୋଜ ତାଙ୍କର ମାରୁତି ଅଲ୍ଟୋ ଗାଡ଼ିରେ ପୁଷ୍ପେନ୍ଦ୍ରଙ୍କୁ ଛାଡ଼ିବା ପାଇଁ ବାହାରିଲେ । ସରୋଜ ବସିପଡ଼ିଲେ ଡ୍ରାଇଭର ଆସନରେ । ସଙ୍ଗେସଙ୍ଗେ ସରୋଜଙ୍କୁ ପୁଷ୍ପେନ୍ଦ୍ର ଡ୍ରାଇଭର ଆସନରୁ ଉଠାଇ ଦେଇ ନିଜେ ବସିପଡ଼ିଲେ ଡ୍ରାଇଭର ଆସନରେ । ସିଧାସଳଖ କହିଲେ ଗାଡ଼ି ସେ ଚଳାଇବେ । ଏମିତି ପୁଷ୍ପେନ୍ଦ୍ର କେବଳ ସରୋଜଙ୍କ ପାଖରେ ଯେ ଏଭଳି ଡ୍ରାଇଭର ସାଜିଲେ ତାହା ନୁହେଁ । ଅନେକ ସମୟରେ ରାତିରେ ଯାତ୍ରା କରୁଥିବାବେଳେ ରାତି ୨ ଟାରୁ ସକାଳ ପର୍ଯ୍ୟନ୍ତ ସେ ଡ୍ରାଇଭରଙ୍କୁ ହଟାଇଦେଇ ତାଙ୍କ ସିଟ୍‌ରେ ବସି ଡ୍ରାଇଭିଂ କରନ୍ତି । ଏହି ସମୟରେ ଦୁର୍ଘଟଣାର ଆଶଙ୍କା ଥାଏ । ଆଉ ଡ୍ରାଇଭରଙ୍କ ଆଖି ଲାଖି ଯାଇଥାଏ । ଏହାକୁ ଆଖିଆଗରେ ରଖି ପୁଷ୍ପେନ୍ଦ୍ର ସେହି ସମୟରେ ନିଜେ ଡ୍ରାଇଭିଂ କରିବାକୁ ପସନ୍ଦ କରିଥା'ନ୍ତି । ମାନିବାକୁ ପଡ଼ିବ ପୁଷ୍ପେନ୍ଦ୍ରଙ୍କ ଡ୍ରାଇଭିଂ ନିଶାକୁ । ■



## ପ୍ରସନ୍ନ,ତୁଳସୀ ପତ୍ର, ମାଡାମ୍, ଉପବାସ

ଭୁବନେଶ୍ୱର ସାଂସଦ ପ୍ରସନ୍ନ କୁମାର ପାଟଶାଣୀଙ୍କ ଦରବାରକୁ ଦେଖିଲେ ଯେକୌଣସି ବ୍ୟକ୍ତିଙ୍କୁ ହିଁ ତାହା ଅଜବ ଲାଗିବ । ସେଦିନ ପ୍ରସନ୍ନ ପାଟଶାଣୀ ଗାମୁଛାଟିଏ ପିନ୍ଧି ଖାଲିଦେହରେ ବସିଥା'ନ୍ତି । ଜଣେ କିଏ କାଗଜଟିଏ ତାଙ୍କ ହାତକୁ ବଢ଼ାଇଦେଲା । ସେତେବେଳକୁ ସେ ତୁଳସୀ ପତର ଖାଇବେ ବୋଲି ବ୍ୟସ୍ତ ହେଉଥା'ନ୍ତି। ଖୋଜି ଚାଲିଲେ ତାଙ୍କ ଲୋକଙ୍କୁ । କିନ୍ତୁ କେହି ସେଠାରେ ନଥିଲେ । କୁଆଡ଼େ ଗଲେ ସବୁ ବୋଲି ପ୍ରସନ୍ନ ଚିତ୍କାର କରୁଥା'ନ୍ତି । ତୁଳସୀ ପତ୍ର ସକାଳୁ ସେ ସବୁଦିନ ଖାଆନ୍ତି । କିନ୍ତୁ ଏଯାବତ୍ ତୁଳସୀ ପତ୍ର ଖାଇନାହାନ୍ତି କି ପାଣି ବି ପିଇନାହାନ୍ତି । ସଙ୍ଗେସଙ୍ଗେ କେହି ଜଣେ କହିଲେ- ୬ଟି ତୁଳସୀ ପତ୍ର ପାଖରେ ଥୁଆହୋଇଥିଲା । ପ୍ରସନ୍ନ ତୁଳସୀ ପତ୍ରକୁ ଖୋଜି ଚାଲିଲେ । ତୁଳସୀ ପତ୍ର ମିଳିଲା ନାହିଁ । ପ୍ରସନ୍ନ କହିଲେ - ତାଙ୍କ ନାମରେ କେହି ତୁଳସୀ ପତ୍ର ଖାଇସାରିଲେଣି । ଏଥିପାଇଁ ସେ ନିଜେ ହିଁ ଦାୟୀ । ଏବେ ସେ ଯେଉଁ ସଭାକୁ ଯାଉଛନ୍ତି ସେଠାରେ ସାଇନ୍ ଫ୍ଲୁର ପ୍ରତିଷେଧକ ପାଇଁ ୬ଟି ତୁଳସୀ ପତ୍ର , ଗୋଟିଏ ଗୋଲମରିଚ, ଏକ ଚାମଚ ମହୁ ଖାଇବା ପାଇଁ କହୁଛନ୍ତି । ତେଣୁ ଯେଉଁମାନେ ତାଙ୍କ ଭାଷଣ ଶୁଣିଛନ୍ତି ସେମାନଙ୍କ ମଧ୍ୟରୁ କେହି ଜଣେ ଏଠାକୁ ଆସି ତାଙ୍କ ପାଇଁ ଥିବା ତୁଳସୀ ପତ୍ର ଖାଇଦେଇଛନ୍ତି ବୋଲି ସେ କହିଲେ । ଏହି ସମୟରେ ଜଣେ କେହି କାଗଜଟିଏ ବଢ଼ାଇଦେଇ କହିଲେ ଦସ୍ତଖତ କରିଦିଅନ୍ତୁ । ପ୍ରସନ୍ନ କାଗଜ ଉପରେ ଦସ୍ତଖତ କରିଦେଲେ । ସମ୍ପୃକ୍ତ ଲୋକଜଣଙ୍କ ସଙ୍ଗେସଙ୍ଗେ କହିଲେ ଆଜ୍ଞା ଷ୍ଟାମ୍ପ । ପ୍ରସନ୍ନ ଖୋଜିଲେ ତାଙ୍କ ପିଏଙ୍କୁ । ସେତେବେଳକୁ ପିଏ ଆସି ନଥିଲେ । ପ୍ରସନ୍ନ ବିରକ୍ତରେ କହିଲେ - ମୁଁ ଏମ୍‌ପି, ମୁଁ ପିଏ, ମୁଁ ପିଅନ । ଜଣେ କିଏ କହିଲେ - ଆଜ୍ଞା ଦଶଟାବେଳେ ଆସିବେ ବୋଧେ । ପ୍ରସନ୍ନ କହିଲେ - ମୁଁ ଆଠଟାରୁ ବସିଛି । ଆଜିକାଲି ସମସ୍ତେ ବାବୁ

ହୋଇଗଲେଣି । ଏକଥା ନ କହିଲେ ଭଲ । ଏହି ସମୟରେ କେହି ଜଣେ ତାଙ୍କୁ ମୋବାଇଲ ଫୋନ୍ ବଢ଼ାଇ ଦେଇ କହିଲେ - ଆଜ୍ଞା ମାଡାମ୍ ଧରିଛନ୍ତି କଥା ହୋଇଯାଆନ୍ତୁ । ପ୍ରସନ୍ନ କହିଲେ ହଉ ଦିଅ । ସଙ୍ଗେ ସଙ୍ଗେ ସେ କହିଲେ ହାଲୋ । ସେପଟୁ କ'ଣ ଶୁଣିଲେ କେଜାଣି ପ୍ରସନ୍ନ ସଙ୍ଗେସଙ୍ଗେ ମୋବାଇଲ ବଢ଼ାଇଦେଇ କହିଲେ -କାହାକୁ ଦେଇଛ । ଏ ମ୍ୟାଡ଼ାମ୍ ନୁହଁନ୍ତି । ସେହି ବ୍ୟକ୍ତି ଜଣଙ୍କ ପ୍ରସନ୍ନଙ୍କ ହାତରୁ ଫୋନ୍ ନେଇ ଫୋନ୍‌ରେ କଥାବାର୍ତ୍ତା କଲେ ଆଉ କହିଲେ- ଆଜ୍ଞା ମ୍ୟାଡାମ୍ ବାଥ୍ ରୁମରେ ଅଛନ୍ତି । ସଙ୍ଗେସଙ୍ଗେ ପ୍ରସନ୍ନ କହିଲେ - ଆରେ ମାଡାମ୍‌ଙ୍କ କଥା । ବାଥ୍‌ରୁମ୍‌ରେ ପଶିଲେ ଘଂଟାଏ । ବାଥ୍ ରୁମ୍‌ରୁ ବାହାରିଲେ ଠାକୁରପୂଜା ଘଂଟାଏ । ଠାକୁର ପୂଜା ସରିଲେ ସ୍ୱାମୀଙ୍କ ସହିତ କଳି ଘଂଟାଏ । ଆଉ ତା ପରେ ଅଫିସ୍ । ସେତିକି ଥାଉ । ଆଉ ଫୋନ୍‌ଫାନ୍ ନାହିଁ । ଏହି ସମୟରେ ଲ୍ୟାଣ୍ଡଟେଲିଫୋନ୍ ବାଜି ଉଠିଲା । କେହି ଉଠାଉ ନଥା'ନ୍ତି । ପ୍ରସନ୍ନ ସେଠାରେ ବସିଥିବା ଜଣେ ଲୋକଙ୍କୁ କହିଲେ ଟେଲିଫୋନ ଉଠାଅ । କିଏ ଟେଲିଫୋନ କରିଛନ୍ତି ତାଙ୍କ ନାମ ବୁଝ । ଟେଲିଫୋନ ଉଠାଇଥିବା ବ୍ୟକ୍ତି ଜଣଙ୍କ କହିଲେ - ଅନୁଗୁଳରୁ କେହି ଜଣେ ଚାହୁଁଛନ୍ତି କଥାହେବେବୋଲି । ପ୍ରସନ୍ନ କହିଲେ- ଟେଲିଫୋନ ରଖି ଦିଅ । ଏହି ସମୟରେ ସେହି ବ୍ୟକ୍ତି ଜଣଙ୍କ କହିଲେ- ଆଜ୍ଞା ତାଙ୍କ ନାମ ହେଉଛି ପ୍ରସନ୍ନ । ସଙ୍ଗେ ସଙ୍ଗେ ପ୍ରସନ୍ନ ପାଟ୍ଟଶାଣୀ କହିଲେ ରହରହ । ମୋ ନାମଧାରୀ ଜଣେ ବ୍ୟକ୍ତି ଯଦି ଟେଲିଫୋନ କରିଛି ତେବେ ଟିକେ କଥା ହୋଇଯିବା । ପ୍ରସନ୍ନ କଥା ହେଲେ । କହିଲେ - କ'ଣ ହୋଇଛି ମାରପିଟ୍ । ସେଠାରେ ମାରପିଟ୍ ହେଲେ ଭୁବନେଶ୍ୱର ଏମ୍‌ପି କିଛି କରିପାରିବ ନାହିଁ । ସେଠା ଏମ୍‌ଏଲ୍‌ଏ, ଏମ୍‌ପିଙ୍କୁ କୁହ । ପ୍ରସନ୍ନ ନିଜ ଚୌକିକୁ ଆସି ବସିପଡ଼ିଲେ । କହିଲେ ଆଜି ସକାଳଟା କାହା ମୁହଁ ଚାହିଁଥିଲି କେଜାଣି ପୁରାପୁରି ଉପବାସ । ■

# ବାଉଁଶ କରଡ଼ି, ଶ୍ରାବଣୀ ଛତୁ ଓ ମମତା



ଟିତ୍ରକୋଣ କଂଗ୍ରେସ ବିଧାୟିକା ମମତା ମାଢ଼ୀଙ୍କର ଖାଦ୍ୟ ପ୍ରତି ଯେ ଦୁର୍ବଳତା ନାହିଁ ତାହା ନୁହେଁ । କିନ୍ତୁ ତାଙ୍କର ଦୁର୍ବଳତା ଅନ୍ୟ ନେତାଙ୍କ ଠାରୁ ସମ୍ପୂର୍ଣ୍ଣ ବ୍ୟତିକ୍ରମ ଅଟେ । ଏମିତି ବାଉଁଶ କରଡ଼ି ତରକାରୀ ହେଲେ ଜାଣ ମମତାଙ୍କର ଖୁସି ପରେ ଖୁସି ଆସିଯାଏ । ଆଉ ଯଦି ଶ୍ରାବଣୀ ଛତୁ ତରକାରୀ ହେଲା ତେବେ ମମତାଙ୍କ ଖୁସି ସବୁଠାରୁ ଅଧିକ ହୋଇଯାଏ । ବାଉଁଶ କରଡ଼ି, ଶ୍ରାବଣୀ ଛତୁ ତରକାରୀ କଥା ଛାଡ଼ିଦେଲେ କଖାରୁ ପତ୍ର ଖଚଡ଼ା ପ୍ରତି ମଧ ମମତାଙ୍କର ବେଶ୍ ଦୁର୍ବଳତା ରହିଛି । ଏ ଗଲା ମମତାଙ୍କର ଖାଦ୍ୟ ଦୁର୍ବଳତା । ପୋଷାକ ଦୁର୍ବଳତା କଥା ଉଠିଲେ ତାଙ୍କ ପାଟିରୁ ସଙ୍ଗେସଙ୍ଗେ ବାହାରିଯିବ ଶାଢ଼ୀ ନୁହେଁ ଡ୍ରେସ୍ । ଚାକିରି କରୁଥିବା ବେଳେ ସେ ଡ୍ରେସ୍ ପିନ୍ଧୁଥିଲେ । କିନ୍ତୁ ବିଧାୟିକା ହୋଇ ଲୋକପ୍ରତିନିଧି ହୋଇଯିବା ପରେ ସେ ଡ୍ରେସ୍ ପିନ୍ଧା ଛାଡ଼ିଦେଲେ ଆଉ ଶାଢ଼ୀ ପିନ୍ଧିଲେ । ତେବେ ମମତାଙ୍କର ଖାଦ୍ୟ ଦୁର୍ବଳତାକୁ ନେଇ ବିଭିନ୍ନ ସମୟରେ ଚର୍ଚ୍ଚା ହୁଏ । ■

# କୁମ୍ଭୀର ଓ ସୂର୍ଯ୍ୟ

ବୀନ ପଟ୍ଟନାୟକଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀ କାଳରେ ଯେତେବେଳେ ମନ୍ତ୍ରିମଣ୍ଡଳ ଅଦଳବଦଳ ହେଲା ସେତେବେଳେ ଠାରୁ ସୂର୍ଯ୍ୟନାରାୟଣ ପାତ୍ରଙ୍କୁ ମିଳିଥିଲା ଶକ୍ତି ବିଭାଗ । ୨୦୦୪ରେ ମଧ୍ୟ ନବୀନଙ୍କ ଦ୍ୱିତୀୟ ମନ୍ତ୍ରିମଣ୍ଡଳରେ ସୂର୍ଯ୍ୟଙ୍କୁ ବି ମିଳିଲା ଶକ୍ତି ବିଭାଗ । ୨୦୦୯ ନବୀନଙ୍କ ତୃତୀୟ ମୁଖ୍ୟମନ୍ତ୍ରୀ କାଳରେ ସୂର୍ଯ୍ୟ ପାତ୍ର ହୋଇଛନ୍ତି ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ । ୧୯୯୦ ମସିହାରୁ ୨୦୦୯ ପର୍ଯ୍ୟନ୍ତ ସୂର୍ଯ୍ୟ ପାତ୍ରଙ୍କ ନିର୍ବାଚନମଣ୍ଡଳୀ ଥିଲା ମୋହନା । ୨୦୦୯ ନିର୍ବାଚନରେ ସୂର୍ଯ୍ୟ ପାତ୍ର ତାଙ୍କ ନିର୍ବାଚନମଣ୍ଡଳୀ ପରିବର୍ତ୍ତନ କରି ନୂତନଭାବେ ଗଠିତ ହୋଇଥିବା ଦିଗପହଣ୍ଡିକୁ ଆସିଲେ ଆଉ ଏଠାରୁ ମଧ୍ୟ ବିପୁଳ ଭୋଟ ବ୍ୟବଧାନରେ ବିଜୟୀ ହେଲେ । ତେବେ ମୋହନା ବିଧାୟକ ଥିବାବେଳେ ଯେଉଁ ଅଂଚଳକୁ ନେଇ ସେ ଗର୍ବ ଅନୁଭବ କରୁଥିଲେ ସେହି ଅଂଚଳଟି ମଧ୍ୟ ଦିଗପହଣ୍ଡି ନିର୍ବାଚନମଣ୍ଡଳୀରେ ରହିଛି । ତାହା ହେଲା ଘୋଡ଼ାହାଡ଼ । ଏଠାରେ ଯେଉଁ ଜଳାଶୟ ଅଛି ସେ ସମ୍ପର୍କରେ ଓଡ଼ିଶାବାସୀ ପ୍ରାୟ ଜାଣନ୍ତି ନାହିଁ । ଏହି ଘୋଡ଼ାହାଡ଼ ଜଳାଶୟରେ ଗଣନା ହୋଇଛି, ୧୬୮ ଟି କୁମ୍ଭୀର ଅଛନ୍ତି ବୋଲି । କିଛିବର୍ଷ ପୂର୍ବେ ଏଠାରେ ଗୋଟିଏ ଥଂଟିଆ କୁମ୍ଭୀରକୁ ଦେଖିବାକୁ ମିଳିଥିଲା । କିନ୍ତୁ ଗୋଟିଏ କୁମ୍ଭୀରରୁ ଯେ ୧୬୮ ଟି କୁମ୍ଭୀରଙ୍କର ବଂଶବିସ୍ତାର ହେଲାଣି ଏହା ଯେକୌଣସି ବ୍ୟକ୍ତିଙ୍କୁ ଭାବିଲେ ଆଶ୍ଚର୍ଯ୍ୟ ଲାଗିବ ନିଶ୍ଚିତ । ଯେଉଁଥିପାଇଁ ଜିଲାପାଳ ନିଜେ ଖୋଦ୍ ଏହି ଜଳାଶୟ ଗସ୍ତରେ ଗଲେ । ସେଠାରେ ଜିଲାପାଳ ଜାଣିପାରିଲେ କୁମ୍ଭୀର ସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି । କିନ୍ତୁ କୁମ୍ଭୀର ସଂଖ୍ୟା ବଢ଼ିଚାଲିଲେ ମଧ୍ୟ ଏହି ଅଂଚଳରେ କୁମ୍ଭୀର ଆତଙ୍କ ନାହିଁ । କୁଆଡ଼େ ଏହି କୁମ୍ଭୀରଙ୍କର ବଡ଼ ଥଂଟ ଥାଏ । କିନ୍ତୁ ସେହି ଥଂଟରେ ଦାନ୍ତ ନଥାଏ । ଯେଉଁଥିପାଇଁ ସେମାନେ ମଣିଷକୁ ଖାଇପାରନ୍ତି ନାହିଁ । ଏହି କୁମ୍ଭୀରମାନେ କୁଆଡ଼େ ମଣିଷଙ୍କ ସହିତ ବନ୍ଧୁତା ସ୍ଥାପନ ମଧ୍ୟ କରନ୍ତି । ମଣିଷମାନେ ସେମାନଙ୍କୁ ଦେଖିଲେ ସ୍ନେହ କରନ୍ତି । ଏପରିକି ସେମାନେ ଏହି କୁମ୍ଭୀରଙ୍କୁ ପାଣି ଭିତରେ ଆଉଁସିବା ପାଇଁ ଆଗଭର ହୁଅନ୍ତି ! ଏମିତି କୁମ୍ଭୀର ଯେ ମଣିଷକୁ ଖାଇବେ ନାହିଁ ତାହା କେହି ବି ଭାବିପାରିବେ ନାହିଁ । ଏହି କୁମ୍ଭୀରମାନଙ୍କୁ ନେଇ ସୂର୍ଯ୍ୟଙ୍କର ବେଶ୍ ଗର୍ବ । ତାଙ୍କ ନିର୍ବାଚନମଣ୍ଡଳୀରେ ସେ ଏମିତି କୁମ୍ଭୀର ରଖିଛନ୍ତି ଯାହାଙ୍କୁ ଦେଖିଲେ ସାଧାରଣ ମଣିଷର ଭୟ ହୁଏ । କିନ୍ତୁ ପ୍ରକୃତରେ ସେମାନେ ମାରାତ୍ମକ ନୁହନ୍ତି ବରଂ ବନ୍ଧୁପ୍ରିୟ । ଦିଗପହଣ୍ଡି ନିର୍ବାଚନମଣ୍ଡଳୀରେ ବେଳେବେଳେ ରାଜନୀତି ମହଲରେ ଏହି କୁମ୍ଭୀରଙ୍କୁ ନେଇ ବେଶ୍ ଲଘୁ ଆଲୋଚନା ହୁଏ । ସେଥିରେ ସୂର୍ଯ୍ୟ ପାତ୍ରଙ୍କୁ ସବୁବେଳେ ସାମିଲ କରାଯାଏ । ଏବେ ଯେଉଁ କୁମ୍ଭୀରଙ୍କୁ ନେଇ ଲଘୁ ଆଲୋଚନା ଚାଲିଛି ତାହା ହେଲା- ସୂର୍ଯ୍ୟ ହେଉଛନ୍ତି ଘୋଡ଼ାହାଡ ଜଳାଶୟ



କୁମ୍ଭୀରଙ୍କ ପରି । ମାନେ ତାଙ୍କର କଥାବାର୍ତା ଟାଣ ହେଲେ ମଧ ଭିତରେ ସେ ଭାରି ନରମ । ଆଉ ଘୋଡ଼ାହାଡ଼ କୁମ୍ଭୀରଙ୍କ ପରି ସେ ବେଶ୍ ବନ୍ଧୁପ୍ରିୟ । ତେଣୁ ସୂର୍ଯ୍ୟ ଯେତେ ଟାଣପଣ ଦେଖାଇଲେ ମଧ ଦିଗପହଣ୍ଡି ବାସିନ୍ଦା ତାଙ୍କ ଚାରିପଟେ ସବୁବେଳେ ହାଉଯାଉ । ସେମାନେ ଜାଣିଛନ୍ତି ସୂର୍ଯ୍ୟ ହେଉଛନ୍ତି ଘୋଡ଼ାହାଡ଼ କୁମ୍ଭୀରଙ୍କର ଅନ୍ୟ ରୂପ । ପୂରା ଶାନ୍ତଶିଷ୍ଟ । ■

## ଘଡ଼ାଇଙ୍କ କୌଶଳ



କଞ୍ଚା ବୟସରୁ ବିଧାୟକ ହୋଇ ଏବେ ପରିଣତ ବୟସରେ ପହଂଚିଲେଣି ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ । ଏମିତି ଦେଖିଲେ ପ୍ରଫୁଲ୍ଲଙ୍କ ପ୍ରଥମ ବିଧାୟକ ଓ ବର୍ତମାନର ବିଧାୟକ ମଧ୍ୟରେ ୪୨ ବର୍ଷ ହୋଇଗଲାଣି । ପ୍ରଫୁଲ୍ଲଙ୍କୁ ଏବେ ପାଖାପାଖି ୭୦ ବର୍ଷ । ୪୨ ବର୍ଷର ପ୍ରତ୍ୟକ୍ଷ ରାଜନୀତି ଜୀବନ ମଧ୍ୟରେ ସେ କେତେବେଳେ ସରକାରୀ ଉପମୁଖ୍ୟ ସଚେତକ ତ କେତେବେଳେ ମୁଖ୍ୟ ସଚେତକ, ପୁଣି କେତେବେଳେ ସରକାରୀ ଉଦ୍ୟୋଗ, ଯୋଜନା ସମନ୍ୱୟ, ଗଣଶିକ୍ଷା ମନ୍ତ୍ରୀ ତ କେତେବେଳେ ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ, ମହିଳା, ଶିଶୁ ବିକାଶ ମନ୍ତ୍ରୀ । ଏବେ ଅର୍ଥ ଓ ଅବକାରୀ ମନ୍ତ୍ରୀ । ମଧୁସୂଦନ ଆଇନ କଲେଜ ଛାତ୍ର ସଂସଦର ସେ ମଧ ସଭାପତି ଥିଲେ । ଦୀର୍ଘ ସମୟର ରାଜନୈତିକ ଜୀବନ ମଧ୍ୟରେ ସେ ଅନେକ କଥା ଶିଖିଛନ୍ତି ଆଉ ଅନେକ କ୍ଷେତ୍ରରେ ମଧ ଠୋକର ଖାଇଛନ୍ତି । ତେବେ ଯାହା ସେ ଶିଖିଛନ୍ତି ତାହାକୁ ଏଥର ମନ୍ତ୍ରୀ ହେବାପରେ ବେଶ୍ ଦକ୍ଷତାର ସହ ପ୍ରୟୋଗ କରିଛନ୍ତି । ବରିଷ୍ଠ ମନ୍ତ୍ରୀ ଭାବେ ପ୍ରଫୁଲ୍ଲଙ୍କୁ ମିଳିଛି ସରକାରୀ କ୍ୱାର୍ଟର । କିନ୍ତୁ ଏହି କ୍ୱାର୍ଟରରେ ପ୍ରଫୁଲ୍ଲ ନରହି ନୂଆପଲ୍ଲୀସ୍ଥିତ ନିଜ ବାସଭବନରେ ସେ ରହୁଛନ୍ତି । ଏଠାରେ ମଧ ସେ ନିଜର ଆବାସିକ କାର୍ଯ୍ୟାଳୟ ଚଳାଉଛନ୍ତି । କିନ୍ତୁ ଅର୍ଥବିଭାଗର ଚେକ୍‌ଗେଟ୍‌ରେ ଅବସ୍ଥାପିତ ଅଫିସର କିମ୍ବା କମର୍ସିଆଲ ଟ୍ୟାକ୍ସ ଅଫିସରଙ୍କୁ ସେ ତାଙ୍କ ବାସଭବନକୁ ଆସିବା ନିମନ୍ତେ ବାରଣ କରିଦେଇଛନ୍ତି । ସେହିପରି ଅବକାରୀ ଇନ୍ସପେକ୍ଟର ହୁଅନ୍ତୁ କିମ୍ବା ଜିଲା ସୁପରିଟେଂଡେଂଟ ହୁଅନ୍ତୁ କାହାରିକୁ ଘରେ ଦେଖା କରିବା ପାଇଁ ସେ ସୁଯୋଗ ଦେଉନାହାନ୍ତି । ପ୍ରଫୁଲ୍ଲଙ୍କର ମତ ହେଲା- ସେ ୭ ଥର ବିଧାୟକ ହେଲେଣି । ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ସେ ମନ୍ତ୍ରୀ ହୋଇଥିବାବେଳେ ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ସେ ୩ ଥର ମନ୍ତ୍ରୀ ହେଲେଣି । ତେଣୁ ରାଜନୀତିରେ ତାଙ୍କର ଅଭିଜ୍ଞତା ବହୁ ଅଧିକ । କେଉଁ ଅଫିସରମାନେ ମନ୍ତ୍ରୀଙ୍କୁ ଟଙ୍କା ଦିଆନିଆ କରନ୍ତି ତାହା ସେ ଭଲ ଭାବେ ଜାଣନ୍ତି । ଏହି ଦୃଷ୍ଟିରୁ ଟଙ୍କା ଦିଆନିଆ କରୁଥିବା ଅଫିସରଙ୍କୁ ବାସଭବନକୁ ଆସିବା ନିମନ୍ତେ ମନା କରିଦେଲେ ଆଉ ଟଙ୍କା କାରବାର ହେଉଛି ବୋଲି କେହି ହଲପ୍ ଦେଇ କହିପାରିବେ ନାହିଁ । ଯେଉଁ

ମନ୍ତ୍ରୀଙ୍କ ବାସଭବନକୁ ଅଫିସର ଯାଆଆସ କରନ୍ତି ସେଠାରେ ନବୀନ ପଟ୍ଟନାୟକଙ୍କ ତୃତୀୟ ଆଖି ବୋଲି କୁହାଯାଉଥିବା ଗୋଇନ୍ଦା ସଂସ୍ଥାକୁ ନିୟୋଜିତ କରାଯାଇଥାଏ । ନବୀନଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀପଦ ବଜାୟ ରଖିବାକୁ ହେଲେ ମନ୍ତ୍ରୀଙ୍କୁ ଖଣ୍ଡାଧାରରେ ଚାଲିବାକୁ ହୁଏ । ନଚେତ୍ କେତେବେଳେ ଯେ ଚୋଟ ନଲାଗିବ ତାହା କହି ହେବନାହିଁ । ଏହାକୁ ପ୍ରଫୁଲ ବେଶ୍ ଭଲ ଭାବେ ପରଖି ନେଇଛନ୍ତି । ଆଉ ବିଭାଗୀୟ ଅଫିସରଙ୍କୁ ତାଙ୍କ ବାସଭବନ ମନା ନୀତି ପ୍ରୟୋଗ କରିଦେଇଛନ୍ତି । ମାନିବାକୁ ପଡ଼ିବ ଘଡ଼ାଇଙ୍କ କୌଶଳକୁ । ■

## ଦାମଙ୍କ ଚିନ୍ତା



ଯେତେବେଳେ ଡାକ୍ତର ଦାମୋଦର ରାଉତ ମନ୍ତ୍ରୀ ହୁଅନ୍ତି ସେତେବେଳେ ତାଙ୍କ ପାଖକୁ ଆପେଆପେ ଚାଲିଆସେ ପଂଚାୟତିରାଜ ବିଭାଗ । ୧୯୭୯, ୧୯୯୦, ୨୦୦୨, ୨୦୦୪ରେ ଦାମ ଯେତେବେଳେ ମନ୍ତ୍ରୀ ହୋଇଛନ୍ତି ସେତେବେଳେ ତାଙ୍କୁ ମିଳିଥିଲା ପଂଚାୟତିରାଜ ବିଭାଗ । ୨୦୦୯ରେ ନବୀନ ପଟ୍ଟନାୟକଙ୍କ ତୃତୀୟ ମୁଖ୍ୟମନ୍ତ୍ରୀ ମନ୍ତ୍ରିମଣ୍ଡଳରେ ଏହାର କିନ୍ତୁ ବ୍ୟତିକ୍ରମ ଘଟିଲା । ଦାମଙ୍କୁ ମିଳିଲା କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ବିଭାଗ । ଅବଶ୍ୟ ଦାମ ଏହି ବିଭାଗ ପାଇବା ପରେ ଜୋରଦାର୍ ଉଦ୍ୟମ କରିଚାଲିଲେ ନିଜକୁ ଜଣେ ଦକ୍ଷ ମନ୍ତ୍ରୀ ଭାବେ ପ୍ରତିପାଦିତ କରିବା ନିମନ୍ତେ । ଏମିତି ବିଜୁ ପଟ୍ଟନାୟକଙ୍କ ସମୟରେ ଅନର୍ଗଳ ବକ୍ତୃତା ଦେବାରେ ଦାମୋଦରଙ୍କ ବେଶ୍ ଖ୍ୟାତି ରହିଥିଲା । ଯେଉଁଥିପାଇଁ ବିଧାନସଭାରେ ଦାମୋଦର ଯେତେବେଳେ ବକ୍ତବ୍ୟ ରଖିଥା'ନ୍ତି ସେତେବେଳେ ତାଙ୍କ କଣ୍ଠରେ ସରସ୍ୱତୀ ଅଛନ୍ତି ବୋଲି କୁହାଯାଇଥାଏ । କିନ୍ତୁ କଥାକୁହାଳିଆ ଯୋଗ୍ୟତା ଦାମୋଦରଙ୍କ ପାଇଁ ଏଥର ମନ୍ତ୍ରୀ ହେବାପରେ ସେମିତି କିଛି ପ୍ରଭାବ ପକାଇ ପାରୁନାହିଁ । ଅବଶ୍ୟ ଦାଣ୍ଡୁଆ ଆଇଏଏସ୍ ଅଫିସରଙ୍କୁ ତାଙ୍କ ବିଭାଗର ସଚିବ ପଦରୁ ରାତାରାତି ଦାମ ହଟାଇବାରେ ସକ୍ଷମ ସେ ହୋଇଥିଲେ । ଏହାପରେ ଦାମ ଭାବି ନେଇଥିଲେ ଯେ, ସେ ଯାହା ଚାହିଁବେ ବିଭାଗରେ ତାହା ହେବ । ସେ ଯାହାଙ୍କ ନାମ ସୁପାରିଶ କରିବେ ସେହି ଅଫିସର ବିଭାଗରେ ନିଯୁକ୍ତି ପାଇବେ । କିନ୍ତୁ ଦାମ ଯେ ଜାଣିନାହାନ୍ତି ତାଙ୍କୁ ନବୀନ ପଟ୍ଟନାୟକ ଅନ୍ୟ ଗୋଠରେ ରଖିଛନ୍ତି ବୋଲି । ସବୁ ନଜର ତାଙ୍କରି ଉପରେ ରହିଛି । ଏହା ଯେ ଦାମଙ୍କ ପାଇଁ ପ୍ରଥମ ତାହା ନୁହେଁ । ଗତ ମନ୍ତ୍ରିମଣ୍ଡଳରେ ଦାମ ଯେତେବେଳେ ପଂଚାୟତିରାଜ ମନ୍ତ୍ରୀ ଥିଲେ ସେତେବେଳେ ତ୍ରିସ୍ତରୀୟ ପଂଚାୟତ ବ୍ୟବସ୍ଥାରେ ସଂରକ୍ଷଣ ଆସନ ଲାଗୁ ନେଇ ସେ ତାଙ୍କ ନିଜସ୍ୱ ନିଷ୍ପତି ନେବାକୁ ଚାହିଁଲେ । ଏପରିକି ଫାଇଲରେ ମଧ୍ୟ ସେ ସମ୍ପର୍କରେ ହାତକାଟି ଲେଖିଦେଲେ । କଥା ଯାଇ ପହଂଚିଲା ନବୀନଙ୍କ ପାଖରେ । ନବୀନ ଫାଇଲ

ମାଗି ନିଜେ ସେହି ନିଷ୍ପତି ନେଲେ । କିଛିଦିନ ପରେ ଦାମ ମନ୍ତ୍ରିମଣ୍ଡଳରୁ ବାହାରିଗଲେ । ଏହି ତିକ୍ତ ଅନୁଭୂତି ଦାମଙ୍କ ମନରୁ ଯେ ଚାଲିଯାଇଛି ତାହା ନୁହେଁ । ଏହାସତ୍ତ୍ୱେ ଦାମ ତାଙ୍କୁ ମିଳିଥିବା ବିଭାଗକୁ ସଜାଡ଼ିବା ପାଇଁ ଯତ୍‌ପରୋନାସ୍ତି ଉଦ୍ୟମ ଜାରି ରଖିଛନ୍ତି । ଏବେ ଦାମଙ୍କ ମୁହଁରେ ଗୋଟିଏ କଥା । ତାହା ହେଲା- ବିଭାଗରେ ଦୁର୍ନୀତି ବେଶ୍ ବଢ଼ିଯାଇଛି । ଯୁଆଡ଼େ ଟେକା ମାରିବ ସିଆଡ଼େ ଦୁର୍ନୀତି । ଇଆଡ଼େ ମେସିନ୍ କିଣାଯାଇଛି କିନ୍ତୁ ତାକୁ ଚଳାଇବା ପାଇଁ କର୍ମଚାରୀ ନିଯୁକ୍ତି ପାଇନାହାନ୍ତି । କେବଳ ତୋର ଅଧେକୁ ମୋର ଅଧେ ପାଇଁ ମେସିନ୍ କିଣାଯାଇଛି । ଏଭଳି ତୋର ଅଧେ, ମୋର ଅଧେ କାରବାର ଦାମଙ୍କୁ ମିଳିଥିବା ବିଭାଗ ଗୁଡ଼ିକରେ ପୂର୍ବରୁ ଚାଲିଥିଲା । ତେବେ ଦାମ ଏହାକୁ ରୋକିବା ପାଇଁ ଉଦ୍ୟମ ଆରମ୍ଭ କଲେ ମଧ ଅନେକ ସମୟରେ ତାଙ୍କୁ ଅସହାୟ ହେବାକୁ ପଡୁଛି । ଅନେକଙ୍କୁ ମଧ ସେ ଖୋଲାଖୋଲି ଭାବେ କହୁଛନ୍ତି ଯେ, ଅମୁକ ଜାଗାରେ ଅମୁକ ଦୁର୍ନୀତି ହୋଇଛି । ତାହାର ଟିକିନିଖି ବିବରଣୀ ଆଣି ଦିଅ । ତେବେ ଦାମ ଦୁର୍ନୀତି ଧରିବାକୁ ଯାଇ କେତେବେଳେ ବିରୁଡ଼ି ବସାରେ ଯେ ହାତ ନମାରି ଦେବେ ତାହା କହି ହେବନାହିଁ । ଏବେ ବିରୁଡ଼ି ବସାରେ ଦାମ କେତେବେଳେ ହାତ ମାରିବେ ତାହାକୁ ଚାହିଁ ରହିଛନ୍ତି ତାଙ୍କ ନିନ୍ଦୁକମାନେ । ■

## ଜାନକୀଙ୍କ ରୂପ



ଏମିତି ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଭଲ ଅର୍ଥରେ ବହୁରୂପୀ କୁହାଯାଏ । ସେ ହେଉଛନ୍ତି ତିନିଥର ପୂର୍ବତନ ମୁଖ୍ୟମନ୍ତ୍ରୀ । କେନ୍ଦ୍ରରେ ସେ ଥିଲେ ଉପମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ ଆଉ କ୍ୟାବିନେଟ ମନ୍ତ୍ରୀ । ରାଜ୍ୟ ବିଧାନସଭାର ବିରୋଧୀ ଦଳ ନେତା ମଧ ସେ ଥିଲେ । ଏବେ ସେ ଆସାମର ରାଜ୍ୟପାଳ । ଯେଉଁ ଘଟଣା ସମ୍ପର୍କରେ ଏଠାରେ ଉଲ୍ଲେଖ କରାଯାଉଛି ତାହା ୨୦୦୯ ନିର୍ବାଚନ ପରର ଏବଂ ଆସାମ ରାଜ୍ୟପାଳ ହେବା ପୂର୍ବର । ସେଥର ସବୁଥର ପରି ସ୍ୱାଧୀନତା ଦିବସରେ ରାଜଭବନରେ ଆୟୋଜିତ ହୋଇଥିଲା 'ଆଟ୍‌ହୋମ୍' । ରାଜ୍ୟପାଳଙ୍କ ଦ୍ୱାରା ଆୟୋଜିତ ଏହି 'ଆଟ୍‌ହୋମ୍'ରେ ରାଜ୍ୟପାଳ ଯେଉଁଠି ଆସନ ଗ୍ରହଣ କରିଥା'ନ୍ତି ତାଙ୍କ ପାଖରେ ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳ ନେତା, ବାଚସ୍ପତି, ହାଇକୋର୍ଟ ମୁଖ୍ୟ ବିଚାରପତି, ମାନବିକ ଅଧିକାର କମିଶନ, ସୂଚନା କମିଶନ ପ୍ରଭୃତି ବସିବା ପାଇଁ ଆସନ ପଡ଼ିଥିଲା । କିନ୍ତୁ କୌଣସି ପଦପଦବୀରେ ନ ଥାଇ ବି ଜାନକୀ ବଲ୍ଲଭ ପଟ୍ଟନାୟକ 'ଆଟ୍‌ହୋମ୍'ରେ ରାଜ୍ୟପାଳଙ୍କ ନିକଟରେ ବସିଥା'ନ୍ତି । ସତେଯେମିତି ଓଡ଼ିଶା କଂଗ୍ରେସ ରାଜନୀତିରେ ଜାନକୀ ବଲ୍ଲଭଙ୍କ ବିକଳ୍ପ ନାହିଁ । ସେ ହୋଇଯାଇଛନ୍ତି ଭୀଷ୍ମ ପିତାମହ । ଏମିତି ଯେ ରାଜ୍ୟପାଳଙ୍କ ନିକଟରେ ଜାନକୀ

ବସିବାକୁ ନେଇ ଚର୍ଚ୍ଚା ହୋଇଥିଲା ତାହା ନୁହେଁ । ତା'ଠାରୁ ଅଧିକ ଚର୍ଚ୍ଚା ହୋଇଥିଲା ଯେତେବେଳେ ତାଙ୍କୁ ବିଭିନ୍ନ ଆଇଏଏସ୍, ଆଇପିଏସ୍ ଅଫିସରମାନେ ଦେଖା କରୁଥିଲେ । ହଠାତ୍ କ'ଣ ହେଲା କେଜାଣି ଜାନକୀ ଖୋଜିଲେ ପୁଲିସ ମହାନିର୍ଦ୍ଦେଶକ ମନମୋହନ ପ୍ରହରାଜଙ୍କୁ । ଏହାପରେ ପୁଲିସ ମହାନିର୍ଦ୍ଦେଶକଙ୍କୁ ଖୋଜା ଚାଲିଲା । ଜାନକୀ କିଛି ସମୟ ରାଜ୍ୟପାଳଙ୍କ ପାଖରେ ବସି ସେଠାରୁ ଉଠିଆସିଲେ । ହଠାତ୍ ଦେଖାଗଲା ତାଙ୍କ ସହିତ ବହୁ ଆଇଏଏସ୍ ଓ ଆଇପିଏସ୍ ଅଫିସର କଥାବାର୍ତ୍ତା ହେଉଥିବାର । ଅବସରପ୍ରାପ୍ତ ଆଇଏଏସ୍ ଓ ଆଇପିଏସ୍ ଅଫିସର ମଧ୍ୟ ସେଥିରୁ ବାଦ୍ ପଡ଼ିଲେ ନାହିଁ । ସତେ ଯେମିତି ଜାନକୀ ବଲ୍ଲଭ ନିଜକୁ ମୁଖ୍ୟମନ୍ତ୍ରୀ ଭାବେ ଭାବୁଥା'ନ୍ତି । ଆଉ ସେହିପରି କଥାବାର୍ତ୍ତା ମଧ୍ୟ ଜାନକୀ ବଲ୍ଲଭ କରୁଥା'ନ୍ତି । ଏହି ସମୟରେ ସେଠାକୁ ଆସି ପହଂଚିଲେ ପୁଲିସ ମହାନିର୍ଦ୍ଦେଶକ । ଜାନକୀ ସେଠାରେ ଦୀର୍ଘସମୟ ଧରି ପୁଲିସ ମହାନିର୍ଦ୍ଦେଶକଙ୍କ ସହ ଆଲୋଚନା କଲେ । 'ଆଟ୍‌ହୋମ୍'ରେ ବହୁ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥା'ନ୍ତି । କିନ୍ତୁ ଜାନକୀ ବଲ୍ଲଭ ଓ ପୁଲିସ ମହାନିର୍ଦ୍ଦେଶକଙ୍କ ମଧ୍ୟରେ ଦୀର୍ଘସମୟ ଧରି ଚାଲିଥିବା ଆଲୋଚନା ହିଁ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏପଟେ ଜାନକୀଙ୍କ ସହିତ ଯାଇଥିବା ତାଙ୍କର କିଛି କଂଗ୍ରେସ ଚେଲା ଏହାକୁ ବେଶ୍ ଉପଭୋଗ କରୁଥିଲେ । ଅନେକଙ୍କୁ ମଧ୍ୟ ସେମାନେ ସୂଚନା ଦେଉଥିଲେ ଯେ, ଏଥର ସିନା ହେଲାନି କିନ୍ତୁ ଆସନ୍ତା ନିର୍ବାଚନରେ ଜାନକୀ ବଲ୍ଲଭ ହେବେ ମୁଖ୍ୟମନ୍ତ୍ରୀ । ଏହା ହିଁ ଜାନକୀ ବଲ୍ଲଭଙ୍କର ଜୁଆଡ଼େ ଶେଷ ଇଚ୍ଛା । ଜାନକୀ ବଲ୍ଲଭଙ୍କ କଥାବାର୍ତ୍ତା, ଢଙ୍ଗଢାଙ୍ଗ, ପୋଷାକ ଓ ଚେହେରାକୁ ଦେଖିଲେ କେବେ ବି କେହି କହିପାରିବେ ନାହିଁ ଯେ ସେ ଜଣେ ବୟସ୍କ ନେତା ବୋଲି । ବୟସ ତାଙ୍କ ପାଖରେ ହାର୍ ମାନିଯାଇଛି । ■

## ସଂଜୀବଙ୍କ ଅଧା ସାଇକେଲ



ନବୀନ ପଟ୍ଟନାୟକଙ୍କ ହ୍ୟାଟ୍ରିକ୍ ମୁଖ୍ୟମନ୍ତ୍ରୀରେ ଗଠିତ ମନ୍ତ୍ରିମଣ୍ଡଳରେ ସଂଜୀବ ସାହୁ ଗୁରୁତ୍ୱପୂର୍ଣ୍ଣ ପରିବହନ ଓ ବାଣିଜ୍ୟ ବିଭାଗର ମନ୍ତ୍ରୀ ହୋଇଛନ୍ତି । ୨ ନମ୍ବର ସ୍ଥିତ ତାଙ୍କ ସରକାରୀ ବାସଭବନ ବି-୧ରେ ଯେଉଁମାନେ ତାଙ୍କୁ ସାକ୍ଷାତ କରିବାକୁ ଯାଉଛନ୍ତି ସେଠାରେ ଏକ ସାଇକେଲକୁ ସେମାନେ ଦେଖୁଛନ୍ତି । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ଯେ, ନିର୍ବାଚନମଣ୍ଡଳୀ ବାସିନ୍ଦା ଯେତେବେଳେ ସେଠାକୁ ଆସୁଛନ୍ତି ଏହି ସାଇକେଲକୁ ସେମାନେ ଅଧା ସାଇକେଲ ବୋଲି କହୁଛନ୍ତି । ବୋଧହୁଏ ସକାଳ ବ୍ୟାୟମ କରିବା ପାଇଁ ସଂଜୀବ ଏହି ସାଇକେଲଟିକୁ କିଣିଛନ୍ତି । ଆଉ ଯେଉଁଠାରେ ଜନସାଧାରଣଙ୍କୁ ସାକ୍ଷାତ କରୁଛନ୍ତି ସେଠାରେ ଥିବା ଚୌକି ନିକଟରେ ଏହି ସାଇକେଲକୁ

ସେ ରଖିଛନ୍ତି । ସାଧାରଣତଃ ବ୍ୟାୟାମ କରାଯାଉଥିବା ସାଇକେଲଟି ସାଧାରଣ ସାଇକେଲ ପରି ହୋଇ ନଥାଏ । ଏହାର ପଛପାଖଟି ନଥାଏ । କେବଳ ସିଟ୍‌ରେ ବସି ପ୍ୟାଡ଼େଲ ମାରିବା ଏହାର କାମ । ସେଥିରେ ଚକା ଗଡ଼ିବ ନାହିଁ କି ସାଇକେଲ ଆଗକୁ ଯିବନାହିଁ । ପ୍ୟାଡ଼େଲ ଯେତେ ଜୋର୍‌ରେ ମାରିବ ସ୍ପିଡ଼ୋମିଟରରେ ତାହାର ବେଗ ସେତେ ଅଧିକ ଉଠିବ । ଏହାକୁ ସାଇକେଲ ବ୍ୟାୟାମ କୁହାଯାଏ । ଏହି ବ୍ୟାୟାମ କଲେ ଦେହରୁ ଝାଳ ବାହାରିବ ଆଉ ବ୍ୟାୟାମ କରୁଥିବା ବ୍ୟକ୍ତି ସୁସ୍ଥସବଳ ରହିବେ । ନିଜକୁ ସୁସ୍ଥସବଳ ରଖିବା ପାଇଁ ବୋଧହୁଏ ଏହି ସାଇକେଲ ବ୍ୟାୟାମ କରିବା ନିମନ୍ତେ ସଂଜୀବ ସାଇକେଲଟି କିଣିଛନ୍ତି । କିନ୍ତୁ ନିର୍ବାଚନମଣ୍ଡଳୀ ଲୋକ ସେହି ସାଇକେଲଟିକୁ ଦେଖିଲେ ଅଧା ସାଇକେଲ ବୋଲି କହୁଛନ୍ତି । ଅନେକ ମଧ୍ୟ କହୁଛନ୍ତି ଯେ, ସାଇକେଲଟିର ବୋଧେ ଦୁର୍ଘଟଣାରେ ପଛପାଖଟି ନଷ୍ଟ ହୋଇଯାଇଛି ଆଉ ସଂଜୀବ ସାଇକେଲଟିକୁ ଭଲ ପାଉଥିବାରୁ ଅଧା ସାଇକେଲଟିକୁ ପାଖରେ ରଖିଛନ୍ତି । ନିର୍ବାଚନମଣ୍ଡଳୀର ଲୋକମାନଙ୍କର ଏହି ମନ୍ତବ୍ୟ ଯେ, ସଂଜୀବଙ୍କ କାନରେ ପଡୁନାହିଁ ତାହା ନୁହେଁ । କିନ୍ତୁ ସଂଜୀବ ଏହାକୁ ବେଶ୍ ଖୁସି ମିଜାଜରେ ଗ୍ରହଣ କରୁଛନ୍ତି । ଅଧା ସାଇକେଲକୁ ଯେ ଚଢ଼ିଥିବ ସେ ତାହାର ମଜା ଜାଣିଥିବ । ତେଣୁ ସଂଜୀବଙ୍କ ଅଧା ସାଇକେଲ ଚଢ଼ା ମଜା ଅନ୍ୟମାନେ ବା ଜାଣିବେ କେମିତି । ■

## ମହାପ୍ରସାଦ ପ୍ରିୟ ସିଦ୍ଧାର୍ଥ



ସିଦ୍ଧାର୍ଥ ଶେଖର ସିଂ ମର୍ଦ୍ଦରାଜ ହେଉଛନ୍ତି ଖଣ୍ଡପଡ଼ାର ରାଜକୁମାର । ତାଙ୍କ ଚେହେରାକୁ ଦେଖିଲେ ରାଜକୁମାର ବୋଲି ଜାଣିହେବ । ସିଦ୍ଧାର୍ଥ ଏବେ ଖଣ୍ଡପଡ଼ାର ବିଜେଡ଼ି ବିଧାୟକ । ଏମିତି ସାଧାରଣତଃ ରଜାମାନେ ଆମିଷ ପ୍ରିୟ ଅଟନ୍ତି । କିନ୍ତୁ ସିଦ୍ଧାର୍ଥ ଏଥିରୁ ବ୍ୟତିକ୍ରମ । ଜଗନ୍ନାଥଙ୍କ ମହାପ୍ରସାଦ ଯେଉଁଦିନ ସେ ଖାଇବେ ଜାଣ ସେଦିନ ତାଙ୍କର ମନ ବେଶ୍ ଖୁସ୍ । ସବୁବେଳେ ଯଦି ଜଗନ୍ନାଥଙ୍କ ମହାପ୍ରାସଦ ତାଙ୍କୁ ଖାଇବାକୁ ମିଳେ ତେବେ ସେ ଖୁସି ପରେ ଖୁସି ହୁଅନ୍ତି । ଠାକୁର ଠାକୁରାଣୀଙ୍କର ପ୍ରସାଦକୁ ମଧ୍ୟ ସେବନ କରିବା ପାଇଁ ସେ ବେଶ୍ ଆଗ୍ରହ ପ୍ରକାଶ କରିଥା'ନ୍ତି । ସିଧାସଳଖ କୁହାଗଲେ ଏହା ହେବ ଯେ ସିର୍ଦ୍ଧାର୍ଥ ହେଉଛନ୍ତି ପ୍ରସାଦ ପ୍ରିୟ । ଏ ତ ଗଲା ସିଦ୍ଧାର୍ଥଙ୍କ ପ୍ରସାଦ ଖାଇବା ସମ୍ପର୍କରେ । ଏବେ ଆସିବା ପ୍ରସାଦ ବ୍ୟତୀତ ସିଦ୍ଧାର୍ଥଙ୍କର ଅନ୍ୟ କେଉଁ ଖାଦ୍ୟ ପ୍ରତି ଦୁର୍ବଳତା ରହିଛି । ବିରି ବରା ଦେଖିଦେଲେ ସିଦ୍ଧାର୍ଥଙ୍କ ପାଟିରୁ ଲାଳ ବାହାରେ । ଯେମିତି ହେଲେ ସେ ବିରି ବରା ଖାଇବେ ହିଁ ଖାଇବେ । ପୁଣି ପୂର ଦିଆ କାକରା ପାଇଲେ ଚଟ୍‌କିନା ତାକୁ ସେ ପାଟିକୁ ପକାଇଦେବେ । ଖୁରୁମାକୁ ଦେଖିଲେ ବି ସିଦ୍ଧାର୍ଥ ଛାଡ଼ନ୍ତି ନାହିଁ । ନିରାମିଷ ଖାଦ୍ୟ ହିଁ

ତାଙ୍କର ପ୍ରିୟ ଅଟେ । ସିଦ୍ଧାର୍ଥଙ୍କ ଚେହେରାରେ ଯେଉଁ ଲାବଣ୍ୟ ରହିଛି ତାହା କୁଆଡ଼େ ତାଙ୍କର ଏହି ଖାଇବା ଯୋଗୁ ବୋଲି ଚର୍ଚ୍ଚା ହେଉଛି । ■



## ପାଟଶାଣୀଙ୍କ ଖିଅର




ମିତି ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କ ଅନ୍ୟ ପରିଚୟ ହେଉଛି ସେ ଜଣେ ଆଶୁକବି । ମାନେ ଭାଷଣ ଦେଉଥିବା ବେଳେ ସେଠାକାରର ପରିସ୍ଥିତିକୁ ଦେଖି ସେ କବିତା ମଧ୍ୟ ତୁରନ୍ତ ଗାନ କରନ୍ତି । ଅର୍ଥାତ୍ କବିତା ଲେଖିବା ପାଇଁ ତାଙ୍କ ନିମନ୍ତେ ସ୍ଥାନ, କାଳ, ପାତ୍ରର ଆବଶ୍ୟକତା ନଥାଏ । ପରିବେଶକୁ ଦେଖି ସେ ତୁରନ୍ତ କବିତା ଗାଇଥା'ନ୍ତି । ଆଶୁକବି ଦକ୍ଷତା ରାଜନୀତିରେ ତାଙ୍କ ପାଇଁ ଏକ ଅସ୍ତ୍ର ହୋଇଯାଇଛି । ଯେମିତି ପରିବେଶକୁ ଦେଖି ସେ ତୁରନ୍ତ କବିତା ଗାନ କରିଦିଅନ୍ତି ସେହିପରି ମଧ୍ୟ ପରିସ୍ଥିତିକୁ ଦେଖି ସେ ରାଜନୈତିକ ନିଷ୍ପତି ନିଅନ୍ତି । ସେଦିନ ପ୍ରସନ୍ନ ପାଟଶାଣୀଙ୍କ ଦରବାର ଚାଲିଥାଏ । ପ୍ରସନ୍ନ ତାଙ୍କ ଚିରାଚରିତ ଢଙ୍ଗରେ ଦରବାର ଚଳାଇଥା'ନ୍ତି । ଅର୍ଥାତ୍ ଗାମୁଛାଟିଏ ପିନ୍ଧିବା ବ୍ୟତୀତ ତାଙ୍କ ଦେହରେ ଆଉ କୌଣସି ବସ୍ତ୍ର ନଥାଏ । ଜଣେ ବ୍ୟକ୍ତି ଦରବାର ଆରମ୍ଭରୁ ଠିଆ ହୋଇଥାଏ । ପ୍ରସନ୍ନ ତାଙ୍କୁ କ'ଣ କାମ ବୋଲି ଯେତେ କହିଲେ ମଧ୍ୟ ସେ ପରେ କହିବେ ବୋଲି କହୁଥା'ନ୍ତି । ଦରବାର ଶେଷ ହେବା ବେଳକୁ ପ୍ରସନ୍ନ ସେହି ବ୍ୟକ୍ତି ଜଣଙ୍କୁ କହିଲେ- ଏବେ କୁହ ତୁମର କାମ କ'ଣ ? ଦରଖାସ୍ତ ଯଦି ଅଛି ଦିଅ ସଙ୍ଗେସଙ୍ଗେ ସୁପାରିଶ କରିଦେବା । ନଚେତ ଯଦି କୌଣସି ଅଫିସରଙ୍କ ପାଖରେ କାମ ଅଛି ତେବେ ସେ ଅଫିସରଙ୍କ ନାମ କୁହ ସଙ୍ଗେସଙ୍ଗେ ଟେଲିଫୋନ୍‌ରେ କହିଦେବା । ବ୍ୟକ୍ତି ଜଣଙ୍କ କହିଲେ- ସେଭଳି କାମ ତାଙ୍କର ନାହିଁ । ପ୍ରସନ୍ନ କହିଲେ- ତା' ହେଲେ ଦରବାରକୁ ଆସିବାର କିଛି ଆବଶ୍ୟକତା ନଥିଲା । ବ୍ୟକ୍ତି ଜଣଙ୍କ କହିଲେ- ସେଇଥିପାଇଁ ତ ସେ ଦରବାର ପରେ କଥା ହେବାକୁ ଚାହୁଁଛନ୍ତି । ପ୍ରସନ୍ନ କହିଲେ- ତେବେ କୁହ । ବ୍ୟକ୍ତି ଜଣଙ୍କ କହିଲେ- ସେ ତିରୁପତି ଯିବେ । ପ୍ରସନ୍ନ କହିଲେ- କ'ଣ କେହି ତୁମର ବନ୍ଧୁବାନ୍ଧବ ସେଠାରେ ଅଛନ୍ତି ନା କାହାର ଦେହ ସାଂଘାତିକ ହୋଇଯାଇଛି । ବ୍ୟକ୍ତି ଜଣଙ୍କ କହିଲେ- ସେମିତି କିଛି ନୁହେଁ । ପ୍ରସନ୍ନ ବିରକ୍ତ ହୋଇ କହିଲେ- କିଛି ତ ନୁହେଁ, ଆସିଛ କାହିଁକି ? ବ୍ୟକ୍ତି ଜଣଙ୍କ କହିଲେ- ଆପଣ ଧୈର୍ଯ୍ୟ ଧରନ୍ତୁ । ଏହା ସମସ୍ତଙ୍କ ଆଗରେ କୁହାଯାଇପାରିବ ନାହିଁ । ଯେଉଁଥିପାଇଁ ସେ ଅପେକ୍ଷା କରିଛନ୍ତି ସମସ୍ତେ ଯେତେବେଳେ ଦରବାରରୁ ଚାଲିଯିବେ । ପ୍ରସନ୍ନ କହିଲେ- ଏବେ ତ ଆଉ କେହି ନାହାନ୍ତି, କୁହ । ବ୍ୟକ୍ତି ଜଣଙ୍କ କହିଲେ- ତିରୁପତି ଯିବେ ବାଳ ପକାଇବା ପାଇଁ । ଅର୍ଥାତ୍ ଲଣ୍ଡା ହେବେ । ତିରୁପତି ଯିବା ପାଇଁ ତାଙ୍କ ପାଖରେ ଟଙ୍କା ନାହିଁ । ତେଣୁ ଯିବାଆସିବା, ରହିବା ଖର୍ଚ୍ଚର ବନ୍ଦୋବସ୍ତ କରି ଦିଅନ୍ତୁ । ପ୍ରସନ୍ନ କହିଲେ- ବଡ଼ ଆଶ୍ଚର୍ଯ୍ୟ କଥା ତୁମର । ତିରୁପତି ତମେ ଯିବ, ଧର୍ମ ତମେ କରିବ ଆଉ ଟଙ୍କା ଦେବି

ମୁଁ । କାହାକୁ ମୁଁ ଟଙ୍କା ଦିଏନାହିଁ । ମୁଁ କ'ଣ ରିଜର୍ଭ ବ୍ୟାଙ୍କ କି । ଯେତେବେଳେ ଯିଏ ଆସିବ ଟଙ୍କା ମାଗିଦେଲେ ଛପା ହୋଇଯିବ ଆଉ ନେଇଯିବେ । ଆଚ୍ଛା ଠିକ୍ ଅଛି, ଦରବାରକୁ ତୁମେ ଆସିଛ । ତୁମ ମନୋସ୍କାମନା ମୋତେ ପୂରଣ କରିବାକୁ ପଡ଼ିବ । ସଙ୍ଗେସଙ୍ଗେ କହିଲେ- ଆରେ କିଏ ଅଛରେ । ଦୁଇ ଟଙ୍କା ନିଅ, ଭଣ୍ଡାରୀଟିଏ ଡାକିଦିଅ । ତା'ପରେ ସେ ବ୍ୟକ୍ତିଜଣଙ୍କୁ ଚାହିଁ କହିଲେ- ତମେ ପ୍ରସ୍ତୁତ ହୋଇ ରହ । ଭଣ୍ଡାରୀ ଆସିବ ତମକୁ ଲଣ୍ଡା କରିଦେବ ଆଉ ଆମର ଲୋକ ଅଛନ୍ତି ତମର ବାଳକୁ ତିରୁପତିଙ୍କ ପାଖକୁ ଡାକରେ ପଠାଇ ଦେବେ । ମାତ୍ର ପାଂଚଟି ଟଙ୍କାରେ ତମର ମନୋସ୍କାମନା ପୂରଣ ହୋଇଯିବ । ଠିକ୍ ଅଛି । ଏହି ପାଂଚଟି ଟଙ୍କା ମୁଁ ମୋ ସାଂସଦ ଦରମାରୁ ଦେଇଦେବି । ବ୍ୟକ୍ତିଜଣଙ୍କ କହିଲେ- ଏ କି ଅଜବ କଥା । ମୁଁ ତିରୁପତି ଯିବାକୁ କହୁଛି । ଆପଣ ମୋତେ ଏଠାରେ ଲଣ୍ଡା ହେବାକୁ କହୁଛନ୍ତି । ପ୍ରସନ୍ନ କହିଲେ- ତମେ ତିରୁପତି କିମ୍ବା ଆମେରିକା ଯାଅ, ସେଥିରେ ମୋର କିଛି ଯାଏଆସେ ନାହିଁ । କିନ୍ତୁ ତୁମର ଉଦ୍ଦେଶ୍ୟ ହେଲା ଲଣ୍ଡା ହେବ । ଆଉ ତୁମ ମୁଣ୍ଡବାଳ ତିରୁପତିଙ୍କୁ ଦିଆଯିବ । ତୁମ ଉଦ୍ଦେଶ୍ୟ ଯାହା ମୋ ଉଦ୍ଦେଶ୍ୟ ମଧ ତାହା । ତୁମ ମୁଣ୍ଡବାଳ ଯାଇ ପହଂଚିବ ତିରୁପତିରେ । ଏତିକିରେ ବ୍ୟକ୍ତି ଜଣଙ୍କ କହିଲେ- ଆଜ୍ଞା ଭଣ୍ଡାରୀ ଡାକିବା ଦରକାର ନାହିଁ । ମୁଁ ମୋ କାମ କରିବି । ପ୍ରସନ୍ନ ଖୁବ୍ ଜୋରରେ ହସିଲେ ଆଉ କହିଲେ- ଦରବାରକୁ ଏମିତି ଅନେକ ଲୋକ ଆସନ୍ତି । ବୁଦ୍ଧି ଥିଲେ ହିଁ ସମସ୍ତଙ୍କୁ ଖୁସି କରିହେବ । କେହି କହିବେ ନାହିଁ ଯେ, ସେମାନଙ୍କର ପ୍ରସ୍ତାବକୁ ପ୍ରସନ୍ନ ପାଟ୍ଟଶାଣୀ ମନା କରିଦେଲେ ବୋଲି । ମାନିବାକୁ ପଡ଼ିବ ପ୍ରସନ୍ନଙ୍କୁ । ନହେଲେ ୧୯୮୦ରୁ ଏଯାବତ୍ ସେ ଅପରାଜେୟ ନେତା ହୋଇ ରହି ନଥା'ନ୍ତେ । ■

## ସଙ୍ଗାତ ଓ ଭୁପିନ୍ଦର



ଭୁପିନ୍ଦର ସିଂ ହେଉଛନ୍ତି ଓଡ଼ିଶା ବିଧାନସଭାରେ ବିରୋଧୀ ଦଳ ନେତା । ଏଥର ପଶ୍ଚିମ ଓଡ଼ିଶାରେ କଂଗ୍ରେସର ବାଜିମାତ୍ ହୋଇଥିବାବେଳେ କଳାହାଣ୍ଡି ଜିଲାରୁ ନିର୍ବାଚିତ ହୋଇଥିବା ଭୁପିନ୍ଦରଙ୍କୁ ମିଳିଲା ବିରୋଧୀ ଦଳ ନେତା ପଦବୀ । ଭୁପିନ୍ଦର ଦିଲ୍ଲୀ ଗସ୍ତରେ ଯାଇଥିଲେ । କୌଣସି ଜରୁରୀ କାର୍ଯ୍ୟ ପଡ଼ିବାରୁ ସେ ତୁରନ୍ତ ଭୁବନେଶ୍ୱର ଚାଲିଆସିଲେ । କିନ୍ତୁ ଭୁବନେଶ୍ୱର ଆସି ସେ ମନସ୍ତାପ କଲେ । ବିଭିନ୍ନ ଲୋକଙ୍କୁ ସେ କହିଲେ- ବର୍ତ୍ତମାନ ସମୟରେ ସେ ଦିଲ୍ଲୀରୁ ଭୁବନେଶ୍ୱର ଆସିବାର ନଥିଲା । ହରିୟାନା ମୁଖ୍ୟମନ୍ତ୍ରୀ ଭୁପିନ୍ଦର ସିଂ ହୁଡା ହେଉଛନ୍ତି ତାଙ୍କ ସଙ୍ଗାତ । ଉଭୟଙ୍କର ନାମ ଭୁପିନ୍ଦର ସିଂ । ଉଭୟେ କଂଗ୍ରେସ ନେତା । ନାମ ଓ ଦଳ ଦୃଷ୍ଟିରୁ ଉଭୟେ ସଙ୍ଗାତ ହୋଇଛନ୍ତି । ଓଡ଼ିଶାରେ ଯଦିଓ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ବିଜେଡି ସରକାର ଚାଲିଛି ତେବେ ବିରୋଧୀ ଦଳ ନେତା ଭୁପିନ୍ଦର ସିଂ ହୋଇଥିବାରୁ କଂଗ୍ରେସ ପାଇଁ ଏବେ ଓଡ଼ିଶାର ସେ ହେଉଛନ୍ତି ମୁଖ୍ୟମନ୍ତ୍ରୀ ।

ଏହି ଦୃଷ୍ଟିରୁ ଦୁଇ ସଙ୍ଗାତଙ୍କ ମଧ୍ୟରେ କିଛି ମଧୁର ଆଳାପ ହେବାର ଥିଲା । କିନ୍ତୁ ଅତି ଆକସ୍ମିକ ଭାବେ ସେ ଦିଲ୍ଲୀରୁ ଭୁବନେଶ୍ୱର ଚାଲିଆସିଲେ । ଭୁବନେଶ୍ୱରକୁ ଆସି ଦେଖିଲା ବେଳକୁ ଯେଉଁ କାର୍ଯ୍ୟକ୍ରମରେ ସେ ଯୋଗ ଦେବାର ଥିଲା ସେଥିରେ ଯୋଗ ଦେଇପାରିଲେ ନାହିଁ । ଏହା ଫଳରେ ତାଙ୍କର ମନସ୍ତାପ ହେଲା । ବରଂ ଦିଲ୍ଲୀରେ ରହି ସେଠାରୁ ଚଣ୍ଡିଗଡ଼ ଯାଇ ସଙ୍ଗାତ ମୁଖ୍ୟମନ୍ତ୍ରୀଙ୍କ ସହିତ ଦୁଇପଦ ଆଳାପ ଆଲୋଚନା ହୋଇଥିଲେ ତାଙ୍କର କ୍ଷମତା ବଢ଼ିଥା'ନ୍ତା । ଯାହା ହେଲେ ମଧ୍ୟ କଂଗ୍ରେସ ନେତା ଓ କର୍ମୀମାନେ ଜାଣିପାରିଥା'ନ୍ତେ ଯେ, ହରିୟାନା ମୁଖ୍ୟମନ୍ତ୍ରୀ ଭୁପିନ୍ଦର ସିଂ ହୋଡାଙ୍କ ସହିତ ଓଡ଼ିଶା ବିଧାନସଭା ବିରୋଧୀ ଦଳ ନେତା ଭୁପିନ୍ଦର ସିଂଙ୍କର ନିବିଡ଼ ସମ୍ପର୍କ ରହିଛି । ଉଭୟ ସଙ୍ଗାତ ହୋଇଥିବାରୁ ହରିୟାନା ମୁଖ୍ୟମନ୍ତ୍ରୀଙ୍କ ପାଖରେ ଯାହା କାମ ପଡ଼ିବ ତାହା ସେ କରିଦେବେ ବୋଲି ଭୁପିନ୍ଦର ଆଶାୟୀ ହେବା ସ୍ୱାଭାବିକ । ଏବେ ଭୁପିନ୍ଦର ଯୁଆଡ଼େ ଯାଉଛନ୍ତି ସବୁଆଡ଼େ ଗୋଟିଏ କଥା ଗାଇ ବୁଲୁଛନ୍ତି । ତାହା ହେଲା- ହରିୟାନା ମୁଖ୍ୟମନ୍ତ୍ରୀ ଭୁପିନ୍ଦର ସିଂ ହୁଡା ତାଙ୍କର ସଙ୍ଗାତ । ତା'ମାନେ ସେ ମଧ୍ୟ ହରିୟାନାର ଅଧା ମୁଖ୍ୟମନ୍ତ୍ରୀ । ଅବଶ୍ୟ ସଙ୍ଗାତ ହୋଇଗଲେ ଯେ, ତାଙ୍କର ସବୁ କ୍ଷେତ୍ରରେ ଅଧାଭାଗ ହୋଇଯିବ ତାହା ନୁହେଁ । ଏହା କିନ୍ତୁ ଭଲ ରୂପେ ଜାଣିଛନ୍ତି ଭୁପିନ୍ଦର ସିଂ । ରାଜନୀତିରେ ଅଳ୍ପ ସମ୍ପର୍କ ଥିଲେ ତାକୁ ଯଦି ବଢ଼େଇ ନ କୁହାଯାଏ ତେବେ ନେତା ଆଉ କର୍ମୀମାନେ ରାଜନୀତିର ଫେଡ଼ାଣ ହିସାବରେ ତାହାକୁ ବହୁ ତଳକୁ ନେଇଯିବେ । ଯେଉଁଥିପାଇଁ ସଙ୍ଗାତ ହରିୟାନାର ମୁଖ୍ୟମନ୍ତ୍ରୀ ବୋଲି କହି ଭୁପିନ୍ଦର ସିଂ ବାହାବା ନେଉଛନ୍ତି । ଏବେ ଦେଖାଯାଉ ଭୁପିନ୍ଦରଙ୍କ ସଂଗାତ ହରିୟାନା ମୁଖ୍ୟମନ୍ତ୍ରୀ ତାଙ୍କୁ ସଂଗାତ ପରି ସାହାଯ୍ୟ କରୁଛନ୍ତି ନା ନାହିଁ । ■

## ଅନଙ୍ଗଙ୍କ ସାଂଧ୍ୟ ଭ୍ରମଣ



ନିବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବା ଦିନଠାରୁ ଯଦି ଜଣେ କେହି ତାଙ୍କ ମନ୍ତ୍ରିମଣ୍ଡଳରେ ମୂଳରୁ ଏଯାବତ୍ ମନ୍ତ୍ରୀ ପଦ ବଜାୟ ରଖିଥା'ନ୍ତି ତେବେ ସେ ହେଲେ ପାଟନା ମହାରାଜା ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଗେଲବସର ପୁଅ ଅନଙ୍ଗ ଉଦୟ ସିଂହଦେଓ । ଏମିତି ରାଜଧାନୀ ଭୁବନେଶ୍ୱରର ରାଜଭବନ ସମ୍ମୁଖରେ ଥିବା ରାଜେନ୍ଦ୍ରଙ୍କ ଉଆସକୁ ନିଜ ଅକ୍ତିଆରରେ ରଖିଛନ୍ତି ଅନଙ୍ଗ । ରାଜେନ୍ଦ୍ର ଯେତେବେଳେ ତାଙ୍କ ଭୁବନେଶ୍ୱର ଉଆସରେ ରହୁଥିଲେ ସେତେବେଳେ ସେହି ଅଂଚଳରେ ଜାଁ ଭାଁ ଘର ଥିଲା । ମାନେ ରାଜେନ୍ଦ୍ରଙ୍କ ପାଇଁ ସେହି ଅଂଚଳଟି ଥିଲା ଖାଁ ଖାଁ । ଏବେ କିନ୍ତୁ ଏହି ଅଂଚଳଟି ବେଶ୍ ଚଳଚଂଚଳ ହୋଇଗଲାଣି । ରାଜେନ୍ଦ୍ର ପୁତ୍ର ଅନଙ୍ଗ ଏମିତି ସାଂଧ୍ୟ ଭ୍ରମଣରେ ଜାଁ ଭାଁ ଯାଇଥା'ନ୍ତି । ସାଧାରଣତଃ ରଜାମାନେ ରାତ୍ରିଚର ବେଳେବେଳେ ହୋଇଥା'ନ୍ତି । ଏହା ହେଲେ ଯାଇ ରଜାଙ୍କ ଶାସନ କେମିତି ଚାଲିଛି ତାହା ଛଦ୍ମବେଶରେ

ପ୍ରଜାଙ୍କ ଠାରୁ ରଜା ଜାଣିପାରନ୍ତି । କିନ୍ତୁ ଏଠାରେ ରାଜପୁତ୍ର ଅନଙ୍ଗ ତାଙ୍କ ମନ୍ତ୍ରୀ ଶାସନ କିପରି ଚାଲିଛି ତାହା ଜାଣିବା ପାଇଁ ସାଂଧ୍ୟ ଭ୍ରମଣ କରୁନାହାନ୍ତି । ତାଙ୍କର ଏହି ଭ୍ରମଣ ଗୋଟିଏ ଗୁଳିରେ ଦୁଇଟି ଶିକାର ପରି । ମାନେ ସ୍ୱାସ୍ଥ୍ୟ ପାଇଁ ହିତକାରକ ଆଉ ସେହି ଅଂଚଳରେ ପାଟନା ମହାରାଜା ରାଜେନ୍ଦ୍ରଙ୍କ ଉଆସକୁ କେହି ଟପି ଗଲେଣି ନା ନାହିଁ । ଏମିତି ଦେଖିଲେ ରାଜ୍ୟସଭା ସଭ୍ୟ ବୈଜୟନ୍ତ ପଣ୍ଡା ସେହି ଅଂଚଳରେ ରାଜବାଟୀଠାରୁ ଆହୁରି ବଡ଼ ପ୍ରସାଦ ନିର୍ମାଣ କରିଛନ୍ତି । ତାହା ପୁଣି ବିଦେଶୀ ଷ୍ଟାଇଲରେ । ଅଣ୍ଡରଗ୍ରାଉଣ୍ଡରେ ଅଫିସ ଆଉ ଛାତ ଉପରେ ପହଁରିବା ପାଇଁ ପୋଖରୀ । ଏମିତି ବୈଜୟନ୍ତଙ୍କ ଉଆସକୁ ଦେଖି ରାଜେନ୍ଦ୍ରଙ୍କର ଆଖି ଯେତିକି ଟେରା ହୋଇନାହିଁ ତା'ଠାରୁ ଅଧିକ ଟେରା ହୋଇଯାଇଛି ଯେତେବେଳେ ତାଙ୍କର ସବୁଠାରୁ ବଡ଼ ବଇରି ହୋଇଯାଇଥିବା ତାଙ୍କ ପୁତୁରା ତଥା ଏବେର ବଲାଙ୍ଗୀର ରଜା କନକ ବର୍ଦ୍ଧନ ସିଂହଦେଓଙ୍କ ଉଆସ । ଏକଦା ବଲାଙ୍ଗୀର ରାଜ ପରିବାରର ଯେ ମାଳି ଥିଲେ ତାଙ୍କ ପୁତ୍ର ବିଘ୍ନରାଜ ପଟେଲ ଆଇ.ଏ.ଏସ୍ ଅଫିସର ହେବାପରେ ତାଙ୍କୁ ମିଳିଥିବା ରାଜଭବନ ସମ୍ମୁଖ ରାସ୍ତାପାଖରେ ଏକ ଜମି । ଏହି ଜମିର କିଛି ଅଂଶକୁ କିଣିନେଇ ନିର୍ମାଣ କରିଛନ୍ତି କନକ ବହୁତଳ ଅଟ୍ଟାଳିକା । ଏହା ରାଜବାଟୀକୁ ମଧ୍ୟ ଟପିଯିବ । ଏହି ଅଟ୍ଟାଳିକା ନିର୍ମାଣରେ କେତେ କୋଟିଟଙ୍କା ବ୍ୟୟ ହୋଇଛି ତାହାର ମଧ୍ୟ କଳନା କରାଯାଇପାରିବ ନାହିଁ । ଏସବୁ ଅଟ୍ଟାଳିକା ଦେଖି ନିଶ୍ଚିତ ଭାବେ ଅନଙ୍ଗଙ୍କ ମନ ଦୁଃଖ ହେଉଥିବ । ଗୋଟିଏ ସମୟରେ ସେହି ଅଂଚଳରେ ବଲାଙ୍ଗୀର ମହାରାଜା ରାଜେନ୍ଦ୍ର ନାରାୟଣଙ୍କର ଘରଟି ଥିଲା ସବୁଠାରୁ ନାମୀଦାମୀ । ତେଣୁ ଅନଙ୍ଗଙ୍କୁ ଟପିଯାଇ ଅନ୍ୟମାନେ ନିର୍ମାଣ କରିଥିବା ନାମୀଦାମୀ ବହୁତଳ ପ୍ରାସାଦକୁ ଦେଖିଲେ ଅନଙ୍ଗଙ୍କ ମନ ଦୁଃଖ ହେଉଥିବ ନିଶ୍ଚିତ । ଯଦିଓ ଅନଙ୍ଗ ସୁସ୍ଥ ରହିବା ପାଇଁ ଏଭଳି ସାଂଧ୍ୟ ଭ୍ରମଣ କରୁଛନ୍ତି ତେବେ ସାଂଧ୍ୟ ଭ୍ରମଣ ସମୟରେ କଳାଚଷମା ପିନ୍ଧିଗଲେ ଆଉ ତାଙ୍କୁ ଏଭଳି କୋଠା ଦେଖାଯିବ ନାହିଁ କି ତାଙ୍କ ମନ ଦୁଃଖ ହୋଇ ସ୍ୱାସ୍ଥ୍ୟପ୍ରତି ତାହା କ୍ଷତିକାରକ ହେବନାହିଁ । ■

## ପାଟ୍ଟଶାଣୀଙ୍କ ପ୍ରେସ୍କ୍ରିପ୍ସନ



ପ୍ରସନ୍ନ ପାଟ୍ଟଶାଣୀଙ୍କ ଭାଷଣ ଯେମିତି ଦସ୍ତଖତ ମଧ୍ୟ ସେହିପରି । ସେ ତୁରନ୍ତ ସବୁ କାମ କରିବାକୁ ଚାହାନ୍ତି । ଯିଏ ଦରବାରକୁ ଆସିଲେ ଏବଂ ଯାହା ନେଇକରିଆଣି ତାହାକୁ ଦସ୍ତଖତ କରିଦେବାକୁ ବଢ଼ାଇ ଦିଅନ୍ତି ସେଥିରେ ସେ ତୁରନ୍ତ ଦସ୍ତଖତ ଦେଇଦିଅନ୍ତି । ମୁଣ୍ଡି ଯାହା ଧାଖିଆଗରେ ପଡ଼ିଲା ତାହାକୁ କବିତା ହେଉ କି ଗଦ୍ୟ ଆକାରରେ ମଧ୍ୟ ସଭାରେ ସେ ଭାଷଣ ବି ଦିଅନ୍ତି । ଏମିତି ସେ ଦିନ କେହି ଜଣେ ବ୍ୟକ୍ତି ପ୍ରସନ୍ନଙ୍କ ଠାରୁ ସୁପାରିଶ ନେବା ପାଇଁ ଆସିଥିଲେ । କେନ୍ଦ୍ର ସରକାରଙ୍କ ଏକ ସଂସ୍ଥାରେ ସେ ବ୍ୟକ୍ତି ଜଣଙ୍କ ଚାକିରି

କରୁଥିଲେ । ଯେଉଁ ଦରଖାସ୍ତଟି ସେ ଆଣିଥିଲେ ସେଥିରେ ସେ ଉଲ୍ଲେଖ କରିଥିଲେ ଯେ, ଅସୁସ୍ଥ ଥିବା ଦୃଷ୍ଟିରୁ ତାଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନକୁ ବଦଳି କରାଯାଉ । ଯେହେତୁ ଏହା କେନ୍ଦ୍ର ସରକାରଙ୍କ ସଂସ୍ଥା ତେଣୁ ସାଂସଦ ଭାବେ ପ୍ରସନ୍ନ ପାଟଶାଣୀଙ୍କ ସୁପାରିଶ ଲାଭ କଲେ ତାହା କାର୍ଯ୍ୟକାରୀ ହେବା ସହଜ ହେବ । ପ୍ରସନ୍ନ ଦରଖାସ୍ତକୁ ନପଢ଼ି ପଚାରିଲେ- କ'ଣ ଲେଖା ହେବ । ଦରଖାସ୍ତ ନେଇଥିବା ବ୍ୟକ୍ତି ଜଣଙ୍କ କହିଲେ- ଆଜ୍ଞା, ଲେଖି ଦିଅନ୍ତୁ - ତୁରନ୍ତ ତାଙ୍କୁ ଦରଖାସ୍ତରେ ଉଲ୍ଲେଖ ଥିବା ସ୍ଥାନକୁ ବଦଳି କରାଯାଉ । ପ୍ରସନ୍ନ ହାତକାଟି ତାହା ଲେଖିଦେଲେ ଆଉ ଦସ୍ତଖତ କଲେ ତଳେ ସାଂସଦ ଷ୍ଟାମ୍ପ ମଧ ମାରିଲେ । ଏହାପରେ ମନ ଖୁସିରେ ସେହି ବ୍ୟକ୍ତି ଜଣଙ୍କ ଦରଖାସ୍ତଟିକୁ ନେଇ ଚାଲିଗଲେ । କିଛି ସମୟ ପରେ ଦେଖାଗଲା ଅଭିମନ୍ୟୁ ନାମକ ଜଣେ ବ୍ୟକ୍ତି ପ୍ରସନ୍ନଙ୍କ ପାଖକୁ ଗଲେ । ତାଙ୍କ ହାତରେ ଦରଖାସ୍ତ ଖଣ୍ଡେ ଥିଲା । ଦରଖାସ୍ତକୁ ଦେଖି ପ୍ରସନ୍ନ କହିଲେ- ଦିଅ ଦରଖାସ୍ତ, ତୁରନ୍ତ ଦସ୍ତଖତ କରିଦେବା । ଦରବାର ଶେଷ ହୋଇଗଲାଣି । ଆଉ ଟିକିଏ ବିଳମ୍ବରେ ଆସିଥିଲେ ଏ କାମ ହୋଇପାରି ନଥା'ନ୍ତା । ପ୍ରସନ୍ନଙ୍କ ମୁହଁକୁ ଚାହିଁ ଅଭିମନ୍ୟୁ ହସୁଥିଲେ । ପ୍ରସନ୍ନ କହିଲେ- ମୁଁ କ'ଣ ସୁନ୍ଦରୀ ମହିଳା ହୋଇଛି ଯେ, ମୋ ମୁହଁକୁ ଚାହିଁ ତୁମେ ହସୁଛ । ମୋ ମୁଣ୍ଡରେ ବାଳ ଅଧିକ ଥିବାରୁ ଦୂରରୁ ମୋତେ ପଛରୁ ଦେଖିଦେଲେ ମହିଳା ବୋଲି କେହିକେହି ଭାବିପାରନ୍ତି । କିନ୍ତୁ ତମେ ତ ମୋର ସାମ୍ନାରେ ଅଛ । ମୁହଁରେ ଲମ୍ବା ପାଚିଲା ଦାଢ଼ି । ସେଥିରୁ ଜାଣିପାରୁନ କି ମୁଁ ପୁରୁଷ ବୋଲି । ଏହା କହି ଅଭିମନ୍ୟୁଙ୍କ ହାତରୁ ସେ ଦରଖାସ୍ତଟି ଟାଣି ନେଇଗଲେ ଆଉ କହିଲେ ଦିଅ କଲମ, କୁହ କେଉଁଠି ଦସ୍ତଖତ କରିବା । ଅଭିମନ୍ୟୁ କହିଲେ- ଆଜ୍ଞା ଏ କାଗଜଟିକୁ ସେ କଷ୍ଟନା ଛକରେ ପାଇଲେ । ଏଥିରେ ପ୍ରସନ୍ନ ପାଟଶାଣୀଙ୍କ ଦସ୍ତଖତ ଥିବାରୁ କାଗଜଟିକୁ ତାଙ୍କୁ ଦେବାକୁ ଆସିଛନ୍ତି । ସଙ୍ଗେସଙ୍ଗେ ପ୍ରସନ୍ନ ତାଙ୍କର କଥାବାର୍ତା ଢଙ୍ଗ ବଦଳାଇ ଦେଲେ । କହିଲେ- ସେଇଥିପାଇଁ ତୁମେ ମୋ ମୁହଁକୁ ଚାହିଁ ହସୁଛ । ସେତିକିବେଳୁ ମୁଁ ଜାଣିପାରୁଛି କିଛି ଗୋଟାଏ କାଣ୍ଡ ଘଟିଥିବ । ଭଗବାନ ମୋତେ ଏ ଜାଣିବା ଶକ୍ତି ଦେଇଛନ୍ତି । ମୋର୍ ଦସ୍ତଖତ ଥିବା କୌଣସି କାଗଜପତ୍ର ହଜେନାହିଁ । ଯଦି କିଏ କେଉଁଠି ପକାଇଦିଏ ତାହା ପୁଣି ମୋ ପାଖକୁ ଫେରିଆସେ । କିଛିଦିନ ପରେ ଦରଖାସ୍ତ ହଜାଇଥିବା ବ୍ୟକ୍ତିଟି ମୋ ପାଖକୁ ଆସି ପୁଣି ସେହି ଦରଖାସ୍ତଟି ନେଇଯାଏ । ଏହାର ଜ୍ୱଳନ୍ତ ପ୍ରମାଣ ହେଉଛି ଏହି ଘଟଣା । ନହେଲେ କଷ୍ଟନା ଛକରେ ମୋ ଦସ୍ତଖତ ଥିବା କାଗଜଟି ପଡ଼ିଯାଇଥିବା ବେଳେ ତା' ଉପରେ ଗାଡ଼ିମୋଟର ଚଢ଼ିଯାଇଥା'ନ୍ତା କିମ୍ବା ରାଜଧାନୀ ଗାଈଗୋରୁ ତାକୁ ଖାଇ ଯାଇଥା'ନ୍ତେ । କିନ୍ତୁ ତାହା ନହୋଇ ତମ ହାତରେ କାଗଜଟି ମୋ ପାଖକୁ ଫେରି ଆସିଲା । ଏହାଠାରୁ ଭଲ ପ୍ରମାଣ କିଛି ମିଳିବ କି ବୋଲି କହି ଅଭିମନ୍ୟୁଙ୍କ କାନ୍ଧରେ ହାତ ପକାଇଲେ ପ୍ରସନ୍ନ । ହସିହସି ଅଭିମନ୍ୟୁ କହିଲେ- ଆଜ୍ଞା ଠିକ୍ କଥା । ■

# ଭାଗ୍ୟବାନ ବିଭୂତି





ହେଲେ ବିଭୂତି ବଳବନ୍ତରାୟ । ଏମିତି କେବେବି ସ୍ୱପ୍ନ ବି ଦେଖି ନଥିଲେ ରାଜନୀତି କରିବେ ବୋଲି । ପୁଣି ଯେତେବେଳେ ରାଜନୀତିକୁ ଆସିଲେ ସେତେବେଳେ ମଧ୍ୟ ସ୍ୱପ୍ନ ବି ଦେଖି ନଥିଲେ ଜିଲା ପରିଷଦ ସଭ୍ୟ ହେବେ ବୋଲି । ପୁଣି ଯେତେବେଳେ ଜିଲା ପରିଷଦ ସଭ୍ୟ ହେଲେ ସେତେବେଳେ ମଧ୍ୟ ସ୍ୱପ୍ନ ବି ଦେଖି ନଥିଲେ ଜିଲା ପରିଷଦ ସଭାପତି ହେବେ ବୋଲି । ପୁଣି ଯେତେବେଳେ ଜିଲା ପରିଷଦ ସଭାପତି ହେଲେ ସେତେବେଳେ ମଧ୍ୟ ସ୍ୱପ୍ନ ଦେଖି ନଥିଲେ ବିଧାୟକ ହେବେ ବୋଲି । ଏସବୁ ଭାଗ୍ୟରେ ଥିଲେ ହୁଏ । ବିଭୂତି ବଳବନ୍ତରାୟ ହେଉଛନ୍ତି ସେହି ଭାଗ୍ୟବାନ ନେତା । ଜଟଣୀ ନିର୍ବାଚନମଣ୍ଡଳୀରୁ ଜିଲା ପରିଷଦ ସଭ୍ୟ ଭାବେ ନିର୍ବାଚିତ ହୋଇ ଖୋର୍ଦ୍ଧା ଜିଲା ପରିଷଦ ସଭାପତି ହୋଇଥିବା ବିଭୂତି ବଳବନ୍ତରାୟ ୨୦୦୯ ନିର୍ବାଚନରେ ଜଟଣୀରୁ ବିଜେଡି ଟିକେଟରେ ପ୍ରତିଦ୍ୱନ୍ଦିତା କରି ଏବେ ବିଧାୟକ । ତାଙ୍କର ଆମାୟିକ ବ୍ୟବହାର ଯୋଗୁ ସେ ତଳସ୍ତରର ରାଜନୀତିରୁ ଖୁବ୍ କମ୍ ଦିନ ମଧ୍ୟରେ ଉପରକୁ ଉଠି ପାରିଛନ୍ତି । ରାଜନୀତିରେ କେମିତି କିପରି କାହା ସହିତ ସାଲିସ କରାଯିବ ଆଉ କାହାର ଅନୁଗତ ହୋଇରହିବ ତାହା ଭଲ ଭାବରେ ଜାଣନ୍ତି ବିଭୂତି ବଳବନ୍ତରାୟ । ଗୋଟିଏ ସମୟରେ ବିଭୂତିଙ୍କୁ ପ୍ରବଳ ବିରୋଧ କରୁଥିଲେ ତତ୍କାଳୀନ ଖୋର୍ଦ୍ଧା ବିଜେଡି ବିଧାୟକ ଜ୍ୟୋତିରିନ୍ଦ୍ର ନାଥ ମିତ୍ର , ଜଟଣୀର ତତ୍କାଳୀନ ବିଜେଡି ବିଧାୟକ ଶରତ ପାଇକରାୟ । ଏହାସତ୍ୱେ ବିଭୂତି ଲବି ଚଳାଇଥିଲେ ଜଟଣୀରୁ ବିଜେଡି ଟିକେଟ ପାଇବା ନିମନ୍ତେ । ପ୍ରଥମେ ଏହା ଅସମ୍ଭବ ମନେ ହେଉଥିଲା । ଯେଉଁଠି ଜିଲା ବିଜେଡିର ତୁଙ୍ଗ ନେତାମାନେ ତାଙ୍କୁ ବିରୋଧ କରୁଛନ୍ତି ସେଠାରେ ସେ କିପରି ବିଜେଡି ଟିକେଟରେ ଜଟଣୀରୁ ପ୍ରତିଦ୍ୱନ୍ଦିତା କରିବେ ତାହା ମଧ୍ୟ ପ୍ରଶ୍ନବାଚୀ ହୋଇଯାଇଥିଲା । ଏସବୁ ସତ୍ୱେ ବିଭୂତିଙ୍କ ଆନୁଗତ୍ୟ ହିଁ ତାଙ୍କୁ ବିଜେଡି ଟିକେଟ ପାଇବାରେ ସହଜ ହୋଇଥିଲା । କେହିବି ଜାଣିପାରୁ ନଥିଲେ କିପରି ତାଙ୍କୁ ବିରୋଧ କରୁଥିବା ଶରତ ପାଇକରାୟ, ଜ୍ୟୋତିରିନ୍ଦ୍ର ନାଥ ମିତ୍ରଙ୍କୁ ଏଡ଼ାଇ ଦେଇ ସେ ବିଜେଡି ଟିକେଟ ପାଇଲେ । କଟକ ଜିଲ୍ଲାର ଅସୁରେଶ୍ୱରଠାରେ ଥିବା ଗୋମଙ୍ଗଳ ସମିତିର ଉତ୍ସବ ହେଉଥାଏ । ଏମିତି ଏଥିରେ କେନ୍ଦ୍ରାପଡ଼ା ଅଂଚଳର ଗାନ୍ଧୀ ବୋଲି କୁହାଯାଉଥିବା ସମାଜସେବୀ ତଥା ପୂର୍ବତନ ବିଧାୟକ ରାଜକିଶୋର ନାୟକଙ୍କର ଅଧିକ ସଂପୃକ୍ତି ରହିଆସିଛି । ରାଜନୀତିରୁ ରାଜକିଶୋର ପ୍ରାୟ ଅବସର ନେଇସାରିଲେଣି । କିନ୍ତୁ ଗୋସେବା କାମ ଚଳାଇ ରଖିଛନ୍ତି । ଅସୁରେଶ୍ୱର ଗୋମଙ୍ଗଳ ସେବା ସମିତିକୁ ଚାଲିଗଲେ ସେଠାରେ ରାଜକିଶୋରଙ୍କର ଅବଦାନ ବେଶ୍ ବାରି ହୋଇଯିବ । ରାଜକିଶୋରଙ୍କ ପୁତ୍ର ଅତନୁ ସବ୍ୟସାଚୀ ନାୟକ ହେଉଛନ୍ତି ଶକ୍ତିମନ୍ତ୍ରୀ । ଏହି ଦୃଷ୍ଟିରୁ ଅତନୁ ମଧ୍ୟ ଏହି ଉତ୍ସବରେ ଉପସ୍ଥିତ ରହିଥିଲେ । ତେବେ ଉତ୍ସବର ମୁଖ୍ୟ ଅତିଥି ଥିଲେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ଏମିତି ପ୍ୟାରୀମୋହନଙ୍କୁ ସାରା ରାଜ୍ୟବାସୀ

ଜାଣନ୍ତି । ତାଙ୍କରି ଗୋଟିଚାଳନାରେ ନବୀନ ପଟ୍ଟନାୟକ ତିନିଥର ମୁଖ୍ୟମନ୍ତ୍ରୀ ଆଉ ବିଜେଡି ରାଜ୍ୟରେ ଏକନମ୍ବର ରାଜନୈତିକ ଦଳ । ତେଣୁ ପ୍ୟାରୀମୋହନଙ୍କ ନିକଟତର ହେବା ପାଇଁ ସାଧାରଣତଃ ବିଜେଡି ନେତା ଓ କର୍ମୀଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିବା ସ୍ୱାଭାବିକ ଅଟେ । ଦେଖାଗଲା ବିଭୂତିଙ୍କ ସ୍କୋର୍ପିଓ ଗାଡ଼ିରେ ପ୍ୟାରୀମୋହନ ସେଠାକୁ ଭୁବନେଶ୍ୱରରୁ ଗଲେ । ପୁଣି ବିଭୂତିଙ୍କ ସେହି ଗାଡ଼ିରେ ଭୁବନେଶ୍ୱର ଫେରିଲେ । ଏଥିରୁ ସ୍ପଷ୍ଟ ହୋଇଗଲା ଯେ, ବିଭୂତି କିପରି ରାଜନୀତିରେ ଯାହା ହେବା ପାଇଁ କେବେବି ସ୍ୱପ୍ନ ଦେଖି ନଥିଲେ ତାହା କିପରି ହୋଇଛନ୍ତି । କେବଳ ସେତିକି ନୁହେଁ ବିଭୂତିଙ୍କ ସ୍କୋର୍ପିଓ ଗାଡ଼ିରେ ପ୍ୟାରୀମୋହନ ଯିବାବେଳେ ତାଙ୍କ ପଛେପଛେ ଖୋର୍ଦ୍ଧା ସ୍ୱାଧୀନ ବିଧାୟକ ରାଜେନ୍ଦ୍ର ସାହୁଙ୍କର ଗାଡ଼ି ଯାଉଥିଲା । ଉଲ୍ଲେଖଯୋଗ୍ୟ ଯେ, ଖୋର୍ଦ୍ଧାରେ ଜ୍ୟୋତିରିନ୍ଦ୍ର ନାଥ ମିତ୍ର ବିଜେଡି ବିଧାୟକ ଥିଲେ । ଏଥର ସେଠାରେ ଜ୍ୟୋତିରିନ୍ଦ୍ର ଆଉ ରାଜେନ୍ଦ୍ର ସାହୁ ବିଜେଡିରୁ ଟିକେଟ ନେଇ ପ୍ରତିଦ୍ୱନ୍ଦିତା କରିବା ପାଇଁ ଆଶାୟୀ ହେଲେ । ଟିକେଟ ପାଇବାକୁ ନେଇ ଚାଲିଲା ସେମାନଙ୍କ ମଧ୍ୟରେ ଟଣାଓଟରା । ଶେଷରେ ଖୋର୍ଦ୍ଧାକୁ ସିପିଏମ୍ ସହିତ ବିଜେଡି ବୁଝାମଣା କରିଦେଲା । ଉଭୟେ ଜ୍ୟୋତିରିନ୍ଦ୍ର ଏବଂ ରାଜେନ୍ଦ୍ର ସାହୁ ସ୍ୱାଧୀନ ଭାବେ ପ୍ରାର୍ଥୀ ହେଲେ ଆଉ ରାଜେନ୍ଦ୍ର ସାହୁ ବିଜୟୀ ହେଲେ । ଏମିତି ରାଜେନ୍ଦ୍ର ସାହୁଙ୍କର ଦଳ ଥିଲା ବିଜେଡି । ଯୋ ଜିତା ୱହି ସିକନ୍ଦର ପରି ରାଜେନ୍ଦ୍ର ସାହୁ ଏବେ ନିଜକୁ ବିଜେଡିର ବୋଲି କହୁଛନ୍ତି ଏବଂ ବିଜେଡି ସଂଗଠନ ସହିତ ସବୁବେଳେ ଲାଗି ରହୁଛନ୍ତି । ବିଭୂତିଙ୍କୁ ନେଇ ଏବେ ଚାଲିଛନ୍ତି ରାଜେନ୍ଦ୍ର ସାହୁ । ମାନେ କ୍ଷୀରପାଣି ପରି ଉଭୟଙ୍କର ସମ୍ପର୍କ ହୋଇଯାଇଛି । ସବୁବେଳେ ଉଭୟେ ଏକାଠି ବୁଲୁଛନ୍ତି । ଏହା ମଧ୍ୟ ବାରି ହୋଇଗଲା ଅସୁରେଶ୍ୱର ଗୋମଙ୍ଗଳ ସେବା ସମିତି ଉତ୍ସବରେ । ବିଭୂତିଙ୍କ ସ୍କୋର୍ପିଓ ଗାଡ଼ିରେ ବିଜେଡି ଗୋଟିଚାଳକ ପ୍ୟାରୀମୋହନ ମହାପାତ୍ର ଯାଉଥିବା ବେଳେ ତାଙ୍କ ପଛେପଛେ ରାଜେନ୍ଦ୍ର ସାହୁଙ୍କ ଗାଡ଼ି ଯାଉଥିଲା । ନିର୍ବାଚନ ବେଳକୁ ବିଭୂତି ଓ ରାଜେନ୍ଦ୍ର ସାହୁ ଗୋଟିଏ ସରଳରେଖାରେ ରହିଥିଲେ । ଏବେ ନିର୍ବାଚନ ପରେ ଉଭୟେ ବିଧାୟକ । ପୁଣି ଉଭୟେ ମଧ୍ୟ ସେହି ସରଳରେଖାରେ ରହିଛନ୍ତି । ତେବେ ଯେତେ ଯିଏ ଯାହା ଚର୍ଚ୍ଚା କରନ୍ତୁ ନା କାହିଁକି କିନ୍ତୁ ଏହା ସତ ଯେ, ବିଭୂତି ହେଉଛନ୍ତି ଜଣେ ଭାଗ୍ୟବାନ ନେତା । ■

## ପୁଟପତି ଓ ସଂଜୀବ



ଏମିତି ସାଧାରଣତଃ ନେତାମାନେ ଆସ୍ତିକବାଦି ହୋଇଥା'ନ୍ତି । ଅନେକ ନେତା ରାଜନୀତି କରିବା ପୂର୍ବରୁ ନାସ୍ତିକ ଥିବାବେଳେ ରାଜନୀତିକୁ ଆସିବା ପରେ ଆସ୍ତିକ ହୋଇଯାଇଥା'ନ୍ତି । କେତେବେଳେ କିଏ ଦେବାଦେବୀ ମନ୍ଦିରକୁ ଗଲେଣି ତ କେତେବେଳେ କିଏ ତନ୍ତ୍ରପୀଠକୁ ଗଲେଣି । କେତେବେଳେ କିଏ ହୋମଯଜ୍ଞ କଲେଣି ତ କେତେବେଳେ କିଏ ମାସମାସ ଧରି ଆମିଷ

ଭକ୍ଷଣ ଛାଡ଼ିଦେଲେଣି । ପୁଣି କେତେବେଳେ କିଏ ବିଭିନ୍ନ ରଙ୍ଗର ପଥର ଥିବା ମୁଦି ପିନ୍ଧିଲେଣି ତ କେତେବେଳେ କିଏ ଡେଉଁରିଆ ପିନ୍ଧିଲେଣି । ଏସବୁ ଅଧିକାଂଶ ନେତାଙ୍କ ପାଖରେ ଦେଖିବାକୁ ମିଳେ । ଯଦି କେଉଁ ବରିଷ୍ଠ ନେତା ମନ୍ତ୍ରୀ ହୋଇପାରିଲେ ନାହିଁ ତେବେ ତାଙ୍କର ବେଳା ଖରାପ ପଡ଼ିଛି ବୋଲି ସେ ଭାବି ନିଅନ୍ତି ଆଉ ପୂଜାଅର୍ଚ୍ଚନା ସମେତ ଗ୍ରହଶାନ୍ତି ପାଇଁ ବ୍ୟବସ୍ଥା ମଧ୍ୟ ସେ କରନ୍ତି । ଏଥିରୁ କାଁ ଭାଁ କେଉଁ ମନ୍ତ୍ରୀ ବା ନେତାମାନେ ବାଦ୍ ପଡ଼ିଥା'ନ୍ତି । ଏବେ ଯିବା ଏମିତି ଜଣେ ମନ୍ତ୍ରୀଙ୍କ ପାଖକୁ । ଯେ କି ମନ୍ତ୍ରୀ ହେବା ପୂର୍ବରୁ ଠାକୁର ବିଶ୍ୱାସୀ ଥିଲେ ଆଉ ମନ୍ତ୍ରୀ ହେବାପରେ ମଧ୍ୟ ସେହି ବିଶ୍ୱାସ ତାଙ୍କର ଆହୁରି ବଢ଼ିଯାଇଛି । ସେ ହେଲେ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ସଂଜୀବ ସାହୁ । ସଂଜୀବ ସାହୁ ୨୦୦୦ ନିର୍ବାଚନରେ ହାରିଯାଇଥିଲେ । କେବେବି ଭାବି ନଥିଲେ ବୀରମହାରାଜପୁରରେ ଉପନିର୍ବାଚନ ହେବ ବୋଲି ଆଉ ଏହି ଉପନିର୍ବାଚନରେ ତାଙ୍କୁ ବିଜେଡି ଟିକେଟ ମିଳିବ । ପୁଣି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କ ପାଇଁ ପ୍ରଚାର କରିବେ ଆଉ ସେ ବିଜୟୀ ହୋଇଯିବେ ବୋଲି । ଯାହା ଭାବି ନଥିଲେ ସଂଜୀବ ତାହା ହିଁ ହେଲା ଏବଂ ଉପନିର୍ବାଚନରେ ବିଜୟୀ ହୋଇ ସଂଜୀବ ବୀରମହାରାଜପୁରର ବିଧାୟକ ହେଲେ । ୨୦୦୪ ନିର୍ବାଚନରେ ବିଜୟୀ ହେବାପରେ ସଂଜୀବ ମଧ୍ୟ ଭାବି ନଥିଲେ କେବେ ମନ୍ତ୍ରୀ ହେବେ ବୋଲି । କିନ୍ତୁ ସେ ମନ୍ତ୍ରୀ ବି ହେଲେ । ୨୦୦୯ ନିର୍ବାଚନରେ ସଂଜୀବ ବି କେବେ ଭାବି ନଥିଲେ ତାଙ୍କୁ ବାଣିଜ୍ୟ ଓ ପରିବହନ ପରି ଗୁରୁତ୍ୱପୂର୍ଣ୍ଣ ବିଭାଗ ମିଳିବ୍ ବୋଲି । ଆଉ ଏହି ବିଭାଗ ହିଁ ତାଙ୍କୁ ମିଳିଲା । ସବୁକିଛି ଦେବାଦେବୀ, ଠାକୁର ଠାକୁରାଣୀଙ୍କ ଦୟାରୁ ହୋଇଛି ବୋଲି ସଂଜୀବ ଧରିନିଅନ୍ତି । ମନ୍ତ୍ରୀ ନହେବା ପୂର୍ବରୁ ତାଙ୍କର ପୂର୍ବ ବୀରମହାରାଜପୁର ନିର୍ବାଚନମଣ୍ଡଳୀରେ ଥିବା ପାତାଳି ଜଗନ୍ନାଥଙ୍କ ଠାରେ ସେ ସବୁବେଳେ ପ୍ରାର୍ଥନା କରୁଥିଲେ । ୨୦୦୯ରେ ମନ୍ତ୍ରୀ ହେବାପରେ ସେ ସିରିଡ଼ି ଯାଇ ସିରିଡ଼ି ସାଇଙ୍କୁ ଦର୍ଶନ କରିଥିଲେ । ଏବେ କିଛିଦିନ ପାଇଁ ପରିବାର ସହ ସଂଜୀବ ପୁଟପତି ଯାଇଥିଲେ । ସଂଜୀବ ସତେ ଯେମିତି ପାଲଟି ଯାଇଛନ୍ତି ଦେବାଦେବୀଙ୍କ ଭକ୍ତ । ଅବଶ୍ୟ ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ କିଏ ମନ୍ତ୍ରୀ ରହିବେ, ନରହିବେ ସେ ନେଇ ସବୁବେଳେ ମନ୍ତ୍ରୀଙ୍କୁ ଚିନ୍ତା ଘରିଥାଏ । ସବୁଦିନ ସକାଳୁ ଉଠିଲେ ତାଙ୍କ ମନ୍ତ୍ରୀ ପଦ ଅଛି କି ନାହିଁ ଆଗ ସେ ଦେଖିନିଅନ୍ତି । ତା'ପରେ ଦିନଯାକ କିପରି ମନ୍ତ୍ରୀ ପଦ ରହିବ ସେ ନେଇ ଚିନ୍ତା ବି କରନ୍ତି । ଏ କ୍ଷେତ୍ରରେ ସଂଜୀବଙ୍କୁ ଯେ ଚିନ୍ତା ଘାରୁନାହିଁ ତାହା ନୁହେଁ । ତେବେ ଠାକୁର ଭକ୍ତ ହୋଇ ସଂଜୀବ ଏହି ଚିନ୍ତାରୁ କିଛିଟା ମୁକୁଳି ଯାଉଛନ୍ତି । ଚିନ୍ତାର କିଛି ସମୟ ସେ ଠାକୁରଙ୍କ ପାଇଁ ଦେଉଛନ୍ତି । ସଂଜୀବଙ୍କର ଏହି ଠାକୁର ଭକ୍ତି ଦେଖି କେତେକ ନେତା ମଧ୍ୟ ତାଙ୍କର ନୂଆ ନାମ ଦେଇଛନ୍ତି । ତାହା ହେଲା- ଭକ୍ତ ସଂଜୀବ । ସଂଜୀବ ଏବେ ଆଉ କେଉଁ ଧର୍ମସ୍ଥାନକୁ ଭକ୍ତସାଜି ଯାଉଛନ୍ତି ତାହା ଦେଖିବାକୁ ବାକି ରହିଛି । ■



# ସତ୍ୟନାରାୟଣ ଓ ହେଲ୍‌ମେଟ୍

ଯଦି ଜଣେ କାର୍ କିମ୍ବା ଅନ୍ୟ ଚାରିଚକିଆ ଯାନରେ ଯାଉଥିବ ତେବେ ତାଙ୍କର ହେଲ୍‌ମେଟ୍ ପିନ୍ଧିବାର ଆବଶ୍ୟକତା ନାହିଁ । ଏହା ସମସ୍ତେ ଜାଣନ୍ତି କିନ୍ତୁ ରଣପୁର ବିଜେଡି ବିଧାୟକ କେଜାଣି କାହିଁକି ସେଦିନ ହେଲମେଟ୍ ପିନ୍ଧି ତାଙ୍କ କ୍ୱାଲିସ ଗାଡ଼ି ଭିତରକୁ ପଶିଲେ । ଆଳୁ ଖୋଳୁଖୋଳ ମହାଦେବ ବାହାରିବା ପରି ଘଟଣାଟି ହୋଇଛି । ରଣପୁରର ଶାମୁକା ସାହିରେ ବାବା ସପ୍ତେଶ୍ୱର ସମାଜ କଲ୍ୟାଣ କ୍ଲବର ପ୍ରଥମ ବାର୍ଷିକି ଉତ୍ସବ ଅନୁଷ୍ଠିତ ହେଉଥିଲା । ଏହାର ଆବାହକ ଥିଲେ ଆଡ଼ଭୋକେଟ୍ ସୁରେଶ ମିଶ୍ର । ସଭାକାର୍ଯ୍ୟ ଆରମ୍ଭ ହେଲା ସଂଧ୍ୟା ବେଳକୁ । ସଭା ଶେଷ ହେବା ବେଳକୁ ଅସରାଏ ମେଘ ମାଡ଼ିଆସିଲା । ମଂଚ ଉପରେ ଥା'ନ୍ତି ବିଧାୟକ ସତ୍ୟନାରାୟଣ ପ୍ରଧାନ । ଏହି ସମୟରେ ପବନ ଜୋର୍‌ଦାର୍ ହେଲା । କେହି ଜଣେ କହିଦେଲେ- ଏମିତି ବର୍ଷାପବନ ହେଲେ ମଂଚ ବି ଭୁଶୁଡ଼ି ଯାଇପାରେ । ଏହି କଥା ଶୁଣିବା ମାତ୍ରେ ବିଧାୟକ ସତ୍ୟନାରାୟଣଙ୍କ ଠାରେ ଛାନିଆ ପଶିଗଲା । ସେ ଆଉ ମଂଚ ଉପରେ ରହିବାକୁ ଚାହିଁଲେ ନାହିଁ । ତାଙ୍କ କ୍ୱାଲିସ ଗାଡ଼ି ପାଖକୁ ସେ ଯିବାକୁ ଚାହିଁଲେ । ଗାଡ଼ି ଟିକିଏ ଦୂରରେ ଥିଲା । ସତ୍ୟନାରାୟଣଙ୍କ ପାଖରେ ଥିବା ଜଣେ ଯୁବକ ହେଲ୍‌ମେଟ୍‌ଟିଏ ଧରିଥିଲେ । ସତ୍ୟନାରାୟଣ ସେହି ହେଲମେଟ୍‌ଟିକୁ ତାଙ୍କଠାରୁ ସତେ ଯେମିତି ଛଡ଼ାଇ ନେଲେ ଆଉ ତାକୁ ମୁଣ୍ଡରେ ପିନ୍ଧିନେଲେ । ଏହା ଦେଖି ମଂଚରେ ଥିବା ବହୁ ନେତା ଓ ସାଧାରଣ ଜନତା ଆଶ୍ଚର୍ଯ୍ୟ ହୋଇଗଲେ । ସମସ୍ତଙ୍କ ମନରେ ପ୍ରଶ୍ନ ଉଠିଲା, ବୋଧହୁଏ କ୍ୱାଲିସ ଚାରିଚକିଆ ଗାଡ଼ି ଛାଡ଼ି ସତ୍ୟନାରାୟଣ ଦୁଇଚକିଆ ଗାଡ଼ି ନିଜେ ଚଳାଇ ଯିବେ । ସତ୍ୟନାରାୟଣ ହେଲମେଟ୍ ପିନ୍ଧି ମଂଚରୁ ଓହ୍ଲାଇଲେ । ବର୍ଷା ସେମିତି ଲାଗି ରହିଥାଏ । ବିଧାୟକ ହୋଇଥିବାରୁ ହେଲ୍‌ମେଟ୍ ପିନ୍ଧି ସତ୍ୟନାରାୟଣଙ୍କ ଯିବା ଦୃଶ୍ୟକୁ ସେଠାରେ ସମସ୍ତେ ବେଶ୍ ଉପଭୋଗ କରୁଥା'ନ୍ତି । ସତ୍ୟନାରାୟଣଙ୍କ ପଛେପଛେ କେତେକ ବିଜେଡି ନେତା ମଧ ଗଲେ । ସମସ୍ତେ ଭାବୁଥା'ନ୍ତି ସତ୍ୟନାରାୟଣଙ୍କ ପାଇଁ ବୋଧହୁଏ ଦୁଇଚକିଆ ଗାଡ଼ିର ବ୍ୟବସ୍ଥା ହୋଇଛି । ବର୍ଷାରେ ସତ୍ୟନାରାୟଣ ମୁଣ୍ଡରେ ହେଲ୍‌ମେଟ୍ ଲଗାଇ ସଭାସ୍ଥଳରୁ ଚାଲିଲେ ତାଙ୍କ କ୍ୱାଲିସ ଗାଡ଼ି ପାଖକୁ । ଗାଡ଼ି ଭିତରେ ପଶିବା ପରେ ମୁଣ୍ଡରୁ ହେଲ୍‌ମେଟ୍‌ଟି ବାହାର କରି ସେ ତାଙ୍କ ପଛେପଛେ ଓଦାହୋଇ ଆସିଥିବା ଜଣେ ନେତାଙ୍କୁ ଦେଇଦେଲେ । ଏହାପରେ ସତ୍ୟନାରାୟଣଙ୍କ କ୍ୱାଲିସ ଗାଡ଼ି ସଭାସ୍ଥଳ ଛାଡ଼ି ଚାଲିଗଲା । କିନ୍ତୁ ସତ୍ୟନାରାୟଣଙ୍କ ହେଲ୍‌ମେଟ୍ ପିନ୍ଧାକୁ ନେଇ ସଭାସ୍ଥଳରେ ସୃଷ୍ଟି ହେଲା ହାସ୍ୟରୋଳ । କାଳେ ମଂଚ ଭୁଶୁଡ଼ି ଯିବ ସେହି ଆଶଙ୍କା ରଖି ମୁଣ୍ଡରେ ହେଲ୍‌ମେଟ୍ ପିନ୍ଧି ବର୍ଷାରେ ମଂଚ ଛାଡ଼ି

ଚାଲିଗଲେ ସତ୍ୟନାରାୟଣ । ସାରା ରଣପୁର ନିର୍ବାଚନମଣ୍ଡଳୀରେ ସତ୍ୟନାରାୟଣଙ୍କ ହେଲ୍‌ମେଟ୍ ପିନ୍ଧାକୁ ନେଇ ଚାଲିଲା ଚର୍ଚ୍ଚା । କିଏ ଏହାକୁ ହାଲ୍‌କା ଭାବେ ଗ୍ରହଣ କଲେଣି ତ କିଏ ଏହାକୁ ଗୁରୁତର ବୋଲି ଭାବିଲେଣି । କିନ୍ତୁ ସତ୍ୟନାରାୟଣଙ୍କ ପାଇଁ ଏହା ଧ୍ରୁବ ସତ୍ୟ ଯେ, ଯିଏ ଯାହା କହନ୍ତୁ ପଛେ ସେଥିରେ ତାଙ୍କର ଯାଏଆସେ ନାହିଁ । ନେତା ବଂଚିଥିଲେ ସିନା ଜନସାଧାରଣଙ୍କ ପାଇଁ କାମ କରିବେ । ଆଉ ଏହା ହିଁ ଗୋଟାପଣ ସତ । ଏଥିରେ କେହି ଦ୍ୱିମତ ହେବେ ନାହିଁ । ■

## ବିଜୟଙ୍କ ଛାଡ଼ଖାଇ



ଏମିତି ଓଡ଼ିଶା ରାଜନୀତିରେ କେଉଁ ନେତାଙ୍କର ଯଦି ସାମ୍ବାଦିକଙ୍କ ସହିତ ସୁସମ୍ପର୍କ ରହିଥାଏ ତେବେ ସେ ହେଲେ ବିଜୟ ମହାପାତ୍ର । ବିଜୁ ପଟ୍ଟନାୟକଙ୍କ ଆଶିର୍ବାଦରେ ୧୯୮୦ ମସିହାରେ ପାଟକୁରା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇ ଆସିଥିବା ବିଜୟ ମହାପାତ୍ରଙ୍କ ରାଜନୀତିରେ ବହୁଶୀଘ୍ର ଉତ୍‌ଥାନ ହୋଇଥିଲା । ମାତ୍ର ୧୦ ବର୍ଷ ଭିତରେ ସେ ବିଜୁ ପଟ୍ଟନାୟକଙ୍କର ନିକଟତମ ନେତା ଥିବା ସମସ୍ତଙ୍କୁ ପଛରେ ପକାଇ ଦେଇ ହୋଇଯାଇଥିଲେ ବିଜୁଙ୍କର ଅତି ପ୍ରିୟ । ୧୯୯୦ରୁ ୧୯୯୫ ପର୍ଯ୍ୟନ୍ତ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀ ସମୟରେ ବିଜୟ ମହାପାତ୍ର ଯଦିଓ ଜଳସମ୍ପଦ ଓ ସଂସଦୀୟ ବ୍ୟାପାର ବିଭାଗ ମନ୍ତ୍ରୀ ଥିଲେ କିନ୍ତୁ ସେ ହୋଇଯାଇଥିଲେ ସୁପର ଚିଫ୍‌ମିନିଷ୍ଟର । ମାନେ ସେ ଯାହା ଚାହୁଁଥିଲେ ବିଜୁ ପଟ୍ଟନାୟକ ତାହା ହିଁ କରୁଥିଲେ । ଓଡ଼ିଶାରେ ବିଜେଡି ଗଠନ କ୍ଷେତ୍ରରେ ବିଜୟ ମହାପାତ୍ରଙ୍କର ମଧ୍ୟ ବେଶ୍ ଭୂମିକା ରହିଥିଲା । ଏପରିକି ନବୀନ ପଟ୍ଟନାୟକଙ୍କୁ ରାଜନୀତିକୁ ଆଣିବାରେ ମଧ୍ୟ ତାଙ୍କର ଭୂମିକାକୁ କେହି ଅସୀକାର କରିପାରିବେ ନାହିଁ । ତେବେ ୨୦୦୦ ମସିହାରେ ଅତି ଆକସ୍ମିକ ଭାବେ ତାଙ୍କ ଟିକେଟକୁ କାଟି ଦିଆଯିବା ପରେ ଆଉ ସେବେଠାରୁ ବିଜୟ ମହାପାତ୍ର ବିଧାୟକଭାବେ ନିର୍ବାଚିତ ହୋଇ ପାରୁନାହାନ୍ତି । ଅବଶ୍ୟ ଓଜିପି ପରେ ଏନ୍‌ସିପି ଏବେ ବିଜେପି ହୋଇଯାଇଛି ବିଜୟଙ୍କର ଦଳ । ଏହାସତ୍ତ୍ୱେ ବିଜୟ ନିଜେ ନିଜର ପରିଚୟ । ସାମ୍ବାଦିକଙ୍କ ସହିତ ବିଜୟଙ୍କର ସୁସମ୍ପର୍କ ଦୀର୍ଘଦିନ ହେଲା ରହିଆସିଛି । ଆଉ ଏହାକୁ ମଧ୍ୟ ବିଜୟ ବ୍ୟକ୍ତିଗତ ଭାବେ ବଜାୟ ରଖିବାରେ ଉଦ୍ୟମ ଜାରି ରଖିଛନ୍ତି । ସେଦିନ ଛାଡ଼ଖାଇ ଥିଲା । ଏମିତି କେଉଁ ଦଳର ନେତା କି ବିଧାୟକ କି ମନ୍ତ୍ରୀ ହୁଅନ୍ତୁ ସେମାନେ ଛାଡ଼ଖାଇକୁ କେମିତି ପାଳନ କରିଥିବେ ତାହା କେହି ଜାଣନ୍ତି ନାହିଁ । କିନ୍ତୁ ବିଜୟ ସାମ୍ବାଦିକଙ୍କ ଗହଣରେ ଛାଡ଼ଖାଇ ପାଳନ କଲେ । ରାତିରେ ୯ ନମ୍ବରସ୍ଥିତ ରୋଟାରୀ ଭବନରେ ତାଙ୍କର ଏହି ଛାଡ଼ଖାଇ ଉତ୍ସବର ସେ ଆୟୋଜନ କଲେ । ନିଜେ ବିଜୟ ସବୁ ସାମ୍ବାଦିକଙ୍କୁ ବ୍ୟକ୍ତିଗତ

ଭାବେ ସେଠାକୁ ଆସିବା ନିମନ୍ତେ ନିମନ୍ତ୍ରଣ ବି କଲେ । ସାମ୍ବାଦିକ ହାଜର ହେବାମାତ୍ରେ ପରଶି ଦିଆଗଲା ଚିଙ୍ଗୁଡ଼ି ଓ ଖାସିମାଂସ ଚପ୍ । ପରେପରେ ଖାସିମାଂସ ବିରିଆନି ଓ କଟମ୍ବର । ଏମିତି ଯେ ଏହି ଭୋଜିରେ ଅଧିକ ପଇସା ଖର୍ଚ୍ଚ ହୋଇଯାଇଥିବ ତାହା ନୁହେଁ । କିନ୍ତୁ ସାମ୍ବାଦିକମାନଙ୍କୁ ବର୍ଷକରେ ଛାଡ଼ଖାଇ ଓ ନୂଆବର୍ଷରେ ଭୋଜନରେ ଆପ୍ୟାୟିତ କରିବାକୁ ସବୁବେଳେ ଉଦ୍ୟମ କରିଆସିଛନ୍ତି ବିଜୟ ମହାପାତ୍ର । ଏମିତି ତ ଓଡ଼ିଶା ରାଜନୀତିରେ ବିଜୟଙ୍କର ଯେଉଁ ଖ୍ୟାତି ରହିଥିଲା ଏବେବି ସେହି ଖ୍ୟାତି ରହିଛି । ଯାହା ସେ ଆରମ୍ଭ କରିଥା'ନ୍ତି ତାହା ସେ ବଜାୟ ରଖିବା ନିମନ୍ତେ ସବୁବେଳେ ଉଦ୍ୟମ ଜାରି ରଖିଥା'ନ୍ତି । ସାମ୍ବାଦିକଙ୍କୁ ଛାଡ଼ଖାଇ ଓ ନୂଆବର୍ଷ ଅବସରରେ ଭୋଜି ଦେବା ହେଉଛି ଏହାର ପ୍ରମାଣ । ଦେଖାଯାଉ ବିଜୟ କେତେଦିନ ଏହିପରି ବ୍ୟବସ୍ଥା ବଜାୟ ରଖିପାରୁଛନ୍ତି । ■

## ଦରବାର ଚାଲିଛି ଢ଼ାଲିଙ୍କର



ଏ ହେଲେ ଅରବିନ୍ଦ ଢ଼ାଲି । ୧୯୯୦ ମସିହା ନିର୍ବାଚନ ପରେଯେତେବେଳେ ମାଲକାନାଗିରିରେ ଉପନିର୍ବାଚନ ହେଲା ସେତେବେଳେ ବିଜେପିରୁ ପ୍ରାର୍ଥୀ ହୋଇ ଅରବିନ୍ଦ ଅତି ଆକସ୍ମିକଭାବେ ବିଜୟୀ ହେଲେ । ଏହାପରେ ୧୯୯୫, ୨୦୦୦ରେ ସେ ବିଜେପିରୁ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ୨୦୦୦ରେ ନବୀନ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରେ ସେ ସମବାୟ ମନ୍ତ୍ରୀ ବି ହେଲେ । ୨୦୦୪ରେ ସେ ବିଜେପିରୁ ପ୍ରାର୍ଥୀ ହୋଇ ହାରିଥିଲେ ମଧ୍ୟ ପରବର୍ତୀ ସମୟରେ ହାଇକୋର୍ଟ ତାଙ୍କ ପ୍ରତିଦ୍ୱନ୍ଦ୍ୱୀଙ୍କ ବିଜୟକୁ ରଦ୍ଦ କରିଦେଇଥିଲେ । ୨୦୦୯ ନିର୍ବାଚନରେ ଅରବିନ୍ଦ ମାଲକାନାଗିରି ଛାଡ଼ି ଖୋର୍ଦ୍ଧା ଜିଲ୍ଲା ତଥା ଭୁବନେଶ୍ୱର ଉପକଣ୍ଠବର୍ତି ବାଲିପାଟଣାରୁ ବିଜେଡ଼ିରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଛନ୍ତି । ଅରବିନ୍ଦଙ୍କ ପାଇଁ ମାଲକାନାଗିରି ରାଜନୀତି ଭିନ୍ନ ଥିଲା । ଆଉ ବାଲିପାଂଟଣା ରାଜନୀତି ଭିନ୍ନ ହୋଇଯାଇଛି । ସକାଳ ହେଲେ ବାଲିପାଟଣାର ଶହଶହ ଲୋକ ଭୁବନେଶ୍ୱରକୁ ବ୍ୟବସାୟ କରିବାକୁ ଆସିଥା'ନ୍ତି । ସେଥିରୁ ଅନେକ ନିଜର ସମସ୍ୟା ସମ୍ପର୍କରେ ଅରବିନ୍ଦଙ୍କୁ ଅବଗତ କରାଇଥା'ନ୍ତି । ସେଦିନ ଅରବିନ୍ଦଙ୍କ ଦରବାର ବସିଥାଏ । ସକାଳୁ ସକାଳୁ ଅରବିନ୍ଦ ଦରବାରରେ ବସି ବିଭିନ୍ନ ବ୍ୟକ୍ତିଙ୍କ କଥା ଶୁଣୁଥା'ନ୍ତି । ଏହି ସମୟରେ ଜଣେ କିଏ କହିଲା ଆଜ୍ଞା ମୋର ବହୁତ କାମ ଅଛି । ଅରବିନ୍ଦ ସେତେବେଳେ ଜଳଖିଆ ଖାଇବାକୁ ଉଠୁଥା'ନ୍ତି । ସେ କହିଲେ ଟିକେ ଅପେକ୍ଷା କର । ମୁଁ ଜଳଖିଆ ଖାଇ ଆସୁଛି । ସେହି ବ୍ୟକ୍ତି ଜଣକ କହିଲେ ଆଜ୍ଞା ଡେରି ହୋଇଯିବ । ଅରବିନ୍ଦ କହିଲେ ଠିକ୍ ଅଛି । ମୁଁ ଜଳଖିଆ ନ ଖାଇ ତୁମ

ପାଖରେ ବସିଲି । ମୁଁ ଜଣେ ଡାଇବେଟିସ୍ ରୋଗୀ । ମୋତେ ଠିକ୍ ସମୟରେ ଜଳଖିଆ ଆଉ ମିଲ୍ ଖାଇବାକୁ ପଡ଼ିବ । ମୋତେ ଏମିତି କଲେ ବାଲିପାଟଣାରେ ଉପନିର୍ବାଚନ ହେବ । ସଙ୍ଗେସଙ୍ଗେ ସେ ବ୍ୟକ୍ତି ଜଣଙ୍କ କହିଲେ - ନାହିଁ ଆଜ୍ଞା । ଆମର ଉପନିର୍ବାଚନ ହେବା ଦରକାର ନାହିଁ । ଆପ୍ଣ ଯାଆନ୍ତୁ ଜଳଖିଆ ଖାଇ ଆସିବେ । ମୁଁ ଅପେକ୍ଷା କରୁଛି । କିଛି ସମୟ ପରେ ଢ଼ାଲି ବସିଥାନ୍ତି । ଏହି ସମୟରେ ତାଙ୍କ ମୋବାଇଲକୁ କେହି ଜଣେ ଫୋନ କଲେ । ଢ଼ାଲି କହିଲେ ହାଲୋ। ସେପଟରୁ ଶୁଣାଗଲା - ହାଲୋ ମିଟୁଭାଇ । ଢ଼ାଲି କହିଲେ - ମିଟୁଭାଇ କୁହ କୁହ । ଏହାପରେ ସେପଟୁ ଶୁଣାଗଲା - ମିଟୁଭାଇ, ମିଟୁଭାଇ । ଢ଼ାଲି ପୁଣି କହଲେ - ହଁ ହଁ ମିଟୁଭାଇ ମିଟୁଭାଇ । ତା ପରେ ମୋବାଇଲ ସୁଇଚ୍ ବନ୍ଦ କରିଦେଲେ । ଏହାପରେ ଢ଼ାଲି କହିଲେ - ଏଭଳି ଫୋନ ବହୁତ ଆସୁଛି । କାହା ପାଖକୁ ଫୋନ କରୁଛନ୍ତି କେଜାଣି ସବୁ ମୋ ପାଖକୁ ଆସିଯାଉଛି । ଭାରି ସମସ୍ୟା । ଏହି ସମୟରେ ଆଉ ଜଣେ ବ୍ୟକ୍ତି କାଗଜଟିଏ ବଢ଼ାଇଲେ । ଢ଼ାଲି ସେହି କାଗଜଟିକୁ ପଢ଼ିବା ବେଳକୁ ସେହି ବ୍ୟକ୍ତି ଜଣଙ୍କ କହିଲେ -ଆଜ୍ଞା ଏହା ଏକ ଦରଖାସ୍ତ । ଢ଼ାଲି କହିଲେ - ଭଲ କଥା । କୁହ କେଉଁଠି ଦସ୍ତଖତ କରିବା ଆଉ କାହା ପାଖକୁ ପଠାଇବା । ବ୍ୟକ୍ତି ଜଣଙ୍କ କହିଲେ- ଏହା ଆପଣଙ୍କ ପାଇଁ ନୁହେଁ । ଢ଼ାଲି କହିଲେ ଆଉ କାହା ପାଇଁ ? ବ୍ୟକ୍ତି ଜଣଙ୍କ କହିଲେ- ଏହି ଦରଖାସ୍ତ ବି ପ୍ୟାରୀମୋହନ ମହାପାତ୍ର ପାଇବେ । ଢ଼ାଲି କହିଲେ - ଠିକ୍ ଅଛି । କିନ୍ତୁ ମୁଁ ତ ତମକୁ ପ୍ୟାରୀମୋହନ ବାବୁଙ୍କ ପାଖକୁ ଯିବାବେଳକୁ ସାଥିରେ ନେଇପାରିବି ନାହିଁ । କିନ୍ତୁ ପୋଷ୍ଟମ୍ୟାନ ସାଜି ତମ ଦରଖାସ୍ତକୁ ସେଠାରେ ଦେଇଦେବି । ବ୍ୟକ୍ତି ଜଣଙ୍କ କହିଲେ - ସେତିକି ଦରକାର । ଢ଼ାଲି କହିଲେ - ମୁଁ ତ ସେତକ କରିଦେବି ବୋଲି କହିଲିଣି । ଏହି ସମୟରେ ଆଉ ଜଣେବ୍ୟକ୍ତି କହିଲେ ଆଜ୍ଞା ମୁଁ ଟିକେ ସେକ୍ରେଟାରିଏଟ୍ ଯିବି । ଢ଼ାଲି କହିଲେ -ବହୁଦିନ ହେଲାଣି ମୋର ସେକ୍ରେଟାରିଏଟ୍ ଯିବା ଅଭ୍ୟାସ ଭାଙ୍ଗିଯାଇଛି । ଭଲ ହେଲା ତାହାହେଲେ ଯିବା । ବ୍ୟକ୍ତି ଜଣଙ୍କ କହିଲେ ଆଜ୍ଞା ମୋର ଗୋଟିଏ ପାସ୍ କରିଦିଅନ୍ତୁ । ଢ଼ାଲି କହିଲେ - କେମିତି ପାସ୍ ହେବ । ବ୍ୟକ୍ତି ଜଣଙ୍କ କହିଲେ - ଟିକେ ମନ୍ତ୍ରୀ ଦାମୋଦର ରାଉତଙ୍କ ପାଖକୁ ଲେଖିଦିଅନ୍ତୁ । ଆପଣଙ୍କ ଲେଖା ପାଇଲେ ସେ ପାସ୍ପାଇଁ ଗେଟ୍କୁ ପଠାଇଦେବେ । ଢ଼ାଲି କିଛି ସମୟ ଭାବିଲେ । କହିଲେ - ବିଧାୟକ କେବେ ପାସ୍ ପାଇଁ ମନ୍ତ୍ରୀଙ୍କୁ ଲେଖୁଛନ୍ତି କି । ମୁଁ ଜାଣିନାହିଁ । ଏମିତି ଲେଖାଯାଏନାହିଁ । ଆଉ ଜଣେ ବ୍ୟକ୍ତି କହିଲେ - ଆଜ୍ଞା ଟିକେ ଫୋନ କରିଦିଅନ୍ତୁ । ଢ଼ାଲି କହିଲେ - ନମ୍ବର ଦିଅ ଫୋନ କରିଦେବା । ବ୍ୟକ୍ତି ଜଣଙ୍କ କହିଲେ - ଏବେ ନୁହେଁ ପରେ ଆସିବି । ଏବେ ବହୁତ ଲୋକ । ଢ଼ାଲି କହିଲେ - ପେଣ୍ଡିଂ ଇଜ୍ ନେଭର୍ ଏଣ୍ଡିଂ। ତେଣୁ ସାଙ୍ଗେସାଙ୍ଗେ ତମର ଫୋନ୍ କରିଦେବା । ନ ହେଲେ ପେଣ୍ଡିଂ ଲିଷ୍ଟ୍ରେ ରହିଯିବ । ଏହାପରେ ଢ଼ାଲି ଏକ ସଭାରେ ଯୋଗ ଦେବା ପାଇଁ ବାହାରିଗଲେ । ■

# ପ୍ରସନ୍ନଙ୍କ ଦାଢ଼ି



ଭୁବନେଶ୍ୱର ବିଜେଡି ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ପ୍ରଥମେ ୧୯୮୦ ମସିହାରେ ଖୋର୍ଦ୍ଧାରୁ କଂଗ୍ରେସ ବିଧାୟକ ହୋଇଥିଲେ । ସେତେବେଳେ ତାଙ୍କର ନାମ ଥିଲା କବି ବିଧାୟକ । କେତେକ ମଧ୍ୟ ତାଙ୍କୁ ଡାକୁଥିଲେ ବିପ୍ଳବୀ ବିଧାୟକ । କ୍ରମେ ପ୍ରସନ୍ନଙ୍କର ଏହି ନାମକରଣରେ ପରିବର୍ତ୍ତନ ଆସିଗଲା । ଅବଶ୍ୟ ଏଥିପାଇଁ ତାଙ୍କର ଗେରୁଆ ବସ୍ତ୍ର, ଲମ୍ବାବାଳ, ଦାଢ଼ି ଆଉ ବାଡ଼ି ଦାୟୀ । ପ୍ରସନ୍ନଙ୍କୁ ସାଧାରଣ ଲୋକ ଏବେ ବାବା ବୋଲି ଡାକିଲେଣି । ପ୍ରସନ୍ନ ଯେ ଏହି ବାବା ଡାକରେ ବିରକ୍ତ ହୁଅନ୍ତି ତାହା ନୁହେଁ । ବାବାର ମାୟା ଦେଖାଇ ସେ ମଧ୍ୟ ବେଶ୍ ଭଲ ଭୋଟ ନିଜ ଆଡ଼କୁ ଟାଣି ଆଣିପାରୁଛନ୍ତି । କିନ୍ତୁ ଯେତେବେଳେ କେହି ଯୋଗ କରୁ ନଥିଲେ ସେତେବେଳେ ପ୍ରସନ୍ନ ଯୋଗର ମାର୍ଗଦର୍ଶୀ ହୋଇଯାଇଥିଲେ । ଯୋଗ ଯୋଗୁ ସେ ନିଜକୁ ଚିର ଯୌବନରେ ରଖିପାରିବେ ବୋଲି ମଧ୍ୟ ଦୃଢ଼ୋକ୍ତି ପ୍ରକାଶ କରୁଥିଲେ । ଏମିତି ପ୍ରସନ୍ନ ପାଟ୍ଟଶାଣୀଙ୍କ ବୟସ ୬୦ ଟପିଗଲାଣି । କିନ୍ତୁ ତାଙ୍କ ଶାରୀରିକ ଗଠନକୁ ଦେଖିଲେ କେହି କହିବେ ନାହିଁ ଯେ, ସେ ୬୦ ଟପିଗଲେଣି ବୋଲି । କିନ୍ତୁ ପ୍ରସନ୍ନଙ୍କୁ ବୟସ୍କ କରିଦେଇଛି ତାଙ୍କ ଦାଢ଼ି । ଏମିତି ବୟସ ବଢ଼ିଗଲେ ବାଳ, ନିଶ, ଦାଢ଼ି ପାଚିଯାଏ । ଏହା ହେଉଛି ଭଗବାନଙ୍କର ସୃଷ୍ଟି । ତେଣୁ ସେଥିରୁ କେହି ବର୍ତ୍ତିପାରିବେ ନାହିଁ । କାହାର ଆଗ ନିଶ, ଦାଢ଼ି ପାଚିଯାଏ ତ ଆଉ କାହାର ଡେରିରେ ପାଚେ । ଏମିତି ରବୀନ୍ଦ୍ରମଣ୍ଡପରେ ଚାଲିଥିବା ଏକ ଉତ୍ସବରେ ପ୍ରସନ୍ନ ଅତିଥି ଭାବେ ଯୋଗ ଦେଇଥିଲେ । ଗେରୁଆବସ୍ତ୍ର ପିନ୍ଧି ହାତରେ ବାଡ଼ିଟିଏ ଧରି ପ୍ରସନ୍ନ ମଂଚ ଉପରକୁ ଯାଉଥିବାବେଳେ ହଠାତ୍ ଏକ ଛୋଟ ଛୁଆଟିଏ ପ୍ରସନ୍ନଙ୍କ ପାଖକୁ ଚାଲିଆସିଲା ଆଉ କହିଦେଲା- ଦାଢ଼ିକୁ କଳା କରିଦିଅ । ତମେ ଟୋକା ହୋଇଯିବ । ପ୍ରସନ୍ନ ଉତ୍ସବରୁ ସିଧାସଳଖ ଘରକୁ ଆସିଲେ । ଘରେ ଆସି ଦର୍ପଣରେ ମୁହଁକୁ ଦେଖିଲେ । ମନେ ପଡ଼ିଲା ରବୀନ୍ଦ୍ରମଣ୍ଡପରେ ଛୋଟ ଛୁଆ କହିଥିବା କଥା । ଦାଢ଼ି ସତରେ ତାଙ୍କର ପାଚି ଗଲାଣି । ମନେମନେ ଭାବିନେଲେ ଦାଢ଼ିରେ କଳାରଙ୍ଗ ମାରିଦେଲେ ପ୍ରକୃତରେ ସେ ଜୁଆନଟୋକା ପରି ଦେଖାଯିବେ । ଏହି ସମୟରେ କେହି ଜଣେ ପ୍ରସନ୍ନଙ୍କୁ ତାଙ୍କର ରଙ୍ଗୀନ ଫଟୋ ଛପାଯାଇଥିବା ଏକ କାଗଜ ବଢ଼ାଇ ଦେଲେ । ସେଥିରେ ଦେଖାଗଲା ପ୍ରସନ୍ନଙ୍କ ମୁଣ୍ଡବାଳ, ଦାଢ଼ି ଓ ନିଶ ସବୁ କଳା । ପ୍ରସନ୍ନ ସେହି ଫଟୋକୁ ଦେଖି କିଛି ସମୟ 'ଥ' ହୋଇରହିଗଲେ ଆଉ ରବୀନ୍ଦ୍ରମଣ୍ଡପର ସେହି ଛୋଟଛୁଆ କଥା ମନେ ପକାଇଲେ । ପ୍ରକୃତରେ ଛୋଟଛୁଆ ହେଲେ ମଧ୍ୟ ତାହାର ଗୋଟିଏ ପସନ୍ଦ ଅଛି ବୋଲି ସେ ଭାବି ନେଲେ । ଦରବାରକୁ ଆସିଲେ ପ୍ରସନ୍ନ । ଦରବାରରେ ଭରପୂର ଲୋକ । ପ୍ରସନ୍ନ କାହାର କ'ଣ କାମ ଅଛି ବୋଲି କହିବା ପରିବର୍ତ୍ତେ ନିଜକଥା ଆଗ କହିଲେ। ତାଙ୍କର ପାଚି ଯାଇଥିବା ଦାଢ଼ିକୁ

କଳା କରିଦେଲେ କ'ଣ ସେ ବୋକା ହୋଇଯିବେ ବୋଲି ପଚାରିଲେ । ସଙ୍ଗେସଙ୍ଗେ ଅନେକ କହିଲେ- ଆଜ୍ଞା, ଖାଲି ବୋକା ନୁହେଁ, ପୂରା ଗଜାବୋକା ହୋଇଯିବେ । ପ୍ରସନ୍ନ ଆଉ କିଛି ନକହି ଜୋରରେ ହସିଲେ । ଦେଖାଯାଉ ପ୍ରସନ୍ନ କେବେ ପାଚିଲା ଦାଢ଼ିକୁ କଳା କରି ଗଜାବୋକା ହେଉଛନ୍ତି । ■

## ସମସ୍ୟା, ଦେବୀ ଓ ପର୍ଯ୍ୟଟନ



ଦେବୀ ପ୍ରସାଦ ମିଶ୍ର ଏବେ ଉଚ୍ଚଶିକ୍ଷା, ସଂସ୍କୃତି ଓ ପର୍ଯ୍ୟଟନ ବିଭାଗର ମନ୍ତ୍ରୀ । ଗତ ମନ୍ତ୍ରିମଣ୍ଡଳରେ ସେ ଥିଲେ ଅବକାରୀ, ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ମନ୍ତ୍ରୀ । ଏଥର ତାଙ୍କଠାରୁ ଅବକାରୀ ଚାଲିଯାଇ ଉଚ୍ଚଶିକ୍ଷା ବିଭାଗ ଆସିଛି । ଏମିତି ଅନେକ ସମୟରେ ଉଚ୍ଚଶିକ୍ଷା ବିଭାଗକୁ ସମସ୍ୟାବହୁଳ ବିଭାଗ ବୋଲି କୁହାଯାଇଥାଏ । ଏହି ବିଭାଗର ଅଧ୍ୟାପକମାନେ ବିଭିନ୍ନ ସମୟରେ ଧର୍ମଘଟ କରିଥା'ନ୍ତି ପୁଣି କଲେଜ ଛାତ୍ରଛାତ୍ରୀମାନେ ଆନ୍ଦୋଳନ ବି କରିଥା'ନ୍ତି । ତେଣୁ ଉଚ୍ଚଶିକ୍ଷା ବିଭାଗଟି ସମସ୍ୟା ଆଣି ଦେଇଥାଏ । ତେବେ ଦେବୀ ମିଶ୍ରଙ୍କ ପାଇଁ ଉଚ୍ଚଶିକ୍ଷା ବିଭାଗ କୁଆଡ଼େ ସମସ୍ୟା ଆଣି ଦେଉନାହିଁ । କୁଆଡ଼େ ପର୍ଯ୍ୟଟନ ବିଭାଗ ହିଁ ତାଙ୍କ ପାଇଁ ସମସ୍ୟା ହୋଇଯାଇଛି । ଏମିତି ଦେଖିଲେ ଓଡ଼ିଶା ଏକ ପର୍ଯ୍ୟଟନ ରାଜ୍ୟ ଅଟେ । କିନ୍ତୁ ଆବାହମାନ କାଳରୁ ଏଠାରେ ପର୍ଯ୍ୟଟନ ଭିତିଭୂମିର ବିକାଶ କରାଯାଇନାହିଁ । ତେଣୁ ଯେଉଁ ସଂଖ୍ୟାରେ ପର୍ଯ୍ୟଟକ ଆସିବା କଥା ତାହା ହେଉନାହିଁ । ପର୍ଯ୍ୟଟନ ମନ୍ତ୍ରୀ ଭାବେ ଓଡ଼ିଶାରେ ପର୍ଯ୍ୟଟନର ବିକାଶ ପାଇଁ ଦେବୀ ଅହରହ ଉଦ୍ୟମ ଜାରି ରଖିଛନ୍ତି । ବିଦେଶ ଗସ୍ତରେ ଯାଇ ପର୍ଯ୍ୟଟନ ସମ୍ପର୍କରେ ଜ୍ଞାନ ବି ଆହରଣ କରୁଛନ୍ତି । ଓଡ଼ିଶା ପର୍ଯ୍ୟଟନକୁ ବିଦେଶରେ ଆଦୃତି ଲାଭ କରିବା ନିମନ୍ତେ ମଧ୍ୟ କାର୍ଯ୍ୟକ୍ରମ ହାତକୁ ନେଉଛନ୍ତି । କିନ୍ତୁ ଓଡ଼ିଶାରେ ତୁରନ୍ତ ପର୍ଯ୍ୟଟନର ବିକାଶ ହେଉନାହିଁ । ରାତାରାତି ପର୍ଯ୍ୟଟନର ବିକାଶ ହେବା କ୍ଷେତ୍ରରେ ଦେବୀ ଚାହିଁବା ସ୍ୱାଭାବିକ । ଏମିତି ପର୍ଯ୍ୟଟନ କ୍ଷେତ୍ର ଓଡ଼ିଶାରେ ଭରପୂର ରହିଛି । କେବଳ ପର୍ଯ୍ୟଟକ ଆସିବାର ଆବଶ୍ୟକତା ରହିଛି । ତେଣୁ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ପକ୍ଷରୁ କାର୍ଯ୍ୟକ୍ରମ ଜୋରଦାର୍ ହେବା ଉଚିତ । କିନ୍ତୁ ଏ କ୍ଷେତ୍ରରେ ଅଭିଜ୍ଞତା ହାସଲ କରିଥିବା କର୍ମଚାରୀଙ୍କ ସଂଖ୍ୟା ହାତଗଣତି । ତେଣୁ ମନ୍ତ୍ରୀ ଭାବେ ଦେବୀ ଯେଉଁ ସ୍ୱପ୍ନ ଦେଖୁଛନ୍ତି ତାହା କିନ୍ତୁ କାର୍ଯ୍ୟରେ ପରିଣତ ହୋଇପାରୁନାହିଁ । ଏବେ ଦେବୀଙ୍କ ପାଇଁ ଉଚ୍ଚଶିକ୍ଷା ଠାରୁ ପର୍ଯ୍ୟଟନ ବିଭାଗ ଆହୁରି ସମସ୍ୟା ହୋଇଯାଇଛି । ମାନେ ଭାତ ଅଛି କିନ୍ତୁ ଖାଇବାକୁ ଲୋକ ନଥିବା ପରି ଓଡ଼ିଶାର ପର୍ଯ୍ୟଟନ ହୋଇଯାଇଛି । ଅର୍ଥାତ୍ ପର୍ଯ୍ୟଟନସ୍ଥଳୀ ଓଡ଼ିଶାରେ ଅସଂଖ୍ୟ କିନ୍ତୁ ପର୍ଯ୍ୟଟକ ଏହା ଜାଣିପାରୁନାହାନ୍ତି କିମ୍ବା ଜାଣି ମଧ୍ୟ ଭିତିଭୂମି ନଥିବାରୁ ଆସୁନାହାନ୍ତି । ଓଡ଼ିଶାର ପର୍ଯ୍ୟଟନସ୍ଥଳୀର କିପରି ବିକାଶ ହେବ

ଆଉ ପର୍ଯ୍ୟଟକ କିପରି ବହୁସଂଖ୍ୟାରେ ଆସିବେ ସେଥିପାଇଁ ଦେବୀ ଏବେ ଭାରି ବ୍ୟସ୍ତ । ଏମିତି ବେଳେବେଳେ ତାଙ୍କ ପାଟିରୁ କଥା ବାହାରି ଯାଉଛି ଯେ, ପର୍ଯ୍ୟଟନ ବିଭାଗକୁ ସମସ୍ତେ ଛୋଟ ବିଭାଗ ବୋଲି ଭାବନ୍ତି । କିନ୍ତୁ ଏହା ଏବେ ସମସ୍ୟାବହୁଳ ବିଭାଗ ହୋଇଗଲାଣି । ଦେବୀ ଏହି ସମସ୍ୟାକୁ କେବେ ସମାଧାନ କରୁଛନ୍ତି ତାହା ଦେଖିବାକୁ ସମସ୍ତେ ଉତ୍ସୁକତା ପ୍ରଦର୍ଶନ କରୁଛନ୍ତି । ■

## ଅନ୍ତଲା ପେଟ ଓ ଦାମ



ଏମିତି ଦିନେ ସକାଳୁଆ ଦରବାର କରୁକରୁ କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ ହଠାତ୍ କହି ପକାଇଲେ ଅନ୍ତଲା ପେଟ ଥିବା ଲୋକଙ୍କୁ ଦେଖିଲେ ତାଙ୍କର ଭାରି ଭୟ । ଦାମ ଯେ ଏଭଳି ଲୋକଙ୍କୁ ଦେଖି କହିଲେ ତାହା ନୁହେଁ । ଅନେକ ବ୍ୟବସାୟୀ ଦାମଙ୍କ ପାଖରେ ଆସି ପହଂଚି ଯାଉଛନ୍ତି । କୁଆଡ଼େ ତଳଆଡୁ ଫାଇଲ ପଠାଇ ଦେଇ ଦାମଙ୍କ ପାଖରେ ଫାଇଲ ନପଂହଚିବା ପୂର୍ବରୁ ସେମାନେ ତାଙ୍କ ପାଖରେ ପହଂଚି ଯାଉଛନ୍ତି । ଦାମ ଜାଣନ୍ତି ନାହିଁ କେଉଁ ଫାଇଲ । କିନ୍ତୁ ସେମାନେ ସେହି ଫାଇଲ ସମ୍ପର୍କରେ ଅତି ପ୍ରାଂଜଳ ଭାବେ ବୁଝାଇ ଦିଅନ୍ତି । ସତେ ଯେମିତି ଦାମଙ୍କ ଉପରେ ସେମାନେ । କିନ୍ତୁ ଦାମ ଯେ ଗଭୀର ଜଳର ମାଛ ତାହା ବୋଧହୁଏ ସେମାନେ ଜାଣିନାହାନ୍ତି । ଦାମ ସଙ୍ଗେସଙ୍ଗେ କହି ଦିଅନ୍ତି- ସେଭଳି କିଛି ଫାଇଲ ମୋ ପାଖରେ ନାହିଁ । ତେଣୁ ଆପଣ ଯାଇପାରନ୍ତି । ଏହାପରେ ମଧ୍ୟ ସେମାନେ ଦାମଙ୍କ ପାଖରେ ବସି ରହନ୍ତି । ଦାମ ସେମାନଙ୍କ ଆଡକୁ ନଚାହିଁ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରନ୍ତି । କିଛି ସମୟ ପରେ ସେମାନଙ୍କୁ କାହିଁକି ବସି ରୁହିଲେ ଆଉ ଯାଆନ୍ତୁ ବୋଲି କହିବା ପରେ ସେମାନେ ଯାଆନ୍ତି । ଏହା ଏବେ ଦାମଙ୍କର ଦେହସୁହା ହୋଇଗଲାଣି । ଦାମଙ୍କ ପାଖକୁ ସେଦିନ ଜଣେ ବ୍ୟକ୍ତି ତାଙ୍କର ଟିମ୍ ମ୍ୟାନେଜରଙ୍କୁ ଧରି ଆସିଥିଲେ । ଏମିତି ସେହି ଟିମ୍ ମ୍ୟାନେଜର ଜଣଙ୍କ ଓଡ଼ିଆ ବୁଝନ୍ତି ନାହିଁ । ସେ ରହନ୍ତି ଦିଲ୍ଲୀରେ । ତାଙ୍କୁ ଦେଖିଦେଇ ଦାମ ଜାଣିଗଲେ ସେ କାହିଁକି ଆସିଛନ୍ତି ବୋଲି । ସଙ୍ଗେସଙ୍ଗେ ଦାମ କହିଲେ- ଅନ୍ତଲା ପେଟ ବ୍ୟକ୍ତିଙ୍କୁ ଦେଖିଲେ ତାଙ୍କର ଭାରି ଭୟ । ଏହା କିନ୍ତୁ ଟିମ୍ ମ୍ୟାନେଜର ବୁଝି ପାରି ନଥିଲେ । କିନ୍ତୁ ତାଙ୍କୁ ସାଥିରେ ନେଇ ଆସିଥିବା ବ୍ୟକ୍ତି ଜଣକ ଠିକ୍ ଭାବେ ବୁଝିଗଲେ । ସେ ସାଙ୍ଗେସାଙ୍ଗେ କହିଲେ- ଆମେ ସାର୍ ତଳୁ ଫାଇଲ ପଠାଇବାର ବ୍ୟବସ୍ଥା କରି ଦେଇଛୁ । ଅସୁବିଧା କିଛି ହେବନାହିଁ । ଦାମ କହିଲେ ମୋର କ'ଣ ଅସୁବିଧା ହେବ ତାହା ମୁଁ ତମଠାରୁ ବୁଝିବାକୁ ଚାହୁଁନାହିଁ । ତମେ କ'ଣ ଜାଣିଛ ମନ୍ତ୍ରିମଣ୍ଡଳରେ ମୁଁ ଏକାକୀ ବୋଲି । ମୋର ଆଗକୁ କେହି ନାହାନ୍ତି କି ପଛକୁ କେହି ନାହାନ୍ତି । ମୁଁ ବିଭାଗରେ ଯାହାସବୁ କରିବି ତାହା ଦେଖିଚାହିଁ । ସେଇଥିପାଇଁ ତ କହୁଛି ଅନ୍ତଲା ପେଟ ବ୍ୟକ୍ତିଙ୍କୁ ଦେଖିଲେ ମୁଁ

ଭୟଭୀତ ହୋଇଯାଉଛି । ଆପଣ ଯାଆନ୍ତୁ, ନମସ୍କାର । ଦାମଙ୍କର ଏହି ଥନ୍ତଲା ପେଟ ଶବ୍ଦଟି ସେଠାରେ ଥିବା କିଛି ଲୋକଙ୍କୁ ବେଶ୍ ହସର ଖୋରାକ ଯୋଗାଇ ଦେଇଥିଲା । ଦାମ ସେମାନଙ୍କୁ ପଚାରିଲେ- ମୁଁ ଯାହା କହୁଛି, ତାହା ଠିକ୍ ନା ନାହିଁ କୁହନ୍ତୁ । ସେଠାରେ ଥିବା ଲୋକମାନେ ହସିହସି କହିଲେ- ଆପଣ ଯାହା କହୁଛନ୍ତି ତାହା ସମ୍ପୂର୍ଣ୍ଣ ସତ୍ୟ । ଥନ୍ତଲା ପେଟ ହିଁ ସବୁ ଦୁର୍ନୀତିର ମୂଳ କାରଣ । ଦାମ ଥରେ କି ଦୁଇଥର ମନ୍ତ୍ରୀ ନୁହନ୍ତି । ବିଜୁଙ୍କ ପରି ଜଣେ ଦୁର୍ଦ୍ଧର୍ଷ ନେତାଙ୍କ ମନ୍ତ୍ରିମଣ୍ଡଳରେ ଦାମ ବି କ୍ୟାବିନେଟ ମନ୍ତ୍ରୀ ଥିଲେ । ପୁଣି ୧୯୭୭ରେ ନୀଳମଣି ରାଉତରାୟଙ୍କ ମନ୍ତ୍ରିମଣ୍ଡଳରେ ମଧ୍ୟ ସେ ମନ୍ତ୍ରୀ ଥିଲେ । ଏବେ ସେ ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ । କିନ୍ତୁ ଥନ୍ତଲା ପେଟକୁ ଚିହ୍ନିବାକୁ ଦାମଙ୍କୁ ୩୦ ବର୍ଷ ଲାଗିଯାଇଛି । ଏବେ ଦାମ ଥନ୍ତଲା ପେଟକୁ ଦୂରରୁ ଜୁହାର କରୁଛନ୍ତି । ଦେଖାଯାଉ ଦାମଙ୍କୁ ଏହି ଥନ୍ତଲା ପେଟ ଭୟ କେତେଦିନ ଘାରୁଛି । ■

## ସାଧବପୁଅ ଓ ପ୍ରଫୁଲ୍ଲ ସାମଲ



ପ୍ରଫୁଲ୍ଲ ସାମଲ ହେଲେ ଖୁସିମିଜାଜର ଲୋକ । ରାଜ୍ୟ ରାଜନୀତିରେ ମଧ୍ୟ ସେ ଜଣେ ତୁଙ୍ଗନେତା । ବିଜୁବାବୁଙ୍କ ସମୟରେ ଜନତା ଦଳରୁ ଭଦ୍ରକରୁ ପ୍ରାର୍ଥୀ ହୋଇ ଜିତିବା ପରେ ତତ୍କାଳୀନ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇ ଶ୍ରମ ଓ ନିଯୁକ୍ତି ମନ୍ତ୍ରୀ ଥିଲେ । କିନ୍ତୁ ପରବର୍ତ୍ତୀ ନିର୍ବାଚନରେ ହାରିଯାଇଥିଲେ । ଗତ ନିର୍ବାଚନରେ ତୁଙ୍ଗନେତା ଯୁଗଳ ପଟ୍ଟନାୟକଙ୍କୁ ଭଦ୍ରକରୁ ଟିକେଟ ଦିଆଯାଇଥିବା ଯୋଗୁ ପ୍ରଫୁଲ୍ଲ ସାମଲଙ୍କ ନିର୍ବାଚନମଣ୍ଡଳୀ ହୋଇଥିଲା ଭଣ୍ଡାରୀପୋଖରୀ । ବିଜେପିର ତୁଙ୍ଗନେତା ତଥା ପୂର୍ବତନ ମନ୍ତ୍ରୀ ମନମୋହନ ସାମଲ ଓ କଂଗ୍ରେସର ବଦ୍ରିନାରାୟଣ ଧଳଙ୍କୁ ପରାଜିତ କରି ପ୍ରଫୁଲ୍ଲ ଭଣ୍ଡାରୀପୋଖରୀରୁ ନିର୍ବାଚିତ ହେବାପରେ ନବୀନଙ୍କ ମନ୍ତ୍ରିମଣ୍ଡଳରେ ପଂଚାୟତିରାଜ, ସୂଚନା ଓ ଲୋକସମ୍ପର୍କ ଭଳି ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ହୋଇଛନ୍ତି । ଦିଲ୍ଲୀର ବାଲଜାଗୃତି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ଷଷ୍ଠବାର୍ଷିକ ବୋଇତବନ୍ଦାଣ ଉତ୍ସବ ଯମୁନାର କାଳନ୍ଦିକୁଂଜ ଘାଟଠାରେ ସମାରୋହ ସହ କାର୍ତ୍ତିକ ପୂର୍ଣ୍ଣମୀ ଅବସରରେ ପାଳନ କରାଯାଇଥିଲା । ପ୍ରଫୁଲ୍ଲ ସାମଲ ଏଥିରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିବା ସହ ଅତୀତର ପ୍ରାଚୀନ ନୌବାଣିଜ୍ୟକୁ ସ୍ମୃତିଚାରଣ କରିଥିଲେ । ସୁସଜ୍ଜିତ ଡଙ୍ଗାରେ ଯମୁନା ନଦୀ ବକ୍ଷରେ ସାଧବପୁଅ ବେଶରେ ବେଶ୍ କିଛି ସମୟ ସେ ପରିକ୍ରମା କରିଥିଲେ । ଅବଶ୍ୟ ମନ୍ତ୍ରୀଙ୍କ ସହ ସାଂସଦ ମୋହନ ଜେନା, ପୂର୍ବତନ ମନ୍ତ୍ରୀ ସୁରମା ପାଢ଼ୀଙ୍କ ସମେତ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ବହୁ ବରିଷ୍ଠ ଓ ଉଚ୍ଚ ପଦାଧିକାରୀ ଯମୁନା ନଦୀରେ ପରିକ୍ରମା କରିଥିଲେ । ଯମୁନାର ପରିବେଶ ଯାହା ହେଉନା କାହିଁକି ପ୍ରଫୁଲ୍ଲ ଦିଲ୍ଲୀର ବୋଇତ ବନ୍ଦାଣ ଉତ୍ସବକୁ ବେଶ୍ ପ୍ରଶଂସା କରିଥିଲେ ଏବଂ ଧୈର୍ଯ୍ୟର ସହ ଉତ୍ସବର ଶେଷ ପର୍ଯ୍ୟନ୍ତ ବସି

କାର୍ଯ୍ୟକ୍ରମକୁ ଉପଭୋଗ କରିଥିଲେ । ରାଜ୍ୟର ବାନ୍ଦବାଲି, ଧାମରା ବୋଇତ ବନ୍ଦାଣ ଉତ୍ସବକୁ ମଧ୍ୟ ସ୍ମରଣ କରିବାକୁ ସେ ଭୁଲି ନଥିଲେ । ତେବେ ଭାଷଣରେ ଦିଲ୍ଲୀର ଆଗାମୀ ଦିନର ବୋଇତ ବନ୍ଦାଣ ଉତ୍ସବକୁ ରାଜ୍ୟ ସରକାରଙ୍କ ତରଫରୁ ସମସ୍ତ ସାହାଯ୍ୟ ସହଯୋଗ କରାଯିବ ବୋଲି ପ୍ରତିଶ୍ରୁତି ଦେବାକୁ ମଧ୍ୟ ସେ ଭୁଲି ନଥିଲେ । ପ୍ରଫୁଲ୍ଲଙ୍କ ପ୍ରତିଶ୍ରୁତିକୁ ନେଇ ଆୟୋଜକଙ୍କ ତରଫରୁ ବେଶ୍ ଉତ୍ସାହ ପ୍ରକାଶ ପାଇଥିବାବେଳେ କରତାଳିରେ ଉତ୍ସବସ୍ଥଳ ପ୍ରକମ୍ପିତ ହୋଇଉଠିଥିଲା । ତେବେ ପ୍ରଫୁଲ୍ଲଙ୍କ ଏହି ପ୍ରତିଶ୍ରୁତି କେତେଦୂର କାର୍ଯ୍ୟକାରୀ ହେବ ତାହା ଆଗାମୀ ଦିନରେ ସମୟ ହିଁ କହିବ । କିନ୍ତୁ ଏହା ସତ ଯେ ସାଧବ ପୁଅ ବେଶରେ ଯେଉଁ କେତେ ସମୟ ପ୍ରଫୁଲ୍ଲ ଯମୁନା ନଦୀରେ କଟାଇଥିଲେ ତାହା ହିଁ ତାଙ୍କୁ ବେଶ୍ ଖୁସି କରିଦେଇଥିଲା । ■

## ପ୍ରସନ୍ନଙ୍କ ଚପଲ, ଘଂଟା ଓ ଟଙ୍କା



ଏମିତି ଭୁବନେଶ୍ୱର ସାଂସଦ ଡକ୍ଟର ପ୍ରସନ୍ନ ପାଟଶାଣୀଙ୍କୁ କେହି ଡକ୍ଟର ବୋଲି ଡାକୁନାହାନ୍ତି । ବରଂ ଡକ୍ଟର ଜାଗାରେ ବାବା ଯୋଡ଼ି ହୋଇଯାଇଛି । ମାନେ ବାବା ପ୍ରସନ୍ନ ପାଟଶାଣୀ । ପ୍ରସନ୍ନଙ୍କର ଯୁକ୍ତି ବଡ଼ ଏଜବ । ଅବଶ୍ୟ ଏହି ଯୁକ୍ତି ସେ ଅଭିଜ୍ଞତାକୁ ନେଇ କହୁଛନ୍ତି । ଚପଲ ସେ ଦାମିକିଆ ପିନ୍ଧୁନାହାନ୍ତି । ସଭାସମିତି, ମନ୍ଦିର ଯେଉଁଠି ଚପଲକୁ ବାହାରେ ରଖି ଯିବାକୁ ପଡ଼େ ସେଠାକୁ ସେ ଅତି ଶସ୍ତା କିମ୍ବା ଖଣ୍ଡିଆ ଚପଲ ପିନ୍ଧିଯିବାକୁ ଶ୍ରେୟ ମଣନ୍ତି । ଏହାର କାରଣ ହେଲା ଅତୀତରେ ବହୁବାର ତାଙ୍କର ଚପଲ ଚୋରି ହୋଇଯାଇଛି । ତେଣୁ ଖଣ୍ଡିଆ ଚପଲ ପିନ୍ଧି ଗଲେ ଚୋରି ହୋଇଗଲେ ମଧ୍ୟ ପରବାୟ ନାହିଁ । ନଚେତ ଦାମିକିଆ ଚପଲ ପିନ୍ଧି ଯାଇଥିବ ଆଉ ଠାକୁରଙ୍କୁ ଦର୍ଶନ କରିବା କିମ୍ବା ଭାଷଣ ଦେବା ବେଳକୁ ମନ ଯାଇ ରହିଥିବ ଚପଲ ପାଖରେ । ନା ଠାକୁରଙ୍କୁ ଭଲ ଭାବେ ଦର୍ଶନ କରି ହେବ ନା ଭାଷଣ ବି ଭଲ ଭାବେ ଦେଇହେବ । ଏହି ସମସ୍ୟାରୁ ଦୂରରେ ରହିବା ପାଇଁ ପାଟଶାଣୀ ଏବେ ଶସ୍ତା କିମ୍ବା ଖଣ୍ଡିଆ ଚପଲ ପିନ୍ଧୁଛନ୍ତି । ସେମିତି ତାଙ୍କ ହାତରେ ଘଂଟା ବି ନଥାଏ । ଏମିତି ଯେ ତାଙ୍କର ଘଂଟାର ଆବଶ୍ୟକତା ନାହିଁ ତାହା ନୁହେଁ । କିନ୍ତୁ କେତେବେଳେ କେଉଁଠି ଘଂଟାକୁ ଖୋଲିଦେଇ ଥୋଇଦେବା ପରେ ତାହାକୁ କେହି ନେଇଯାଇଛନ୍ତି । ଏହି ଦୃଷ୍ଟିରୁ ପାଟଶାଣୀ ଘଂଟା ପିନ୍ଧିବାକୁ ଆଉ ଶ୍ରେୟ ମଣିନାହାନ୍ତି । ଏମିତି ଦିନେ ଜଣେ ଧନୀବ୍ୟକ୍ତି ପାଟଶାଣୀଙ୍କ ହାତରେ ଘଂଟା ନଥିବାର ଦେଖି ତାଙ୍କୁ ଗୋଟିଏ ମୂଲ୍ୟବାନ ଘଂଟା ଉପହାର ଦେଲେ । ପାଟଶାଣୀ ପଚାରିଲେ- ଘଂଟାର ମୂଲ୍ୟ କେତେ । ଉତ୍ତର ମିଳିଲା- ୧୦ ହଜାର ଟଙ୍କା । ପାଟଶାଣୀ କହିଲେ- ମୋର ୧୦ ହଜାର ଟଙ୍କା ମୂଲ୍ୟର ଘଂଟା ପିନ୍ଧିବାର ନାହିଁ । କିନ୍ତୁ ଘଂଟା ଦେଇଥିବା ଲୋକଟି ଘଂଟାକୁ ଫେରାଇ ନେବାକୁ ଚାହିଁଲେ ନାହିଁ । ପାଟଶାଣୀ ତାଙ୍କୁ କହିଲେ- ବାବୁ

ଏତେ ଦାମିକିଆ ଘଂଟା ପିନ୍ଧିଲେ ସବୁବେଳେ ଘଂଟାକୁ ଦେଖିବାକୁ ଇଚ୍ଛା ହେବ । ପୁଣି ଝାଡ଼ା ଯାଅ କିମ୍ବା ଗାଧୋଇବାକୁ ଯାଅ ତାହା ମଧ୍ୟ ଭଲ ଭାବେ ସାରିପାରିବ ନାହିଁ । ମନ ଯାଇ ରହିଥିବ ଘଂଟାରେ । ତେଣୁ ଏଭଳି ଘଂଟାକୁ ତାଙ୍କର ଦୂରରୁ ଜୁହାର । ଘଂଟା ଦେଇଥିବା ବ୍ୟକ୍ତି ଜଣଙ୍କ କହିଲେ- ମୁଁ ଘଂଟା ଫେରାଇ ନେଲି । ତେବେ କେତେ ଟଙ୍କାର ଘଂଟା ଆପଣ ପିନ୍ଧିବେ ବୋଲି କହିଲେ ମୁଁ ସେତିକି ଟଙ୍କା ଆପଣଙ୍କୁ ଦେଇଦେବି । ପାଢଶାଣୀ ଗୁଣୁଗୁଣୁ ହୋଇ ହିସାବ କଲେ ଆଉ କହିଲେ- ହଜାରେ ଟଙ୍କା । ସଙ୍ଗେସଙ୍ଗେ ସେହି ବ୍ୟକ୍ତି ଜଣଙ୍କ ତାଙ୍କ ହାତକୁ ହଜାରେ ଟଙ୍କା ବଢ଼ାଇ ଦେଲେ । ପାଢଶାଣୀ ତାଙ୍କ ଭୁବନେଶ୍ୱର ନୟାପଲ୍ଲୀ ବାସଭବନକୁ ଫେରି ଦରବାରରେ ବସିଲେ ଆଉ ହଜାରେ ଟଙ୍କାକୁ ସେହିଠାରେ ରଖିଦେଇ ଦରବାର ଆରମ୍ଭ କଲେ । ଏହି ସମୟରେ ପାଢଶାଣୀ କହିଲେ- ମୁଁ ଟିକିଏ ପରିସ୍ରା କରି ଆସୁଛି, ଆପଣମାନେ ବସିଥା'ନ୍ତୁ । ଦରବାର ସରିନାହିଁ, ଚାଲିବ । କିଛି ସମୟ ପରେ ପାଢଶାଣୀ ଦରବାରକୁ ଆସିଲେ । ଦରବାର ଚାଲିଲା । ବହୁ ସମୟ ପରେ ଜଣେ କିଏ କହିଲେ- ଆଜ୍ଞା, ମୋର ନିହାତି ୫୦୦ ଟଙ୍କା ଦରକାର । ପାଢଶାଣୀ କହିଲେ- ସଙ୍ଗେସଙ୍ଗେ ନେଇଯାଅ । କିନ୍ତୁ ଯେଉଁଠି ସେ ହଜାରେ ଟଙ୍କା ରଖିଥିଲେ ସେଠାକୁ ଚାହିଁଲା ବେଳକୁ ସେ ଟଙ୍କା ଆଉ ନାହିଁ । ପାଢଶାଣୀ 'ଥ'ହୋଇ କିଛି ସମୟ ରହିଗଲେ । ତା'ପରେ ହସିହସି କହିଲେ- ତୋ' ପାଇଁ ଯେଉଁ ଟଙ୍କା ଥିଲା ତାହା ଅନ୍ୟ କେହି ଅଭାବୀ ଲୋକ ନେଇଗଲାଣି । ତୁ ପରେ ଆସି ନେଇଯିବୁ । ଯେଉଁ ହଜାରେ ଟଙ୍କା ତାଙ୍କୁ ମିଳିଥିଲା ତାହା ତାଙ୍କ ପରିଶ୍ରମର ଟଙ୍କା ନୁହେଁ । ଯେଉଁଥିପାଇଁ ତାକୁ କେହି ଚୋରି କରି ନେଇଗଲାଣି । ଏହାପରେ ପାଢଶାଣୀ ଆଉ ସେହି ଟଙ୍କା ପ୍ରସଙ୍ଗ ପକାଇଲେ ନାହିଁ । କେବଳ କହିଲେ- ଯଦି ଘଂଟାଟି ଆଣିଥା'ନ୍ତି ତାହାର ଅବସ୍ଥା ମଧ୍ୟ ଏହିପରି ହୋଇଥା'ନ୍ତା । ■



# ନାରାୟଣଙ୍କ କଳା ଅବତାର



ପାରଳାଖେମୁଣ୍ଡି ବିଜେଡ଼ି ବିଧାୟକ ହେଉଛନ୍ତି ନାରାୟଣ ରାଓ । ଏମିତି ପୂର୍ବ ନିର୍ବାଚନରେ ସେ ସ୍ୱାଧୀନ ପ୍ରାର୍ଥୀ ହୋଇ ବି ହାରିଥିଲେ । କିନ୍ତୁ ବ୍ଲକ୍ ଅଧ୍ୟକ୍ଷ ସେ ହୋଇଥିଲେ । ବିଧାୟକ ହେବେ ବୋଲି ସେ ଆଇଓପ୍ପା ସ୍ୱାମୀଙ୍କ ପାଖରେ ମାନସିକ କରିଥିଲେ । ଯଦିଓ ଏହି ମାନସିକ ପାଳନ କରିବା ଭାରି କଷ୍ଟକର କିନ୍ତୁ ନାରାୟଣ ଏହି ମାନସିକ କରିଥିଲେ । ନାରାୟଣ କଳା ପୋଷାକ ପିନ୍ଧିଲେ । ପୁଣି ମୁଣ୍ଡରେ ଭସ୍ମ ବିଭୂତି ଲଗାଇଲେ । ୪୧ ଦିନ ପର୍ଯ୍ୟନ୍ତ ନାରାୟଣ ଏହି ମାନସିକ ପାଳନ କରିଲେ । କଳା ପୋଷାକକୁ ଛାଡ଼ିଦେଲେ ଅନ୍ୟ କୌଣସି ପୋଷାକ ସେ ପିନ୍ଧୁ ନଥିଲେ । କାହା ପାଖରେ ମଧ୍ୟ ସେ ଶୋଉନଥିଲେ । ପୁଣି ଖଟ ନୁହେଁ ତଳେ କଳା ଗାମୁଛା ପାରି ତା ଉପରେ ସେ ଶୋଉଥିଲେ । ପୁଣି ଯେତେ ଶୀତ

ହେଲେ ମଧ୍ୟ ଚାଦର ଘୋଡ଼ାଉ ନଥିଲେ । ଦିନକୁ ୩ ଥର ଗାଧୋଉଥିଲେ । ରାତି ୩ ଟାରୁ ଶଯ୍ୟା ତ୍ୟାଗ କରୁଥିଲେ । ଅନ୍ୟ କେହି ରୋଷେଇ କଲେ ସେ ଖାଉନଥିଲେ । ନିଜେ ରୋଷେଇ କରି ଖାଉଥିଲେ । ପୁଣି ବାସନରେ ମଧ୍ୟ ଖାଉନଥିଲେ । କଦଳୀ ପତ୍ରରେ ଖାଉଥିଲେ । ୪୧ ଦିନ ସରିଯିବା ପରେ ସେ କେରଳ ଗଲେ । ସେଠାରେ ଏହି ୪୧ ଦିନ ମଧ୍ୟରେ ସେ ପୂଜା ପାଠ କରିଥିବା ସାମଗ୍ରୀକୁ ନେଇ ବିସର୍ଜନ କଲେ । ଭାରି କଷ୍ଟରେ ପାଳୁଥିଲେ ଏହି ମାନସିକ ନାରାୟଣ । କେବେ ବି ଭାବିନଥିଲେ ନାରାୟଣ ଯେ ବିଜେପି, ବିଜେଡ଼ି ମେଂଟ ଭାଙ୍ଗିବ ଆଉ ତାଙ୍କୁ ବିଜେଡ଼ିରୁ ଟିକଟ ମିଳିବ ଏବଂ ସେ ବିଜୟୀ ହେବେ । ଯାହା ସେ ନ ଭାବିଥିଲେ ତାହା ହିଁ ଘଟିଗଲା । ନାରାୟଣ ଭାବିଛନ୍ତି ଆଇଓପ୍ପା ସ୍ୱାମୀଙ୍କୁ ମାନସିକ ଯାଚଙ୍ଗା କରିବାରୁ ଏଭଳି ସଫଳତା ପାଇଛନ୍ତି । ତେବେ ସାଧାରଣ ଲୋକ ନାରାୟଣଙ୍କ ଏହି ମାନସିକ ସମ୍ପର୍କରେ ଜାଣିପାରୁନାହାନ୍ତି । ଅନେକ ମଧ୍ୟ ନାରାୟଣଙ୍କ କଳା ପୋଷାକ ପିନ୍ଧାକୁ ଦେଖି ବେଳେବେଳେ ଚମକି ପଡୁଥିଲେ । କିଏ କହୁଥିଲେ ନାରାୟଣଙ୍କୁ ନକ୍ସଲ ନିଜ କବ୍‌ଜାକୁ ନେଇଗଲେଣି ବୋଲି । ଆଉ କିଏ କହୁଥିଲେ ନାରାୟଣ ବୋଧେ ମା କାଳୀଙ୍କର ପୂଜକ ହୋଇଗଲେଣି ବୋଲି । କିନ୍ତୁ ନାରାୟଣଙ୍କ ମନର କଥାକୁ କେହି ବି ବୁଝିପାରୁନଥିଲେ । ଯେଉଁ ନାରାୟଣଙ୍କ ବିଧାୟକ ହେବା ସ୍ୱପ୍ନ ଥିଲା ସେହି ନାରାୟଣ ବିଧାୟକ ହୋଇଯିବା ପରେ ଯେତେ କଷ୍ଟ ହେଲେ ମଧ୍ୟ ଆଇଓପ୍ପା ସ୍ୱାମୀଙ୍କ ଯାଚଙ୍ଗା ନିଶ୍ଚିତ କରିବେ ବୋଲି ଦୃଢ଼ ଥିଲେ । ୪୧ ଦିନ ଯାଚଙ୍ଗା ପାଳନ ପରେ ନାରାୟଣ ଯେତେବେଳେ ଯାଚଙ୍ଗା ଥିବା ବହୁ ସାମଗ୍ରୀ ଯାହାର ନାମ ହେଉଛି ଇରୁମୁଡ଼ି ତାକୁ ନେଇ କେରଳ ଗଲେ ସେହି ଦୃଶ୍ୟ ଦେଖିବାକୁ ନାରାୟଣଙ୍କ ନିକଟତମ ବ୍ୟକ୍ତିମାନେ ମଧ୍ୟ ଅପେକ୍ଷା କରିଥିଲେ । ଏହି ଇରୁମୁଡ଼ିକୁ ଖାଲି ମୁଣ୍ଡରେ ମୁଣ୍ଡେଇ ନେଇ ଯିବାକୁ ହୁଏ । ନାରାୟଣଙ୍କ ଏହି ଯାଚଙ୍ଗା ପାଳନକୁ ଦେଖି ବିଧାୟକ ହେବା ଯେ କେତେ କଷ୍ଟ ତାହା ପାରଳାଖେମୁଣ୍ଡି ଭୋଟରମାନଙ୍କ ମଧ୍ୟରେ ଚର୍ଚ୍ଚା ହୋଇଥିଲା । ■

## ତିନି ନେତା ଓ ନବୀନ



ତିନି ଭିନ୍ନ ସମୟରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଗୁଡ୍‌ବୁକ୍‌ରେ ଦଳର ଭିନ୍ନଭିନ୍ନ ନେତାମାନେ ରହିଥା'ନ୍ତି । ବିଜୁ ଯୁବ ଜନତା ଦଳ ସମ୍ମିଳନୀରେ ମଧ୍ୟ ତାଙ୍କ ଗୁଡ୍‌ବୁକ୍‌ରେ ତିନିଜଣ ନେତା ଥିଲେ । ସଭାକାର୍ଯ୍ୟ ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପାଖକୁ ତାଲିକା ଗଲା କିଏ ଭାଷଣ ଦେବେ ବୋଲି । ତାଲିକାକୁ ଉପରୁ ତଳ ପର୍ଯ୍ୟନ୍ତ ସେ ଦେଖିନେଲେ । ଏହାପରେ ତାଙ୍କ ଗୁଡ୍‌ବୁକ୍‌ରେ ଥିବା ତିନିଜଣଙ୍କ ନାମ ସେହି ତାଲିକାରେ ନଥିବାର ସେ ଦେଖିଲେ । ସଙ୍ଗେସଙ୍ଗେ ସେ ନିର୍ଦ୍ଦେଶ ଦେଲେ ସେହି ତିନିଜଣଙ୍କୁ ଭାଷଣ ଦେବା ନିମନ୍ତେ ସୁଯୋଗ ଦେବାକୁ । ଏହି ତିନିଜଣ ହେଲେ ସମ୍ବଲପୁର

ଲୋକସଭା ଆସନରେ ବିଜେଡି ପ୍ରାର୍ଥୀ ହୋଇ ପରାଜିତ ହୋଇଥିବା ରୋହିତ ପୂଜାରୀ, ନବୀନଙ୍କ ନିଜ ନିର୍ବାଚନମଣ୍ଡଳୀର ଜିଲା ଗଂଜାମର ଚିକିଟି ବିଧାୟିକା ଉଷା ଦେବୀ ଏବଂ ବଲାଙ୍ଗିର ସାଂସଦ କଳିକେଶ ସିଂହଦେଓ । ଏମିତି କଳିକେଶ ସିଂହଦେଓଙ୍କ ସହିତ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବେଳେବେଳେ ହସଖୁସି ହୋଇଥା'ନ୍ତି । କଳିକେଶ ତାଙ୍କ ସହିତ ଥଟ୍ଟା ପରିହାସ ମଧ୍ୟ ବେଳେବେଳେ କରିଥା'ନ୍ତି । ଏହାକୁ ହାଲ୍‌କା ଭାବେ ନେଇ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଆନନ୍ଦିତ ହେଉଥିବାର ଦେଖିବାକୁ ମିଳିଥାଏ । ଏହି ଦୃଷ୍ଟିରୁ କଳିକେଶ ସିଂହଦେଓଙ୍କୁ ଭାଷଣ ଦେବା ପାଇଁ ନବୀନ ଡାକିବା ସ୍ୱାଭାବିକ । ସେହିପରି ଗଂଜାମ ଜିଲାର ଦୁଇ ରାଣୀ ଭି ସୁଗ୍ଯାନ କୁମାରୀ ଓ ଉଷା ଦେବୀ ମଧ୍ୟ ନବୀନ ପଟ୍ଟନାୟକଙ୍କୁ ଅନେକ ସମୟରେ ସାକ୍ଷାତ କରି ଆଲୋଚନା କରିଥା'ନ୍ତି । ବିଜେଡି ରାଜନୀତିରେ ରାଜପରିବାରର ଏକ ପ୍ରଭାବ ରହିଛି ଏବଂ ଏହାକୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଗୋଷ୍ଠୀ ବୋଲି କୁହାଯାଉଛି । ଏହି ଦୃଷ୍ଟିରୁ ଉଷା ଦେବୀଙ୍କୁ ଭାଷଣ ଦେବା ପାଇଁ ନବୀନ ଚାହିଁବା ସ୍ୱାଭାବିକ ମଧ୍ୟ ଅଟେ । ରାତାରାତି କଂଗ୍ରେସରୁ ଆସି ବିଜେଡି ଟିକେଟରେ ସମ୍ବଲପୁରରେ ପ୍ରାର୍ଥୀ ହୋଇ ହାରିଯାଇଥିବା ରୋହିତ ପୂଜାରୀଙ୍କ ରାଜନୀତି ଖତମ୍ ହୋଇଗଲା ବୋଲି ଅନେକ ଭାବୁଥିଲେ । କିନ୍ତୁ ସାରା ଓଡ଼ିଶାରେ ଗୋଟିଏ ସମୟରେ ଯୁବ କଂଗ୍ରେସର ସଂଗଠନକୁ ସୁଦୃଢ଼ କରିପାରିଥିଲେ ରୋହିତ । ତାଙ୍କରି ନେତୃତ୍ୱରେ ଓଡ଼ିଶାରେ ଯୁବ କଂଗ୍ରେସ ବିଭିନ୍ନ ସମ୍ମିଳନୀ କରିଥିବାବେଳେ ଏଥିରେ ରାହୁଲ ଗାନ୍ଧୀ ମଧ୍ୟ ଯୋଗ ଦେଇଥିଲେ । ବିଜେଡିରେ ମିଶିଥିଲେ ମଧ୍ୟ ରୋହିତଙ୍କର ସାଂଗଠନିକ ଦକ୍ଷତାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଆଉ ଏହାକୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବେଶ୍ ଭଲ ଭାବେ ପରଖି ନେଇଥିଲେ । ଯେଉଁଥିପାଇଁ ରୋହିତଙ୍କୁ ମଧ୍ୟ ଭାଷଣ ଦେବା ନିମନ୍ତେ ନବୀନ ଚାହିଁଥିଲେ । ତେବେ ସମାବେଶରେ କଳିକେଶ, ଉଷା ଓ ରୋହିତଙ୍କୁ ନେଇ କିଛି ସମୟ ପାଇଁ ବେଶ୍ ଚର୍ଚ୍ଚା ହୋଇଥିଲା । ସେଦିନର ସେହି ମୁହୂର୍ତ୍ତରେ ନବୀନଙ୍କର ଗୁଡ୍‌ବୁକ୍‌ରେ ଏହି ତିନିଜଣ ଅଛନ୍ତି ବୋଲି ଚର୍ଚ୍ଚା ବି ଜୋର୍‌ଦାର୍ ହୋଇଥିଲା । ତେବେ ସମାବେଶରେ ନବୀନଙ୍କର ଗୁଡ୍‌ବୁକ୍‌ରେ ଥିବା କଳିକେଶ, ଉଷା ଓ ରୋହିତ କେତେଦିନ ନବୀନଙ୍କ ପାଖରେ ସେମାନଙ୍କର ଏହି ସ୍ଥିତି ବଜାୟ ରଖିପାରୁଛନ୍ତି ତାହା ଦେଖିବାକୁ ବାକି ରହିଛି । ■



## ମହାରଥୀଙ୍କ ଅଙ୍କଟା

ପ୍ରଦୀପ ମହାରଥୀ ପିପିଲିରୁ ୫ ଥର ବିଧାୟକ । ପୁଣି ବିଧାନସଭାରେ ଗୋଟିଏ ସମୟରେ ସରକାରୀ ଦଳ ମୁଖ୍ୟ ସଚେତକ ଥିଲେ । ବିଧାନସଭା ଚାଲିବା ସମୟରେ ଯଦି ଶାସକ ଦଳର ସବୁଠାରୁ କାହୁଆ ବିଧାୟକ ବୋଲି କାହାକୁ କୁହାଯିବ ତେବେ ସେ ହେଉଛନ୍ତି ପ୍ରଦୀପ ମହାରଥୀ । ଏମିତି

ମନ୍ତ୍ରିମଣ୍ଡଳ ଗଠନ ହେବା ବେଳକୁ ପ୍ରଦୀପ ମହାରଥୀ ମନ୍ତ୍ରୀ ହେବେ ବୋଲି ଚର୍ଚ୍ଚା ହୁଏ । କିନ୍ତୁ ତାଙ୍କ ନାମ ମନ୍ତ୍ରୀ ତାଲିକାରେ ନଥାଏ । ୨୦୦୯ରେ ମଧ୍ୟ ମନ୍ତ୍ରୀ ହେବେ ବୋଲି ତାଙ୍କର ଏକ ପ୍ରକାର ଧାରଣା ଥିଲା । କିନ୍ତୁ ଶେଷ ବେଳକୁ ସେ ମନ୍ତ୍ରୀ ହେଲେ ନାହିଁ । ପୁଣି ଗୋଟିଏ ମନ୍ତ୍ରୀ ପଦ ଖାଲି ରହିଲା ପଛେ ମହାରଥୀଙ୍କୁ ମନ୍ତ୍ରୀ କରାଗଲା ନାହିଁ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ବିଭିନ୍ନ ସମୟରେ ପ୍ରଦୀପ ମହାରଥୀ ସାକ୍ଷାତ ବି କରିଛନ୍ତି । ତାଙ୍କୁ କୁଆଡ଼େ ନବୀନ ପଟ୍ଟନାୟକ ମନ୍ତ୍ରୀ ହେବେ ବୋଲି ବିଭିନ୍ନ ସମୟରେ ଯେଭଳି ପ୍ରତିଶ୍ରୁତି ଦେଉଥିଲେ ଏବେ ବି ସେମିତି ଦେଉଛନ୍ତି । ତେବେ ପ୍ରଦୀପ ମହାରଥୀ ଯେତେବେଳେ ଭାଷଣ ଦିଅନ୍ତି ସେତେବେଳେ ତାଙ୍କ ଭାଷଣ ଶୁଣି ଉପସ୍ଥିତ କର୍ମୀ ଓ ନେତାମାନେ ବେଶ୍ ଉତ୍ସାହିତ ହୋଇଯାଆନ୍ତି । ତାଙ୍କ ଭାଷଣରେ ଅନେକ ଅକାଟ୍ୟ ସତ୍ୟ ଥାଏ । ଏକ ସଭାରେ ଭାଷଣ ଦେବା ନିମନ୍ତେ ପ୍ରଦୀପ ମହାରଥୀଙ୍କ ନାମ ପଢ଼ାଗଲା । ସ୍ୱଭାବ ସୁଲଭ ଢଙ୍ଗରେ ପ୍ରଦୀପ ମହାରଥୀ ଭାଷଣ ଦେଲେ- ସେ ବିଜୁ ପଟ୍ଟନାୟକଙ୍କୁ ଭଲ ପାଉଥିଲେ, ଏବେ ନବୀନ ପଟ୍ଟନାୟକଙ୍କୁ ଭଲ ପାଉଛନ୍ତି । ତେବେ ନବୀନ ପଟ୍ଟନାୟକଙ୍କୁ ଯେତେ ଭଲ ପାଇଲେ ମଧ୍ୟ ତାହାର କିଛି ମୂଲ୍ୟ ନାହିଁ । ସବୁ ହେଉଛନ୍ତି ପ୍ୟାରୀବାବୁ । ତାଙ୍କର ଅନ୍ତରଆତ୍ମା କହୁଛି ପ୍ୟାରୀବାବୁ ହେଉଛନ୍ତି ଦଳର ଦିଗ୍‌ଦର୍ଶକ । ନବୀନ ପଟ୍ଟନାୟକ ଅର୍ଜୁନ ହେଲେ ପ୍ୟାରୀବାବୁ ହେଉଛନ୍ତି ଶ୍ରୀକୃଷ୍ଣ । ଏଠି ତାଙ୍କର ଆଉ କିଛି କରିବାର ନାହିଁ । ସେ ଅର୍ଜୁନ ହୋଇପାରିବେ ନାହିଁ କି ଶ୍ରୀକୃଷ୍ଣ ବି ହୋଇପାରିବେ ନାହିଁ । କିନ୍ତୁ ଏକଲବ୍ୟ ହୋଇପାରିବେ । ତାଙ୍କୁ ଏହି ସୁଯୋଗ ପ୍ୟାରୀବାବୁ ଦିଅନ୍ତୁ । ପ୍ୟାରୀବାବୁ ଶ୍ରୀକୃଷ୍ଣ ହୋଇ ତାଙ୍କର ବିଶ୍ୱରୂପ ଦେଖାଇ ଦିଅନ୍ତୁ । ପ୍ୟାରୀବାବୁ ମୁହଁ ଖୋଲିଲେ ଛାତ୍ର ଓ ଯୁବକମାନେ ସାତସମୁଦ୍ର ଲଂଘିଯିବେ । ମାନେ ବାଲିଯାତ୍ରା ପଡ଼ିଆରୁ ସମସ୍ତେ ଦିଲ୍ଲୀ ପର୍ଯ୍ୟନ୍ତ ଚାଲିଯିବେ । ବିଧାନସଭାରେ ସରକାରଙ୍କୁ ହଇରାଣ କରିବା ପାଇଁ ଖଣି ଆଉ ଚାଷୀ ପ୍ରସଙ୍ଗ ବିରୋଧୀ ଦଳ ଆଣିବା ପାଇଁ ଯୋଜନା କରିଛି । ସେମାନଙ୍କର ଦୁର୍ନୀତିର ପେଡ଼ି ମଧ୍ୟ ଖୋଲିଦିଆଯିବ । ସରକାରରେ କଂଗ୍ରେସର କିଛି ମୁଷ୍ଟିମେୟ ଅଫିସରମାନେ ରହି ସରକାରଙ୍କୁ ବଦ୍‌ନାମ କରୁଛନ୍ତି । ମନ୍ତ୍ରୀମାନେ ସବୁବେଳେ କହୁଛନ୍ତି ଯେ, ତୃତୀୟ ମହଲାରେ ସବୁକାମ ହେଉଛି । ତେଣୁ ମନ୍ତ୍ରୀମାନଙ୍କୁ ପରାମର୍ଶ ସେମାନେ ପ୍ରଥମ ଆଉ ଦ୍ୱିତୀୟ ମହଲା ଛାଡ଼ି ତୃତୀୟ ମହଲାରେ ବସନ୍ତୁ । କେତେକ ମୁଷ୍ଟିମେୟ ଅଫିସର ମଧ୍ୟ ମନ୍ତ୍ରୀମାନଙ୍କୁ ମାନୁନାହାନ୍ତି । ଦଳର ସଂଗଠନ ବୃଦ୍ଧି କରିବା ପାଇଁ ପ୍ରତି ଜିଲାରେ ତିନିମାସରେ ଥରେ ଲେଖାଏଁ ଦଳର ବୈଠକ ବସୁ ଏବଂ ପ୍ୟାରୀମୋହନ ମହାପାତ୍ର ତାହାର ସମୀକ୍ଷା କରନ୍ତୁ । ଯେଉଁ ଯୁବ ବିଧାୟକମାନେ ବିଧାନସଭାକୁ ଆସିଛନ୍ତି ଯଦିଓ ସେମାନଙ୍କୁ ଦଳର ସଭାପତି ଟିକେଟ ଦେଇଛନ୍ତି କିନ୍ତୁ ସେମାନଙ୍କ ପଛରେ ମୋହର ବାଜିଛି ପ୍ୟାରୀମୋହନ ମହାପାତ୍ରଙ୍କର । ନବୀନ ପଟ୍ଟନାୟକଙ୍କର କିପରି ଖାଇବା ଖର୍ଚ୍ଚ ନଥାଏ ତାହା ମଧ୍ୟ ପ୍ରଦୀପ ମହାରଥୀ ଉଲ୍ଲେଖ କରିଥିଲେ । ସେ କହିଲେ- ନବୀନ ପଟ୍ଟନାୟକଙ୍କର ବ୍ରେକ୍‌ଫାଷ୍ଟରୁ ଆରମ୍ଭ କରି ଡିନର ପର୍ଯ୍ୟନ୍ତ ଖାଇବାର ଖର୍ଚ୍ଚ ସେମିତି କିଛି ନୁହେଁ। ହାରାହାରି ଗୋଟିଏ ମିଲ୍ ୪୩ରୁ ୪୫ ଟଙ୍କା ଭିତରେ । କେବଳ

ଆଇସ୍‌କ୍ରିମ୍ ଟିକିଏ ଦାମ୍ ହୋଇଯାଇଥାଏ । ଏମିତି ପ୍ରଦୀପ ମହାରଥୀ ଯେତେବେଳେ ଭାଷଣ ଦିଅନ୍ତି ସେତେବେଳେ କେବେକେବେ ଅନେକ କଥା କହିଦିଅନ୍ତି । ଯାହା ନ କହିବା କଥା ତାହା ବି କହିଦିଅନ୍ତି । ବୋଧହୁଏ ପ୍ରଦୀପ ମହାରଥୀ ଭାଷଣ ଶେଷ ବେଳକୁ ଜାଣିପାରିଲେ ସେ କେବେକେବେ କେତେକ ଅପ୍ରିୟ ସତକଥା କହିଦେଇଛନ୍ତି ବୋଲି । ଯେଉଁଥିପାଇଁ ଭାଷଣ ଶେଷରେ ସେ କହିଲେ- ସେ ଯାହା କିଛି କହିଛନ୍ତି ତାହା ଭାବପ୍ରବଣରେ । ତେଣୁ ଯଦି କିଛି ଭୁଲ୍ କଥା କହିଦେଇଛନ୍ତି ତେବେ ତାଙ୍କୁ ସମସ୍ତେ କ୍ଷମା କରିବେ । ମହାରଥୀଙ୍କ ଏହି ଭାଷଣକୁ ବେଶ୍ ଆଗ୍ରହର ସହ ଶୁଣୁଥିଲେ କର୍ମୀ ଓ ନେତାମାନେ । ଯେଉଁଥିପାଇଁ ବହୁବାର ତାଳି ମାଡ଼ ହୋଇଥିଲା । କିନ୍ତୁ ତାଳିମାଡ଼ ହେଲେ ଯେ ମନ୍ତ୍ରୀପଦ ମିଳିଯାଏ ସେ ସମ୍ପର୍କରେ ଅଧିକ ଅଭିଜ୍ଞତା ଅଛି ମହାରଥୀଙ୍କର । ମନ୍ତ୍ରୀ ହେବାକୁ ହେଲେ ଛୁପାରୁସ୍ତମ ହେବାକୁ ପଡ଼ିବ ଆଉ ପ୍ରଦୀପ ମହାରଥୀ ସତ କଥା ନ କହି ଛୁପାରୁସ୍ତମ ହୁଅନ୍ତୁ । ଦେଖିବେ ମନ୍ତ୍ରୀପଦ ଆପେଆପେ ତାଙ୍କ ପାଖକୁ ଆସିଯିବ । ■

## ପ୍ରସନ୍ନଙ୍କ ମଣି



ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ପ୍ରସନ୍ନ ଆଚାର୍ଯ୍ୟଙ୍କ ଭାଷଣ ବେଳେବେଳେ ଅତି ଚମତ୍କାର ହୋଇଥାଏ । ତାଙ୍କର ଭାଷଣ ମଧ୍ୟ ସଭାରେ ଉପସ୍ଥିତ ଶ୍ରୋତାଙ୍କ ମନକୁ ବେଶ୍ ଛୁଇଁ ଥାଏ । ଏମିତି ଏକ ସଭାରେ ପ୍ରସନ୍ନ କହିଲେ- ୧୯୯୬ ମସିହାରେ ସେତେବେଳେ ଯୁବ ଓ ଛାତ୍ର ଜନତା ଦଳର ଏକ ସମାବେଶ ପ୍ରତାପ ଜେନାଙ୍କ ନେତୃତ୍ୱରେ ହୋଇଥିଲା । ଏଥିରେ ବିଜୁ ପଟ୍ଟନାୟକ ଯୋଗ ଦେଇଥିଲେ । ବିଜୁଙ୍କ ଭାଷଣରୁ ସେତେବେଳେ କିଛି ଠଉରେଇ ହେଉ ନଥିଲା । ସେଦିନ ସେ ଅସୁସ୍ଥ ଥିଲେ । ଏହାସତ୍ତ୍ୱେ ଛାତ୍ର ଓ ଯୁବକମାନଙ୍କୁ ରାଜନୀତିରେ ସବୁବେଳେ ଉତ୍ସାହିତ କରିଆସୁଥିବାରୁ ସେହି ଉତ୍ସବକୁ ସେ ଆସିଥିଲେ । ସେ ସବୁବେଳେ ଠିଆ ହୋଇ ଭାଷଣ ଦେଉଥିଲେ । କିନ୍ତୁ ସେଠାରେ ବ୍ୟତିକ୍ରମ ଦେଖିବାକୁ ମିଳିଥିଲା । ଅସୁସ୍ଥତା ଯୋଗୁ ବିଜୁ ପଟ୍ଟନାୟକ ସେଦିନ ବସିକରି ଭାଷଣଦେଇଥିଲେ । ତାଙ୍କ ଭାଷଣରେ ସେ ଅନେକ କଥା କହିଥିଲେ । କିନ୍ତୁ ଗୋଟିଏ କଥାକୁ କେହି ଗୁରୁତ୍ୱ ଦେଇ ନଥିଲେ । ସେ କହିଥିଲେ ଏହା ବୋଧହୁଏ ଛାତ୍ର ଓ ଯୁବକମାନଙ୍କୁ ମୋର ଶେଷ ଉଦ୍‌ବୋଧନ । ମୁଁ ଯାଉଛି । ପ୍ରକୃତରେ ବିଜୁବାବୁଙ୍କର ତାହା ଥିଲା ଶେଷ ଉଦ୍‌ବୋଧନ ଆଉ ସେ ଗଲେ ଯେ ଫେରିଲେ ନାହିଁ । ସେହି ସଭା ଏକ ସଫଳ ସଭା ଥିଲା । କିନ୍ତୁ ସେହି ସଭାବେଳକୁ ସତେ ଯେମିତି ବିଜୁବାବୁ ଜାଣିଯାଇଥିଲେ ତାଙ୍କର ଦେହାନ୍ତ ହେବ ବୋଲି । ଏଠାରେ ଯେଉଁ ସଭା ହେଉଛି ତାହାକୁ ମଧ୍ୟ ବିଜୁବାବୁ ସ୍ୱର୍ଗରେ ଥାଇ ଦେଖୁଥିବେ । ଯେଉଁ ବାର୍ତ୍ତା ବିଜୁବାବୁ ୧୯୯୬ ମସିହା ସଭାରେ ଦେଇଥିଲେ ତାହାକୁ ଯୁବଛାତ୍ର କେତେଦୂର ଆଗେଇ ନେଇଛନ୍ତି ତାହା ମଧ୍ୟ ବିଜୁବାବୁ ସ୍ୱର୍ଗରେ ଥାଇ ପରଖୁ ଥିବେ । ବିଜୁବାବୁଙ୍କର ସ୍ୱପ୍ନକୁ ନବୀନବାବୁ ସାକାର କରିବା ପାଇଁ ଉଦ୍ୟମ ଜାରି ରଖିଛନ୍ତି । ଏବେ

ବିରୋଧୀମାନେ ଖଣି ଦୁର୍ନୀତିକୁ ନେଇ ହୋହଲ୍ଲା କରୁଛନ୍ତି କିନ୍ତୁ ବିରୋଧୀ ଜାଣିନାହାନ୍ତି ଯେ, ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ହେଉଛନ୍ତି ମଣି ବୋଲି । ଖଣି ନେଇ ଯେତେ ପାଟିତୁଣ୍ଡ କଲେ ମଧ ମଣିରେ ତାହା ସବୁ ଭସ୍ମ ହୋଇଯିବ ଆଉ ଏହି ମଣି ସବୁବେଳେ ଝଲ୍‌କୁ ଥିବ । କହୁକହୁ ପ୍ରସନ୍ନ ଯୁବକମାନଙ୍କର ମନର କଥା କହିଦେଲେ । ଏମିତି ତ ନବୀନ ପଟ୍ଟନାୟକଙ୍କ ହ୍ୟାଟ୍ରିକ୍ ମୁଖ୍ୟମନ୍ତ୍ରୀ ସରକାର ବର୍ଷକରୁ ଅଧିକ ସମୟ ହୋଇଗଲାଣି । କିନ୍ତୁ ଯୁବକମାନେ ଯେଉଁ ଆଶା ରଖିଛନ୍ତି ତାହା ଏଯାବତ୍ ପୂରଣ ହୋଇନାହିଁ । ଏ ସମ୍ପର୍କରେ ସୂଚନା ଦେବାକୁ ପ୍ରସନ୍ନ ଆଚାର୍ଯ୍ୟ ଆଉ ଟିକିଏ ଆଗକୁ ଚାଲିଗଲେ । ସେ କହିଲେ- ଏହି ସଭାରେ ମଧ ଗୁଂଜରଣ ସୃଷ୍ଟି ହେଉଛି ନେତାମାନେ ସବୁ ଭାଷଣ ମାରୁଛନ୍ତି କିନ୍ତୁ କର୍ମୀଙ୍କ କଥାକୁ କେହି ବୁଝୁନାହାନ୍ତି । ସେ ମଧ ଏ କ୍ଷେତ୍ରରେ ନବୀନ ପଟ୍ଟନାୟକଙ୍କୁ ଅନୁରୋଧ କରିବାକୁ ଭୁଲିଲେ ନାହିଁ । ସେ କହିଲେ- ଦଳ କ୍ଷମତାରେ ଅଛି । ଶୃଙ୍ଖଳା ଓ ସଂଯମତା ରକ୍ଷା କରିବା ସମସ୍ତଙ୍କର କର୍ତବ୍ୟ । ଶୃଙ୍ଖଳିତ ହୋଇ ଦଳରେ କାମ କରିବା ଦରକାର । ଯୋଗ୍ୟତା ଦେଖି ନବୀନ ବାବୁ ଥଇଥାନ କରିବେ । ପ୍ରସନ୍ନଙ୍କର ଏହି ଭାଷଣ ସେଦିନ ସମସ୍ତଙ୍କର ମନକୁ ବେଶ୍ ପାଇଥିଲା । ତେବେ ବିଜେଡ଼ି ସରକାରରେ ଏକ ଧାରଣା ଅଛି ଯେ - ପାଉ ପାଉ ଯିବ ବରଷେ ବୋଲି । ଦେଖାଯାଉ କେତେ ବର୍ଷ ବିତିଯାଉଛି ଯେଉଁମାନେ ପାଇବା ପାଇଁ ଅପେକ୍ଷା କରିଛନ୍ତି । ■

## ଗୀତ ଓ ପାଟ୍ଟଶାଣୀ




ବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ଏମିତି ଭାଷଣ ଦେଉଦେଉ ଅନେକ ସମୟରେ ଆଶୁକବି ହୋଇଯାଆନ୍ତି । ଏମିତି ସେଦିନ ଭାଷଣ ଦେଉଦେଉ ସେ ହୋଇଗଲେ ଆଶୁକବି ଆଉ ତୁରନ୍ତ କବିତା ଗାନ କଲେ -

ଶୁଣ ଭାଇ ମହାଭାରତ ପୁରାଣ,
ଆଧୁନିକ ରାଜନୀତିରେ କୃଷ୍ଣ ଯଦି ହେଲେ ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ,
ମୁହଁରେ ଶଙ୍ଖଧ୍ୱନୀ ଦେଇ ବିଜେପି କଂଗ୍ରେସର କଲେ ସେ କଳା ହରଣ ।
ତାଙ୍କ ସାଥୀରେ ଅଛନ୍ତି ସଖାସହୋଧର ଅର୍ଜୁନ ବରେଣ୍ୟ ସାଂସଦ ପ୍ୟାରୀମୋହନ,
ତାଙ୍କ ପଛରେ ଅଛି ମୁର୍ଖ ପ୍ରସନ୍ନ,
ମନ୍ତ୍ରୀ, ବିଧାୟକ, କର୍ମୀଗଣ,
ଆମ ସମସ୍ତଙ୍କ ପଛରେ ଅଛନ୍ତି ଜନସାଧାରଣ ।
ହେ ଯୁବକ ଦଳ,
କାଳ ବିଳମ୍ବ ନକରି ଚଳାଅ ରଣ ।

ପ୍ରସନ୍ନ ପାଟ୍ଟଶାଣୀଙ୍କର ଏହି କବିତା ସେଠାରେ ଉପସ୍ଥିତ ଥିବା ବିଜୁ ଯୁବ ଜନତା ଦଳର

କର୍ମୀ ଓ ନେତାଙ୍କ ମଧ୍ୟରେ ବେଶ୍ ହାସ୍ୟରୋଳ ସୃଷ୍ଟି କରିଥିଲା । ଏମିତି ତ ପ୍ରସନ୍ନ ଯେଉଁ ସଭାକୁ ଯାଆନ୍ତି ତାଙ୍କର ଭାଷଣ ଶୁଣିବାକୁ ଲୋକେ ଅପେକ୍ଷା କରିଥା'ନ୍ତି । ଏଠାରେ ମଧ୍ୟ ଅନୁରୂପ ପରିସ୍ଥିତି ସୃଷ୍ଟି ହୋଇଥିଲା । ପ୍ରସନ୍ନ କବିତା ବୋଲିସାରିବା ପରେ ଆରମ୍ଭ କଲେ ତାଙ୍କ ଭାଷଣ । କହିଲେ- କିଏ ଟୋକା । ଏଠି ଯେଉଁମାନେ ଟୋକା ବୋଲି ଆସିଛନ୍ତି ସେମାନେ ଟୋକା ନା ୬୦ ବର୍ଷ ପାର ହୋଇଯାଇଥିବା ନେତାମାନେ ଟୋକା । ସେ କହିଲେ- ଯେଉଁମାନେ ଦିନରାତି ଅହରହ ପରିଶ୍ରମ କରନ୍ତି ସେମାନେ ହେଉଛନ୍ତି ଟୋକା ଆଉ ଟୋକା ଯଦି ଦିନରାତି ଶୋଇବ ତେବେ ତାକୁ କୁହାଯିବ ବୁଢ଼ା । ୩୦ ବର୍ଷ ବୟସରେ ଯିଏ ମାଲା ଦଦରା ପରି ଘୁମଉଥିବ ତାକୁ ଟୋକା କୁହାଯିବ ନାହିଁ । ଟୋକା ହେବ ସିଏ, ଯିଏ ପୁଲ୍‌ଦମ୍‌ରେ କାମ କରୁଥିବ । ଏହି ଦୃଷ୍ଟିରୁ ବିଜୁ ଜନତା ଦଳର ଟୋକା ହେଉଛନ୍ତି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଏବଂ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ନବୀନ ପଟ୍ଟନାୟକ ଏବେ ସବୁ ରେକର୍ଡ଼ ଭାଙ୍ଗି ସାରିଲେଣି । ସାରା ଭାରତବର୍ଷର ଏକନମ୍ବର ଟୋକା ହେଉଛନ୍ତି ନବୀନ ପଟ୍ଟନାୟକ । ଆଉ ତାଙ୍କ ପଛକୁ ଟୋକା ହୋଇ ରହିଛନ୍ତି ପ୍ୟାରୀମୋହନ ମହାପାତ୍ର । ପ୍ରସନ୍ନ ଏହି ଭାଷଣ ଦେବା ବେଳକୁ ଜୋରଦାର୍ ତାଳିମାଡ଼ ହୋଇଥିଲା । ମାନିବାକୁ ପଡ଼ିବ ପ୍ରସନ୍ନଙ୍କୁ । କବିତା ଗାନକରି ସାହିତ୍ୟ ଚର୍ଚ୍ଚା ଯେ ସେ କରନ୍ତି ତାହାନୁହେଁ। କବିତା ହିଁ ତାଙ୍କ ପାଇଁ ହୋଇଯାଇଛି ରାଜନୀତି ଚର୍ଚ୍ଚା । ■

## ବିକ୍ରମଙ୍କ ଦାଢ଼ି



ବିଜେଡିରେ ନେତାଙ୍କ ଦାଢ଼ି କଥା କୁହାଗଲେ ଅନେକ ବୁଝିବେ ଯେ, ଭୁବନେଶ୍ୱର ସାଂସଦ ପ୍ରସନ୍ନ କୁମାର ପାଟ୍ଟଶାଣୀଙ୍କ ଦାଢ଼ି ବୋଲି । କିନ୍ତୁ ଏଠାରେ ଯେଉଁ ଦାଢ଼ି କଥା ଉଲ୍ଲେଖ କରାଯାଉଛି ତାହା ପ୍ରସନ୍ନ ପାଟ୍ଟଶାଣୀଙ୍କ ଦାଢ଼ି ନୁହେଁ । ଯଦିଓ ତାଙ୍କ ଦଳ ବିଜେଡି କିନ୍ତୁ ପ୍ରସନ୍ନଙ୍କ ପରି ଦାଢ଼ିକୁ ନେଇ ସେ ବାବା ପରିଚୟ ଲାଭ କରିନାହାନ୍ତି । ସେ ହେଲେ ଗ୍ରାମ୍ୟ ଉନ୍ନୟନ, ଆଇନ ମନ୍ତ୍ରୀ ବିକ୍ରମ କେଶରୀ ଆରୁଖ । ବିକ୍ରମଙ୍କୁ ବିନା ଦାଢ଼ିରେ ବୋଧହୁଏ କେହି ବିଧାନସଭାରେ ଦେଖି ନଥିବେ । ଅବଶ୍ୟ ପାଠପଢ଼ା ସରୁସରୁ ବିକ୍ରମ ହୋଇଗଲେ ଭଂଜନଗର ବ୍ଲକର ଅଧ୍ୟକ୍ଷ । କେଜାଣି କାହିଁକି ଦାଢ଼ି ରଖିବାକୁ ତାଙ୍କର ମନ ହେଲା । ଏମିତି ପ୍ରଥମେ କେତେକ ଦାଢ଼ି ଭଲ ଲାଗୁନାହିଁ ବୋଲି ତାଙ୍କୁ କହିଥିଲେ । କିନ୍ତୁ ସେମାନଙ୍କ କଥାକୁ ନଶୁଣି ବିକ୍ରମ ଦାଢ଼ି ରଖିଲେ । ଏମିତି ତ ବିକ୍ରମଙ୍କ ଚେହେରା ଧଳା ଗହମ ପରି । ମାନେ ଗୋରା ତକ୍‌ତକ୍ । ଆଉ ଗୋରା ଗାଲରେ କଳା ଦାଢ଼ି କ୍ରମେ ତାଙ୍କୁ ଆପଣାଇ ନେଲା । ଅନେକ ମଧ୍ୟ ବିକ୍ରମଙ୍କ ଅନୁପସ୍ଥିତରେ ତାଙ୍କୁ ଦାଢ଼ିଭାଇ ବୋଲି ସମ୍ବୋଧନ କରୁଥିବାର ଦେଖାଯାଇଥିଲା । ଆଉ ଦାଢ଼ି ହୋଇଗଲା ବିକ୍ରମଙ୍କର ପରିଚୟ । କିନ୍ତୁ ସମୟ ଆସିଲା ବିକ୍ରମଙ୍କୁ ଦାଢ଼ି କାଟିବାକୁ ପଡ଼ିଲା । ଯେତେବେଳେ ତାଙ୍କର ବାହାଘର ହେଲା ସେତେବେଳେ ତାଙ୍କୁ ଦାଢ଼ି କାଟିବା ପାଇଁ କୁହାଗଲା । ବିକ୍ରମ କିନ୍ତୁ ଅରାଜି

ହେଉଥିଲେ ଦାଢ଼ି କାଟିବା ପାଇଁ । କିନ୍ତୁ ତାଙ୍କ ପତ୍ନୀଙ୍କୁ ଦାଢ଼ି ପସନ୍ଦ ହୋଇ ନପାରେ ବୋଲି କେଜାଣି କାହିଁକି ବିକ୍ରମଙ୍କ ମନରେ ଆଶଙ୍କା ଉପୁଜିଲା । ଶେଷରେ ବିକ୍ରମ ଦାଢ଼ି କାଟିଲେ ଆଉ ତାଙ୍କର ଦାଢ଼ି ନଥିବା ମୁହଁରେ ବାହାଘର ହେଲା । ବାହାଘର ପରେ ଭୋଜି ଦେଲେ ବିକ୍ରମ । ରାଜନେତା ହୋଇଥିବାରୁ ତାଙ୍କ ନିର୍ବାଚନମଣ୍ଡଳୀ ଭଂଜନଗରର ସବୁ ଗାଁର ଲୋକଙ୍କୁ ସେ ଭୋଜିକୁ ନିମନ୍ତ୍ରଣ କଲେ । ନିର୍ବାଚନମଣ୍ଡଳୀ ବାସିନ୍ଦା ଭୋଜି ଖାଇବା ପୂର୍ବରୁ ଓ ପରେ ବିକ୍ରମଙ୍କୁ ଖୋଜିଲେ । ବିକ୍ରମ ସେମାନଙ୍କୁ ଭୋଜି ଖାଇଲେ କି, କେମିତି ଲାଗିଲା ଭୋଜି ପ୍ରଭୃତି ବହୁ କଥା ପଚାରିଲେ । କିନ୍ତୁ ସେମାନେ ଜାଣିପାରିଲେ ନାହିଁ ଯେ, ବିକ୍ରମ କେଶରୀ ଆରୁଖ ତାଙ୍କ ସହିତ କଥାବାର୍ତ୍ତା ହେଉଛନ୍ତି ବୋଲି । ସେମାନେ ବିକ୍ରମଙ୍କ ସହିତ ହସିହସି କଥା ହେଲେ ଆଉ ଚାଲିଗଲେ । କିଛି ସମୟ ପରେ ପୁଣି ଫେରିଆସିଲେ ଆଉ କହିଲେ- ଆପଣ ଆମ ସହିତ ଏତେ ଆତ୍ମୀୟତାର ସହ କଥା ହେଉଥିଲେ ଆଉ ଆମେ ଜାଣିପାରୁ ନଥିଲୁ ଯେ ଆପଣ ହେଉଛନ୍ତି ବିକ୍ରମ କେଶରୀ ଆରୁଖ ବୋଲି । ଆପଣଙ୍କ ମୁହଁରେ ଦାଢ଼ି ନଥିବାରୁ ଆପଣଙ୍କୁ ଚିହ୍ନି ହେଉନାହିଁ । ଦାଢ଼ି କାଟନ୍ତୁ ନାହିଁ । ଏଣିକି ସବୁବେଳେ ଦାଢ଼ି ରଖନ୍ତୁ । ଆଉ ଦାଢ଼ି କାଟିଦେଲେ ଲୋକେ ଆପଣଙ୍କୁ ଚିହ୍ନି ପାରିବେ ନାହିଁ । ସେହିଦିନ ଠାରୁ ବିକ୍ରମ ଆଉ ଦାଢ଼ି କାଟିବା ପାଇଁ ମନ ବଳାଉ ନାହାନ୍ତି । ଯଦି କେହି ଦାଢ଼ି କାଟିବା କଥା ଉଠାଉଛନ୍ତି ତା' ହେଲେ ବିକ୍ରମଙ୍କ ପାଟିରୁ ଆପେଆପେ ବାହାରି ଆସୁଛି- ଆରେ ବାବା ନା ନା । ■

## ସିମ୍ପଲ ବିଧାୟକ



ବିଜେଡିର ପ୍ରଭାତ ବିଶ୍ୱାଳ ହେଉଛନ୍ତି ଚୌଦ୍ୱାର-କଟକ ବିଧାୟକ । ୨୦୦୪ ମସିହାରେ ସେ ସ୍ୱାଧୀନ ସଭ୍ୟ ଭାବେ ଜିତିଥିବା ବେଳେ ବିଜେଡିର ସହଯୋଗୀ ସଭ୍ୟ ହୋଇଥିଲେ । ୨୦୦୯ରେ ବିଜେଡି ଟିକେଟରେ ସେ ଚୌଦ୍ୱାର-କଟକରୁ ପ୍ରତିଦ୍ୱନ୍ଦିତା କରି ବିଜୟୀ ହେଲେ । ବିଧାୟକ କଲୋନୀରେ ପୂର୍ବରୁ ତାଙ୍କୁ ମିଳିଥିଲା ଏଫ୍ ୧୦/୧ କ୍ୱାର୍ଟର । ଏଥର ମଧ୍ୟ ସେହି କ୍ୱାର୍ଟରରେ ସେ ରହୁଛନ୍ତି । ପ୍ରଭାତଙ୍କ କ୍ୱାର୍ଟରକୁ ଚାଲିଗଲେ ତାହା ଅନ୍ୟ ବିଧାୟକଙ୍କ କ୍ୱାର୍ଟର ଠାରୁ କେତେ ଯେ ବ୍ୟତିକ୍ରମ ତାହା ବାରି ହୋଇଯିବ । ଏଠାରେ ବିଧାନସଭା ଯୋଗାଇ ଦେଇଥିବା ସାମଗ୍ରୀ ଛଡ଼ା ପ୍ରଭାତଙ୍କର ନିଜସ୍ୱ କୌଣସି ସାମଗ୍ରୀ ନାହିଁ । ବିଧାନସଭା ଯେଉଁ ଖଟ ଦେଇଛି ସେହି ଖଟରେ ପ୍ରଭାତ ଶୁଅନ୍ତି । ଚୌକି, ଟେବୁଲ ଓ ଅନ୍ୟାନ୍ୟ ସମଗ୍ରୀ ଯେତିକି ବିଧାନସଭା ଦେଇଛି ତା'ଠାରୁ ଅଧିକ ସାମଗ୍ରୀ ପ୍ରଭାତ ତାଙ୍କ କ୍ୱାର୍ଟରରେ ରଖିନାହାନ୍ତି । ପ୍ରଭାତ ଯେତେବେଳେ କଟକରୁ ଆସନ୍ତି କିମ୍ବା ଅନ୍ୟ କାମରେ ବାହାରକୁ ଯାଇଥିବା ବେଳେ ଏହି କ୍ୱାର୍ଟରକୁ ଫେରନ୍ତି ସେତେବେଳେ ତାଙ୍କ ହାତରେ ଥାଏ ଆଟାଚିଟିଏ । ଏହି ଆଟାଚିକୁ ଛାଡ଼ିଦେଲେ କ୍ୱାର୍ଟର ଭିତରେ ପ୍ରଭାତଙ୍କର

କୌଣସି ନିଜସ୍ୱ ସାମଗ୍ରୀକୁ ଦେଖିବାକୁ ମିଳିବ ନାହିଁ । ବିଧାୟକ କଲୋନୀରେ ପ୍ରଭାତଙ୍କ ପରି ଜଣେ ସାଧାସିଧା ବିଧାୟକଙ୍କୁ ଦେଖିବା ମୁସ୍କିଲ ହୋଇଯିବ ।  ଏବେ ବହୁ ନୂଆ ବିଧାୟକ କ୍ୱାର୍ଟର ପାଇଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ନିଜ ଖର୍ଚ୍ଚରେ କ୍ୱାର୍ଟର ସଜାଇଛନ୍ତି । ପ୍ରଭାତ କିନ୍ତୁ ଏସବୁଠାରୁ ଦୂରରେ । ଧଳା ପୋଷାକ ପିନ୍ଧୁଥିବା ପ୍ରଭାତ ସତେ ଯେମିତି ହୋଇଯାଇଛନ୍ତି ଜଣେ ସମାଜସେବକ । ଅର୍ଥାତ୍ ସାଧାରଣ ଜୀବନଯାପନକୁ ସେ ଆଦରି ନେଇଛନ୍ତି । ଏବେ ପ୍ରଭାତଙ୍କୁ ନେଇ ଚାଲିଛି ବିଧାୟକ କଲୋନୀର ବିଭିନ୍ନ ଖଟିରେ ଆଲୋଚନା । ଆଉ ତାଙ୍କର ନାମ ରଖାଯାଇଛି ସିମ୍ପଲ ବିଧାୟକ । ■

## ଫଟୋଗ୍ରାଫର ଅରୁଣ



ଛାତ୍ର ଥିବାବେଳେ ଅରୁଣ ସାହୁ ରାଜନୀତିର ସ୍ୱାଦ ଚାଖିବା ଆରମ୍ଭ କଲେ । ବାଣୀବିହାର ଛାତ୍ର ସଂସଦର ସଭାପତି ହେଲେ । ତାଙ୍କ ନିଜ ନିର୍ବାଚନମଣ୍ଡଳୀ ଦଶପଲାରୁ ପ୍ରାର୍ଥୀ ହୋଇ ବିଧାୟକ ହେବେ ବୋଲି ସ୍ୱପ୍ନ ଦେଖି ଆସିଥିବା ଅରୁଣ ସମୟକ୍ରମେ ପଡ଼ୋଶୀ ନିର୍ବାଚନମଣ୍ଡଳୀ ନୟାଗଡ଼ରୁ ପ୍ରାର୍ଥୀ ହୋଇ ବିଜେଡି ବିଧାୟକ ହେଲେ । ଦ୍ୱିତୀୟ ଥର ବିଧାୟକ ହେବାପରେ ଏବେ ଅରୁଣଙ୍କ ମୁଣ୍ଡରେ ସରକାରୀ ଦଳ ଉପ ମୁଖ୍ୟସଚେତକ ପଗଡ଼ି ବନ୍ଧା ହୋଇଛି । ମନ୍ତ୍ରୀ ନହେଲେ ମଧ୍ୟ ଏହା ମନ୍ତ୍ରୀ ପାହ୍ୟା ପରି । ମାନେ ସେମିତି କିଛି ଦାୟିତ୍ୱ ନଥିଲେ ବି ଖୁସ୍ ମିଜାଜରେ ଅରୁଣ ନାଲିବତୀ ଗାଡ଼ି ଚଢ଼ି ଯାଉଛନ୍ତି । ତେବେ ଅରୁଣଙ୍କର ଗୋଟିଏ ସ୍ୱପ୍ନ କୁଆଡ଼େ ସାକାର ହୋଇପାରିନାହିଁ । ସେଦିନ ବିଧାନସଭା ପ୍ରାଙ୍ଗଣରେ ସେ ତାଙ୍କର ମନର କଥା କହୁକହୁ କହିଦେଲେ । କୁଆଡ଼େ ଫଟୋ ଉଠାଇବା ତାଙ୍କର ଏକ ଦୁର୍ବଳତା । ଫଟୋ ସାମ୍ବାଦିକ ହେବା ପାଇଁ ମଧ୍ୟ ତାଙ୍କର ଅଭିଳାଷ ଥିଲା । ଆଉ ଫଟୋ ସାମ୍ବାଦିକଟିଏ ହୋଇଥିଲେ ସେ ବହୁ ଭଲଭଲ ଫଟୋ ଉଠାଇ ପାରିଥା'ନ୍ତେ । ଏମିତି ଫଟୋ ଉଠାଇବାର ସବୁ କାଇଦା ତାଙ୍କୁ ମାଲୁମ ଅଛି । ଏଇ ଦେଖୁନାହାନ୍ତି ବୋଲି କହି ଅରୁଣ ବିଧାନସଭା ପ୍ରାଙ୍ଗଣରେ ଏକ କ୍ୟାମେରା ବାହାର କଲେ । କ୍ରମେ ସେ ବିଭିନ୍ନ ବିଧାୟକ, ମନ୍ତ୍ରୀଙ୍କର ଫଟୋ ଉଠାଇବାକୁ ଲାଗିଲେ । ଅନ୍ତତଃପକ୍ଷେ ଜଣଙ୍କର ସେ ଦଶଟି ଆଙ୍ଗଲରୁ ଫଟୋ ଉଠାଇଲେ । ଅନେକ ବିଧାୟକ ମଧ୍ୟ ତାଙ୍କୁ ପ୍ରଶ୍ନ କଲେ । କାହିଁକି ତମେ ଫଟୋ ଉଠାଉଛ । ବିଧାନସଭା ଭିତରେ ବସି ଗୃହ ପରିଚାଳନା କରିବା ପରିବର୍ତ୍ତେ ବାହାରକୁ ଆସି ଫଟୋ ଉଠାଇବାର କିଛି କାରଣ ଅଛିକି ବୋଲି ମଧ୍ୟ କେତେକ ଜାଣିବାକୁ ଚାହିଁଲେ । ଏହାର ଉତର କିନ୍ତୁ ଅରୁଣ ହସିହସି ଦେଉଥିଲେ । ଫଟୋ ଉଠାରେ ସେ କେମିତି ଓସ୍ତାଦ ତାହା ସେ ଦେଖାଇ ଦେବାକୁ ଚାହୁଁଛନ୍ତି । ନୂଆ କ୍ୟାମେରାଟିଏ କିଣିଛନ୍ତି । ଫଟୋଉଠା ଅଭ୍ୟାସ ପୂର୍ବପରି ତାଙ୍କର ଏବେ ନାହିଁ । ଯେହେତୁ ସେ ବିଧାୟକ

ପୁଣି ସରକାରୀ ଉପ ମୁଖ୍ୟସଚେତକ ତେଣୁ ପ୍ରଥମେ ତାଙ୍କର କର୍ତବ୍ୟ ହେଉଛି ବିଧାୟକମାନଙ୍କର ଫଟୋ ଉଠାଇବା । ଗୃହ ଭିତରେ ବିଧାୟକମାନଙ୍କୁ ନେଇ ଗୃହ ପରିଚାଳନା ଆଉ ଗୃହ ବାହାରେ ବିଧାୟକମାନଙ୍କର ଫଟୋ ଉଠାଇବା ଏହା ଏବେ ଅରୁଣଙ୍କର ନିଶା ହୋଇଯାଇଛି । ଅରୁଣ ଏବେ ପାଲଟିଛନ୍ତି ବିଧାୟକମାନଙ୍କ ପାଇଁ ଫଟୋଗ୍ରାଫର । ■

## ଭର୍ତ୍ତୃହରିଙ୍କ ଭୋଜି




ଜେଡ଼ି ସାଂସଦ ଭର୍ତ୍ତୃହରି ମହତାବ ଦିଲ୍ଲୀରେ ତାଙ୍କ ସରକାରୀ ବାସଭବନରେ ଏକ ଡିନର୍ ପାର୍ଟି ଦେଇଥିଲେ । ଏଥିରେ ସେ ଓଡ଼ିଶାର ସମସ୍ତ ସାଂସଦଙ୍କୁ ନିମନ୍ତ୍ରଣ କରିଥିଲେ । କିନ୍ତୁ କଂଗ୍ରେସରୁ କେବଳ ଭକ୍ତ ଦାସଙ୍କୁ ଛାଡ଼ିଦେଲେ ଅନ୍ୟ କୌଣସି ସାଂସଦ ଭର୍ତ୍ତୃହରିଙ୍କ ଭୋଜିକୁ ଯାଇନଥିଲେ । ଏମିତି ଦେଖିଲେ ଭର୍ତ୍ତୃହରି ହେଉଛନ୍ତି ବିଜେଡ଼ି ଲୋକସଭା ସାଂସଦଙ୍କ ସଚେତକ । କାହିଁକି ଭର୍ତ୍ତୃହରି ଭୋଜି ଦେଇଥିଲେ ଆଉ ଦଳମତ ନିର୍ବିଶେଷରେ ସବୁ ସାଂସଦଙ୍କୁ ସେଠାକୁ ନିମନ୍ତ୍ରଣ କରିଥିଲେ ତାହାର କାରଣ ମଧ୍ୟ କାହାକୁ ଜଣାନାହିଁ । ଭର୍ତ୍ତୃହରିଙ୍କ ଏହି ଭୋଜିରେ ବିଜେଡ଼ିର ପିନାକୀ ମିଶ୍ର ଓ ବୈଜୟନ୍ତ ପଣ୍ଡା ଯୋଗ ଦେଇ ନଥିବାରୁ ତାହାକୁ ନେଇ ଭିନ୍ନ ଭିନ୍ନ ଚର୍ଚ୍ଚା ବି ହେଉଛି । କିଏ କହିଲେଣି ବୈଜୟନ୍ତ ପଣ୍ଡା କଟକ ଲୋକସଭା ଆସନରୁ ପ୍ରାର୍ଥୀ ହେବା ନିମନ୍ତେ ଆଶାୟୀ ଥିଲେ । ତାଙ୍କୁ କୁଆଡ଼େ ଭର୍ତ୍ତୃହରି ଜୋରଦାର ବିରୋଧ କରୁଥିଲେ । ସେତେବେଳର ତିକ୍ତ ଅନୁଭୂତିକୁ କୁଆଡ଼େ ବୈଜୟନ୍ତ ଭୁଲିପାରୁନାହାନ୍ତି । ଯେଉଁଥିପାଇଁ ଏହି ଭୋଜି ସମୟରେ ସେ ଦିଲ୍ଲୀରେ ରହିବାକୁ ଶ୍ରେୟ ମଣିନଥିଲେ । ସେପଟେ ପିନାକୀ ମିଶ୍ର ଏମିତି ସୁପ୍ରିମକୋର୍ଟର ଆଡ଼ଭୋକେଟ୍ । ପୁଣି ସମୟକ୍ରମେ କଂଗ୍ରେସ ଛାଡ଼ି ବିଜେଡ଼ିକୁ ଆସି ସେ ପୁରୀରୁ ହୋଇଛନ୍ତି ସାଂସଦ । ନବୀନ ପଟ୍ଟନାୟକଙ୍କର ସେ ଦିଲ୍ଲୀ ପ୍ରତିନିଧି ହୋଇଯାଇଛନ୍ତି । ପୂର୍ବରୁ ବୈଜୟନ୍ତ ପଣ୍ଡା ଥିଲେ ନବୀନଙ୍କର ଦିଲ୍ଲୀ ପ୍ରତିନିଧି । ଏବେ ପିନାକୀ ଏହି ଦାୟିତ୍ୱ ତୁଲାଉଛନ୍ତି । ପିନାକୀ ଯେହେତୁ ନବୀନଙ୍କର ପ୍ରତିନିଧି ଅଟନ୍ତି ତେଣୁ ଯିଏ ଯେତେବେଳେ ଭୋଜିକୁ ଡାକିଦେଲେ ତାହାକୁ ସେ ଗୁରୁତ୍ୱ ଦିଅନ୍ତି ନାହିଁ । ଭୋଜି ଦେବାରେ ପିନାକୀ ହେଉଛନ୍ତି ଗୁରୁ । ତେଣୁ ଭର୍ତ୍ତୃହରିଙ୍କ ଭୋଜି କୁଆଡ଼େ ପିନାକୀଙ୍କର ପସନ୍ଦ ହେଲାନାହିଁ । ଭୋଜିକୁ ନ ଯିବା ପାଇଁ ପିନାକୀ ଆଳ ଦେଖାଇଲେ ଦିଲ୍ଲୀରେ ନ ରହିବାକୁ । ଭର୍ତ୍ତୃହରିଙ୍କ ଭୋଜିରେ ମୁଖ୍ୟ ମେନୁ ଥିଲା ମାଂସ, ଚିଙ୍ଗୁଡ଼ି । ଭର୍ତ୍ତୃହରି ଭାବିଥିଲେ ଓଡ଼ିଶାରେ ମାଂସ,ଚିଙ୍ଗୁଡ଼ି ଖାଇବାକୁ ଦିଆଯାଉଛି ବୋଲି ପ୍ରଚାର ହେଲେ ଯେପରି ଭୋଜନ ଆଗ୍ରହ ବହୁ ନେତାଙ୍କର ହୋଇଯାଏ ସେହିପରି ଦିଲ୍ଲୀରେ ହେବ । କିନ୍ତୁ ଦିଲ୍ଲୀ ଲଡୁ ଯିଏ ଖାଇଛି ସିଏ ପସ୍ତାଇଛି ଆଉ ଯିଏ ନ ଖାଇଛି ସିଏ ବି ପସ୍ତାଇଛି । ତେଣୁ ଦିଲ୍ଲୀ ଲଡୁ ଖାଇବାକୁ

ଓଡ଼ିଶା ନେତାଙ୍କର ସବୁବେଳେ ଭୟ ରହିଥାଏ । ଅବଶ୍ୟ ଭର୍ତ୍ତୃହରି ଭୋଜ [illegible]ରେ ଅନ୍ୟ ସାଂସଦମାନେ ମଧ୍ୟ ଭୋଜି ଦେବାପାଇଁ ତତ୍ପର ହେଲେଣି । ଦେଖାଯାଉ ପୁଣି ଭୋଜି କେବେ ହେଉଛି । ■

## ଲେଡ଼ି ଗଭର୍ଣ୍ଣର



ଜାନକୀ ବଲ୍ଲଭ ପଟ୍ଟନାୟକ ଆସାମର ରାଜ୍ୟପାଳ ଭାବେ ଶପଥ ଗ୍ରହଣ କରିବା ପରେ ଯଦି କିଏ ସବୁଠାରୁ ଅଧିକ ଖୁସି ହୋଇଥିବେ ତେବେ ସେ ହେଲେ ଜାନକୀଙ୍କ ପତ୍ନୀ ଜୟନ୍ତୀ ପଟ୍ଟନାୟକ । ୧୯୮୦ ମସିହାରେ ଯେତେବେଳେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେଲେ ସେତେବେଳେ କଟକ ଲୋକସଭା ଆସନର ସାଂସଦ ପଦରୁ ସେ ଇସ୍ତଫା ଦେଲେ । ଏହାପରେ ଉପନିର୍ବାଚନରେ ଜୟନ୍ତୀ ପଟ୍ଟନାୟକ କଟକରୁ ପ୍ରାର୍ଥୀ ହୋଇ ସାଂସଦ ହେଲେ । ସେବେଠାରୁ ଜୟନ୍ତୀ ରାଜନୀତି ମଇଦାନକୁ ଓହ୍ଲାଇଛନ୍ତି । ଏମିତି ଜୟନ୍ତୀଙ୍କ ପଛରେ ପୂର୍ବତନ ଲୋକସଭା ସଭ୍ୟ, ପୂର୍ବତନ ମହିଳା କଂଗ୍ରେସ ଅଧ୍ୟକ୍ଷା ପ୍ରଭୃତି ପଦବୀ ରହିଛି । ତେବେ ଜାନକୀ ବଲ୍ଲଭ ପଟ୍ଟନାୟକ ଆସାମର ରାଜ୍ୟପାଳ ହୋଇଯିବା ପରେ ଜୟନ୍ତୀଙ୍କ ପଛରେ ଆଉ ଏକ ପଦବୀ ଯୋଡ଼ି ହୋଇଯାଇଛି । ତାହା ହେଲା ଲେଡ଼ି ଗଭର୍ଣ୍ଣର । ଏହି ପଦବୀ ପାଇ ଜୟନ୍ତୀ ଖୁସି କି ଦୁଃଖି ତାହା ମଧ୍ୟ ଜଣାପଡୁନାହିଁ । ଜାନକୀ ବଲ୍ଲଭ ପଟ୍ଟନାୟକ ୧୯୯୫ ମସିହାରେ ବେଗୁନିଆ ଉପନିର୍ବାଚନରେ ମୁଖ୍ୟମନ୍ତ୍ରୀ ଥିବାବେଳେ ବିଜୟୀ ହୋଇଥିଲେ । ୨୦୦୪ ମସିହାରେ ସେ ମଧ୍ୟ ଏଠାରୁ ପୁଣିଥରେ .ବିଜୟୀ ହୋଇ ବିରୋଧୀ ଦଳ ନେତା ହୋଇଥିଲେ । ୨୦୦୯ ନିର୍ବାଚନରେ ଜାନକୀ ବଲ୍ଲଭ ଯଦିଓ ବେଗୁନିଆରୁ ପ୍ରାର୍ଥୀ ହୋଇ ନଥିଲେ କିନ୍ତୁ ବେଗୁନିଆରେ କିଏ ପ୍ରାର୍ଥୀ ହେବ ତାହା ସ୍ଥିର କରିଥିଲେ । ରାଜ୍ୟପାଳ ଦାୟିତ୍ୱ ନେବା ପର୍ଯ୍ୟନ୍ତ ମଧ୍ୟ ସେ ବେଗୁନିଆ କଂଗ୍ରେସ ରାଜନୀତି ସହିତ ଓତଃପ୍ରୋତଃ ଭାବେ ଜଡ଼ିତ ରହିଥିଲେ । ଜାନକୀଙ୍କ ପରେ ବେଗୁନିଆରେ କଂଗ୍ରେସ ରାଜନୀତି ତାଙ୍କ ପତ୍ନୀ ଜୟନ୍ତୀ ପଟ୍ଟନାୟକ ବୁଝିବେ ବୋଲି ରାଜନୀତି ମହଲରେ ଜୋରଦାର୍ ଚର୍ଚ୍ଚା ବି ଚାଲିଲା । ତେବେ ଜୟନ୍ତୀଙ୍କ ପଛରେ ଲାଗିଥିବା ଲେଡ଼ି ଗଭର୍ଣ୍ଣର ପଦବୀ ପ୍ରତ୍ୟକ୍ଷ ରାଜନୀତିରେ ପ୍ରତିବନ୍ଧକ ହେବ କି ନାହିଁ ତାହା ମଧ୍ୟ ଜଣାପଡ଼ିନାହିଁ । ଜାନକୀ ରାଜ୍ୟପାଳ ଆଉ ତାଙ୍କ ପତ୍ନୀ ଜୟନ୍ତୀ ଏବେ ଲେଡ଼ି ଗଭର୍ଣ୍ଣର । ରାଜନୀତି ମହଲରେ ଯାହା ଚର୍ଚ୍ଚା ହେଉଛି ଜାନକୀ ଓଡ଼ିଶା କଂଗ୍ରେସ ରାଜନୀତିକୁ ଛାଡ଼ିପାରିବେ ନାହିଁ । ତେଣୁ ତାଙ୍କର 'କା' ହିସାବରେ ଜୟନ୍ତୀ ହିଁ ଦାୟିତ୍ୱ ତୁଲାଇବେ । ଜୟନ୍ତୀ ଓଡ଼ିଶାରେ ରହିଲେ ତାଙ୍କୁ ଆସାମର ଲେଡ଼ି ଗଭର୍ଣ୍ଣର ଭାବେ ସମ୍ବୋଧନ କରାଯିବ ନାହିଁ । ତେଣୁ ଗୋଟିଏ ଗୁଳିରେ ଦୁଇଟି ଶିକାର ଏବେ ଜୟନ୍ତୀ କରିବେ । ଆସାମରେ ଲେଡ଼ି ଗଭର୍ଣ୍ଣର ଓ ଓଡ଼ିଶାରେ କଂଗ୍ରେସ ନେତ୍ରୀ । ଦେଖାଯାଉ ଜୟନ୍ତୀଙ୍କ ରାଜନୀତି କେତେଦୂର ସଫଳ ହେଉଛି ଆଉ ବେଗୁନିଆରେ ଜାନକୀଙ୍କ ଉତ୍ତରାଧିକାରୀ ସେ ହୋଇପାରୁଛନ୍ତି କି ନାହିଁ । ■

# ଟେନ୍‌ସନ୍ ମନ୍ତ୍ରୀ



ବିଧାନସଭା ଅଧିବେଶନ ମୁଲତବୀ ହୋଇଯିବା ପରେ ସାଧାରଣତଃ ମନ୍ତ୍ରୀମାନେ ଟେନ୍‌ସନ୍‌ରୁ ମୁକ୍ତ ହୋଇଯାଇଥା'ନ୍ତି । କିନ୍ତୁ ଶିଳ୍ପ, ଖଣି, ଇସ୍ପାତ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ରଘୁନାଥ ମହାନ୍ତିଙ୍କ କ୍ଷେତ୍ରରେ ଏହା ବ୍ୟତିକ୍ରମ ହୋଇଯାଇଛି । ଏମିତି ତ ଗୋଟିଏ ସମୟରେ ବିରୋଧୀଙ୍କ ପ୍ରତୀକ ବିଧାନସଭା ତାଙ୍କ ପାଇଁ ଟେନ୍‌ସନ୍ ଆଣିଦେଇଥିଲା । ବାହାରକୁ ଦେଖିଲେ ରଘୁଙ୍କୁ କେହି ଟେନ୍‌ସନ୍ ମନ୍ତ୍ରୀ ବୋଲି କହିବେ ନାହିଁ । ବିଧାନସଭା ଚାଲିଥିବା ବେଳେ ଅନ୍ୟ କେଉଁ ମନ୍ତ୍ରୀ ରଘୁଙ୍କ ପରି ଟେନ୍‌ସନ୍ ନଥା'ନ୍ତି । ଏମିତି ଦେଖିଲେ ଗୋଟିଏ ପ୍ରଶ୍ନର ଉତ୍ତର ଦେବା ପାଇଁ ମନ୍ତ୍ରୀମାନଙ୍କୁ ଦିନ ପ୍ରତି ଟେନ୍‌ସନ୍ ଘାରିଥାଏ । ତାହା ପୁଣି ସପ୍ତାହରେ ଥରେ । କିନ୍ତୁ ସବୁଦିନ ରଘୁଙ୍କ ବିଭାଗ ଖଣିକୁ ନେଇ ବିଧାନସଭା ପଡେଉଠେ । ରଘୁ ମଧ୍ୟ ସଂସଦୀୟ ବ୍ୟାପାର ବିଭାଗର ମନ୍ତ୍ରୀ । ଏହି ଦୃଷ୍ଟିରୁ ରଘୁଙ୍କୁ ସବୁବେଳେ ବିଧାନସଭାରେ ଉପସ୍ଥିତ ରହିବାକୁ ପଡ଼ିଥାଏ । ମନ୍ତ୍ରୀମାନେ ସେମାନଙ୍କର ପ୍ରଶ୍ନୋତର କାର୍ଯ୍ୟ ସରିଯିବା ପରେ ଟେନ୍‌ସନ୍ ଫ୍ରି ହୋଇଯାଆନ୍ତି । କିନ୍ତୁ ରଘୁ ବିଧାନସଭାର ଅଧିବେଶନ ଚାଲିଥିବା ପର୍ଯ୍ୟନ୍ତ ଟେନ୍‌ସନ୍‌ରେ ରହନ୍ତି । ବିଧାନସଭା ଅଧିବେଶନ ଶେଷ ହୋଇଯିବା ପରେ ତାଙ୍କର ଟେନ୍‌ସନ୍ ମଧ୍ୟ ସେହିପରି ରହେ । ନବୀନଙ୍କ ମନ୍ତ୍ରିମଣ୍ଡଳରେ ୨୦ ଜଣ ମନ୍ତ୍ରୀ ଅଛନ୍ତି । କିନ୍ତୁ ରଘୁଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତ ୧୯ ମନ୍ତ୍ରୀ ଟେନ୍‌ସନ୍ ଫ୍ରି ଅଛନ୍ତି । ଏବେ ରଘୁଙ୍କର ନାମକରଣ ହୋଇଗଲାଣି ଟେନ୍‌ସନ୍ ମନ୍ତ୍ରୀ ବୋଲି । ■



# ଫଟୋ, କବିତା, କ୍ୟାଲେଣ୍ଡର ଓ ପ୍ରସନ୍ନ ପାଟ୍ଟଶାଣୀ

ନୂଆବର୍ଷ କାହା ପାଇଁ କେମିତି ଅନୁଭବ ଆଣିଦେଇଥାଏ । କିନ୍ତୁ ନୂଆବର୍ଷ ଆସିବା ପୂର୍ବରୁ ଅନେକଙ୍କ ଦେହରେ ଅନୁଭବ ଆପେଆପେ ସ୍ପର୍ଶ କରିଥାଏ । ଏମିତି ଜଣେ ବ୍ୟକ୍ତି ହେଲେ ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀ । ଡକ୍ଟର ମାନେ ସେ ଡାକ୍ତର ନୁହନ୍ତି । ପିଏଚ୍‌ଡି କରି ସେ ଡକ୍ଟର ଉପାଧି ଲାଭ କରିଛନ୍ତି । ନେତା ଅପେକ୍ଷା ତାଙ୍କୁ ବାବା ଭାବେ ଅଧିକ ଜାଣନ୍ତି । ଏମିତି ଗେରୁଆ ବସ୍ତ୍ର ପିନ୍ଧିବା ସହିତ ହାତରେ ବାଡ଼ି, ମୁହଁରେ ଦାଢ଼ି ଆଉ ଲମ୍ବା ବାଳ ତାଙ୍କୁ ବାବା କରିଦେଇଛି । କିନ୍ତୁ ନେତା ଭାବେ ସେ ସାରାବିଶ୍ୱରେ ଖ୍ୟାତ ହୋଇଯାଇଛନ୍ତି । ନୂଆବର୍ଷର ମାସକ ପୂର୍ବରୁ ପ୍ରସନ୍ନଙ୍କ ଫଟୋ ଥିବା ଏକ କ୍ୟାଲେଣ୍ଡର ବଂଟା ହୋଇଥିଲା । ଏହି କ୍ୟାଲେଣ୍ଡରଟି ପ୍ରସନ୍ନଙ୍କର ବେଶ୍ ପ୍ରିୟ ହୋଇଯାଇଥିଲା । ଏହାର କାରଣ ଆଉ କିଛି ନୁହେଁ । କ୍ୟାଲେଣ୍ଡରରେ କେବଳ ତାଙ୍କର ଫଟୋଟିଏ ରହିଥିଲା ଏବଂ ଫଟୋ ତଳେ

କବି ତଥା ପୂର୍ବତନ ମନ୍ତ୍ରୀ ଯଦୁନାଥ ଦାସ ମହାପାତ୍ରଙ୍କ ଦ୍ୱାରା ଲେଖା ହୋଇଥିବା ଏକ କବିତାଟିଏ ଥିଲା । ଫଟୋଟିକୁ ଦେଖିଦେଲେ କେଉଁ ୨୦ ବର୍ଷ ତଳର ପ୍ରସନ୍ନ ପାଢଶାଣୀ ବୋଲି ଯେକୌଣସି ବ୍ୟକ୍ତି ଭାବିବେ । ଏବେ ପ୍ରସନ୍ନଙ୍କ ମୁଣ୍ଡବାଳ, ଦାଢ଼ି, ନିଶ ପାଚିଗଲାଣି । ପ୍ରସନ୍ନଙ୍କୁ ତାଙ୍କର ଏହି ପାଚିଲା ଦାଢ଼ି ଆଉ ପାଚିଲା ବାଳ ଦେଖିବାକୁ ଭଲ ଲାଗୁନାହିଁ । କ୍ୟାଲେଣ୍ଡରରେ ଯେଉଁ ଫଟୋଟି ଥିଲା ସେଥିରେ ପ୍ରସନ୍ନଙ୍କ ଦାଢ଼ି, ନିଶ ଆଉ ମୁଣ୍ଡବାଳ ସବୁ କଳା ମଚମଚ । ଟୋକା ତ ଟୋକା ପ୍ରସନ୍ନ ସତେ ଯେମିତି ଗଜା ଟୋକା । ପୁଣି ଯେଉଁ କବିତା ଲେଖାଯାଇଥିଲା ସେଥିରେ ମଧ୍ୟ ପ୍ରସନ୍ନଙ୍କର ଅତି ପ୍ରଶଂସା କରାଯାଇଥିଲା । ଏମିତି ପ୍ରସନ୍ନ ବି ଜଣେ କବି । ତାଙ୍କ ପରି ଜଣେ କବିଙ୍କ ସମ୍ପର୍କରେ ଆଉ ଜଣେ ପ୍ରଖ୍ୟାତ କବି ଯଦୁନାଥ ଦାସ ମହାପାତ୍ର କବିତା ଲେଖିଥିବାରୁ ଏହା ପ୍ରସନ୍ନଙ୍କୁ ଅତି ଆବେଗ ଆଡ଼କୁ ଟାଣି ନେଇଥିଲା । ଏବେ କବିତା ଆଡ଼କୁ ଯିବା । କବିତାଟି ହେଲା-

ହେ ବନ୍ଧୁ ପାଢଶାଣୀ,  
ତୁମର ପ୍ରସନ୍ନତା ସମସ୍ତଙ୍କୁ ବିମୋହିତ କରେ,  
ତୁମ ଲେଖାର ମାଧୁରୀ ପାଠକ/ପାଠିକା ମନେ ପୁଲକ ହିଁ ଭରେ ।  
ତୁମର ଜୀବନଶୈଳୀ ଅନେକଙ୍କୁ କରେ ପ୍ରଭାବିତ,  
ତୁମେ ହିଁ ଜାଜ୍ୱଲ୍ୟମାନ ସମସ୍ତଙ୍କୁ କର ଆଲୋକିତ ।  
ରାଜନୀତି ଓ ସାହିତ୍ୟ ଅଟେ ତୁମ ଅଙ୍ଗର ଭୂଷଣ,  
ହେବନାହିଁ କେବେବି ଦୂଷଣ ।  
ତମେ ଧ୍ୟାନୀ, ତୁମେ ଜ୍ଞାନୀ  
ତୁମ ଯୋଗୁ ତୁମେ ବି ସଂସାରୀ ।  
ବିଧାନସଭାରେ ତୁମର ମୋ କଥା କଟାକଟି,  
ଆଜି ମୋର ଭାରି ମନେପଡେ,  
ତୁମେ କହୁଥିଲ ମୋତେ ମନ୍ତ୍ରୀ ହେ,  
ତୁମ ଚାରିପାଖେ ଘେରି ରହିଛନ୍ତି ଅମଲତନ୍ତ୍ରି ହେ ।  
ମୁଁ କହୁଥିଲି ବାବା ହେ,  
ତୁମ ବିରୋଧରେ ଚକ୍ରାନ୍ତ ଦେଖି ମୁଁ କାବା ହେ ।  
ସମଗ୍ର ବିଧାନସଭା ଉଠୁଥିଲା ହସି,  
ବାଚସ୍ପତି ପ୍ରସନ୍ନ କୁମାର ଦାସ ହସୁଥିଲେ ଆସନରେ ବସି ।  
ତୁମେ ଏବେ ଦିଲ୍ଲୀରେ ସାଂସଦ,  
ତୁମକୁ ତ ଛୁଇଁନାହିଁ କେବେ ଅପବାଦ ।  
ହେ ମୋର ପରମବନ୍ଧୁ ପ୍ରସନ୍ନ ପାଢଶାଣୀ,  
ତୁମେ ଅଟ ଅମୂଲ୍ୟ ବିନ୍ଧାଣି ।

କ୍ୟାଲେଣ୍ଡରେ ଥିବା ପ୍ରସନ୍ନଙ୍କ ଫଟୋ ସହିତ ଏହି କବିତାଟି ବେଶ୍ ମନଲାଖିହୋଇଥିଲା । ପ୍ରସନ୍ନ ଏହି କ୍ୟାଲେଣ୍ଡରକୁ ନିଜେ ଦେଖି ବାଃ ବାଃ ହେଉଥିଲେ । ଆଉ ପ୍ରସନ୍ନଙ୍କ ସହିତ ଅନ୍ୟମାନେ ମଧ୍ୟ କ୍ୟାଲେଣ୍ଡର ଦେଖି ବାଃ ବାଃ ବୋଲି କହୁଥିଲେ । କିନ୍ତୁ ନିନ୍ଦୁକମାନେ ସେତେବେଳେ ପ୍ରସନ୍ନଙ୍କୁ ଛାଡୁନଥିଲେ । ପ୍ରସନ୍ନ କବି ହୋଇଥିବାରୁ ଏଭଳି କବିତାରେ ଯେ ସେ ଅତି ପ୍ରସନ୍ନ ହୋଇଯାଇଥିଲେ ତାହା ନୁହେଁ । କବିମାନେ ସାଧାରଣତଃ ରସିକ ଅଟନ୍ତି । ତେଣୁ ପ୍ରସନ୍ନ ଯେ ରସିକ ନୁହନ୍ତି ତାହା ନୁହେଁ । ସେ ରସିକ ନହୋଇଥିଲେ କବି ହୋଇପାରିନଥା'ନ୍ତେ । ରସିକଙ୍କର ସବୁବେଳେ ଚେହେରା ଉପରେ ଦୃଷ୍ଟି ଥାଏ ଆଉ ବୟସ ବଢ଼ିଗଲେ ତାଙ୍କୁ ଯିଏ ଯୁବକ ବୋଲି କହିଦେବ ତାକୁ ସେ ଅଧିକ ଆଦର କରିଥା'ନ୍ତି । ଏହା ହେଉଛି ଭଗବାନଙ୍କ ସୃଷ୍ଟି । ଏଥିରୁ ପ୍ରସନ୍ନ ବି କିପରି ବାଦ୍ ପଡ଼ିବେ । ମାନେ ଫଟୋକୁ ଦେଖି ନିଜକୁ ପ୍ରସନ୍ନ ଗଜାଟୋକା ବୋଲି ନିଜକୁ ଭାବିନେଲେ । ଅବଶ୍ୟ ପ୍ରସନ୍ନ ସେତେବେଳେ ଯୁଆଡ଼େ ଗଲେ ସାଥିରେ ସେହି କ୍ୟାଲେଣ୍ଡର ନେଲେ ଆଉ ବାଂଟିଲେ । ବୋଧହୁଏ ବୟସ ବଢ଼ିଯିବାରୁ ପ୍ରସନ୍ନଙ୍କ ମନରେ ଦୁଃଖ ଆସିଯାଇଛି । ପ୍ରସନ୍ନ ଏଣିକି ମୁଣ୍ଡବାଳ , ଦାଢ଼ି, ନିଶରେ କଳା ରଙ୍ଗ ଲଗାନ୍ତୁ । ଆଉ ଟୋକା ପରି ଦେଖାଯାଆନ୍ତୁ । ତାହାହେଲେ ଯାଇ ତାଙ୍କ ମନ ଖୁସି ହେବ ଏବଂ ପ୍ରସନ୍ନ ଖୁସି ରହିଲେ ତାଙ୍କର ଭକ୍ତମାନେ ଯେ ଖୁସି ରହିବେ ଏହା ନିଃସନ୍ଦେହ । ■

## ଫୁଟ୍‌ବଲ ଖେଳାଳି



ଦେବେନ୍ଦ୍ର କଅଁର ହେଉଛନ୍ତି ଫୁଲବାଣୀର ବିଜେଡି ବିଧାୟକ । ଏମିତି ବିଧାୟକ ହେବେ ବୋଲି କେବେବି ସପ୍ନ ଦେଖି ନଥିଲେ ଦେବେନ୍ଦ୍ର କଅଁର । ଚାକିରି କରି ଦୁଇପଇସା ରୋଜଗାର କରି ନିଜେ ଚଳିବା ଓ ପରିବାରର ଭରଣପୋଷଣ କରିବା ତାଙ୍କର ଲକ୍ଷ୍ୟ ଥିଲା । କିନ୍ତୁ ପିଲାଦିନରୁ ଦେବେନ୍ଦ୍ରଙ୍କର ଫୁଟ୍‌ବଲ ଖେଳ ପ୍ରତି ନିଶା ଥିଲା । ପୁଣି ସେଂଟର ଫରୱାର୍ଡ଼ ମାନେ ପ୍ରତିପକ୍ଷ ଦଳକୁ ସେ ଗୋଲ ଦେଇ ନିଜ ଦଳକୁ ଜିତାନ୍ତି । ଦେବେନ୍ଦ୍ର ଫୁଟ୍‌ବଲ ଖେଳୁଥିବା ବେଳେ ଗୋଲ ଦେବା ପାଇଁ ସବୁବେଳେ ତତ୍ପରତା ପ୍ରକାଶ କରିଥା'ନ୍ତି । ଯେଉଁଥିପାଇଁ ତାଙ୍କୁ ଅନେକ ସମୟରେ ସାବାସି ମିଳିଥାଏ । ପରିସ୍ଥିତିରେ ପଡ଼ି ଦେବେନ୍ଦ୍ର ଏବେ ବିଧାୟକ । କିନ୍ତୁ ସେ ଫୁଟ୍‌ବଲ ଖେଳକୁ ଛାଡ଼ି ପାରିନାହାନ୍ତି । ବିଧାୟକ ଭାବେ ସେ ଯେଉଁ ଅଂଚଳକୁ ଯାଇଥା'ନ୍ତୁ ନା କାହିଁକି ଫୁଟ୍‌ବଲ ଖେଳ ଦେଖିଦେଲେ ସେଠାରେ ସେ ଆଉ ଥୟ ହୋଇ ରହିପାରନ୍ତି ନାହିଁ । ଇଚ୍ଛା କେମିତି ଯାଇ ଫୁଟ୍‌ବଲ ଖେଳିବେ । କିନ୍ତୁ ରାଜନୀତିକୁ ଆସି ବିଧାୟକ ହୋଇଯିବା ପରେ ଫୁଟ୍‌ବଲ ଖେଳିବା ଯେ ଆଉ ଦେବେନ୍ଦ୍ରଙ୍କ ଭାଗ୍ୟରେ ଜୁଟିବ ନାହିଁ ଏହା ସେ ବୋଧହୁଏ ଜାଣିନାହାନ୍ତି । ଏମିତି ଫୁଟ୍‌ବଲ ରାତିଅଧରେ କି ଦିନ ଦ୍ୱି'ପ୍ରହରରେ ଖେଳାଯାଏ ନାହିଁ । ଗାଁଗହଳି ହେଉ କି ସହର ହେଉ ଯେଉଁଠି ଫୁଟ୍‌ବଲ ଖେଳାଯାଏ ସେଠାରେ ସେହି ଖେଳ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ବି ଉଦ୍ଦିଷ୍ଟ ହୋଇଥାଏ । ସିଧାସଳଖ କୁହାଗଲେ ... ଯେ, ଫୁଟ୍‌ବଲ ଖେଳ

ସାଧାରଣତଃ ଅପରାହ୍ନରେ ହୋଇଥାଏ । ତେଣୁ ବିଧାୟକ ଭାବେ ଏହି ସମୟରେ ଫୁଟ୍‌ବଲ ଖେଳିବା ଦେବେନ୍ଦ୍ରଙ୍କ ପକ୍ଷରେ ସମୟ ବାହାର କରିବା କଷ୍ଟକର କ୍ରମେ ହୋଇ୍‌ଗଲାଣି । ହଠାତ୍ ସେଦିନ ଦେବେନ୍ଦ୍ରଙ୍କ ପାଖକୁ ଖବର ଆସିଲା । ନୟାଗଡ଼ ଜିଲାର ଶରଣକୂଳଠାରେ ହେଉଥିବା ଫୁଟ୍‌ବଲ ପ୍ରତିଯୋଗିତାରେ ଫୁଲବାଣୀ ଟିମ୍ ଯୋଗ ଦେଇଛି । ଦେବେନ୍ଦ୍ର ପୂର୍ବବର୍ଷ ଫୁଲବାଣୀ ଫୁଟ୍‌ବଲ ଟିମ୍‌ରେ ଖେଳିଥିଲେ । ସେ ନଖେଳିଲେ ଗୋଲ ଦେବା ସମ୍ଭବ ହେବନାହିଁ । ପ୍ରଥମେ ଦେବେନ୍ଦ୍ର ଫୁଟ୍‌ବଲ ଖେଳିବେ କି ନଖେଳିବେ ସେ ନେଇ ନିଷ୍ପତି ନେଇପାରିଲେ ନାହିଁ । କିନ୍ତୁ ଫୁଟ୍‌ବଲ ଖେଳିବା ସମ୍ପର୍କରେ ପ୍ରସ୍ତାବ ଆସିବା ବେଳକୁ ତାଙ୍କ ଗୋଡ଼ ଖାଲଖାଲ ହେଉଥିଲା ଫୁଟ୍‌ବଲ ଖେଳିବାକୁ । ଅଧିକ ବିଳମ୍ବ ନକରି ସିଧାସଳଖ ଦେବେନ୍ଦ୍ର ସମ୍ମତି ଦେଇଦେ[illegible] ଯେ ଫୁଟ୍‌ବଲ ଖେଳିବା ପାଇଁ ଫୁଲବାଣୀ ଦଳରେ ସାମିଲ ହେବେ ବୋଲି । ଦେବେନ୍ଦ୍ର ଶରଣକୂଳରେ ଅନୁଷ୍ଠିତ ଫୁଟ୍‌ବଲ ପ୍ରତିଯୋଗିତାରେ ଫୁଲବାଣୀ ଦଳରେ ସାମିଲ ହୋଇ ଫୁଟ୍‌ବଲ ଖେଳିଲେ । କେହି ଜାଣିପାରିଲେ ନାହିଁ ଯେ, ଜଣେ ବିଧାୟକ ଫୁଟ୍‌ବଲ ଖେଳୁଛନ୍ତି ବୋଲି । ଏମିତି ପ୍ରତିଯୋଗିତାଟି ଅମୀମାଂଶିତ ଭାବେ ଶେଷ ହେଲା । ଟାଏରେ ଦେବେନ୍ଦ୍ର ଗୋଲ ଦେଲେ । ସେତେବେଳେ ପଡ଼ିଆ ଚାରିପଟେ ଶହଶହ ଲୋକ । ଗୋଲ ଦେଲା ବେଳକୁ ଫୁଟ୍‌ବଲ ପ୍ରେମୀମାନେ ଯେପରି ଉତ୍ସାହିତ ହୋଇ ପାଟି କରୁଥିଲେ ତାହାକୁ ଦେଖି ଦେବେନ୍ଦ୍ର ବିମୋହିତ ହୋଇଯାଇଥିଲେ । ରାଜନୀତି ଆଉ ଫୁଟ୍‌ବଲ ପ୍ରତିଯୋଗିତା ମଧ୍ୟରେ ବହୁ ତଫାତ୍ । ଫୁଟ୍‌ବଲ ଖେଳରେ ଗୋଲ ଦେଇଦେଲେ ଆଉ ଭଲ ଖେଳିଲେ ଦର୍ଶକମାନେ ହୋହାଲ୍ଲା ଆଉ କରତାଳି ଦେଇ ଉତ୍ସାହିତ କରିଥା'ନ୍ତି । କିନ୍ତୁ ରାଜନୀତିରେ ଗୋଲ ଦେବା ପାଇଁ ଟିକିଏ ଉପରକୁ ଚାଲିଗଲେ ଉତ୍ସାହିତ କରିବାକୁ କେହି ନଥା'ନ୍ତି । ସବୁବେଳେ ଗୋଡ଼ ଟଣାଟଣି ଚାଲିଥାଏ । ଏହାକୁ କ୍ରମେ ଦେବେନ୍ଦ୍ର ବୁଝି ସାରିଲେଣି । ଯେଉଁଥିପାଇଁ ସମୟ ମିଳିଲେ ସେ ରାଜନୀତିକୁ ଛାଡ଼ି ଫୁଟ୍‌ବଲ ଖେଳିବାକୁ ଯାଉଛନ୍ତି । ■

## ସ୍ଲମ୍‌ଡ଼ଗ୍ ବିଧାୟକ



ସ୍ଲମ୍‌ଡ଼ଗ୍ ପ୍ରସଙ୍ଗ ଉଠିଲେ ସାଧାରଣତଃ ହିନ୍ଦି ଚଳଚ୍ଚିତ୍ର କଥା ଆପେଆପେ ଆସିଯିବ । ଏହି ଚଳଚ୍ଚିତ୍ରଟି ବହୁ ପୁରସ୍କାର ଲାଭ କରିଛି । ଏଥିରେ ବସ୍ତି ଅଂଚଳ ଜୀବନୀର ନିଛକ ଚିତ୍ର ପ୍ରଦର୍ଶିତ [illegible]ଛି । ତେବେ ସ୍ଲମ୍‌ଡ଼ଗ୍ ବିଧାୟକ ପ୍ରସଙ୍ଗ ଆସିଲେ ସେହି ବିଧାୟକ ଜଣଙ୍କ କିଏ ବୋଲି ଆମକୁ ଲେନ୍ସ ପକାଇ ଖୋଜିବାକୁ ପଡ଼ିବ । ଆଉ ଖୋଜିଖୋଜି ଆମକୁ ନବୀନ ନିବାସ ଯିବାକୁ ହେବ । ସେଠାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କର ବିଧାୟକମାନଙ୍କ ସମ୍ପର୍କରେ କାହାକୁ କିପରି ହାଲ୍‌କା ମନ୍ତବ୍ୟ ଦିଅନ୍ତି ତାହା ଶୁଣିବା ପାଇଁ ଅପେକ୍ଷା କରିବାକୁ ପଡ଼ିବ । ଏମିତି ଦିନେ କେତେକ ମନ୍ତ୍ରୀ ଆଉ ବରିଷ୍ଠ ବିଧାୟକ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ସାକ୍ଷାତ କରିବା ପାଇଁ ନବୀନ ନିବାସ ଯାଇଥିଲେ । ଉଦ୍ଦେଶ୍ୟ କିଛି ନଥିଲା । ଦଳର ନେତା

ଭାବେ ନବୀନ ପଟ୍ଟନାୟକଙ୍କୁ ବେଳେବେଳେ ମନ୍ତ୍ରୀ, ବିଧାୟକମାନେ ସାକ୍ଷାତ କରିଥା'ନ୍ତି । ଏମିତି କଥା ପଡୁପଡୁ ଭୁବନେଶ୍ୱର ସମ୍ପର୍କରେ ପ୍ରସଙ୍ଗ ଉଠିଲା । ପୁଣି ବସ୍ତି ଉପରେ କିଛି ସମୟ ଧରି ଆଲୋଚନା ମଧ ହେଲା । ବୋଧହୁଏ ନବୀନ ପଟ୍ଟନାୟକ ସେଦିନ ଭାରି ଖୁସ୍ ମିଜାଜ୍‌ରେ ଥିଲେ । ତାଙ୍କ ପାଟିରୁ ବାହାରି ଆସିଲା ଆପଣମାନଙ୍କର କାହାର କିଛି ଭୁବନେଶ୍ୱର ବସ୍ତି ସମ୍ପର୍କରେ କହିବା ଦରକାର ନାହିଁ । ସେଥିପାଇଁ ଆମର ସ୍ଲମ୍‌ଡ଼ଗ୍ ବିଧାୟକ ଅଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ପାଟିରୁ ଏହି ସ୍ଲମ୍‌ଡ଼ଗ୍ ବିଧାୟକ ଶବ୍ଦ ବାହାରିବା ପରେ ସେଠାରେ ଥିବା ମନ୍ତ୍ରୀ ଓ ବିଧାୟକମାନେ ପରସ୍ପର ମୁହଁକୁ ଚକିତ ହୋଇ ଚାହିଁ ରହିଲେ । ସମସ୍ତେ ଜାଣିବାକୁ ଚାହୁଁଥିଲେ ସ୍ଲମ୍‌ଡ଼ଗ୍ ବିଧାୟକ ଜଣଙ୍କ କିଏ । ଅବଶ୍ୟ ନବୀନ ପଟ୍ଟନାୟକ ମନ୍ତ୍ରୀ ଓ ବିଧାୟକଙ୍କ ମୁହଁରୁ ଜାଣିନେଲେ ଯେ ସେମାନେ ସ୍ଲମ୍‌ଡ଼ଗ୍ ବିଧାୟକ କିଏ ବୋଲି ଜାଣିନାହାନ୍ତି ବୋଲି । ନବୀନଙ୍କ ପାଟିରୁ ବାହାରି ଆସିଲା ସ୍ଲମ୍‌ଡ଼ଗ୍ ବିଧାୟକ ହେଉଛନ୍ତି ଆମର ମଧ-ଭୁବନେଶ୍ୱର ବିଧାୟକ ବିଜୟ ମହାନ୍ତି । ସଙ୍ଗେସଙ୍ଗେ ମନ୍ତ୍ରୀ ଓ ବିଧାୟକମାନଙ୍କ ପାଟିରୁ ଖୁବ୍ ଜୋର୍‌ରେ ହସ ବାହାରି ଆସିଲା । ସେମାନଙ୍କ ସହିତ ତାଳ ଦେଇ ମଧ ନବୀନ ହସି ଚାଲିଲେ । ଏହି ଥଟ୍ଟା ପରିହାସ ମଧରେ ନବୀନ କହି ଚାଲିଥିଲେ ଯେ, ଆପଣମାନେ ବୋଧହୁଏ ସ୍ଲମ୍‌ଡ଼ଗ୍ ସିନେମା ଦେଖିନାହାନ୍ତି । ନଚେତ୍ ମୋ ପୂର୍ବରୁ ଆପଣମାନେ ବିଜୟ ମହାନ୍ତିଙ୍କୁ ସ୍ଲମ୍‌ଡ଼ଗ୍ ବିଧାୟକ ବୋଲି କହିସାରନ୍ତେଣି । ନବୀନଙ୍କ ମୁହଁକୁ ଦେଖିଲେ ଯେ ସେ ଏମିତି ଥଟ୍ଟା ପରିହାସ କରନ୍ତି ତାହା କେହି ଜାଣିପାରିବେ ନାହିଁ । ନବୀନ ବହୁ ବିଳମ୍ବରେ ରାଜନୀତିକୁ ଆସିଲେ । ରାଜନୀତିକୁ ଆସିବା ପୂର୍ବରୁ ତାଙ୍କର ପରିଚୟ ଥିଲା ଜଣେ ଲେଖକ ଓ ସଂସ୍କୃତିପ୍ରିୟ ବ୍ୟକ୍ତି ଭାବେ । ଏହି ଦୃଷ୍ଟିରୁ ନବୀନ ଜଣେ ଖୁସ୍ ମିଜାଜର ବ୍ୟକ୍ତି ଥିଲେ । ରାଜନୀତିକୁ ଆସିବା ପରେ ତାଙ୍କର ଖୁସ୍ ମିଜାଜ୍‌କୁ ସେ ପ୍ରାୟ ହଜାଇ ଦେଇଥିଲେ । କିନ୍ତୁ ହ୍ୟାଟ୍ରିକ୍ ମୁଖ୍ୟମନ୍ତ୍ରୀ ହେବାପରେ ଏବେ ନବୀନ ବେଳେବେଳେ ଖୁସ୍ ମିଜାଜ୍ ହୋଇଯାଉଛନ୍ତି । ବୋଧହୁଏ ରାଜନୀତିରେ ଟେନ୍‌ସନ୍ ଭିତରେ ରହି ନବୀନ ଏକାକୀ ହୋଇଯାଉଥିବାରୁ ତାଙ୍କୁ ଖୁସ୍ ମିଜାଜ୍ ରହିବା ପାଇଁ କୌଣସି ଚିକିତ୍ସକ ପରାମର୍ଶ ଦେଇଥାଇପାରନ୍ତି । ଦେଖାଯାଉ ନବୀନ ଓଡ଼ିଶାର ଟେନ୍‌ସନ୍ ରାଜନୀତିରେ ଖୁସ୍ ମିଜାଜ୍ ନେତା ହୋଇପାରୁଛନ୍ତି କି ନାହିଁ । ■

## ସଂଜୟ ଓ ମୁଢ଼ି



ଏ ହେଲେ ସଂଜୟ ଦାସବର୍ମା । ବିଜୁ ଯୁବ ଜନତା ଦଳର ଏ ହେଉଛନ୍ତି ଆବାହକ । ଏମିତି ଓଡ଼ିଶାରେ କଂଗ୍ରେସର ରାଜକୁମାର ବୋଲି କୁହାଯାଉଥିବା ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କୁ ତାଙ୍କ ବ୍ରହ୍ମଗିରି ନିର୍ବାଚନମଣ୍ଡଳୀରେ ହରାଇ ଏଥର ନିର୍ବାଚିତ ହୋଇଛନ୍ତି ସଂଜୟ । ଯେଉଁଥିପାଇଁ ସେ ବେଶ୍ ଚର୍ଚ୍ଚାକୁ ଆସିଥିଲେ । ସଂଜୟଙ୍କର ଖିରି ପ୍ରତି ଭାରି ଦୁର୍ବଳତା । ପୁଣି ଏହା ଅନ୍ୟ କେଉଁ ଖିରି ନୁହେଁ । ଏହା ହେଉଛି ଚାଉଳଖିରି

ପୁଣି ଗାଈକ୍ଷୀରରେ ପ୍ରସ୍ତୁତ ହୋଇଥିବ ଏହି ଖିରି । ସଂଜୟ ଏହି ଚାଉଳଖିରି ଖାଇଦେଲେ ବେଶ୍ ଆତ୍ମସନ୍ତୋଷ ଲାଭ କରନ୍ତି । ଚାଉଳଖିରି ଖାଇବା ପରେ ଯଦି କେହି ତାଙ୍କର କାମ କଥା କହନ୍ତି ତେବେ ସଙ୍ଗେସଙ୍ଗେ ତାହା ମଂଜୁର ହୋଇଯାଏ । ସଂଜୟଙ୍କ ଖାଦ୍ୟ ପ୍ରତି ଦୁର୍ବଳତା ଯେ ଏଇଠି ଶେଷ ହୋଇଯାଇଛି ତାହା ନୁହେଁ । ମୁଢ଼ି ମିକ୍ସଚର ହେଉ କି ଚୁଡ଼ା ମିକ୍ସଚର ହେଉ ସେଥିପ୍ରତି ମଧ ସଂଜୟଙ୍କର ବେଶ୍ ଦୁର୍ବଳତା ରହିଛି । ସବୁଦିନ କିଛି ନହେଲେ ମଧ ଏହି ମିକ୍ସଚର ସେ ଖାଇବାକୁ ପସନ୍ଦ କରିଥା'ନ୍ତି । ■



## କୋଳଥ ଡାଲି, ପ୍ରଦୀପ ଓ ଆମ୍ବୁଲ

କୋଥାରେ ଅଛି କୋଳଥ ଡାଲି ଖୁଆଇବ ଯିଏ ହଗେଇ ନେବ ସିଏ । ମାନେ କୋଳଥ ଡାଲି ଖାଇଲେ କୁଆଡ଼େ ଝାଡ଼ା ହୁଏ । କିନ୍ତୁ ଏହା ଭୁଲ ବୋଲି ପ୍ରମାଣିତ କରିଛନ୍ତି ପିପିଲି ବିଧାୟକ ପ୍ରଦୀପ ମହାରଥୀ । ତାଙ୍କର କୁଆଡ଼େ କୋଳଥ ଡାଲି ବେଶ୍ ପ୍ରିୟ ଅଟେ । କୋଳଥ ଡାଲିରେ ଆମ୍ବୁଲ ପଡ଼ିବ ଆଉ ସେହି ଡାଲି ରସୁଣରେ ବଘରା ହେବ । ସେତିକି ହୋଇଗଲେ ଜାଣ ପ୍ରଦୀପଙ୍କର ଭାତ ପାଟିକୁ ଗୁଣ୍ଡା ପରେ ଗୁଣ୍ଡା ଚାଲିଯିବ । ଅବଶ୍ୟ କୋଳଥ ଡାଲି ଖାଇଲେ ପେଟରେ ପଥର ସୃଷ୍ଟି ହେବ ନାହିଁ । କୋଳଥ ଡାଲିର ଏହି ଔଷଧୀୟ ଗୁଣକୁ ପ୍ରଦୀପ ବୋଧହୁଏ ଭଲଭାବେ ଜାଣିନେଇଛନ୍ତି । ଆଉ ସେଇଥିପାଇଁ କୋଳଥ ଡାଲି ଖାଇବା ଅଭ୍ୟାସ କରିଦେଇଛନ୍ତି । ପ୍ରଦୀପଙ୍କୁ ଯଦି କେହି ପଚାରେ ଆଉ କ'ଣ ତାଙ୍କର ପ୍ରିୟ ଖାଦ୍ୟ ବୋଲି ତାହାହେଲେ ପ୍ରଦୀପ ଅନେକ ଖାଦ୍ୟ କଥା ବଖାଣିବେ । ଯେମିତି କଂଚା ଖାସିମାଂସରେ ତେଲ, ଲୁଣ, ହଳଦୀ, ପିଆଜ, ମସଲା ଦିଆଯାଇ ପ୍ରଥମେ ଗୋଳାଯିବ। ଏହା ପରେ ସେହି ମାଂସକୁ ପାଣି ନ ଦିଆଯାଇ ଚୁଲିରେ ବସାଯିବ । ମାଂସ ସିଝିଗଲେ ତାକୁ ପ୍ରଦୀପ ବେଶ୍ ଆଗ୍ରହର ସହିତ ଖାଇଥା'ନ୍ତି । ଭିନ୍ନ ଢ଼ଙ୍ଗରେ ରୋଷେଇ ହେଉଥିବା ଖାସି ମାଂସ ଖାଇସାରିବା ପରେ ପ୍ରଦୀପଙ୍କର ଆଉ କୌଣସି ଖାଦ୍ୟ ପ୍ରତି ଦୁର୍ବଳତା ରହେ ନାହିଁ ଯେ ତାହା ନୁହେଁ । ନଡ଼ିଆ ବରା ଖାଇବାକୁ ସତେ ଯେମିତି ସେ ଚାହିଁ ରହିଥା'ନ୍ତି। ନଡ଼ିଆ ବରା ଆସିଲେ ସେ ଗୋଟିଏ ପରେ ଗୋଟିଏ ଖାଇ ଚାଲନ୍ତି । ଅବଶ୍ୟ ପ୍ରଦୀପଙ୍କର ଖାଇବା ସଉକ ଅନ୍ୟମାନଙ୍କଠାରୁ ଭିନ୍ନ । କିନ୍ତୁ ତାଙ୍କର ଖାଇବା ଦେଖିଲେ ଯେକୌଣସି ବ୍ୟକ୍ତିଙ୍କ ପାଟିରୁ ଲାଳ ଗଡ଼ିବ ହିଁ ଗଡ଼ିବ । ■

## ସୁରଙ୍କ ଜିଭ



କଂଗ୍ରେସରେ ଯଦି କାହାକୁ କୁହାଳିଆ ନେତା କୁହାଯାଏ ତେବେ ସେ ହେଲେ ସୁରେଶ କୁମାର ରାଉତରାୟ । ବିଧାନସଭା ଭିତରେ ହେଉ କିମ୍ବା ବାହାରେ ହେଉ ସୁରେଶଙ୍କର କଥା କୁହାଳିଆକୁ

କେହି ଟପିପାରିବେ ନାହିଁ । କିନ୍ତୁ ବେଳେବେଳେ ଏହି କଥା କୁହାଳିଆ ଗୁଣ ହିଁ ତାଙ୍କ ପାଇଁ ବୁମେରାଂ ହୋଇଯାଏ । ନିର୍ବାଚନରେ ଓଡ଼ିଶାରେ କଂଗ୍ରେସର ପରାଜୟ ପାଇଁ ସେ ବେଳେବେଳେ ଅନେକ ନେତାଙ୍କୁ ଦାୟୀ ବୋଲି ଖୋଲାଖୋଲି ଭାବେ କହିଦେଲେ । ଏହାପରେ ସୁରେଶଙ୍କ ପାଖକୁ ବାର୍ତ୍ତା ଆସିଲା ଏଭଳି କଥା କୁହନାହିଁ ବୋଲି । ଏହା ଫଳରେ ତାଙ୍କର କଂଗ୍ରେସ ରାଜନୀତି ଖତମ୍ ହୋଇଯାଇପାରେ । କିଛିଦିନ ପାଇଁ ସୁରେଶ ଚୁପ୍ ରହିଯାଆନ୍ତି । ତା'ପରେ ପୁଣି ଯାହା ଥିଲେ ସେଇଆ ହୋଇଯାଆନ୍ତି ସୁରେଶ । ମାନେ ପାଟି ଫିଟିଲା ମାତ୍ରେ ବାହାରିଯାଏ ଅନେକ କଥା । ଏମିତି ସେଦିନ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଆସାମ ରାଜ୍ୟପାଳ ଭାବେ ନିଯୁକ୍ତି ପାଇଥିବା ଯୋଗୁ ସମ୍ବର୍ଦ୍ଧନା ଦିଆଯାଉଥିଲା । ଏଥିରେ ଓଡ଼ିଶାର ପ୍ରାୟ ସବୁ ନାମୀଦାମୀ କଂଗ୍ରେସ ନେତାମାନେ ଉପସ୍ଥିତ ଥିଲେ । ସୁରେଶଙ୍କୁ ଡକାଗଲା କହିବା ପାଇଁ । ସେ କହିବା ଆରମ୍ଭ କଲେ ଆଉ ଆଗପଛ କିଛି ଦେଖିଲେ ନାହିଁ । କହୁକହୁ ତାଙ୍କ ପାଟିରୁ ବାହାରିଗଲା ଯେ, ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପରି ଗୁଣୀ, ଜ୍ଞାନୀ, ଟାଲେଂଟେଡ୍ ନେତା ଓଡ଼ିଶାରେ କେହି ନାହାନ୍ତି । ତେବେ ତାଙ୍କର ପରିବାରର କିଛି ସଭ୍ୟଙ୍କ ପାଇଁ ସେ ଆଉ ଉପରକୁ ଉଠିପାରୁନାହାନ୍ତି । ଅବଶ୍ୟ ସୁରେଶଙ୍କ ଏହି ବକ୍ତବ୍ୟ ଶୁଣି ସେଠାରେ ଉପସ୍ଥିତି କିଛି କଂଗ୍ରେସ ନେତା କୁରୁଳି ଉଠିଥିଲେ । ପରେ ସୁରେଶ ଜାଣିପାରିଲେ ଯେ, ସେଭଳି ଭାଷଣ ତାଙ୍କର ଦେବାର ନଥିଲା । ସୁରେଶଙ୍କର ଅପ୍ରିୟ ସତ୍ୟ ଭାଷଣଗୁଡ଼ିକ ତାଙ୍କ ପାଇଁ ଏବେ ସବୁବେଳେ କାଳ ହେବାରେ ଲାଗିଛି । ଏବେ ସୁରେଶ ବିବାହଭୋଜି ହେଉ କିମ୍ବା ଅନ୍ୟ କେଉଁ ଉତ୍ସବ ହେଉ ସେଠାକୁ ଗଲେ ପାଟିବୁଜି ଯାଉଛନ୍ତି । କେହି ଯଦି କିଛି ତାଙ୍କୁ ପଚାରୁଛନ୍ତି ତେବେ ତାଙ୍କ ପାଟିରୁ କେବଳ ଗୋଟିଏ ଉତ୍ତର ବାହାରୁଛି ତାହା ହେଲା- ମୋ ଜିଭକୁ ଟିକିଏ କଂଟ୍ରୋଲକୁ ଆଣିଦିଅନ୍ତୁ । ଏବେ ମୋ ଜିଭ ମୋ ପାଇଁ ଶତ୍ରୁ ହୋଇଯାଇଛି । ସୁରେଶଙ୍କ ଜିଭ ତାଙ୍କ ପାଇଁ ଶତ୍ରୁ ହୋଇଯାଇଛି ବୋଲି ଏବେ ବିଭିନ୍ନ ଆଡ଼େ ଚର୍ଚ୍ଚାର ଖୋରାକି ହୋଇଯାଇଛି । ଦେଖାଯାଉ ସୁରେଶ କେତେଦିନ ତାଙ୍କ ଜିଭକୁ କଂଟ୍ରୋଲରେ ରଖିପାରୁଛନ୍ତି । ■

## ଲଲାଟେନ୍ଦୁଙ୍କ ଦରବାର



ଏମିତି ଦେଖିଲେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ ସଭାପତି ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର ବିଧାୟକ ନାହାନ୍ତି । ବ୍ରହ୍ମଗିରିରେ କଂଗ୍ରେସ ପ୍ରାର୍ଥୀ ହୋଇଥିବା ବେଳେ ତାଙ୍କୁ ହରାଇ ଦେଇଥିଲେ ବିଜେଡିର ସଂଜୟ ଦାସବର୍ମା । ବିଜେଡି ନେତାମାନେ ଆଶା କରୁଥିଲେ ଯେ, ହାରିଯିବା ପରେ ଲଲାଟେନ୍ଦୁଙ୍କ ରାଜନୀତି ଆଉ ପୂର୍ବପରି ଚାଲିବ ନାହିଁ । ମାନେ ପୂରାପୂରି ନିଷ୍କ୍ରିୟ ହୋଇଯିବେ ଲଲାଟେନ୍ଦୁ । କିନ୍ତୁ କେହି ଯଦି ଲଲାଟେନ୍ଦୁଙ୍କ ଦରବାରକୁ ଚାଲିଯିବେ ତେବେ ସେଠାରେ ଯେଉଁସବୁ ଦୃଶ୍ୟ ଦେଖିବେ ତାହା ଲଲାଟେନ୍ଦୁ ହାତୀ ମଲେ ଲକ୍ଷେ, ଜିଇଲେ ଲକ୍ଷେ ପରି । ମାନେ ବିଧାୟକ

ଥିବାବେଳେ ଲଲାଟେନ୍ଦୁଙ୍କ ଦରବାର ଯେପରି ଚାଲିଥିଲା ବିଧାୟକ ନଥିବା ବେଳେ ଲଲାଟେନ୍ଦୁଙ୍କ ଦରବାର ମଧ୍ୟ ସେହିପରି ଚାଲିଛି । ଲଲାଟେନ୍ଦୁ ବିଧାୟକ ନାହାନ୍ତି ସତ କିନ୍ତୁ ତାଙ୍କ ଦରବାରକୁ ଚାଲିଗଲେ ଦେଖାଯିବ ଯେ, କଂଗ୍ରେସର ନୂତନ ଭାବେ ନିର୍ବାଚିତ ହୋଇଥିବା ୧୭ ଜଣ ବିଧାୟକ ସେଠାକୁ ଆସନ୍ତି । ସେହିଠାରେ ହିଁ ସେମାନଙ୍କର ବିଧାନସଭାରେ ପଚାରିବାକୁ ଲିଖିତ ଓ ମୌଖିକ ପ୍ରଶ୍ନ ପ୍ରସ୍ତୁତ ହୋଇଥାଏ । ସେହିଠାରେ ହିଁ କଂଗ୍ରେସର ସଂଖ୍ୟାଧିକ ବିଧାୟକଙ୍କର ବିଧାନସଭାରେ ରଣକୌଶଳ ସ୍ଥିର ହୋଇଥାଏ । ସେହିଠାରେ ହିଁ ଓଡ଼ିଶାରେ ଛାତ୍ର କଂଗ୍ରେସ କେଉଁ ଆନ୍ଦୋଳନ କରିବ ନିଷ୍ପତି ହୋଇଥାଏ । ସିଧାସଳଖ କୁହାଗଲେ ଏହା ହେବ ଯେ, ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କର ଦରବାର ହିଁ ପାଲଟି ଯାଇଛି କଂଗ୍ରେସର କାର୍ଯ୍ୟକ୍ଷେତ୍ର । ମାନେ କଂଗ୍ରେସ ଓଡ଼ିଶାରେ ଆନ୍ଦୋଳନାତ୍ମକ କିମ୍ବା ବିକ୍ଷୋଭ କାର୍ଯ୍ୟକ୍ରମ ଗ୍ରହଣ କରିବାରେ ପଛେଇ ଯାଇଥିବା ବେଳେ ଲଲାଟେନ୍ଦୁ ହିଁ କଂଗ୍ରେସର କାର୍ଯ୍ୟକ୍ରମକୁ ଜାରି ରଖିବାରେ ସଫଳ ହୋଇଛନ୍ତି । ଲଲାଟେନ୍ଦୁ ଏବେ ମଧ୍ୟ ନିର୍ବାଚନରେ କାହିଁକି ହାରିଲେ ସେ ସମ୍ପର୍କରେ ବି ବେଳେବେଳେ ଆଲୋଚନା କରିଥା'ନ୍ତି । ଏମିତି ଅସୁସ୍ଥତା ଥିବା ସମୟରେ ଦଳର କାର୍ଯ୍ୟକାରୀ ସଭାପତି ଦାୟିତ୍ୱ ନିର୍ବାହ କରିବାରୁ ତାଙ୍କ ପାଇଁ ନିଜ ନିର୍ବାଚନମଣ୍ଡଳୀ ପ୍ରତି ସମୟ ଦେବା ସମ୍ଭବ ହେଲାନାହିଁ । ପୁଣି ଅସୁସ୍ଥ ହୋଇଥିବାରୁ ନିର୍ବାଚନ ସମୟରେ ସାରା ନିର୍ବାଚନମଣ୍ଡଳୀକୁ ମଧ୍ୟ ସେ ଗସ୍ତ କରିପାରିଲେ ନାହିଁ । ସରଜମିନକୁ ନଯାଇ ଗୋଟିଏ ସ୍ଥାନରେ ରହି ନିର୍ବାଚନ ପରିଚାଳନା କରିଥିବାରୁ ଏହା ମଧ୍ୟ ତାଙ୍କ ପାଇଁ ପରାଜୟର ଆଉ ଏକ କାରଣ ହୋଇଥିଲା । ପୁଣି ପ୍ରତି ପଂଚାୟତରେ କିଛିକିଛି ଖାଂଟି କଂଗ୍ରେସ ଭୋଟରମାନେ ଭୋଟର ତାଲିକାରୁ ବାଦ୍ ପଡ଼ିଯିବାରୁ ତାଙ୍କର ଭୋଟ ମଧ୍ୟ କମିଯାଇଥିଲା । ତେବେ ନିର୍ବାଚନରେ ହାରିଯିବା ପରେ ମଧ୍ୟ ବ୍ରହ୍ମଗିରି ନିର୍ବାଚନମଣ୍ଡଳୀରେ ଲଲାଟେନ୍ଦୁ ତାଙ୍କର ସାଂଗଠନିକ କାର୍ଯ୍ୟ ପୂର୍ବପରି ବଜାୟ ରଖିଛନ୍ତି । ସଂଜୟ ଦାସବର୍ମାଙ୍କ ଦୋଷଦୁର୍ବଳତାକୁ ସେ ଉଣ୍ଡି ରହିଛନ୍ତି । ତେବେ ଲଲାଟେନ୍ଦୁଙ୍କର ଦରବାର ହିଁ କଂଗ୍ରେସ ରାଜନୀତି ପାଇଁ ଏକ ଉତ୍ସ ହୋଇଯାଇଛି ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । ■

## ସାଲୁଜା ଓ ନକ୍ସଲ



ବିଧାୟକ ଯେ ନକ୍ସଲ ହେବେ ଏହା କେହି ଭାବିପାରିବେ ନାହିଁ । କିନ୍ତୁ ଯେତେବେଳେ ବିଧାୟକ କହିବେ ସେ ନିଜେ ନକ୍ସଲ ହୋଇଯିବେ ବୋଲି ସେତେବେଳେ ତାହା ମଧ୍ୟ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗିବ ହିଁ ଲାଗିବ । ଏଭଳି ଏକ ଘଟଣା ଦେଖିବାକୁ ମିଳିଥିଲା ବିଧାନସଭାର ଗାନ୍ଧୀମୂର୍ତୀ ନିକଟରେ । ସେଠାରେ ଦେହରେ କଳାକନା ଗୁଡ଼ାଇ କଂଗ୍ରେସ ବିଧାୟକମାନେ ଧାରଣାରେ ବସିଥିଲେ । ହଠାତ୍ ଦେଖାଗଲା ସନ୍ତୋଷ ସିଂ ସାଲୁଜା କଳାକନାକୁ ମୁହଁରେ ଗୁଡ଼ାଇ ଦେଇଛନ୍ତି । ମୁଣ୍ଡରେ ମଧ୍ୟ କଳାରଙ୍ଗର ପଗଡ଼ି ସେ ଭିଡ଼ିଛନ୍ତି । ଖାଲି ଆଖି ଦୁଇଟିକୁ ଛାଡ଼ିଦେଲେ ତାଙ୍କର ମୁଣ୍ଡ ଆଉ ମୁହଁ ସବୁ କଳାକନାରେ ଆବୃତ । ଅନ୍ୟ କଂଗ୍ରେସ

ବିଧାୟକମାନେ କଳାକନାକୁ ବେକରେ ପକାଇଥିବା ବେଳେ ସନ୍ତୋଷ ସିଂ ସାଲୁଜାଙ୍କର ରୂପ କିନ୍ତୁ ଭିନ୍ନ ଥିଲା । ସେ ଏ କ୍ଷେତ୍ରରେ ନିଜଆଡୁ କିଛିଟା କହୁଥିବାର ଦେଖାଯାଇଥିଲା । କଳାକନାରେ ଆଚ୍ଛାଦିତ ହୋଇଥିବା ସନ୍ତୋଷଙ୍କ ମୁହଁଟି ସତେ ଯେମିତି ଜଣେ ନକ୍ସଲ ବ୍ୟକ୍ତିର ମୁହଁ ପରି ଦେଖାଯାଉଥିଲା । ସନ୍ତୋଷ କହୁଥିଲେ- ତାଙ୍କର ଦାବି ଯୁକ୍ତିଯୁକ୍ତ ଅଟେ । କୋଇଲା ଦୁର୍ନୀତିରେ ଛନ୍ଦି ହୋଇଯାଇଥିବା ଦୁଇଜଣ ମନ୍ତ୍ରୀଙ୍କୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମନ୍ତ୍ରିମଣ୍ଡଳରୁ ବାଦ୍ ଦିଅନ୍ତୁ । ସେମାନଙ୍କର ଦାବି ଏହାକୁ ଛାଡ଼ିଦେଲେ ଆଉ କିଛି ନାହିଁ । ଏହି ଦାବିକୁ ମୁଖ୍ୟମନ୍ତ୍ରୀ ଗ୍ରହଣ କରୁ ନଥିବାରୁ ସେମାନେ ଗୃହ ଛାଡ଼ି ଗାନ୍ଧୀମୂର୍ତ୍ତୀ ତଳେ ଧାରଣାରେ ବସିଛନ୍ତି । କାହିଁକି ମୁଖ୍ୟମନ୍ତ୍ରୀ ସେମାନଙ୍କର ଦାବିକୁ ଗ୍ରହଣ କରୁନାହାନ୍ତି ତାହାର ରହସ୍ୟ ବି ଜଣାପଡୁନାହିଁ । ଏବେ ଜଣାପଡ଼ିଲାଣି ରାଜ୍ୟରେ ନକ୍ସଲଙ୍କ ଉପଦ୍ରବ କାହିଁକି ବଢୁଛି ବୋଲି । ଯୁକ୍ତିଯୁକ୍ତ ଦାବିକୁ ସରକାର ଯଦି ଗ୍ରହଣ ନକରିବେ ତେବେ ସେ କ୍ଷେତ୍ରରେ ନକ୍ସଲ ଉପଦ୍ରବ ବଢ଼ିବ ହିଁ ବଢ଼ିବ । ବିରୋଧୀ ଦଳର ଦାବିକୁ ନବୀନ ପଟ୍ଟନାୟକ ଗ୍ରହଣ କରୁ ନଥିବାରୁ ଆବଶ୍ୟକ ହେଲେ ତାଙ୍କୁ ନକ୍ସଲ ହେବାକୁ ପଡ଼ିବ ବୋଲି ସନ୍ତୋଷ ସିଂ ସାଲୁଜା ମନ୍ତବ୍ୟ ଦେଲେ । ଯେଉଁଥିପାଇଁ କଳାକନାରେ ତାଙ୍କ ମୁହଁକୁ ନକ୍ସଲଙ୍କ ପରି ଆବୃତ କରିଛନ୍ତି ବୋଲି ସେ କହିଲେ । ଯେଉଁଠି ଦାବି ହାସଲ ନହେବ ସେଠି ନକ୍ସଲ ହେବାକୁ ପଡ଼ିବ ବୋଲି ସନ୍ତୋଷ ସିଂ ସାଲୁଜା କହୁଥିବା ବେଳେ ତାଙ୍କୁ ସମର୍ଥନ କରୁଥିଲେ ସେଠାରେ ଥିବା କଂଗ୍ରେସର କିଛି ବିଧାୟକ । ସେମାନେ କହୁଥିଲେ ସେମାନଙ୍କର ଆଉ କିଛି ବିକଳ୍ପ ନାହିଁ । ନବୀନ ପଟ୍ଟନାୟକ କଂଗ୍ରେସର ଦାବିକୁ ଶୁଣୁନାହାନ୍ତି । ତେଣୁ ଆମକୁ ନକ୍ସଲ ହେବାକୁ ହିଁ ପଡ଼ିବ । ଏମିତି ନେତାମାନେ ବିଭିନ୍ନ ସମୟରେ ବିଭିନ୍ନ ପ୍ରସଙ୍ଗ ଉଠାଇଥା'ନ୍ତି । ଆଉ ଯିଏ ପ୍ରସଙ୍ଗ ଉଠାଇ ନପାରିବ ଜାଣ ସେ କାଡୁଆ ନେତା ନୁହେଁ । ତେଣୁ ସନ୍ତୋଷ ସିଂ ସାଲୁଜା ହୁଅନ୍ତୁ କିମ୍ବା ଅନ୍ୟ କେହି ହୁଅନ୍ତୁ ସେମାନେ ନକ୍ସଲ ହେବେ କି ନାହିଁ ତାହା ପରର କଥା । କିନ୍ତୁ ସେମାନଙ୍କ ଠାଣି କଥାବାର୍ତ୍ତା ହିଁ ସ୍ପଷ୍ଟ କରିଦେଇଛି ଯେ, ସେମାନେ ହେଉଛନ୍ତି ଦାଣ୍ଡୁଆ ନେତା ବୋଲି । ■

## ବାପ-ପୁଅ ରାଜନୀତି

ବିଧାନସଭାରେ ବାପ-ପୁଅ ରାଜନୀତି ବୋଲି ଯଦି କାହାକୁ କୁହାଯିବ ତା' ହେଲେ ବୁଝାଇବ ଦୁଇଟି ପରିବାରକୁ । ଜଣେ ହେଲେ କଟକ ସଦର ବିଧାୟକ କାଳନ୍ଦୀ ବେହେରା ଓ ତାଙ୍କ ପୁଅ ସାଲେପୁର ବିଧାୟକ ଚନ୍ଦ୍ରସାରଥୀ ବେହେରା । ଅନ୍ୟ ଜଣେ ହେଲେ ସୁକିନ୍ଦା ବିଧାୟକ ତଥା ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଓ ତାଙ୍କ ପୁଅ କୋରେଇ ବିଧାୟକ ପ୍ରୀତିରଂଜନ ଘଡ଼ାଇ । ତେବେ କାଳନ୍ଦୀ ଓ ତାଙ୍କ ପୁଅ ଚନ୍ଦ୍ରସାରଥୀ ଉଭୟେ ବିଧାୟକ ମଧ୍ୟରେ ସୀମିତ ଅଛନ୍ତି । ଅନ୍ୟପକ୍ଷରେ ପ୍ରଫୁଲ୍ଲ ମନ୍ତ୍ରୀ ଥିବାବେଳେ ତାଙ୍କ ପୁଅ ପ୍ରୀତିରଂଜନ ବିଧାୟକ । ବିଧାନସଭାରେ ବାପ-ପୁଅ ରାଜନୀତି

କୁହାଗଲେ ସିଧାସଳଖ ବୁଝାଇବ ପ୍ରଫୁଲ୍ଲ ଘଡ଼ାଇ ଓ ତାଙ୍କ ପୁଅ ପ୍ରୀତିରଂଜନ ଘଡ଼ାଇଙ୍କୁ । ପରିବାରରେ ବାପ-ପୁଅଙ୍କ ସମ୍ପର୍କ ଅଲଗା । ଏମିତି ପୁଅକୁ ବାପ କେତେବେଳେ ଗାଳି ଦେଇଥାଏ ତ ପୁଅ କେତେବେଳେ ବାପାଙ୍କ ଉପରେ ବିରକ୍ତ ବି ହୋଇଥାଏ । କିନ୍ତୁ ଯେଉଁ ଦୃଶ୍ୟଟି ବିଧାନସଭାରେ ସମସ୍ତଙ୍କୁ ବାପ-ପୁଅ ରାଜନୀତି ବୋଲି କହିବା ପାଇଁ ବାଧ କରିଛି ସେ କ୍ଷେତ୍ରକୁ ଆମକୁ ଯିବାକୁ ପଡ଼ିବ । ଅବଶ୍ୟ ଏସବୁ ଘଟଣା ଉଭୟ ବାପା ପ୍ରଫୁଲ ଚନ୍ଦ୍ର ଘଡ଼ାଇ ଓ ପୁଅ ପ୍ରୀତିରଂଜନ ଘଡ଼ାଇଙ୍କ ପାଇଁ ଚିରକାଳ ସ୍ମରଣୀୟ ହୋଇରହିବ । ବାପା ମନ୍ତ୍ରୀ ହିସାବରେ ବିଧାନସଭାରେ ଉତର ଦେଉଥିବେ ଆଉ ପୁଅ ବିଧାୟକ ଭାବେ ବାପାଙ୍କୁ ବିଧାନସଭାରେ ପ୍ରଶ୍ନ ପଚାରୁଥିବ ଏଭଳି ଦୃଶ୍ୟ ଭାରତବର୍ଷରେ କାଁ ଭାଁ ଦେଖିବାକୁ ମିଳିଥାଏ । ତେବେ ଓଡ଼ିଶା ବିଧାନସଭାରେ ଏଭଳି ଦୃଶ୍ୟ ଦେଖିବାକୁ ମିଳିଥିଲା । ପୁଅ ପ୍ରୀତିରଂଜନ ଘଡ଼ାଇ ପ୍ରଶ୍ନ ପଚାରିଥିଲେ ବାପା ତଥା ମନ୍ତ୍ରୀ ପ୍ରଫୁଲ ଚନ୍ଦ୍ର ଘଡ଼ାଇଙ୍କୁ । ଏହି ବିରଳ ଦୃଶ୍ୟଟି ବେଶ୍ ଚମତ୍କାର ହୋଇଥିଲା ବିଧାନସଭାରେ । ଏହାକୁ ନେଇ ମଧ୍ୟ ଚର୍ଚ୍ଚା ବି ହୋଇଥିଲା । ଅବଶ୍ୟ ପ୍ରଶ୍ନ ଯେ ଗୁରୁତ୍ୱପୂର୍ଣ୍ଣ ନଥିଲା ତାହା ନୁହେଁ । ପୁଅ ଯେପରି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ପଚାରୁଥିଲେ ବାପା ସେପରି ମଧ୍ୟ ଦାୟିତ୍ୱପୂର୍ଣ୍ଣ ଉତର ଦେଉଥିଲେ । ଯାହା ହେଲେ ମଧ୍ୟ ମାନିବାକୁ ପଡ଼ିବ ଘଡ଼ାଇ ପରିବାରକୁ । କେବଳ ବିଧାନସଭାରେ ନୁହେଁ ଉଭୟ ବାପ-ପୁଅ ପ୍ରଶ୍ନ ପଚାରିବା ଓ ଉତର ଦେବା କ୍ଷେତ୍ରରେ ଓଡ଼ିଶା ରାଜନୀତି ଇତିହାସରେ ସେମାନେ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବେ ହିଁ ରହିବେ । ■

## ଚିକେନ୍ ପ୍ରିୟ ପ୍ୟାରୀ



ତାଙ୍କର ସଂକ୍ଷିପ୍ତ ନାମକରଣ କରାଯାଇଛି । ତାହାହେଲା ପିଏମ୍ । ମାନେ ପ୍ରାଇମ୍ ମିନିଷ୍ଟର ନୁହେଁ, ପ୍ୟାରୀ ମହାପାତ୍ର । ରାଜ୍ୟସଭା ସଭ୍ୟ ହେବାପରେ ଏହି ପିଏମ୍ ନାମକରଣଟିକୁ ନେଇ ସବୁବେଳେ ଚର୍ଚ୍ଚା ପରେ ଚର୍ଚ୍ଚା । କିଏ କହିଲାଣି ପ୍ରକୃତରେ ଓଡ଼ିଶା ପାଇଁ ପିଏମ୍ ହେଉଛନ୍ତି ପ୍ୟାରୀ ମହାପାତ୍ର । ସେ ସିଏମ୍ ମାନେ ଚିଫ୍ ମିନିଷ୍ଟରଙ୍କ ଠାରୁ ବଡ଼ । ଶାସନ ଚଳାଉଛନ୍ତି ସିଏ । ଏବେ ପିଏମ୍‌ଙ୍କର ଚାଲିଚଳଣି, ଖାଇବା, ପିନ୍ଧିବାକୁ ନେଇ ମଧ୍ୟ ଚର୍ଚ୍ଚା ହେଉଛି । ଏମିତି ତ ପିଏମ୍ ନିର୍ବାଚନରେ କେତେକ ସ୍ଥାନରେ ବିଜୁ ଜନତା ଦଳ ପ୍ରାର୍ଥୀଙ୍କ ପାଇଁ ପ୍ରଚାରକୁ ଯାଇଥିଲେ । ଯେମିତି ସିଏମ୍ ପ୍ରଚାରକୁ ଗଲେ ତାଙ୍କ ଖାଇବା, ପିଇବା ଉପରେ ନଜର ଦିଆଯାଇଥାଏ ସେମିତି ପିଏମ୍ ପ୍ରଚାରକୁ ଗଲେ ତାଙ୍କର ଖାଇବା ଉପରେ ବିଶେଷ ନଜର ଦିଆ ବି ଯାଉଛି । କେଉଁଠି ରାତ୍ରିରହଣି ହେବ, କେଉଁଠି ଖାଇବା ହେବ ଆଉ ଖାଇବାର ମେନୁ କ'ଣ ହେବ ତାହା ବୁଝାଯାଇଥାଏ । ଯଦି ଆମିଷ ବାର ହୋଇଥାଏ ତା' ହେଲେ ପିଏମ୍‌ଙ୍କ ପାଇଁ ଦେଶୀ କୁକୁଡ଼ା ଖୋଜା ଯାଇଥାଏ । କୁଆଡ଼େ ଦେଶୀ କୁକୁଡ଼ା ହେଉଛି ପିଏମ୍‌ଙ୍କର ସବୁଠାରୁ ପ୍ରିୟ ଆଉ ତାଙ୍କର ପ୍ରିୟ ଖାଦ୍ୟକୁ ପରଷି ଦେଲେ ତାଙ୍କଠାରୁ ବର ମିଳିଯିବ ବୋଲି ବିଜେଡ଼ିର ନେତାମାନେ ଧରି ନେଇଥା'ନ୍ତି । ତେବେ ପିଏମ୍ ଆଗପଛ

ଦେଖି ସବୁବେଳେ ଗୋଟିଚାଳନା କରୁଥିବାରୁ ତାଙ୍କୁ ଦେଶୀ କୁକୁଡ଼ା ଖୁଆଇ କାଳେ କିଏ ତାଙ୍କଠାରୁ ବର ନେଇଯିବ ସେ ଦିଗରେ ସେ ସବୁବେଳେ ସଚେତନ ଥା'ନ୍ତି । ଦେଖାଯାଉ ଦେଶୀ କୁକୁଡ଼ା ଖୁଆଇ ପିଏମ୍‌ଙ୍କ ଠାରୁ ବିଜେଡ଼ିର କେଉଁ ନେତା ବରପ୍ରାପ୍ତ ହେଉଛନ୍ତି । ■

## ମହାରଥୀ ଜିନ୍ଦାବାଦ୍



୨୦୦୦ ମସିହାରେ ସୁରେଶ କୁମାର ରାଉତରାୟ ଜଟଣୀରୁ କଂଗ୍ରେସରୁ ବିଧାୟକ ହୋଇଥିଲେ । ବିଧାନସଭାରେ ସେ ଏକ ବକ୍ତବ୍ୟ ରଖିଥିଲେ ଯାହାକୁ ନେଇ ଏବେବି ବେଳେବେଳେ ଚର୍ଚ୍ଚା ହୁଏ । ସେତେବେଳେ ସେ ଅତ୍ୟନ୍ତ ଆବେଗ ହୋଇ କହିଥିଲେ ଯେ, ନେତାମାନଙ୍କ ଅପେକ୍ଷା ଅଫିସରମାନେ ଅଧିକ ଦୁର୍ନୀତିଗ୍ରସ୍ତ । ନେତାମାନେ ଦୁର୍ନୀତି କଲେ ତାଙ୍କ ପାଖରେ ଟଙ୍କା ରହେନାହିଁ । ସବୁଦିନ ଯଜ୍ଞ, ମ୍ୟାଚ୍, ସଂକୀର୍ତ୍ତନ, ସଭାସମିତି ହେଉ କି କିଏ ଡାକ୍ତରଖାନାକୁ ଯାଉ ସେଥିପାଇଁ ନେତାଙ୍କୁ ହିଁ ଟଙ୍କା ଦେବାକୁ ହୁଏ । କିନ୍ତୁ ଅଫିସରମାନେ ଯେଉଁ ଟଙ୍କା ଖାଆନ୍ତି ସେଥିରୁ ସେ କାଣିଚାଏ ମଧ କାହାକୁ ଦିଅନ୍ତି ନାହିଁ । ଏହାକୁ ନେଇ ସେତେବେଳେ ବେଶ୍ ଚର୍ଚ୍ଚା ହୋଇଥିଲା । ଏମିତି ଏକ ଘଟଣାର ବିଧାନସଭା ଅଧିବେଶନରେ ପୁନରାବୃତ୍ତି ଘଟିଛି । ବିଜେଡିର ପିପିଲି ବିଧାୟକ ପ୍ରଦୀପ ମହାରଥୀ ହାତ ଟେକିଲେ କିଛି କହିବା ପାଇଁ । ଗୃହରେ ଅଧକ୍ଷତା କରୁଥିବା ବାଚସ୍ପତି ପ୍ରଦୀପ ଅମାତ୍ ସଙ୍ଗେସଙ୍ଗେ ପ୍ରଦୀପ ମହାରଥୀଙ୍କ ନାମ ଡାକିଲେ କହିବା ପାଇଁ । ପ୍ରଦୀପ ମହାରଥୀ ବାଚସ୍ପତିଙ୍କ ଉଦ୍ଦେଶ୍ୟରେ କହିଲେ- ସାର୍, ଆପଣଙ୍କ ବାମପଟେ ମାର୍ଶାଲ ଆଉ ଡାହଣପଟେ ବିଧାନସଭାର ଯୁଗ୍ମସଚିବ ଅଛନ୍ତି । କେଉଁମାନେ ପ୍ରଶ୍ନ କରିବେ ସେମାନଙ୍କର ନାମର ତାଲିକା ଆପଣଙ୍କୁ ମାର୍ଶାଲ ଦେଉଛନ୍ତି । ଆଉ କେତେବେଳେ କେଉଁ ପରିସ୍ଥିତି ହେଲେ ତାହାର ଆଇନ ଅନୁଯାୟୀ କି ପଦକ୍ଷେପ ନିଆଯିବ ସେ ସମ୍ପର୍କରେ ଯୁଗ୍ମସଚିବ ଆପଣଙ୍କୁ ସହଯୋଗ କରନ୍ତି । ମାନେ ସେ ହେଉଛନ୍ତି ଚାଣକ୍ୟ । ଏବେ ସେ ଗୋଟିଏ ପ୍ରସଙ୍ଗ କହିବାକୁ ଯାଉଛନ୍ତି । ତାହା ହେଲା ବିଧାୟକ ଭାବେ ମଧ ସେମାନଙ୍କର ମାର୍ଶାଲ ଆଉ ଚାଣକ୍ୟ ମଧ ଅଛନ୍ତି । ଏହା କହିବାର ଉଦ୍ଦେଶ୍ୟ ହେଲା ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଯେଉଁ କାମ ହେବାକଥା ତାହାର ଟେଣ୍ଡର ଡକାଯିବ ନାହିଁ ବୋଲି ଆଇନ ଥିଲା । ଏପରିକି ଗୃହରେ ମଧ ଘୋଷଣା ହୋଇଥିଲା ଯେ, ୫ ଲକ୍ଷ ଟଙ୍କାର କାମକୁ ମଧ ଭାଗ ବାଂଟି ଦିଆଯିବ ଏବଂ ଟେଣ୍ଡର କରାଯିବନାହିଁ । କିନ୍ତୁ ଅଫିସରମାନେ ଏସବୁ ଆଇନକୁ ମାନୁ ନାହାନ୍ତି । ବିଧାୟକମାନଙ୍କର ବହୁ ସମର୍ଥକ ଆଉ କର୍ମୀ ଅଛନ୍ତି । ଏମିତି ସେମାନେ ସବୁ ନେତାଙ୍କ ପାଇଁ କେତେବେଳେ ମାଡ଼ ଖାଇଲେଣି ତ କେତେବେଳେ ଜେଲ୍ ଗଲେଣି । ବିଧାୟକମାନେ ପରିବାର ପ୍ରତି ସମୟ ଦେଇପାରୁନାହାଁନ୍ତି । ପିଲାଙ୍କ ପାଠପଢ଼ା ପ୍ରତି ମଧ ଦୃଷ୍ଟି ଦେଇପାରୁନାହାଁନ୍ତି । ରାଜନୀତି

ଗଣ୍ଡି ଭିତରେ ଏମିତି ରହିଯାଉଛନ୍ତି ଯେ, ସେମାନଙ୍କ ପରିବାର ସବୁବେଳେ ଅବହେଳିତ । ବିଧାୟକମାନେ ବିଧାନସଭାରେ ଆଇନ କରୁଛନ୍ତି । କିନ୍ତୁ ଅଫିସରମାନେ ବିଧାୟକମାନଙ୍କୁ ଅବିଶ୍ୱାସ କରୁଛନ୍ତି । ୫୦ ହଜାର ଟଙ୍କା କାମକୁ ଏବେ ଟେଣ୍ଡର କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଇଏ ହେଉଛି ବିଧାୟକମାନଙ୍କ ପାଇଁ ମହାବିପଦ । ସମୁଦ୍ର ଭିତରେ ତରଙ୍ଗ ହେବ ଆଉ ସେଥିରୁ ଭଉଁରୀ ସୃଷ୍ଟି ହେଲେ ଡଙ୍ଗା ବୁଡ଼ିଯିବ ହିଁ ଯିବ । ଗୃହରେ ଅନଙ୍ଗ ଉଦୟ ସିଂହଦେଓ ମନ୍ତ୍ରୀ ଭାବେ ଯେଉଁ ୫୦ ହଜାର ଟଙ୍କାର କାମକୁ ଟେଣ୍ଡର କରାଯିବ ନାହିଁ ବୋଲି ତଥ୍ୟ ରଖିଥିଲେ ସେହି ତଥ୍ୟକୁ ତର୍ଜମା କରାଯାଉ । ପରିସ୍ଥିତି ବିଧାୟକମାନଙ୍କ ପାଇଁ ଏବେ ଚୋର ମା' କବାଟ କିଳି କାନ୍ଦିବା ପରି ହୋଇଛି । କର୍ମୀଙ୍କୁ ପୋଷିବା ପାଇଁ ବିଧାୟକମାନେ କିପରି ଅସୁବିଧାରେ ପଡୁଛନ୍ତି ତାହା କେହି ଜାଣୁନାହାନ୍ତି । କେବଳ ବିଧାୟକମାନେ ଅନୁଭବୀ ହୋଇଥିବାରୁ ଜାଣିପାରିବେ । ପଂଚାୟତ ନିର୍ବାଚନ କି ଅନ୍ୟ ନିର୍ବାଚନ ହୋଇଗଲେ ଯାହା କିଛି ପାଖରେ ଟଙ୍କା ଥିବ ସବୁ ସେଇଥିରେ ଚାଲିଯିବ । ବିଧାୟକମାନଙ୍କ ମଧ୍ୟରୁ କେତେକ ମଧ ଜମିବାଡ଼ି ବିକି ଦେଉଛନ୍ତି । ଅନେକ ମଧ ମାଇପଙ୍କର ଗହଣାଗାଣ୍ଠି ବନ୍ଧା ପକାନ୍ତି । ୮୦ ପ୍ରତିଶତ ପଖାଳ, ପିଆଜ, ଟାମ୍ପଡ଼ା ଶୁଖୁଆ ଖାଇ ଚଳୁଛନ୍ତି । ଚାଲିଯାଆନ୍ତୁ ଅଫିସରମାନଙ୍କ ଘରକୁ । ସେମାନଙ୍କ ପାଇଁ ବଡ଼ବଡ଼ ହୋଟେଲ୍‌ରୁ ଖାଇବା ଆସୁଛି । ଗଣ୍ଡାଗଣ୍ଡା ଗାଡ଼ି ଚଢୁଛନ୍ତି । ଟଙ୍କା ଯାହା ନେଉଛନ୍ତି ତାହା ନିଜ ପାଇଁ ଖର୍ଚ୍ଚ କରୁଛନ୍ତି । ତାଙ୍କ ପାଇଁ କିଛି ନିୟମ ନାହିଁ । କିନ୍ତୁ ବିଧାୟକମାନଙ୍କ ପାଇଁ ସବୁ ନିୟମ ହେଉଛି । ଏମ୍‌ଏଲ୍‌ଏ ପାଣ୍ଠିରୁ ଟଙ୍କା ଦେଇ କାମ କରିବାକୁ ହେଲେ ମଧ ସେଥିରେ ବହୁ କଟକଣା ଜାରି କରାଯାଉଛି । ଏସବୁ ବିଧାୟକମାନଙ୍କ ପାଇଁ ମହାବିପଦ । ଏମିତି ଅନେକ କିଛି ଅପ୍ରିୟ ସତକଥା ମହାରଥୀ ବଖାଣିଲେ । ତାକୁ ମଧ ଗୃହରେ ଥିବା ବିଧାୟକମାନେ ବେଶ୍ ସମର୍ଥନ ଜଣାଇଲେ । ପ୍ରଦୀପ ମହାରଥୀଙ୍କ ଏହି ବକ୍ତବ୍ୟକୁ ହାଲକା ଭାବେ ଗ୍ରହଣ କରାଯିବା ଉଚିତ ନୁହେଁ । ଅନେକେ କହନ୍ତି ପ୍ରଦୀପ ମହାରଥୀ ଗୃହରେ ଏଭଳି ବକ୍ତବ୍ୟ ଦେଉଥିବାରୁ ସେ ମନ୍ତ୍ରୀ ହୋଇପାରୁନାହାନ୍ତି ବୋଲି । କିନ୍ତୁ ସାଧାରଣରେ ଯେଉଁ ଚର୍ଚ୍ଚା ହେଉଛି ତାହା ହେଲା ମନ୍ତ୍ରୀ ହୋଇନାହାନ୍ତି ବୋଲି ପ୍ରଦୀପ ମହାରଥୀ ପ୍ରକୃତ କଥାକୁ ବିଧାନସଭାରେ ଥୋଇ ପାରୁଛନ୍ତି । ପ୍ରକୃତରେ ନେତାମାନେ ଯେଉଁ ପଇସା ଖାଉଛନ୍ତି ତାହା ତଳସ୍ତରକୁ ଯାଉଛି । ଆଉ ଅଫିସରମାନେ ଯେଉଁ ପଇସା ଖାଉଛନ୍ତି ତାହା ତାଙ୍କ ବ୍ୟକ୍ତିଗତ କାମରେ ଲାଗୁଛି । ମରମ କଥାକୁ ବଖାଣିଲେ ସେଦିନ ପ୍ରଦୀପ ମହାରଥୀ । ତେବେ ପ୍ରଦୀପଙ୍କ ଏଭଳି ବକ୍ତବ୍ୟ ପାଇଁ ସେ ଏବେ ସାରାରାଜ୍ୟର ବିଜେଡି କର୍ମୀଙ୍କ ଠାରୁ ପ୍ରଶଂସା ପରେ ପ୍ରଶଂସା ପାଉଛନ୍ତି । ଯଦି ୫୦ ହଜାର ଟଙ୍କା ପର୍ଯ୍ୟନ୍ତ କାମକୁ ଟେଣ୍ଡର କରାଯିବ ନାହିଁ ତେବେ ଜାଣ ଯେ,

ଏହା କେବଳ ପ୍ରଦୀପ ମହାରଥୀଙ୍କ ପାଇଁ ହୋଇଛି ବୋଲି । ଏବେ ବିଜେଡି ରାଜନୀତିରେ ଯେଉଁ ଚର୍ଚ୍ଚା ଚାଲିଛି ତାହା ହେଲା ପ୍ରଦୀପ ମହାରଥୀଙ୍କ ପରି ବିଧାୟକ ଯଦି ବିଧାନସଭାରେ ନଥା'ନ୍ତେ ତେବେ ବିଜେଡି କର୍ମୀଙ୍କର ଅବସ୍ଥା ବାରଣ୍ଡା ଦିକଡ଼ା ହୋଇସାରନ୍ତାଣି । ମାନିବାକୁ ପଡ଼ିବ ପ୍ରଦୀପ ମହାରଥୀଙ୍କୁ । ମନ୍ତ୍ରୀ ପଛେ ନହୁଅନ୍ତୁ କିନ୍ତୁ ବିଧାନସଭାରେ ମରମ କଥା କହି ବିଜେଡି କର୍ମୀଙ୍କ ଠାରୁ ସେ ଜିନ୍ଦାବାଦ୍ ପାଉଛନ୍ତି । ■

## ଭାଗିରଥୀଙ୍କ ଅତୁଟ ସ୍ୱାସ୍ଥ୍ୟ



ଉତର-ଭୁବନେଶ୍ୱର ବିଜେଡି ବିଧାୟକ ଭାଗିରଥୀ ବଡ଼ଜେନାଙ୍କ ବୟସ କେତେ ହେବ ତାହା ତାଙ୍କ ଚେହେରାକୁ ଦେଖି ଜାଣି ହେବନାହିଁ । କିନ୍ତୁ ଏହା ସତ ଯେ, ସେ ଆଦୌ ଟୋକା ନୁହନ୍ତି । ୫୦ ବର୍ଷକୁ ବହୁଦିନରୁ ଅତିକ୍ରମ ସେ କରିସାରିଲେଣି । ଏହାସତ୍ୱେ ତାଙ୍କ ଚେହେରା ବେଶ୍ ସତେଜ ରହିଛି । ଏମିତି ତ ତାଙ୍କର କୋମଳ କଥା । ପୁଣି ବିରକ୍ତ ଭାବ ସେ ପ୍ରକାଶ କରନ୍ତି ନାହିଁ । ତାଙ୍କ ମନରେ ଆନନ୍ଦ ଥାଉ କି ନଥାଉ କିନ୍ତୁ ଅନେକ ସମୟରେ ସେ ହସିହସି କଥା କହନ୍ତି । ଭାଗିରଥୀଙ୍କର ଏଭଳି ଡଉଲଡାଉଲ ଚେହେରା କିପରି ରହିଛି ତାହାକୁ ଅନେକ ମଧ୍ୟ ଭିତିରେଇ ଦେଖିବାକୁ ଚାହିଁଛନ୍ତି । କିନ୍ତୁ ପ୍ରାୟ କେହି ଜାଣିପାରିନାହାନ୍ତି । ଭାଗିରଥୀ ସକାଳୁ ଉଠି ନିତ୍ୟକର୍ମ ସାରିବା ପରେ କିଛି ଜଡ଼ିବୁଟି ସେବନ କରିଥା'ନ୍ତି । ଏହାକୁ ତାଙ୍କ ପାଖ ଲୋକମାନେ ଔଷଧ ବୋଲି କହନ୍ତି । ଏହାପରେ ଭାଗିରଥୀ ଖୋଜି ଚାଲନ୍ତି ଅମୃତଭଣ୍ଡାକୁ । ମାନେ କଂଚା ନୁହେଁ ପାଚିଲା ଅମୃତଭଣ୍ଡା । କୁଆଡ଼େ ପିଲାଦିନୁ ପାଚିଲା ଅମୃତଭଣ୍ଡା ଖାଇବାରେ ଭାଗିରଥୀ ବେଶ୍ ଧୁରନ୍ଧର ଅଟନ୍ତି । ଆଉ ସେହି ଅଭ୍ୟାସକୁ ସେ ଏଯାବତ୍ ବେଶ୍ ବଜାୟ ରଖିଛନ୍ତି । ଭାଗିରଥୀଙ୍କୁ କେହି ଜଣେ ଡାକ୍ତର କୁଆଡ଼େ ପରାମର୍ଶ ଦେଇଥିଲେ ଯେ, ପାଚିଲା ଅମୃତଭଣ୍ଡା ଖାଇଲେ ସ୍ୱାସ୍ଥ୍ୟ ଅତୁଟ ରହିବ ବୋଲି । ଭାଗିରଥୀ କୁଆଡ଼େ ସେହିଦିନ ଠାରୁ ପାଚିଲା ଅମୃତଭଣ୍ଡା ଖାଇ ଚାଲିଛନ୍ତି । ଏମିତି ଅମୃତଭଣ୍ଡା ହେଉଛି ଅମୃତ ସଦୃଶ୍ୟ । ମାନେ ସତେ ଯେମିତି ସେଥିରେ ଅମୃତ ଭରି ରହିଛି । ଅବଶ୍ୟ ଅମୃତ ଖାଇଲେ ମୃତ୍ୟୁ ହୁଏନାହିଁ । କିନ୍ତୁ ମଣିଷ ପାଇଁ ମୃତ୍ୟୁ ଅନିବାର୍ଯ୍ୟ । ତେବେ କିଏ ଦୀର୍ଘାୟୁ ତ କିଏ ସ୍ୱଳ୍ପାୟୁ ହୋଇପାରେ । ପାଚିଲା ଅମୃତଭଣ୍ଡା ଖାଇଲେ କୁଆଡ଼େ ଚେହେରା ମଳିନ ହୁଏନାହିଁ, ମନରେ ବିରକ୍ତି ଭାବ ଆସେନାହିଁ, ହସିହସି କଥା କହିବାକୁ ଇଚ୍ଛା ହୁଏ । ଏହିସବୁ ସ୍ୱଭାବ ଭାଗିରଥୀଙ୍କ ପାଖରେ ଦେଖିବାକୁ ମିଳୁଛି । ମାନେ ପାଚିଲା ଅମୃତଭଣ୍ଡା ଖାଇବାର ପ୍ରଭାବ ସମ୍ପୂର୍ଣ୍ଣ ଭାବେ ଭାଗିରଥୀଙ୍କ ଉପରେ ପଡ଼ିଛି । ଖାଲି ଯେ ଭାଗିରଥୀ ପାଚିଲା ଅମୃତଭଣ୍ଡା ଖାଇ ଏଭଳି ଅତୁଟ ସ୍ୱାସ୍ଥ୍ୟ ରକ୍ଷା କରୁଛନ୍ତି ତାହା ନୁହେଁ । ଭାଗିରଥୀ କୁଆଡ଼େ ସକାଳୁ

ଉଠିଲେ ତମ୍ବାପାତ୍ରରେ ଥିବା ପାଣିକୁ ପିଅନ୍ତି । ଏମିତି ଆଦିମ କାଳରେ ମୁନିଋଷିମାନେ ତମ୍ବାପାତ୍ରରେ ପାଣି ରଖି ପ୍ରତ୍ୟୁଷରେ ତାହା ପାନ କରିଥା'ନ୍ତି । ଏହା କୁଆଡ଼େ ଦୀର୍ଘଜୀବୀ ହେବାର ଅନ୍ୟତମ ଔଷଧ ଅଟେ । ପୁଣି ଶରୀରକୁ ସତେଜ ରଖିବାରେ ଏହା ମଧ୍ୟ ଏକ କାରଣ । ଭାଗିରଥୀ ତମ୍ବା ପାତ୍ରରେ ଥିବା ପାଣିକୁ ସକାଳେ ପିଇବା ଆଉ ପାଚିଲା ଅମୃତଭଣ୍ଡା ସକାଳେ ଖାଉଥିବାରୁ ଏମିତି ସତେଜ ଅଛନ୍ତି ବୋଲି ଚର୍ଚ୍ଚା ବି ହେଉଛି । ଭାଗିରଥୀ ନିଜେ ପାଚିଲା ଅମୃତଭଣ୍ଡା ଖାଇବା ସହିତ ତମ୍ବାପାତ୍ରରେ ଥିବା ପାଣିକୁ ସକାଳେ ପିଇ ସତେଜ ଓ ଦୀର୍ଘଜୀବୀ ରୁହନ୍ତୁ । କିନ୍ତୁ ଅନ୍ୟମାନଙ୍କ ଆଗରେ ଏହି ପାଚିଲା ଅମୃତଭଣ୍ଡା ଖାଇବା ଓ ତମ୍ବାପାତ୍ରରେ ଥିବା ପାଣିକୁ ସକାଳେ ପିଇଲେ କିପରି ସ୍ୱାସ୍ଥ୍ୟ ସତେଜ ରହେ ସେ ସମ୍ପର୍କରେ ବଖାଣନ୍ତୁ । ତା' ହେଲେ ଯାଇ ଏକ ସୁସ୍ଥସମାଜ ଗଠନ କରିବାରେ ଭାଗିରଥୀ ସହାୟକ ହେବେ । ନିଜେ ସୁସ୍ଥ ରହି ସମାଜକୁ ମଧ୍ୟ ସୁସ୍ଥ ରଖିବାକୁ ଭାଗିରଥୀ ଆଗେଇ ଆସନ୍ତୁ । ■



## ଅତନୁଙ୍କ ଟେନ୍‌ସନ୍

ଅତନୁ ସବ୍ୟସାଚୀ ନାୟକ ରାଜନୀତିକୁ ଆସିବା ପୂର୍ବରୁ ସାମ୍ବାଦିକ ଥିଲେ । ଏମିତି ସାମ୍ବାଦିକରୁ ବିଧାୟକ ଆଉ ମନ୍ତ୍ରୀ ହେବାପରେ ଅତନୁଙ୍କ ଚାଲିଚଳଣି, ଆଚାର ବ୍ୟବହାରରେ ସେମିତି କିଛି ଯେ ଗୋଟାଏ ପରିବର୍ତ୍ତନ ହୋଇଯାଇଛି ତାହା ନୁହେଁ । ଯେମିତି ସାମ୍ବାଦିକ ଥିବାବେଳେ ଅତନୁ ସମସ୍ତଙ୍କ ସହ ସୁସମ୍ପର୍କ ରଖୁଥିଲେ ଏବେବି ସେହିପରି ସେ ସମ୍ପର୍କ ରଖିଚାଲିଛନ୍ତି । ପୁଣି ଯେମିତି ହସହସ ମୁହଁରେ ସେ କଥାବାର୍ତ୍ତା ହେଉଥିଲେ ଏବେବି ସେହିପରି ସେ କଥାବାର୍ତ୍ତା ହେଉଛନ୍ତି । ତେବେ ଭିତିରେଇ ଦେଖିଲେ ଅତନୁଙ୍କର କିଛିନା କିଛି ପରିବର୍ତ୍ତନ ହୋଇଛି ବୋଲି କୁହାଯିବ । ଉପରୁ ଦେଖିଲେ ଅତନୁ ଟେନ୍‌ସନ୍‌ରେ ରହନ୍ତି ବୋଲି କେହି ଜାଣିପାରିବେ ନାହିଁ । କିନ୍ତୁ ଭିତିରେଇ ଦେଖିଲେ ଅନେକ ସମୟରେ ଅତନୁ ଟେନ୍‌ସନ୍‌ରେ ରହନ୍ତି । ପୁଣି ଏହି ଟେନ୍‌ସନ୍ ବିଧାନସଭା ସମୟରେ ଅଧିକ ହୋଇଯାଏ । ବାସ୍ତୁଶାସ୍ତ୍ରରୁ ଜଣାପଡ଼ିଲା ଅତନୁଙ୍କର ଟେନ୍‌ସନ୍ କାହିଁକି ହେଉଛି ବୋଲି । କୁଆଡ଼େ ଦେଖାଗଲା ବିଧାନସଭାରେ ଅତନୁଙ୍କୁ ମିଳିଥିବା ପ୍ରକୋଷ୍ଠରେ ବାସ୍ତୁଶାସ୍ତ୍ର ଅନୁଯାୟୀ ଅତନୁଙ୍କ ଚୌକିଟେବୁଲ ପଡ଼ିନାହିଁ । ମାନେ ପ୍ରକୋଷ୍ଠର ଛାତରେ ଥିବା ଭିମ୍ ତଳେ ଅତନୁଙ୍କ ଚୌକିଟେବୁଲ ପଡ଼ିଛି ଆଉ ଅତନୁ ବସୁଥିଲେ ଭିମ୍ ତଳେ । ଏମିତି ବାସ୍ତୁଶାସ୍ତ୍ରରେ ଉଲ୍ଲେଖ ଅଛି ଯେ, ଭିମ୍ ତଳେ ବସିଲେ ବୋଝ ମୁଣ୍ଡ ଉପରେ ପଡ଼ିବ । ଆଉ ବୋଝ ଅଧିକ ହେଲେ ଟେନ୍‌ସନ୍ ମଧ୍ୟ ବଢ଼ିଯିବ । ଏହା ଜାଣିବା ପରେ ଅତନୁଙ୍କ ଚୌକିଟେବୁଲକୁ ଭିମ୍ ତଳରୁ ଘୁଂଚାଇ ଦିଆଗଲା । ଅତନୁ ତାଙ୍କୁ ମିଳିଥିବା ପ୍ରକୋଷ୍ଠରେ ଡାହାଣ ପଟକୁ ଘୁଂଚିଯାଇ ବସିଲେ । ଦେଖାଗଲା ଆଦୌ ଟେନ୍‌ସନ୍ ନାହିଁ । ଏବେ

ଜଣାପଡ଼ିଲାଣି ପ୍ରକୃତରେ ବାସ୍ତୁଶାସ୍ତ୍ରରେ ଯାହା ଉଲ୍ଲେଖ ହୋଇଛି ତାହା ଠିକ୍ ବୋଲି । ମାନେ ଏହା ଆଉ କାହା କ୍ଷେତ୍ରରେ ଠିକ୍ ହେଉ କି ନହେଉ କିନ୍ତୁ ଅତନୁଙ୍କ କ୍ଷେତ୍ରରେ ଶତ ପ୍ରତିଶତ ସତ । ଯୁବମନ୍ତ୍ରୀମାନେ ଅଧିକାଂଶ ସମୟରେ ବିଧାନସଭାରେ ପ୍ରଶ୍ନୋତ୍ତର ହେଉ କିମ୍ବା ସେମାନଙ୍କ ବିଭାଗକୁ ନେଇ ପ୍ରଶ୍ନ ପଚରା ହେଉ ସେଥିରେ ଟେନ୍‌ସନ୍ ରହୁଥିବାର ଦେଖାଯାଏ । ଅତନୁଙ୍କ ପରି ସେମାନେ ମଧ୍ୟ ବିଧାନସଭାରେ ସେମାନଙ୍କୁ ମିଳିଥିବା ପ୍ରକୋଷ୍ଠର ବାସ୍ତୁଶାସ୍ତ୍ର ପରୀକ୍ଷା କରିନିଅନ୍ତୁ । ଆଉ ବାସ୍ତୁଶାସ୍ତ୍ର ଅନୁଯାୟୀ ସେମାନେ ଚୌକିଟେବୁଲ ପକାଇ ବସନ୍ତୁ । ଦେଖିବେ ଅତନୁଙ୍କ ପରି ମଧ୍ୟ ସେମାନେ ଟେନ୍‌ସନ୍ ଫ୍ରି' ହୋଇଯିବେ । ■

## ଡାକ୍ତର ପ୍ରଭାତ



କଟକ-ଚୌଦ୍ୱାର ବିଧାୟକ ପ୍ରଭାତ ବିଶ୍ୱାଳ ଯେ ଡାକ୍ତର ନୁହନ୍ତି ଏହା ସମସ୍ତେ ଜାଣନ୍ତି । ଏମିତି ନିର୍ବାଚନ ପୂର୍ବରୁ ନୂତନ ଭାବେ ଗଠିତ ହୋଇଥିବା ନିଆଳି ବିଧାନସଭା ନିର୍ବାଚନମଣ୍ଡଳୀର ବିଜେଡି ସଂଗଠନ ଦାୟିତ୍ୱ ପ୍ରଭାତ ବିଶ୍ୱାଳଙ୍କ ଉପରେ ପଡ଼ିଥିଲା । ନିର୍ବାଚନରେ ସେଠାରେ ବିଜେଡିରୁ ପ୍ରାର୍ଥୀ ହେଲେ ଡାକ୍ତର ପ୍ରମୋଦ ମଲିକ । ପ୍ରଭାତଙ୍କର ମଧ୍ୟ ପ୍ରମୋଦଙ୍କ ସହିତ ବେଶ୍ ସୁସମ୍ପର୍କ ଅଛି । ଏମିତି ନିଆଳି ନିର୍ବାଚନମଣ୍ଡଳୀରେ ନିର୍ବାଚନ ପୂର୍ବରୁ ଯେଉଁ ସାଂଗଠନିକ କାର୍ଯ୍ୟ ଚାଲୁଥିଲା ସେଥିରେ ମଧ୍ୟ ବେଳେବେଳେ ପ୍ରମୋଦ ମଲିକ ଯୋଗ ଦିଅନ୍ତି । ଡାକ୍ତରଙ୍କ ସହିତ ସମ୍ପର୍କ ରଖିଲେ ଯେ ଜଣେ ଡାକ୍ତର ହୋଇଯିବ ତାହା ନୁହେଁ । କିନ୍ତୁ ପ୍ରଭାତଙ୍କ ଚେହେରା, ତାଙ୍କର ଆଚାର ବ୍ୟବହାର ସତେ ଯେମିତି ତାଙ୍କୁ ବେଳେବେଳେ ଡାକ୍ତର କରିଦେଇଥାଏ । ପ୍ରଭାତ ଅନେକ ସମୟରେ ନିର୍ବାଚନମଣ୍ଡଳୀର ବିଭିନ୍ନ ଅଂଚଳକୁ ଗସ୍ତରେ ଯାଆନ୍ତି । କାହାର ଦେହ ଖରାପ ହୋଇଛି ବୋଲି ଖବର ପାଇଲେ ପ୍ରଭାତ ତୁରନ୍ତ ତାଙ୍କ ପାଖକୁ ଛୁଟି ଯାଆନ୍ତି । ଏମିତି ଅନେକ ରୋଗୀଙ୍କୁ ମଧ୍ୟ ସେ ଚିକିତ୍ସା କରାଇଥା'ନ୍ତି । ତେବେ ରୋଗୀଙ୍କୁ ଦେଖିବା ମାତ୍ରେ ସତେ ଯେମିତି ସେ ନିଜକୁ ଡାକ୍ତର ମନେକରି ରୋଗୀଙ୍କୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଯାଆନ୍ତି । ଏମିତି କ'ଣ ଖାଉଛ, କେତେଦିନ ଦେହ ଖରାପ ହେଲାଣି, ଦେହରେ ଜ୍ୱର ରହୁଛି କି ନାହିଁ, ଦୁର୍ବଳ ଲାଗୁଛି କି ନାହିଁ, ଝାଡ଼ା, ପରିସ୍ରା ଠିକ୍ ହେଉଛି ନା ନାହିଁ ପ୍ରଭୃତି ପ୍ରଶ୍ନ ପରେ ପ୍ରଶ୍ନ ରୋଗୀଙ୍କୁ ପ୍ରଭାତ ପଚାରୁଥିବାର ଦେଖାଯାଏ । ବେଳେବେଳେ ମଧ୍ୟ ସେ ରୋଗୀର ନାଡ଼ି ଚିପନ୍ତି ଆଉ ରୋଗୀର ଆଖିତଳ ମଧ୍ୟ ଦେଖନ୍ତି । ପ୍ରଭାତଙ୍କୁ ନଜାଣିଥିବା ଲୋକ ସେ ଜଣେ ଡାକ୍ତର ବୋଲି ଭ୍ରମରେ ପଡ଼ିଯିବା ସ୍ୱାଭାବିକ । ତେବେ ଡାକ୍ତର ନହୋଇଥିଲେ ମଧ୍ୟ ପ୍ରଭାତଙ୍କ ମନୋବୃତ୍ତି ଡାକ୍ତରଙ୍କ ପରି । ମାନେ ସମାଜସେବା ମନୋବୃତ୍ତି ନଥିଲେ ଜଣେ ଡାକ୍ତର ହୋଇପାରିବ ନାହିଁ । ସେହିପରି ପ୍ରଭାତ । ମାନେ ସମାଜସେବା ମନୋବୃତ୍ତି

ଧରି ସେ ରାଜନୀତିକୁ ଓହ୍ଲାଇଛନ୍ତି । ଲୋକଙ୍କ ଦୁଃଖକଷ୍ଟ ଦେଖିଲେ ସେ ସହି ପାରୁନାହାନ୍ତି । ଆଉ ଯଦି କିଏ ଅସୁସ୍ଥ ହୋଇଗଲା ତୁରନ୍ତ ଚିକିତ୍ସାର ବ୍ୟବସ୍ଥା ମଧ୍ୟ ସେ କରିଦେଉଛନ୍ତି । ଅବଶ୍ୟ ଏଥିପାଇଁ ପ୍ରଭାତଙ୍କୁ ଧନ୍ୟବାଦ ଦେବାକୁ ହେବ । ଡାକ୍ତର ନହୋଇ ମଧ୍ୟ ପ୍ରଭାତ ଡାକ୍ତରଙ୍କ ପରି ରୋଗୀଙ୍କୁ ବ୍ୟବହାର କରନ୍ତି । ଏମିତି ଏକ ହିନ୍ଦୀ ଚଳଚ୍ଚିତ୍ର ଅଛି । ତାହାର ନାମ ହେଲା 'ମୁନ୍ନାଭାଇ ଏମ୍‌ବିବିଏସ୍' । ଏହି ଚଳଚ୍ଚିତ୍ରରେ ମୁନ୍ନାଭାଇ ଭୂମିକାରେ ଅଭିନୟ କରିଛନ୍ତି ସଂଜୟ ଦତ । ସେ ଡାକ୍ତର ଡିଗ୍ରୀ ପାଇନାହାନ୍ତି କିନ୍ତୁ ରୋଗୀଙ୍କ ସହିତ ସେ ଏମିତି ବ୍ୟବହାର କରନ୍ତି ଯେ ରୋଗୀ ବିନା ଔଷଧରେ ସୁସ୍ଥ ହୋଇଯାଆନ୍ତି । ଯେଉଁଠି ଡାକ୍ତର ବହୁ ପରିଶ୍ରମ କରି ରୋଗୀଙ୍କୁ ସୁସ୍ଥ କରିପାରନ୍ତି ନାହିଁ ସେଠାରେ ମୁନ୍ନାଭାଇ ଓରଫ୍ ସଂଜୟ ଦତ ରୋଗୀଙ୍କ ସହିତ କଥା ଓ ବ୍ୟବହାର ଏମିତି କରନ୍ତି ଯେ, ସେଥିରେ ରୋଗୀ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯାଆନ୍ତି । ମୁନ୍ନାଭାଇ ଏମ୍‌ବିବିଏସ୍ ପରି କୁଆଡ଼େ ପ୍ରଭାତ ହୋଇଛନ୍ତି ବୋଲି ଏବେ ଚୌଦ୍ୱାର-କଟକ ନିର୍ବାଚନମଣ୍ଡଳୀରେ ଚାଲିଛି ଚର୍ଚ୍ଚା । ମାନେ ପ୍ରଭାତଙ୍କ ସାମାନ୍ୟ ଆଶା ସଂଚାର ସୃଷ୍ଟି କରୁଥିବା କୋମଳ କଥାବାର୍ତ୍ତାରେ ହିଁ କୁଆଡ଼େ ରୋଗୀ ଭଲ ହୋଇଯାଉଛନ୍ତି । ପ୍ରଭାତଙ୍କ କେତେକ ପ୍ରଶଂସକ ତାଙ୍କୁ ପୂର୍ବଜନ୍ମରେ ଡାକ୍ତର ଥିଲେ ବୋଲି କହୁଛନ୍ତି । ପ୍ରଭାତ ମଧ୍ୟ ମୁନାଭାଇ ଏମ୍.ବି.ବି.ଏସ୍. ପରି ତାଙ୍କ ନାମ ପ୍ରଭାତ ଏମ୍.ବି.ବି.ଏସ୍ କରିଦିଅନ୍ତୁ । ■

## ପ୍ରସନ୍ନଙ୍କ ଦରବାର ଓ ଜଗନ୍ନାଥ



ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କ ଦରବାରକୁ ଚାଲିଗଲେ ସବୁବେଳେ କିଛିନା କିଛି ହସର ଖୋରାକି ମିଳିବ ହିଁ ମିଳିବ । ସେଦିନ ପ୍ରସନ୍ନ ବେଶ୍ ଖୋଲା ମନରେ ଥିଲେ । ହଠାତ୍ ଗେରୁଆ ବସ୍ତ୍ରଧାରୀ ଜଣେ ବ୍ୟକ୍ତି ତାଙ୍କ ପାଖକୁ ଆସିଲେ । ତାଙ୍କୁ ଦେଖି ପ୍ରସନ୍ନ କହିଲେ- ଦରବାର ସରିଆସିଲାଣି । ତଥାପି ବି କୁହ କି କାମ ତୁମର ଅଛି । ଆଉ ତୁରନ୍ତ ତାହାକୁ କରିଦେବା । ବ୍ୟକ୍ତି ଜଣଙ୍କ କହିଲେ- କାମ କିଛି ନାହିଁ । ଭୀଷଣ ଭୋକ ହେଉଛି, ଖାଇବାକୁ ଗଣ୍ଡେ ଦିଅନ୍ତୁ । ପ୍ରସନ୍ନ କହିଲେ କାଲିକୁ ଆସିବ । ତମକୁ ଟଙ୍କା ଦେବା ପାଇଁ ଦରବାରରେ ସେମିତି ଲୋକ ଏବେ ନାହାନ୍ତି । ବ୍ୟକ୍ତି ଜଣଙ୍କ କହିଲେ- କାଲିକୁ ସେ ବଂଚିଥିବେ କି ନାହିଁ ଜଣାନାହିଁ । ବର୍ତ୍ତମାନ ଖାଇବା ତାଙ୍କର ନିହାତି ଜରୁରୀ । ଆଉ ତୁରନ୍ତ ଖାଇବାର ବନ୍ଦୋବସ୍ତ କରିଦେଲେ ତାଙ୍କ ଜୀବନଟି ରହିଯିବ । ଏତିକିରେ ପ୍ରସନ୍ନ ହଡ଼ବଡ଼େଇ ଗଲେ । ଖୋଜିଲେ ଦରବାରରେ କିଏ ଦାନୀବ୍ୟକ୍ତି ଅଛନ୍ତି ବୋଲି । ହଠାତ୍ ଚୌକିରୁ ଉଠି ପ୍ରସନ୍ନ ଠିଆ ହୋଇପଡ଼ିଲେ ଆଉ କହିଲେ- ଯେଉଁ ବ୍ୟକ୍ତିଜଣଙ୍କ ଜଗନ୍ନାଥଙ୍କ ସମ୍ପର୍କରେ ତାଙ୍କ ପାଖକୁ ସୁଟିଂ କରିବା ପାଇଁ ଆସିଥିଲେ ସେ କୁଆଡ଼େ ଗଲେ । କେହି ଉତର ଦେବା ପୂର୍ବରୁ ପ୍ରସନ୍ନ ଦୌଡ଼ିଗଲେ ଘର ବାହାରକୁ ।

ବାହରେ ଠିଆ ହୋଇଥିବା ସେହି ଲୋକ ଜଣଙ୍କୁ ପ୍ରସନ୍ନ ଡାକିଲେ ଏବଂ କହିଲେ- ଏହି ଲୋକ ଜଣଙ୍କୁ ଖାଇବା ପାଇଁ ଟଙ୍କା ଦେଇଦେବେ ବୋଲି । ସଙ୍ଗେସଙ୍ଗେ ସେହି ବ୍ୟକ୍ତି ଜଣଙ୍କୁ ଟଙ୍କା ମିଳିଗଲା । ପ୍ରସନ୍ନ କହିଲେ- ଯେତେବେଳେ କପାଳରେ ଯାହା ଲେଖାଥିବ ତାହା ହିଁ ଘଟିବ । ଯଦି ଦରବାର ଚାଲିଥିବା ସମୟରେ ସେ ଆସିଥା'ନ୍ତା ତେବେ ଅନ୍ୟୁନ ୫୦୦ ଟଙ୍କା ନେଇଥା'ନ୍ତା । କିନ୍ତୁ ତା' କପାଳରେ ଅଛି କେବଳ ମିଲ୍ ଖର୍ଚ୍ଚ ମିଳିବ । ଏହା କହି ପ୍ରସନ୍ନ ହଠାତ୍ ଅତୀତର ଏକ ସ୍ମୃତିକୁ ସେଠାରେ ବର୍ଣ୍ଣନା କଲେ । ସେ କହିଲେ- ଏମିତି ଦରବାର ଚାଲିଥାଏ । ଜଣେ ବ୍ୟକ୍ତି ଆସି ତାଙ୍କ ପାଖରେ ଠିଆ ହେଲେ । ସେହି ବ୍ୟକ୍ତି ଜଣଙ୍କ କିଛି ନକହି ସେହିପରି ଠିଆ ହୋଇଥା'ନ୍ତି । ପ୍ରସନ୍ନ କହିଲେ- କ'ଣ ହୋଇଛି ତୁମର କୁହ । ସେହି ବ୍ୟକ୍ତି ଜଣଙ୍କ ହଠାତ୍ କିଛି କହିଲେ ନାହିଁ । ପ୍ରସନ୍ନ କହିଲେ- ତା' ହେଲେ ତୁମେ ସେହିପରି ଠିଆ ହୋଇଥାଅ, ଅନ୍ୟମାନଙ୍କ କଥା ବୁଝିବା । ସେହି ବ୍ୟକ୍ତି ଜଣଙ୍କର ଆଖି ଛଳଛଳ ହୋଇଯାଇଯିବାରୁ ପ୍ରସନ୍ନ ତାଙ୍କ ଆଡ଼କୁ ଚାହିଁଲେ । ସେ କହିଲେ- ଏମିତି ଘଟଣା ଘଟିଛି ଯାହାକୁ ସମସ୍ତଙ୍କ ଆଗରେ କହି ହେବନାହିଁ । ପ୍ରସନ୍ନ କହିଲେ- ସେ ନେତା । ତେଣୁ କୌଣସି କଥା ଲୁଚାଛପାରେ ସେ କରନ୍ତି ନାହିଁ । ଯାହା ଘଟିଛି ସିଧାସଳଖ କୁହ । ସକ୍ଷମ ହେଲେ ସେ ସହଯୋଗ କରିବେ । ବ୍ୟକ୍ତି ଜଣଙ୍କ କହିଲେ- ତାଙ୍କ ଝିଅକୁ ଜଣେ ଯୁବକ ପ୍ରେମ କରୁଥିଲେ । ଏହି ଗୋପନ ପ୍ରେମ ଜଣାପଡ଼ିଲା ଯେତେବେଳେ ତାଙ୍କ ଝିଅ ଅନ୍ତଃସତ୍ତ୍ୱା ହୋଇଗଲା । ତେବେ ବହୁ ଉଦ୍ୟମ ପରେ ଯୁବକ ଜଣଙ୍କ ରାଜି ହୋଇଛି ତାଙ୍କ ଝିଅକୁ ବିବାହ କରିବ ବୋଲି । ପାଖରେ ଟଙ୍କାଟିଏ ନାହିଁ । ଶୁଣିଲି ପ୍ରସନ୍ନ ପଟ୍ଟନାୟକଙ୍କ ଦରବାରକୁ ଗଲେ କିଛି ଟଙ୍କା ମିଳିବ ବୋଲି । ତେଣୁ ସେ ଟଙ୍କା ପାଇଁ ଆସିଛନ୍ତି । ପ୍ରସନ୍ନ ତାଙ୍କୁ ପଚାରିଲେ- ତାଙ୍କର ନିର୍ବାଚନମଣ୍ଡଳୀ ଭୁବନେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରେ କି ? ସେ କହିଲେ- ତାଙ୍କ ଘର କାକଟପୁର । ଭୁବନେଶ୍ୱର ନିର୍ବାଚନମଣ୍ଡଳୀରେ ତାଙ୍କ ଘର ନୁହେଁ । ପ୍ରସନ୍ନ କହିଲେ- ଠିକ୍ ଅଛି । ତାଙ୍କ ନିର୍ବାଚନମଣ୍ଡଳୀର ଲୋକ ନହୋଇଥିଲେ ମଧ୍ୟ କିଛିଟା ସାହାଯ୍ୟ କରିବେ । ଦରବାରରେ ବସିଥିବା ଲୋକଙ୍କୁ ପ୍ରସନ୍ନ ଅନାଇଲେ । ଚାଲିଲା ଟଙ୍କା ଆଦାୟ । ସମୁଦାୟ ୫୦୦ ଟଙ୍କା ହେଲା । ପ୍ରସନ୍ନ ତାଙ୍କୁ ସେହି ଟଙ୍କାକୁ ଦେଇ କହିଲେ- ଏହି ଟଙ୍କାକୁ ନେଇ ତୋ' ଝିଅ ବାହାଘରରେ ଖର୍ଚ୍ଚ କର । କିନ୍ତୁ ସେହି ବ୍ୟକ୍ତି ଜଣଙ୍କ ସେହି ଟଙ୍କାକୁ ନେଲେନାହିଁ । ପ୍ରସନ୍ନ ପଚାରିଲେ- ସାହାଯ୍ୟ ପାଇଁ ଆସିଛୁ, ଟଙ୍କା ନେଉନାହୁଁ କାହିଁକି ? ଆଜି ଦରବାରରେ ଦବା ଲୋକ ସେମିତି ନାହାନ୍ତି । ଏହି ଟଙ୍କା ଆଜି ନେଇଯାଆ । ପୁଣି ଆଉ ଦିନେ ଦରବାର ଚାଲିଥିଲା ବେଳେ ଆସି ଆଉ କିଛି ଟଙ୍କା ନେଇଯିବୁ । ସେ ବ୍ୟକ୍ତି ଜଣଙ୍କ ହାତରେ ୫୦୦ ଟଙ୍କା ଦିଆଗଲା । କିନ୍ତୁ ସେହି ବ୍ୟକ୍ତି ଜଣଙ୍କ ସେମିତି ଆଖି ଛଳଛଳ କରି ଠିଆ ହେଲେ । ପ୍ରସନ୍ନ କ'ଣ କରିବେ କିଛି ଜାଣିପାରିଲେ ନାହିଁ । ଏତିକି ବେଳେ ତାଙ୍କର ମନେ ପଡ଼ିଗଲା ଯେ, ଘରେ ଘରଣୀ ନାହାନ୍ତି ବୋଲି । ସେ ଜାଣିଛନ୍ତି ଘରଣୀ ଥିଲେ ଘରୁ କିଛି ଜିନିଷ ଆଣି କାହାକୁ ଦେଇ

ହେବନାହିଁ ବୋଲି । ପ୍ରସନ୍ନ ଦୌଡ଼ିଗଲେ ଘରକୁ । ଘରେ ରୁପାର ଜଗନ୍ନାଥ ଓ ସୁଦର୍ଶନ ଚକ୍ର ଥିବା ମୂର୍ତ୍ତୀଟିଏ ପ୍ରସନ୍ନଙ୍କ ଆଖିରେ ପଡ଼ିଲା । ସେ ତାହାକୁ ଉଠାଇନେଇ ଦରବାରକୁ ଚାଲିଆସିଲେ । କହିଲେ- ଜଗନ୍ନାଥ ତୋ'ର ମଙ୍ଗଳ ଚାହୁଁଛନ୍ତି । ତୁ ଏହି ମୂର୍ତ୍ତୀକୁ ନେଇଯାଆ । ଆଉ ଝିଅ-ଜ୍ୱାଇଁଙ୍କୁ ଏହି ମୂର୍ତ୍ତୀକୁ ଦେବୁ । ଯଦି ଝିଅର ପୁଅ ହେଲା ତା' ହେଲେ ତାର ନାମ ଜଗନ୍ନାଥ ରଖିବୁ ଆଉ ଯଦି ଝିଅ ହେଲା ତେବେ ତାର ନାମ ସୁଭଦ୍ରା ରଖିବୁ । ବ୍ୟକ୍ତି ଜଣଙ୍କ ଜଗନ୍ନାଥଙ୍କ ମୂର୍ତ୍ତୀକୁ ବେଶ୍ ଆଗ୍ରହର ସହ ଧରିଲେ ଏବଂ ମୁଣ୍ଡିଆ ମାରିଲେ । ତାଙ୍କର ଆଖିରୁ ଲୁହ ଧାରଧାର ହୋଇ ବୋହି ଯାଉଥାଏ । ପ୍ରସନ୍ନ ଭାବିଲେ- ସେହି ବ୍ୟକ୍ତିର ମନକୁ ବୋଧହୁଏ ଜଗନ୍ନାଥଙ୍କ ରୁପାମୂର୍ତ୍ତୀଟି ଗଲାନାହିଁ । ପ୍ରସନ୍ନ ତାଙ୍କ ପିଠିରେ ହାତମାରି କହିଲେ- କ'ଣ କରିବା । ମୋ ସକ୍ଷମରେ ଯାହା ଥିଲା ତାହା ଦେଲି । ବ୍ୟକ୍ତି ଜଣଙ୍କ କହିଲେ- ଯାହା ଆଶା କରି ନଥିଲି ତାହା ପାଇଲି । ସେ ଆନନ୍ଦରେ କାନ୍ଦି ପକାଉଛି । ଏ ଋଣ ସାତଜନ୍ମରେ ମଧ ସେ ଶୁଝିପାରିବ ନାହିଁ । ଏହା କହୁଥିବା ବେଳେ ପ୍ରସନ୍ନଙ୍କ ଆଖିକୁ ମଧ ଲୁହ ଆସିଯାଇଥିଲା । ଏହି ସମୟରେ ଦରବାରରେ ଥିବା ଜଣେ ଲୋକ କହିଲେ- ଆପଣ କ'ଣ କାନ୍ଦିଲେଣି । ହଠାତ୍ ପ୍ରସନ୍ନ ପ୍ରକୃତିସ୍ଥ ହୋଇଗଲେ ଆଉ ଆଖିରୁ ଲୁହ ପୋଛିଦେଇ ଦରବାରରେ କାହାର କ'ଣ କାମ ଅଛି ବୋଲି ପଚାରିଲେ । କେହି କିଛି କହିବା ପୂର୍ବରୁ ପ୍ରସନ୍ନ କହିଲେ- ଏମିତି କିଛିକିଛି ସ୍ମୃତି ଅଛି ଯାହାକି ମନକୁ ଆସିଗଲେ ଆଖିରେ ଲୁହ ଆସିଯାଏ । ଯେତେ ଯାହା ହେଲେ ମଧ ଜଗନ୍ନାଥ ହିଁ ଜଗନ୍ନାଥ । ■

## ଅଂଜଳୀ ଓ ଖିରୀ



ଅଂଜଳୀ ବେହେରା ହେଉଛନ୍ତି ହସ୍ତତନ୍ତ ବୟନ ଶିଳ୍ପ ମନ୍ତ୍ରୀ । ଏମିତି ସାଧାରଣତଃ ମହିଳାଙ୍କୁ ତାଙ୍କର ପ୍ରିୟ କିଏ ବୋଲି ପଚରାଗଲେ କିଏ ସ୍ୱାମୀଙ୍କୁ କହନ୍ତି ତ ଆଉ କିଏ ତାଙ୍କର ପୁଅ-ଝିଅଙ୍କୁ ପ୍ରିୟ କହନ୍ତି । କିନ୍ତୁ ଅଂଜଳୀଙ୍କର ପ୍ରିୟ ହେଉଛନ୍ତି ତାଙ୍କର ବାପା ଆଉ ମା । ଉଭୟେ ବିଧାୟକ ବି ଥିଲେ । ଏବେ ଅଂଜଳୀ ବିଧାୟିକା ଆଉ ମନ୍ତ୍ରୀ । ଏମିତି ରାଜନୀତି ପରିବାରରୁ ଆସିଥିବା ଅଂଜଳୀଙ୍କର ଆଉ ମଧ କେତେକ ପ୍ରିୟ ଅଛି । ଖିରୀକୁ ଦେଖିଦେଲେ ତାଙ୍କ ପାଟିରୁ ଲାଳ ବାହାରେ । ଖିରୀ ଖାଇବା ପାଇଁ ଜିଭ ଲହଲହ ହୁଏ । ମାନେ ଖିରୀ ପ୍ରତି ତାଙ୍କର ବେଶ୍ ଦୁର୍ବଳତା ରହିଛି । ଅଂଜଳୀଙ୍କର ଦୁର୍ବଳତା ଯେ ଏଇଠି ଶେଷ ହୋଇଗଲା ତାହା ନୁହେଁ । ଦହି-ବାଇଗଣ ମଧ ତାଙ୍କର ଅତି ପ୍ରିୟ । ଆଉ ଯଦି ପନିର ହୋଇଗଲା ତାହାହେଲେ ଅଂଜଳୀଙ୍କର ମନ ଖୁସ୍ । ପୁଣି ଛତୁ ତରକାରୀ ହୋଇଗଲେ ତାଙ୍କ ମନ ଆହୁରି ଖୁସ୍ । ଏତିକିରେ ବି ତାଙ୍କର ପ୍ରିୟ ଖାଦ୍ୟର ତାଲିକା ଶେଷ ହୋଇଯାଉନାହିଁ । ପଖାଳ ଭାତ ଆଉ ବାଇଗଣ ପୋଡ଼ା ମଧ ତାଙ୍କର ବେଶ୍ ପ୍ରିୟ । ଯାହା ଜଣାପଡୁଛି ଅଂଜଳୀ ସାଧାପ୍ରିୟ ଅଟନ୍ତି । ବୋଧହୁଏ ସାଧାପ୍ରିୟ ହୋଇଥିବାରୁ ମନ୍ତ୍ରୀ ହୋଇ ମଧ ଅଂଜଳୀ ସବୁବେଳେ ଟେନ୍‌ସନ ଫ୍ରି ଥା'ନ୍ତି । ■

# ଖୁସ୍ ଜୟନାରାୟଣ



ବିଜେପିରେ ଯଦି କେହି ଏବେ ଖୁସି ଥିବେ ତେବେ ସେ ହେଲେ ସମ୍ବଲପୁର ବିଧାୟକ ଜୟନାରାୟଣ ମିଶ୍ର । ଯେବେଠାରୁ ସୁରେଶ ପୂଜାରୀ ରାଜ୍ୟ ବିଜେପି ସଭାପତି ହେଲେ ସେବେଠାରୁ ଜୟନାରାୟଣ ଓ ସୁରେଶଙ୍କ ମଧ୍ୟରେ ଚାଲିଥିଲା ଜୋରଦାର୍ ଟକରାଟକରି । ଏମିତି ଜୟନାରାୟଣ ଆଉ ସୁରେଶଙ୍କର ଘର ହେଉଛି ସମ୍ବଲପୁରରେ । ଗୋଟିଏ ସମୟରେ ସୁରେଶ ଥିଲେ ଛାତ୍ର ନେତା । ପୁଣି ସମ୍ବଲପୁର ପୌର ପରିଷଦର ଅଧ୍ୟକ୍ଷ ବି ଥିଲେ । ଜୟନାରାୟଣ ସମ୍ବଲପୁରରୁ ବିଜେପି ଟିକେଟରେ ପ୍ରତିଦ୍ୱନ୍ଦିତା କରି ୨୦୦୦ ମସିହାରୁ ବିଧାୟକ ହୋଇଆସୁଛନ୍ତି । ୨୦୦୯କୁ ମିଶାଇ ସେ କ୍ରମାଗତ ଭାବେ ତିନିଥର ବିଧାୟକ ହେଲେଣି । ସେପଟେ ସୁରେଶ ପୂଜାରୀ ବ୍ରଜରାଜନଗରରୁ ପ୍ରାର୍ଥୀ ହୋଇ ସବୁବେଳେ ପରାଜୟର ସ୍ୱାଦ ଚାଖୁଛନ୍ତି । ସୁରେଶଙ୍କର ଦଳ ମୂଳରୁ ବିଜେପି ନଥିଲା । ସେ ଜନତା ଦଳରୁ ବିଜେପିକୁ ଆସିଥିଲେ । ଏହି ଦୃଷ୍ଟିରୁ ସୁରେଶଙ୍କର ରାଜ୍ୟ ବିଜେପି ସଭାପତି ହେବାଟାକୁ ଭଲ ଆଖିରେ ଦେଖିପାରୁ ନଥିଲେ ଜୟନାରାୟଣ ମିଶ୍ର । ସମ୍ବଲପୁରର ବିଜେପି ସଂଗଠନ ତାଙ୍କ ହାତରେ ଥିବାବେଳେ ସେଥିରେ ମୁଣ୍ଡ ପୂରାଉଥିଲେ ସୁରେଶ ପୂଜାରୀ । ଯେତେବେଳେ ସୁରେଶ ପୂଜାରୀ ରାଜ୍ୟ ବିଜେପି ସଭାପତି ହେଲେ ସେତେବେଳକୁ ସୁରେଶ ଓ ଜୟନାରାୟଣଙ୍କ ମଧ୍ୟରେ ଅହି-ନକୁଳ ପରି ଶତ୍ରୁତା ହୋଇଯାଇଥିଲା । ୨୦୦୯ ନିର୍ବାଚନରେ ଜୟନାରାୟଣ ଗୋଟିଏ ସମୟରେ ବିଜେପିରୁ ସମ୍ବଲପୁର ବିଧାନସଭା ଆସନ ପାଇଁ ଟିକେଟ ପାଇବେ ନାହିଁ ବୋଲି ଚର୍ଚ୍ଚା ହେଲା । ଜୟନାରାୟଣଙ୍କୁ ସମ୍ବଲପୁର ଲୋକସଭା ଆସନକୁ ଠେଲି ଦେଇ ସମ୍ବଲପୁର ବିଧାନସଭା ଆସନରେ ସୁରେଶ ପ୍ରାର୍ଥୀ ହେବେ ବୋଲି ଏହି ଚର୍ଚ୍ଚାରେ ଉଲ୍ଲେଖ ହେଲା । ଏଥିରେ ପ୍ରବଳ ରାଗି ଯାଇଥିଲେ ଜୟନାରାୟଣ । ସେ ଜିଦ୍ ଧରିଲେ ସମ୍ବଲପୁର ବିଧାନସଭା ଆସନରୁ ପ୍ରାର୍ଥୀ ହେବାକୁ । ଏପରିକି କାଳେ ତାଙ୍କୁ ବିଜେପି ଟିକେଟ ନଦେବ ତାହାକୁ ଆଖିଆଗରେ ରଖି ଦୁଇଟି କିସମର ପ୍ରାର୍ଥୀପତ୍ର ସେ ଦାଖଲ କରିଥିଲେ । ଗୋଟିଏ ବିଜେପି ଦଳର ଆଉ ଗୋଟିଏ ସ୍ୱାଧୀନ ।  ଏମିତି ମନ୍ତ୍ରୀ ଥିବାବେଳେ ମଧ୍ୟ ଜୟନାରାୟଣଙ୍କ ବିରୋଧରେ ସୁରେଶ କୁଆଡ଼େ ଭିତିରି କତୁରି ଚାଳନା କରିଥିଲେ ବୋଲି ଚର୍ଚ୍ଚା ବି ହୋଇଥିଲା । ମାନେ ମନ୍ତ୍ରୀ ପଦରୁ ଜୟନାରାୟଣଙ୍କୁ ସୁରେଶ ହଟାଇ ଦେଇଥା'ନ୍ତେ । ଏଭଳି ପରମ ଶତ୍ରୁତା ମଧ୍ୟରେ ଥାଇ ସମ୍ବଲପୁରରୁ ବିଧାୟକ ଭାବେ ବିଜୟୀ ହେବାପରେ ସୁରେଶ ଯେପରି ସଭାପତି ପଦରୁ ହଟିବେ ସେ କ୍ଷେତ୍ରରେ ବେଶ୍ ଉତ୍ସାହିତ ହୋଇଯାଇଥିଲେ ଜୟନାରାୟଣ । ସେପଟେ ସଭ୍ୟ ସଂଗ୍ରହ ଅଭିଯାନରେ ଜୟନାରାୟଣଙ୍କୁ ସାମିଲ କରା ନଯିବାରୁ ଏଥିପାଇଁ ସୁରେଶଙ୍କ ଉପରେ ପ୍ରବଳ

ରାଗିଯାଇଥିଲେ ଜୟନାରାୟଣ । ଯେତେବଳେ ଜୁଏଲ ଓରାମ ସଭାପତି ହେବେ ବୋଲି ସ୍ପଷ୍ଟ ହୋଇଗଲା ସେତେବେଳେ ଅତି ଖୁସି ହୋଇଯାଇଥିଲେ ଜୟନାରାୟଣ । ଜୁଏଲ ହେଉଛନ୍ତି ଜୟନାରାୟଣଙ୍କ ଗୋଷ୍ଠୀର । ଜୁଏଲଙ୍କର ସମର୍ଥକ ହେଉଛନ୍ତି ଜୟନାରାୟଣ । ଏବେ ଆଉ ଜୟନାରାୟଣଙ୍କର ଚିନ୍ତା ନାହିଁ । ସୁରେଶ ରାଜ୍ୟ ବିଜେପି ସଭାପତି ପଦରୁ ଚାଲିଯିବା ପରେ ଜୟନାରାୟଣ ବେଶ୍ ଉତ୍ସାହିତ ହୋଇଯାଇଛନ୍ତି । ସତେ ଯେମିତି ଏଭଳି ଏକ ସମୟର ଅପେକ୍ଷାରେ ଥିଲେ ଜୟନାରାୟଣ । ■



## ହଜିଗଲା ସତ୍ୟନାରାୟଣଙ୍କ ପ୍ୟାଂଟ

ରଣପୁର ବିଧାୟକ ସତ୍ୟନାରାୟଣ ପ୍ରଧାନଙ୍କୁ ଦେଖିଲେ କେହିଜଣେ ଭାବିବେ ନାହିଁ ଯେ, ସେ ଜଣେ ସଂସ୍କୃତିପ୍ରିୟ ବ୍ୟକ୍ତି ବୋଲି । ମାନେ ନାଚ ତମାସା ହେଲେ ତାଙ୍କର ଗୋଡ଼ ଉଠିବ ଆଉ ପଡ଼ିବ । ରଣପୁରରେ ତିନିଦିନ ଧରି ମହୋତ୍ସବ ଚାଲିଲା । ଏହାର ସମସ୍ତ ଦାୟିତ୍ୱ ବହନ କରିଥିଲେ ସତ୍ୟନାରାୟଣ ପ୍ରଧାନ । କର୍ଡ୍‌ଲେସ୍ ମଇକ୍ରୋଫୋନ୍ ଧରି ସତ୍ୟନାରାୟଣ ମଂଚ ଉପରେ ସବୁବେଳେ ଏପଟସେପଟ ହେଉଥିଲେ । ଜଣେ ଭାଷଣ ଦେଇଦେବା ପରେ ସତ୍ୟନାରାୟଣ କର୍ଡ୍‌ଲେସ୍ ମାଇକ୍ରୋଫୋନ୍‌ରେ ତାଙ୍କୁ ଧନ୍ୟବାଦ ଦେଉଥିଲେ । ଆମୂଳଚୂଳ ଦୀର୍ଘ ୬ରୁ ୭ ଘଂଟା ଧରି ସତ୍ୟନାରାୟଣ ମଂଚ ଉପରେ ରହି ମଂଚ ପରିଚାଳନା କରୁଥିଲେ । ସତେ ଯେମିତ ସତ୍ୟନାରାୟଣଙ୍କର ଏପରି ଅଭ୍ୟାସ ଆଗରୁ ରହିଛି । କୁଆଡ଼େ ନୟାଗଡ଼ର ପୂର୍ବତନ ବିଧାୟକ ଭାଗବତ ବେହେରାଙ୍କର ପଟ୍ଟଶିଷ୍ୟ ଥିବାବେଳେ ସତ୍ୟନାରାୟଣ ନୟାଗଡ଼ରେ ଅନେକ ସାଂସ୍କୃତିକ କାର୍ଯ୍ୟକ୍ରମ ପରିଚାଳନା କରିଥିଲେ । ସତ୍ୟନାରାୟଣ ରଣପୁର ମହୋତ୍ସବର ପରିଚାଳନାରେ ଏମିତି ମଜ୍ଜି ଯାଇଥିଲେ ଯେ, ତାଙ୍କର ପୋଷାକ କେଉଁଠି ଅଛି ତାହା ମଧ ଭୁଲି ଯାଇଥିଲେ । ମହୋତ୍ସବ ଶେଷ ହେବାପରେ ସତ୍ୟନାରାୟଣ ତାଙ୍କ ପୋଷାକ ସଜଡ଼ା ସଜଡ଼ି କାମ ଆରମ୍ଭ କରିଦେଲେ । ଦେଖୁଦେଖୁ ଗୋଟିଏ ପ୍ୟାଂଟ ମିଳିଲା ନାହିଁ । ଏହାପରେ ପୁଣି ଖୋଜିଲେ । ପୁଣି ଜଣାପଡ଼ିଲା ଆଉ ଗୋଟାଏ ପ୍ୟାଂଟ ମଧ ମିଳୁନାହିଁ । ମାନେ ଏପଟେ ସଭା ପରିଚାଳନା କରୁକରୁ ସେପଟେ ତାଙ୍କର ଦୁଇଟି ପ୍ୟାଂଟ ଗାଏବ । ଅବଶ୍ୟ ଏହି ପ୍ୟାଂଟ ଗାଏବ ହେବାଟାକୁ ସତ୍ୟନାରାୟଣ ସେତେଟା ଗୁରୁତ୍ୱ ଦେଉନାହାନ୍ତି । ରଣପୁରରେ ତିନିଦିନ ଧରି ମହୋତ୍ସବ ପରିଚାଳନା କରିବା ସତେ ଯେମିତି ସତ୍ୟନାରାୟଣଙ୍କ ପାଇଁ ସ୍ୱପ୍ନ ଥିଲା । ତିନିଦିନ ମହୋତ୍ସବ ହୋଇଯିବା ପରେ ସତ୍ୟନାରାୟଣ ଆନନ୍ଦରେ ଗଦଗଦ ହୋଇଗଲେ । ଏ କ୍ଷେତ୍ରରେ ଦୁଇଟି ପ୍ୟାଂଟ ଗାଏବ ହେଲେ ମଧ ସତ୍ୟନାରାୟଣ ଏହାକୁ କାହା ଆଗରେ ପ୍ରକାଶ କରୁନାହାନ୍ତି । ଅବଶ୍ୟ ରାଜନୀତି ପ୍ରତି ଆଗ୍ରହ ଥିବା କେହି ବ୍ୟକ୍ତି

ସତ୍ୟନାରାୟଣଙ୍କ ପ୍ୟାଂଟକୁ ନେଇ ଥାଇପାରନ୍ତି । ସତ୍ୟନାରାୟଣ ଯେପରି ବହୁ କଷ୍ଟରେ ବିଧାୟକ ହୋଇଛନ୍ତି ସେହିପରି ବହୁ କଷ୍ଟ ପାଇ ମଧ୍ୟ ସଂପୃକ୍ତ ନେତା ଜଣଙ୍କ ବିଧାୟକ ହୋଇପାରି ନଥିବେ । ସତ୍ୟନାରାୟଣଙ୍କ ପ୍ୟାଂଟକୁ ପାଖରେ ରଖିଲେ ୨୦୧୪ ନିର୍ବାଚନରେ ତାଙ୍କୁ ବିଜେଡି ଟିକେଟ ମିଳିବ ଆଉ ସେ ବିଧାୟକ ହୋଇଯିବେ ବୋଲି ବିଶ୍ୱାସ ରଖିଥାଇପାରନ୍ତି । ■

# ଅରୁଣ ଓ ସାରଦାଙ୍କ ଦସ୍ତଖତ



କଥାରେ ଅଛି- ନଈ କେ ବାଙ୍କ, ଦେଶ କେ ଫାଙ୍କ । ଯେମିତି ଦେଖିଲେ ମଣିଷ ଆଉ ମଣିଷ ଭିତରେ ସାମଞ୍ଜସ୍ୟ ମଧ୍ୟ ରହେନାହିଁ । ଆଉ ଅକ୍ଷର ମଧ୍ୟ କାହାର ସମାନ ହେବନାହିଁ । ସେହିପରି ନିଜ ପସନ୍ଦ ଅନୁଯାୟୀ ମଣିଷଟିଏ ତାହାର ଦସ୍ତଖତ କରିଥାଏ । ରଣପୁର ମହୋତ୍ସବରେ ଯୋଗ ଦେଇଥା'ନ୍ତି ଅତିଥି ଭାବେ ଯୋଗାଣ ଓ ଖାଉଟୀ କଲ୍ୟାଣ ମନ୍ତ୍ରୀ ସାରଦା ପ୍ରସାଦ ନାୟକ ଏବଂ ସରକାରୀ ଉପମୁଖ୍ୟ ସଚେତକ ଅରୁଣ ସାହୁ । ସେଠାରେ ବିଭିନ୍ନ ପ୍ରତିଯୋଗିତାରେ କୃତି ହାସଲ କରିଥିବା ପ୍ରତିଯୋଗୀମାନଙ୍କୁ ପୁରସ୍କାର ଓ ସାର୍ଟିଫିକେଟ ଦେବାର ବ୍ୟବସ୍ଥା ହୋଇଥାଏ । ଅତିଥି ଭାବେ ସାରଦା ଓ ଅରୁଣଙ୍କୁ ଦସ୍ତଖତ କରିବା ପାଇଁ ଉତ୍ସବର ଆୟୋଜକ ସେମାନଙ୍କ ପାଖରେ ସାର୍ଟିଫିକେଟ ରଖିଲେ । ପ୍ରଥମେ ଅରୁଣ ଦସ୍ତଖତ କଲେ । ଅରୁଣ ତାଙ୍କ ଦସ୍ତଖତରେ କେବଳ ଅରୁଣ ନାମ ରଖି ସାହୁକୁ ବାଦ୍ ଦେଇଦେଲେ । ଅରୁଣଙ୍କ ଦସ୍ତଖତ ସରିବା ପରେ ସାରଦାଙ୍କ ପାଖକୁ ଆସିଲା ସାର୍ଟିଫିକେଟରେ ଦସ୍ତଖତ କରିବା ପାଇଁ । ସାରଦା ଯେତେବେଳେ ଦସ୍ତଖତ କରନ୍ତି ସେତେବେଳେ ପୂର୍ଣ୍ଣ ଦସ୍ତଖତ କରିଥା'ନ୍ତି । ମାନେ ସାରଦା ନାୟକ । କିନ୍ତୁ କ'ଣ ହେଲା କେଜାଣି ଅରୁଣଙ୍କ ଦସ୍ତଖତ ଶୈଳୀଟି ସାରଦାଙ୍କୁ ସେହି ସମୟରେ ବେଶ୍ ପ୍ରଭାବିତ କରିଦେଲା । ମନ୍ତ୍ରୀ ବୋଲି ସେ ସେଠାରେ ନିଜକୁ ଆଉ ଭାବିଲେ ନାହିଁ । ଏମିତି ମନ୍ତ୍ରୀ ଭାବେ ସାରଦା ନାୟକ ଦସ୍ତଖତ କରିଥା'ନ୍ତି । କିନ୍ତୁ ଅରୁଣଙ୍କ ଦସ୍ତଖତରେ ପ୍ରଭାବିତ ହୋଇ ସେ ମଧ୍ୟ ନାୟକ ଲେଖିବାକୁ ଆଉ ପସନ୍ଦ କଲେନାହିଁ । ଅରୁଣ ଯେପରି ତାଙ୍କ ନାମରୁ ସାହୁକୁ ବାଦ୍ ଦେଇ ଦସ୍ତଖତ ଦେଇଥିଲେ ସେହିପରି ସାରଦା ନିଜ ନାମରୁ ନାୟକକୁ ବାଦ୍ ଦେଇ ଦସ୍ତଖତ କଲେ ଆଉ ପାଖରେ ବସିଥିବା ଅରୁଣଙ୍କୁ ସେହି ଦସ୍ତଖତକୁ ଦେଖାଇ ଦେଇ କହିଲେ ଯେ, ତମର ଯେମିତି ଦସ୍ତଖତ ମୋର ବି ସେମିତି ଦସ୍ତଖତ । ଏହି ସମୟରେ ମଂଚ ଉପରେ ବସିଥିବା କେତେକ ଅତିଥିଙ୍କ ନଜର ମଧ୍ୟ ଦସ୍ତଖତ ଉପରେ ପଡ଼ିଥିଲା । ଦସ୍ତଖତରେ ସାରଦାଙ୍କ ନାୟକ ଓ ଅରୁଣଙ୍କ ସାହୁ ବାଦ୍ ପଡ଼ିଥିବାରୁ ତାହାକୁ ନେଇ କିଛି ସମୟ ପାଇଁ ହାଲ୍କା ଢଙ୍ଗରେ ଚର୍ଚ୍ଚା ବି ହେଲା । କାହିଁକି ଅରୁଣଙ୍କୁ ସାହୁ ସଂଜ୍ଞା ଆଉ ସାରଦାଙ୍କୁ ନାୟକ ସଂଜ୍ଞା ପିତାପିତା ଲାଗୁଛି ତାହାର କାରଣ ଖୋଜି ବାହାର କରିବାକୁ ପଡ଼ିବ । ■

# କାଶୀ ଓ ସାପ



ଦଶପଲାର ବିଜେଡି ବିଧାୟକ ହେଉଛନ୍ତି କାଶୀନାଥ ମଲିକ । ଏମିତି ଦେଖିଲେ କାଶୀନାଥ କେବେବି ବିଧାୟକ ହେବେ ବୋଲି ସ୍ୱପ୍ନ ବି ଦେଖି ନଥିଲେ । ପ୍ରଥମେ ଅନ୍ୟ ଜଣଙ୍କୁ ବିଜେଡି ଟିକେଟ ମିଳିଥିଲା । କିନ୍ତୁ କାଶୀନାଥଙ୍କ ଭାଗ୍ୟରେ ଅଛି ବିଧାୟକ ହେବେ ବୋଲି । ସେହି ବ୍ୟକ୍ତି ଜଣଙ୍କ ଚାକିରି କରୁଥିବାବେଳେ ଚାକିରିରୁ ଇସ୍ତଫା ଦେଇ ନପାରିବାରୁ ଟିକଟ ପାଇଲେ ନାହିଁ । ଟିକେଟ ଆସି ପହଂଚିଲା କାଶୀନାଥଙ୍କ ପାଖରେ ଆଉ କାଶୀ, ନବୀନ ପଟ୍ଟନାୟକଙ୍କ ନିର୍ମଳ ଭାବମୂର୍ତି ଓ ଦୁର୍ନୀତିମୁକ୍ତ ଶାସନର ଫାଇଦା ନେଇ ଦଶପଲାରୁ ବିଧାୟକ ହେଲେ । ରାଜନୀତିରେ କାଶୀଙ୍କର କୌଣସି ଯୋଗ୍ୟତା ଅଛି କି ନଅଛି ତାହା ପରର କଥା । ଏମିତି ଦଶପଲା ଏକ ଜଙ୍ଗଲ ଭରା ଅଂଚଳ । ଏହି ଅଂଚଳରେ ଘନ ଜଙ୍ଗଲ ରହିଛି । ଛୋଟଠାରୁ ଆରମ୍ଭ କରି ଅସଂଖ୍ୟ ବଡ଼ ସାପ ଏହି ଅଂଚଳରେ ଚଳପ୍ରଚଳନ କରନ୍ତି । ସାପ କାମୁଡ଼ାରେ ଏହି ଅଂଚଳରେ ବହୁ ବ୍ୟକ୍ତିଙ୍କର ମଧ ମୃତ୍ୟୁ ଘଟିଥାଏ । ଗୋଟିଏ ସମୟରେ ପାଟନା ମହାରାଜା ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ସାପ କାମୁଡ଼ାର ବିଷ ହରଣରେ ଓସ୍ତାଦ ଥିଲେ । କାହାକୁ ସାପ କାମୁଡ଼ି ଦେଲେ ଏବଂ ସେହି ସାପ କାମୁଡ଼ା ସମ୍ବାଦ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ପାଖରେ ପହଂଚିଗଲେ ସଙ୍ଗେସଙ୍ଗେ ସେ ପିନ୍ଧିଥିବା ଲୁଗାଟିକୁ କୁଆଡ଼େ ଚିରି ଦିଅନ୍ତି । ଏତିକିରେ ସାପର ବିଷହରଣ ହୋଇଯାଇଥାଏ । ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ପରି ଲୁଗା ଚିରି ଯେ କାଶୀନାଥ ମଲିକ ସାପ ବିଷ ହରଣ କରନ୍ତି ତାହା ନୁହେଁ । ରାଜେନ୍ଦ୍ର ନାରାୟଣ ସିଂହଦେଓ ଧୋତି ପିନ୍ଧୁଥିଲେ କିନ୍ତୁ କାଶୀନାଥ ପ୍ୟାଂଟ ପିନ୍ଧନ୍ତି । ଅବଶ୍ୟ ରାଜେନ୍ଦ୍ର ନାରାୟଣ ଓ କାଶୀନାଥଙ୍କର ପିନ୍ଧୁଥିବା ପୋଷାକରେ ସାମଞ୍ଜସ୍ୟ ରହିଛି । ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ପୋଷାକର ରଙ୍ଗ ଅଧିକାଂଶ ସମୟରେ ଧଳା । କାଶୀନାଥଙ୍କର ପୋଷାକର ରଙ୍ଗ ମଧ ଧଳା । ସତେ ଯେମିତି ସାପର ବିଷ ହରଣ କରିବାକୁ ହେଲେ ଧଳା ରଙ୍ଗର ପୋଷାକ ପିନ୍ଧିବାକୁ ହେବ । କାଶୀଙ୍କର ସାପ ବିଷ ହରଣ ଭିନ୍ନ ପ୍ରକାରର । ମାନେ ସାପ କାମୁଡ଼ିଥିବା ବ୍ୟକ୍ତି ଜଣଙ୍କ ତାଙ୍କ ପାଖକୁ ଆସିଲେ ସେ ତାହାର ବିଷ ହରଣ କରିଥା'ନ୍ତି । ଝଡ଼ାଫୁଙ୍କା ମଧ କରିଥା'ନ୍ତି । ଏମିତି ବୃତିରେ କାଶୀନାଥ ଡାକ୍ତର ନୁହନ୍ତି କି ତାଙ୍କର ଯୋଗ୍ୟତା ମଧ ଡାକ୍ତର ନୁହେଁ । କିନ୍ତୁ ଦଶପଲାର ନିପଟ ଅଂଚଳରେ କାଶୀନାଥଙ୍କର ଯୋଗ୍ୟତା ଡାକ୍ତର ହୋଇଯାଇଛି । ଏହାର କାରଣ ମଧ ରହିଛି । ତାଙ୍କର ବାପା ଥିଲେ ଜଣେ ଗୁଣିଆ । ଯାହାଙ୍କୁ ସାପ କାମୁଡ଼େ ସେମାନେ ତୁରନ୍ତ ତାଙ୍କ ବାପାଙ୍କ ପାଖକୁ ଚାଲି ଆସନ୍ତି ଆଉ ସେମାନଙ୍କଠାରୁ ତାଙ୍କ ବାପା ସାପ ବିଷ ହରଣ କରିଦିଅନ୍ତି । ବାପାଙ୍କ ପାଖରେ ରହି ସାପ ବିଷ ହରଣ ଶିଖି

ନେଇଥିଲେ କାଶୀ । ଅବଶ୍ୟ ଏଥିପାଇଁ ସାଧନା କରିବାକୁ ସବୁବେଳେ ପଡ଼େ । ଅନେକ ଅଂଚଳରେ କାଶୀଙ୍କୁ ବିଧାୟକ ଅପେକ୍ଷା ସାପ ଡାକ୍ତର ବୋଲି ଅଧିକ ଜାଣନ୍ତି । ଦଶପଲା ରାଜନୀତିରେ ଯେତିକି ସଫଳ କାଶୀନାଥ ନୁହନ୍ତି ସାପ ଡାକ୍ତର ହୋଇ କାଶୀନାଥ ତା'ଠାରୁ ଅଧିକ ସଫଳତା ହାସଲ କରିଛନ୍ତି । ଏବେ ଦେଖାଯାଉ କାଶୀନାଥ ସାପ ଡାକ୍ତର ନା ବିଧାୟକ କେଉଁଟିରେ ଅଧିକ ଲୋକପ୍ରିୟ ହେଉଛନ୍ତି । ■

## ଖାସି ମାଂସ,ରୋଲ୍, ଚାଓମିନ୍ ଓ ଅଶୋକ



ସାମାଦିକରୁ ବିଧାୟକ ହୋଇଥିବା ଅଶୋକ ପଣ୍ଡା ଯେ ଜଣେ ଖାଇବା ପ୍ରିୟ ବ୍ୟକ୍ତି ଅଟନ୍ତି ତାହା ବୋଧହୁଏ ଖୁବ୍ କମ ଜାଣନ୍ତି । ଭୁବନେଶ୍ୱରରେ କେଉଁଠି କେଉଁ ଖାଇବା ବେଶ୍ ସ୍ୱାଦିଷ୍ଟ ତାହା ଅଶୋକ ବେଶ୍ ଭଲଭାବେ ଜାଣିଥା'ନ୍ତି । ଆଉ ଯେଉଁଠି ସ୍ୱାଦିଷ୍ଟ ଖାଦ୍ୟ ମିଳେ ସେଠାକୁ ଅଶୋକ ଯିବେ ହିଁ ଯିବେ । କୁଆଡ଼େ ଅଶୋକଙ୍କର 'ଏଗ୍ ଚିକେନ୍ ରୋଲ୍' ପ୍ରତି ବହୁ ଦୁର୍ବଳତା ରହିଛି । ଦୂରଦର୍ଶନରେ ସାମାଦିକ ଥିବାବେଳେ ଅଶୋକ ଯେତେବେଳେ ଘରକୁ ଫେରନ୍ତି ସେତେବେଳେ ୯ ନମ୍ବରର ରାସ୍ତା କଡ଼ରେ ଥିବା ଏକ ଫାଷ୍ଟ ଫୁଡ୍ ଦୋକାନ ପାଖରେ ସେ ଅଟକନ୍ତି । ଆଉ ସେଠାରେ ସେ 'ଏଗ୍ ଚିକେନ୍ ରୋଲ୍' ଖାଇବା ପାଇଁ ବରାଦ ଦେଇଥା'ନ୍ତି । କେବଳ ଯେ 'ଏଗ୍ ଚିକେନ୍ ରୋଲ୍' ରେ ସେ ସନ୍ତୁଷ୍ଟ ହୋଇଥା'ନ୍ତି ତାହା ନୁହଁ । କେତେବେଳେ 'ଚାଓମିନ୍' ତ କେତେବେଳେ 'ଚିକେନ୍ ପକୋଡ଼ା' । ଅବଶ୍ୟ ବିଧାୟକ ହୋଇଯିବା ପରେ ଅଶୋକ ଆଉ ସମୟ ପାଉନାହାନ୍ତି ୯ ନମ୍ବରର ସେହି ଫାଷ୍ଟ ଫୁଡ୍ ଦୋକାନକୁ ଯାଇ ଏଗ୍ ଚିକେନ୍ ରୋଲ୍ କି ଚାଓମିନ୍ କି ଚିକେନ୍ ପକୋଡ଼ା ଖାଇବାକୁ । କିନ୍ତୁ ୯ ନମ୍ବରର ସେହି ଫାଷ୍ଟ ଫୁଡ୍ ଦୋକାନୀ ଏକାମ୍ର ବିଧାୟକ ଅଶୋକ ପଣ୍ଡା ପ୍ରତିଦିନ କିପରି ତାଙ୍କ ଦୋକାନକୁ ଆସି ରୋଲ୍ ଖାଉଥିଲେ ତାହାକୁ ବର୍ଣ୍ଣନା କରି ଗର୍ବ ଅନୁଭବ କରୁଛନ୍ତି । ଏ ଗଲା ଅଶୋକଙ୍କର ରୋଲ୍ ଖାଇବା ନିଶା । ଦୂରଦର୍ଶନ କେନ୍ଦ୍ର ସମ୍ମୁଖରେ ଏକ ଚାଳିଆ ହୋଟେଲଟିଏ ଅଛି । ଅଶୋକ ଦୂରଦର୍ଶନ କେନ୍ଦ୍ରରେ କାର୍ଯ୍ୟ କରୁଥିବାବେଳେ ସେହି ଚାଳିଆ ହୋଟେଲଟି ମଧ୍ୟ ଥିଲା । ସେଠାରେ ଖାସି ମାଂସ ତରକାରୀ ବେଶ୍ ସ୍ୱାଦିଷ୍ଟ ଅଟେ । ଅଶୋକ ମଧ୍ୟ ବେଳେବେଳେ ସେଠାରେ ଖାସି ମାଂସ ତରକାରୀ ଖାଇଥା'ନ୍ତି । ଏହା ଆଉ କିଏ ନୁହେଁ । ସେହି ହୋଟେଲର ମାଲିକ ନିଜେ କହୁଛନ୍ତି । ସେ ମଧ୍ୟ ଅଶୋକ ଏକାମ୍ର-ଭୁବନେଶ୍ୱରର ବିଧାୟକ ହୋଇଯିବା ପରେ ବେଶ୍ ଗର୍ବ ଅନୁଭବ କରୁଛନ୍ତି । ଅଶୋକ କେଉଁଠି ବସି ଖାଉଥିଲେ ପୁଣି କେତେ ପ୍ଲେଟ୍ ମାଂସ ଖାଉଥିଲେ ତାର ଖବର ମଧ୍ୟ ସେ ଚିକିନିଖିଭାବେ ବର୍ଣ୍ଣନା କରୁଛନ୍ତି । ଏ ସବୁଥିରୁ ଜଣାପଡ଼ିଯାଉଛି ଯେ ଅଶୋକ ଜଣେ ଖାଦ୍ୟ ରସିକେଶ୍ରୁ ଥିଲେ ବୋଲି । ଅବଶ୍ୟ ବିଧାୟକ ହେବାପରେ ସେ ଖାଦ୍ୟ ରସିକେଶ୍ରୁ ଅଛନ୍ତି ନା ନାହିଁ ତାହା ଅଶୋକ ହିଁ କହିପାରିବେ । ■

# ପ୍ୟାରୀମୋହନଙ୍କ ଗୁସ୍‌ସା



ନବୀନ ପଟ୍ଟନାୟକ ଷଷ୍ଠଥର ପାଇଁ ବିଜେଡି ସଭାପତି ହେବା ଅବସରରେ ସେ କେତେକ ନେତାଙ୍କୁ କହିବା ପାଇଁ ଡାକିଲେ । ସେଥିମଧ୍ୟରେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଥିଲେ । ଏମିତି ଅନେକ ପ୍ରସଙ୍ଗରେ ପ୍ୟାରୀମୋହନ ବକ୍ତବ୍ୟ ଦେଲେ । କିନ୍ତୁ ଯେଉଁ ବକ୍ତବ୍ୟଟି ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଗଲା ତାହା ହେଲା ପ୍ରଶାସନ ଉପରେ ପ୍ୟାରୀମୋହନଙ୍କର ରାଗ । ଏମିତି ପ୍ୟାରୀମୋହନ ଅବସରପ୍ରାପ୍ତ ଆଇଏଏସ୍ ଅଫିସର । ପ୍ରଶାସନ ସହିତ ସେ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ଥିଲେ । ଏହାସତ୍ୱେ ପ୍ରଶାସନ ଉପରେ ସେ ଭୀଷଣ କ୍ଷୁବ୍ଧ । ଭାଷଣରେ ପ୍ୟାରୀମୋହନ ଯାହା କହିଥିଲେ ତାହା ହେଲା- ରାଜ୍ୟ ପ୍ରଶାସନ ବିଶୃଙ୍ଖଳିତ ହୋଇଯାଇଛି । ଏହା ଦଳ ପାଇଁ ବାରମ୍ବାର ଚ୍ୟାଲେଂଜ ସୃଷ୍ଟି କରିଛି । କିଛି ଅଫିସରଙ୍କ ଯୋଗୁ ବିଜେଡିର କାର୍ଯ୍ୟକ୍ରମ ସଫଳ ହୋଇପାରୁନାହିଁ । ମୁଖ୍ୟମନ୍ତ୍ରୀ ପ୍ରଶାସନିକ ମୁଖ୍ୟ ଭାବେ ସେମାନଙ୍କୁ ଲଗାମ ଦିଅନ୍ତୁ । ପ୍ରଶାସନ ନିୟନ୍ତ୍ରଣ ବାହାରକୁ ଚାଲିଯାଉଛି । କିଛି ଅଫିସର ମନୋମୁଖୀ କାର୍ଯ୍ୟ ଚଳାଇଛନ୍ତି । ଏହା ଫଳରେ ଦଳ ବଦ୍‌ନାମ ହେଉଛି । ଲୋକଙ୍କୁ ସେବା ଯୋଗାଇ ଦେବା ପାଇଁ ରହିଥିବା ସରକାରୀ କଳ ଠିକ୍ ଭାବେ କାର୍ଯ୍ୟ କରୁନାହିଁ । ଲୋକମାନେ ଉପଯୁକ୍ତ ସେବା ପାଉନାହାନ୍ତି । ମୁଖ୍ୟମନ୍ତ୍ରୀ ଯାହା କହୁଛନ୍ତି ତାହା ମଧ୍ୟ ଯେତିକି ହେବା କଥା ତାହା ହେଉନାହିଁ । ପ୍ରଶାସନିକ ବ୍ୟବସ୍ଥାକୁ ମୁଖ୍ୟମନ୍ତ୍ରୀ ଏଭଳି ଦିଗ୍‌ଦର୍ଶନ ଦେଇ ନିୟନ୍ତ୍ରଣ କରନ୍ତୁ ଯାହାକି ରାଜ୍ୟ ଓ ଦଳ ପାଇଁ ସହାୟକ ହେବ । ଅହଙ୍କାରୀ ପ୍ରଶାସକମାନେ ଦଳ ପ୍ରତି ଯେପରି ଆଭିମୁଖ୍ୟ ଦେଖାଉଛନ୍ତି ତାହା ଠିକ୍ ନୁହେଁ । ମୁଖ୍ୟମନ୍ତ୍ରୀ ଓ ତାଙ୍କ ମନ୍ତ୍ରିମଣ୍ଡଳର ସଭ୍ୟମାନେ ଏହି ଅଫିସର କିପରି ସଂଜତ ଓ ଶୃଙ୍ଖଳିତ ହେବେ ସେଥିପାଇଁ ନିର୍ଦ୍ଦେଶ ଦିଅନ୍ତୁ । ପ୍ୟାରୀମୋହନ ମହାପାତ୍ରଙ୍କ ଏହି ବକ୍ତବ୍ୟ ସାରାରାଜ୍ୟରେ ଚାଂଚଲ୍ୟ ସୃଷ୍ଟି କରିଥିଲା । ପୂର୍ବରୁ ଅଫିସରଙ୍କ ବିରୋଧରେ କେବେବି ଖୋଲାଖୋଲି ବିଷୋଦଗାର କରୁ ନଥିବା ପ୍ୟାରୀମୋହନ କାହିଁକି ଦଳୀୟ ସଭାରେ ଏବଂ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନଙ୍କ ଉପସ୍ଥିତିରେ ଏଭଳି ଅଫିସର ବିରୋଧୀ ଭାଷଣ ଦେଲେ ତାହାର କାରଣ ମଧ୍ୟ କେହି ଜାଣିପାରିଲେ ନାହିଁ । ଏମିତି ସାଧାରଣରେ ଚର୍ଚ୍ଚା ହେଉଛି ଯେ, ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ଶାସନ ସଚିବ ବିଜୟ ପଟ୍ଟନାୟକଙ୍କ ସହିତ ପ୍ୟାରୀମୋହନ ମହାପାତ୍ରଙ୍କର କୁଆଡ଼େ ଭଲ ପଡୁନାହିଁ । ପ୍ୟାରୀମୋହନ ମହାପାତ୍ର ଆଇଏଏସ୍ ଅଫିସରରୁ ବିଜେଡି ନେତା ହୋଇଥିବାବେଳେ କୁଆଡ଼େ ଦଳର ନେତାଙ୍କ ମର୍ଜି ଅନୁଯାୟୀ ବହୁ କାମ କରାଯିବା ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କୁ ପରାମର୍ଶ ଦିଅନ୍ତି । ଏଥିରୁ ଅନେକ କାମ ହୁଏ ଆଉ ଅନେକ କାମ ଆଇନକୁ ଦେଖାଇ ଦିଆଯାଇ କରାଯାଏନାହିଁ । ଏହା କୁଆଡ଼େ ପ୍ୟାରୀମୋହନଙ୍କୁ କ୍ଷୁବ୍ଧ କରିଛି । ଗୋଟିଏ ସମୟରେ ବିଜୁ ପଟ୍ଟନାୟକ

ମୁଖ୍ୟମନ୍ତ୍ରୀ ଥିବାବେଳେ ପ୍ୟାରୀମୋହନ ମୁଖ୍ୟମନ୍ତ୍ରୀଙ୍କ ତୃତୀୟ ମହଲା କାର୍ଯ୍ୟ ସମ୍ଭାଳୁଥିଲେ । କେଉଁଟା ଆଇନ ଆଉ କେଉଁଟା ବେଆଇନ ତାହାକୁ ତର୍ଜମା କରି ସେ କାର୍ଯ୍ୟ କରୁଥିଲେ । ତେବେ ବିଜୁ ପଟ୍ଟନାୟକ ଆଇନ ବେଆଇନ କିଛି ମାନୁ ନଥିଲେ । ସେ ଯାହା ନିର୍ଦ୍ଦେଶ ଦେଉଥିଲେ ତାହାକୁ ତୁରନ୍ତ କାର୍ଯ୍ୟକାରୀ କରାଯିବା ପାଇଁ ଚାହୁଁଥିଲେ । ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ଶାସନ ସଚିବ ଭାବେ ବିଜୁ ପଟ୍ଟନାୟକଙ୍କ ନିର୍ଦ୍ଦେଶକୁ ଆଇନର ଗଣ୍ଡରେ ପକାଇ ପ୍ୟାରୀମୋହନ ମହାପାତ୍ର କାର୍ଯ୍ୟକାରୀ କରୁଥିଲେ । କିନ୍ତୁ ନବୀନ ପଟ୍ଟନାୟକଙ୍କ ପାଖରେ ଥିବା ପ୍ରମୁଖ ଶାସନ ସଚିବ ବିଜୟ ପଟ୍ଟନାୟକ ଏଥିରୁ ବ୍ୟତିକ୍ରମ ଅଟନ୍ତି । ଯେଉଁ କାମ ପ୍ୟାରୀମୋହନ ମହାପାତ୍ର ମୁଖ୍ୟମନ୍ତ୍ରୀଙ୍କ ମାଧ୍ୟମରେ କରାଇବାକୁ ଚାହିଁଥା'ନ୍ତି ସେଥିରୁ ଅଧିକାଂଶ ବିଜୟ ପଟ୍ଟନାୟକ ଆଇନର ତର୍ଜମା କରି କାର୍ଯ୍ୟକାରୀ କରି ନଥା'ନ୍ତି । ଏହା କୁଆଡ଼େ ଖୁବ୍ ବାଧୁଛି ପ୍ୟାରୀମୋହନଙ୍କୁ । ଦଳୀୟ ନେତାଙ୍କ ଆଗରେ ଦ୍ୱିତୀୟ କ୍ଷମତା କେନ୍ଦ୍ର ସାଜିଥିବା ପ୍ୟାରୀମୋହନ କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ସଚିବାଳୟର ପ୍ରମୁଖ ଶାସନ ସଚିବ ବିଜୟ ପଟ୍ଟନାୟକଙ୍କ ଆଗରେ ତୃତୀୟ କ୍ଷମତା କେନ୍ଦ୍ର ହୋଇଯାଉଛନ୍ତି । ମାନେ ବିଜୟ ପଟ୍ଟନାୟକ ହୋଇଛନ୍ତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପରେ ଦ୍ୱିତୀୟ କ୍ଷମତା କେନ୍ଦ୍ର । ଏହା କ୍ରମେ ବିଜେଡିରେ ଚର୍ଚ୍ଚା ପରେ ଚର୍ଚ୍ଚା ହେଲାଣି । ଯେଉଁଥିପାଇଁ ପ୍ୟାରୀମୋହନ ଅତ୍ୟନ୍ତ 'ଗୁସ୍‌ସା' ହୋଇଯାଇଛନ୍ତି । ଏମିତି ପ୍ୟାରୀମୋହନ ସାମାନ୍ୟ ଗୁସ୍‌ସା ହେଲେ ସ୍ପଷ୍ଟ ଭାବେ ସେ ସମ୍ପର୍କରେ ଅନ୍ୟମାନଙ୍କୁ ଜଣାଇ ଦିଅନ୍ତି । ତେଣୁ ଅତ୍ୟନ୍ତ ଗୁସ୍‌ସାକୁ ସେ ସମ୍ଭାଳି ନପାରି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସମ୍ମୁଖରେ ଉପସ୍ଥିତ ମନ୍ତ୍ରୀ, ଦଳର ବିଧାୟକ ଓ ନେତାଙ୍କ ଆଗରେ ଖୁଲମ୍‌ଖୁଲା ଭାବେ ପ୍ରକାଶ କରିଦେଇଛନ୍ତି । ଏବେ ଦେଖିବା ପ୍ୟାରୀମୋହନଙ୍କର ଏହି ଗୁସ୍‌ସାରେ ପ୍ରଶାସନ ସଜାଡ଼ି ହେଉଛି କି ନାହିଁ । ■

## ୱେଲ୍‌କମ୍ ଅଙ୍କଲ-ଗୁଡ୍‌ବାଏ ଅଙ୍କଲ



ବିଜେଡି ସଭାପତି ନିର୍ବାଚନ ହେବାକୁ ଆଉ କିଛି ସମୟ ବାକି ଥାଏ । ବିଜେଡି କାର୍ଯ୍ୟାଳୟରେ ନେତାମାନେ କ୍ରମେ ଆସନରେ ବସିବାରେ ଲାଗିଥା'ନ୍ତି । କେତେକ ନେତା ନିଜ ନିଜ ମଧ୍ୟରେ ହାଲ୍‌କା ଆଲୋଚନା କରୁଥିବାର ଦେଖାଯାଇଥିଲା । ବିଜେଡି ମହାସଚିବ ପଦକୁ ଉଠାଇ ଦିଆଯାଇଛି ବୋଲି ଆଲୋଚନା ହେଉଥିବା ବେଳେ ପ୍ୟାରୀମୋହନ ମହାପାତ୍ରଙ୍କୁ ବିରୋଧ କରିବାରୁ ଦାମୋଦର ରାଉତଙ୍କ ଅବସ୍ଥା ଏପରି ହେଲା ବୋଲି କେତେକ ନେତା ମଧ୍ୟ ହସିହସି କହୁଥିବାର ଦେଖାଯାଉଥିଲା । ଏହି ସମୟରେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ସଭା ମଧ୍ୟକୁ ପଶିଆସିଲେ । ପ୍ୟାରୀଙ୍କୁ ଦେଖି ଆଲୋଚନା ଥମିଗଲା । ଅବଶ୍ୟ ପିପିଲି ବିଧାୟକ ପ୍ରଦୀପ ମହାରଥୀ

ଥମିଲେ ନାହିଁ । ପ୍ୟାରୀମୋହନ ତାଙ୍କ ପାଖକୁ ଆସିବା ମାତ୍ରେ ସେ କହିଦେଲେ ୱେଲକମ୍ ଅଙ୍କଲ । ପ୍ୟାରୀମୋହନ ତାଙ୍କୁ ନେଇ ହାଲ୍‌କା ପରିବେଶ ସୃଷ୍ଟି ହୋଇଛି ବୋଲି ଦୂରରୁ ଜାଣିପାରିଥିଲେ । ପ୍ରଦୀପ ମହାରଥୀଙ୍କ ପାଟିରୁ ୱେଲକମ୍‌ଟି ଯାତ୍ରା ଷ୍ଟାଇଲରେ ବାହାରିଥିଲା । ଅବଶ୍ୟ ସଙ୍ଗେସଙ୍ଗେ ପ୍ୟାରୀମୋହନ ତାହାର ପ୍ରତିଉତର ଯାତ୍ରା ଷ୍ଟାଇଲରେ ବି ଦେଇଥିଲେ । ପ୍ରଦୀପ ମହାରଥୀଙ୍କ ପାଖକୁ ଯାଇ ପ୍ୟାରୀମୋହନ ତାଙ୍କର ପିଠିକୁ ଆଉଁସି ଦେଇଥିଲେ ଆଉ ଯାତ୍ରା ଷ୍ଟାଇଲେ କହିଲେ- ୱେଲକମ୍ ନୁହେଁ, ଏଥର ଗୁଡ୍‌ବାୟ ଅଙ୍କଲ । ପ୍ୟାରୀମୋହନଙ୍କ ପାଟିରୁ ଏହି ଗୁଡ୍‌ବାୟ ଅଙ୍କଲ ଶୁଣିବା ପରେ ସେଠାରେ ଉପସ୍ଥିତ ନେତା ଘଟଣା ସମ୍ପର୍କରେ ପଚାରି ବୁଝିଥିଲେ । ଯେତେବେଳେ ଘଟଣାଟି ହାଲ୍‌କା ମନ୍ତବ୍ୟକୁ ନେଇ ସୃଷ୍ଟି ହୋଇଥିଲା ବୋଲି ସେମାନେ ଜାଣିଲେ ସେତେବେଳେ ସେମାନେ ମଧ୍ୟ ହସିଥିଲେ । ■

## ଲଲାଟେନ୍ଦୁଙ୍କ ବୁଦ୍ଧି



ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର ୧୯୯୫ ମସିହାରେ ପ୍ରଥମେ ବ୍ରହ୍ମଗିରିରୁ କଂଗ୍ରେସ ଟିକେଟରେ ନିର୍ବାଚିତ ହେଲେ । ଏହାପରେ ସେ ୨୦୦୦ ଓ ୨୦୦୪ ମସିହାରେ ବିଧାୟକ ହୋଇଥିଲେ । ୨୦୦୯ ନିର୍ବାଚନରେ ସେ ବିଜେଡିର ସଂଜୟ ଦାସବର୍ମାଙ୍କ ଠାରୁ ପରାଜିତ ହୋଇଛନ୍ତି । ୧୯୮୭ ମସିହାରେ ସେ ଛାତ୍ର କଂଗ୍ରେସର ସଭାପତି ଥିଲେ । ୧୯୯୬ ମସିହାରେ ସେ ରାଜ୍ୟ ଯୁବ କଂଗ୍ରେସର ବି ସଭାପତି ଥିଲେ । ୨୦୦୯ ନିର୍ବାଚନ ପୂର୍ବରୁ ସେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ ସଭାପତି ହେଲେ । ଏବେ ଲଲାଟେନ୍ଦୁ ବିଧାୟକ ନଥିଲେ ମଧ୍ୟ ତାଙ୍କ ଦରବାରରେ କଂଗ୍ରେସର ବହୁ ବିଧାୟକ ହାଉଯାଉ ହୁଅନ୍ତି । ଲଲାଟେନ୍ଦୁ ତାଙ୍କ ବୁଦ୍ଧି ପାଇଁ ଅନେକ ସମୟରେ ପ୍ରଶଂସିତ ହୁଅନ୍ତି । ଏମିତି ଏକ ବୁଦ୍ଧି ସମ୍ପର୍କରେ ସେଦିନ ଚର୍ଚ୍ଚା ହେଉଥିଲା । ୧୯୯୫ ମସିହାରେ କଂଗ୍ରେସ ସରକାର ଗଢ଼ିଲା । ଜାନକୀ ବଲ୍ଲଭ ପଟ୍ଟନାୟକ ବିଧାୟକ ନହୋଇ ମୁଖ୍ୟମନ୍ତ୍ରୀ ହେଲେ । ସେ ବେଗୁନିଆରୁ ପ୍ରାର୍ଥୀ ହେବା ପାଇଁ ନିଷ୍ପତି ନେଲେ । ବେଗୁନିଆର ବିଧାୟକ ଥା'ନ୍ତି ହରିହର ସାହୁ । ହରିହର ଇସ୍ତଫା ଦେବେ ଆଉ ସେଠାରେ ଉପନିର୍ବାଚନ ହେବ ଏବଂ ସେହି ଉପନିର୍ବାଚନରେ କଂଗ୍ରେସର ପ୍ରାର୍ଥୀ ହେବେ ଜାନକୀ ବଲ୍ଲଭ ପଟ୍ଟନାୟକ । ଏହା ସ୍ଥିର ହୋଇଯାଇଥାଏ । ସେତେବେଳକୁ ହରିହର ସାହୁ ଇସ୍ତଫା ଦେଇ ନଥା'ନ୍ତି । ସତେ ଯେମିତି ହରିହର ଗଡ଼ ଜିଣିଛନ୍ତି । ସେ ଯେହେତୁ ବିଧାୟକରୁ ଇସ୍ତଫା ଦେବେ ତେଣୁ ସେ ଯାହା ଚାହୁଁଥିଲେ ତାଙ୍କ କାମ ମୁଖ୍ୟମନ୍ତ୍ରୀ ଭାବେ ଜାନକୀ ବଲ୍ଲଭ ପଟ୍ଟନାୟକ କରିଦେଉଥିଲେ । କୁଆଡ଼େ ହରିହର ସାହୁ ବହୁ ବଦଳି ମଧ୍ୟ କରୁଥିଲେ । ଏହା ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କ ଦୃଷ୍ଟିକୁ ଆସିଲା । ଲଲାଟେନ୍ଦୁ ମଧ୍ୟ ସେତେବେଳେ ଜାନକୀ ବଲ୍ଲଭ

ପଟ୍ଟନାୟକଙ୍କର ନିକଟତମ ଥିଲେ । ଏମିତି ବଦଳି କରିବା ପାଇଁ ସବୁବେଳେ ତାଲିକା ପ୍ରସ୍ତୁତ କରୁଥିଲେ ହରିହର ସାହୁ । ଯିଏ ଯେଉଁ ବଦଳି ପାଇଁ ପ୍ରସ୍ତାବ ଦେଲା ତାହାକୁ ଲିଖିତ ଆକାରରେ ହରିହର ରଖୁଥିଲେ । ଲଲାଟେନ୍ଦୁ ତାଙ୍କର ଏକ ବଦଳି କରିଦେବା ପାଇଁ ହରିହରଙ୍କୁ ଅନୁରୋଧ କଲେ । ହରିହର ଅତି ଆଗ୍ରହର ସହ କହିଲେ- ତାଲିକା ଦିଅ ବଦଳି କରିଦେବା । ଲଲାଟେନ୍ଦୁ ଏକ କାଗଜରେ ଲେଖିଲେ । ସେଥିରେ ସେ ଉଲ୍ଲେଖ କଲେ ଯେ, ମାନ୍ୟବର ମୁଖ୍ୟମନ୍ତ୍ରୀ ମହୋଦୟ ଜାଣିବେ- ମାନ୍ୟବର ରାଜ୍ୟପାଳ ବହୁ ଦୁର୍ନୀତି କରୁଛନ୍ତି । ତେଣୁ ତାଙ୍କୁ ତୁରନ୍ତ ବଦଳି କରିଦିଆଯାଉ । ଯେହେତୁ ଲଲାଟେନ୍ଦୁ ଜଣେ ଫାୟାରବ୍ରାଣ୍ଡ ନେତା ତେଣୁ ତାଙ୍କର ଲେଖା କ'ଣ ଅଛି ତାହାକୁ ହରିହର ପଢ଼ିଲେ ନାହିଁ । ସେହି ଲେଖା ତଳେ ହରିହର ସାହୁ ଦସ୍ତଖତ କରିଦେଲେ । ସେତେବେଳେ ବିଧାନସଭା ଚାଲୁଥାଏ । ଏହି ଲେଖାକୁ ଅତି ସନ୍ତର୍ପଣତାର ସହିତ ବିଧାନସଭା ପ୍ରାଙ୍ଗଣରେ ଥିବା ମୁଖ୍ୟମନ୍ତ୍ରୀ କାର୍ଯ୍ୟାଳୟରେ ଜାନକୀ ବଲ୍ଲଭ ପଟ୍ଟନାୟକ ବସୁଥିବା ସ୍ଥାନରେ ରଖିଦେଲେ ଲଲାଟେନ୍ଦୁ । ସେତେବେଳେ ବସନ୍ତ ବିଶ୍ୱାଳ ଆଉ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମ୍ପର୍କ ଅତି ମଧୁର ଥିଲା । ଜାନକୀ ବଲ୍ଲଭ ପଟ୍ଟନାୟକ ବିଧାନସଭା ଗୃହରୁ ମୁଖ୍ୟମନ୍ତ୍ରୀ ପ୍ରକୋଷ୍ଠକୁ ଗଲେ । ସେଠାରେ ଚୌକିରେ ବସିବା ବେଳକୁ ଦେଖିଲେ ହରିହର ସାହୁଙ୍କ ଦସ୍ତଖତରେ ଆସିଥିବା ସୁପାରିଶ ପତ୍ରଟିଏ ତାଙ୍କ ଟେବୁଲ ଉପରେ ରଖାଯାଇଥିବାର । ତାକୁ ପଢ଼ିଦେବା ମାତ୍ରେ ଜାନକୀଙ୍କ ମୁଣ୍ଡ ଗରମ ହୋଇଗଲା । ସଙ୍ଗେସଙ୍ଗେ ସେ ବସନ୍ତ ବିଶ୍ୱାଳଙ୍କୁ ଡାକିଲେ । ବସନ୍ତ ତାଙ୍କ ପାଖକୁ ଆସିଲେ । ଜାନକୀ ବଲ୍ଲଭ ସେହି ପତ୍ରକୁ ବସନ୍ତଙ୍କୁ ଦେଖାଇଲେ । ଏହାପରେ ହରିହର ସାହୁଙ୍କୁ ଖୋଜାଗଲା । ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଡାକରା ପାଇ ହରିହର ବେଶ୍ ଖୁସିମନରେ ପହଞ୍ଚିଲେ ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠରେ । ସେତେବେଳେ ସେଠାରେ ବସନ୍ତ ବିଶ୍ୱାଳ ଉପସ୍ଥିତ ଥିଲେ । ହରିସାହୁଙ୍କୁ ଦେଖିବାମାତ୍ରେ ବସନ୍ତ ବିଶ୍ୱାଳ ତାଙ୍କ ଉପରେ ଗର୍ଜି ଉଠିଲେ । କେମିତି ରାଜ୍ୟପାଳଙ୍କ ବଦଳି କରିବାକୁ ସୁପାରିଶ କଲ ବୋଲି ପଚରାଗଲା । ସେତେବେଳକୁ ହରିହର ଜାଣିନାହାନ୍ତି ଘଟଣା କ'ଣ । ସୁପାରିଶ ପତ୍ରକୁ ତାଙ୍କୁ ଦେଖାଇ ଦିଆଗଲା । ଜିଭ କାମୁଡ଼ି ଦେଲେ ହରିହର ଆଉ ବାହାରକୁ ଆସିଲେ । ତାଙ୍କ ଅପେକ୍ଷାରେ ଥା'ନ୍ତି ଲଲାଟେନ୍ଦୁ । ପଚାରିଲେ କ'ଣ ହେଲା । ମୁହଁ କାହିଁକି ଶୁଖାଇଛ । ହରିହର ସମସ୍ତ କଥା କହିଲେ । କେଜାଣି କାହିଁକି ତାଙ୍କର ସନ୍ଦେହ ହେଲା ଏହି କାମ ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର କରିଥିବେ ବୋଲି । ସେ କୁଆଡ଼େ କହିଲେ ଏହାକୁ ତମ ଛଡ଼ା ଆଉ କେହି କରି ନଥିବେ । ଲଲାଟେନ୍ଦୁ ଆଉ ତାଙ୍କ ହସକୁ ସମ୍ଭାଳି ପାରିଲେ ନାହିଁ । ସେ ଜୋର୍‌ରେ ହସିଲେ । ସେଠାରେ ଥିବା ଅନ୍ୟ ବିଧାୟକମାନେ ମଧ୍ୟ ହସିବାରେ ଲାଗିଲେ । ଘଟଣାଟି ସେତେବେଳେ ପ୍ରାୟ ପ୍ରଘଟ ହୋଇ ନଥିଲା । ଏବେ କଂଗ୍ରେସର ଯେଉଁ ନୂଆ ବିଧାୟକମାନେ ଆସିଛନ୍ତି ସେମାନଙ୍କ ମଧ୍ୟରେ ଏହି ଆଲୋଚନା ବେଳେବେଳେ ହେଉଛି ଆଉ ଲଲାଟେନ୍ଦୁଙ୍କ ବୁଦ୍ଧିକୁ ମଧ୍ୟ ସେମାନେ ପ୍ରଶଂସା କରୁଛନ୍ତି । ■

# ପ୍ୟାରୀଙ୍କ ଚପଲ ଚୋରି

ଭୁବନେଶ୍ୱର ସହିଦନଗରରେ 'ସ୍ପର୍ଶ' ହସ୍ପିଟାଲର ଏକ ନୂତନ ବିଭାଗ ଖୋଲଯିବା ଅବସରରେ ହୋଇଥିବା ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ଏଠାରେ ପୂଜାପୂଜିର ମଧ୍ୟ ଆୟୋଜନ ହୋଇଥିଲା । ଉଦ୍‌ଘାଟନ କରିବା ଅବସରରେ ପ୍ୟାରୀମୋହନ ମଧ୍ୟ ପୂଜାପୂଜି ସହିତ କିଛି ସମୟ ପାଇଁ ଜଡ଼ିତ ହେଲେ । ପ୍ୟାରୀମୋହନ ଚପଲ ରଖିଦେଇ ଖାଲିପାଦରେ ପୂଜାସ୍ଥଳକୁ ଯାଇଥିଲେ । ପୂଜା, ଉଦ୍‌ଘାଟନ ସବୁ ସରିଲା । ଚପଲ ରଖିଥିବା ସ୍ଥାନକୁ ପ୍ୟାରୀମୋହନ ଆସିଲେ । କିନ୍ତୁ ସେଠାରେ ସେ ତାଙ୍କ ଚପଲକୁ ପାଇଲେ ନାହିଁ । ଖୋଜା ଚାଲିଲା ପ୍ୟାରୀମୋହନଙ୍କ ଚପଲକୁ । ଏହି ସମୟରେ ପ୍ୟାରୀମୋହନ ବାରମ୍ବାର କହୁଥା'ନ୍ତି ଯେ ତାଙ୍କ ଚପଲକୁ କେହି ଚୋରି କରି ନେଇଯାଇଛି । ଖାଲିପାଦରେ ପ୍ୟାରୀମୋହନ ଏପଟସେପଟ ହେଉଥା'ନ୍ତି । ନେତାମାନଙ୍କର ଏପରି ଚପଲ ଚୋରି ଘଟଣା ଯେ ଏହା ପ୍ରଥମ ତାହା ନୁହେଁ । ଏମିତି ଅନେକ ନେତାଙ୍କର ଚପଲ ଚୋରି ହୋଇଛି । ସେମାନେ ଖାଲିପାଦରେ ଘରକୁ ଫେରିଥା'ନ୍ତି । ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ଏ ଦିଗରେ ଏବେ ବେଶ୍ ଯତ୍ନବାନ । ବହୁସ୍ଥାନରେ ତାଙ୍କର ଚପଲ ଚୋରି ହୋଇଯାଇଛି । ଏବେ ସେ ଏକ ନୂଆ ଉପାୟ ଖୋଜି ବାହାର କରିଛନ୍ତି । ଯେଉଁଠି ଚପଲ ଥୋଇ ସଭାକୁ ଖାଲିପାଦରେ ଯିବାକୁ ହୁଏ ସେଠାକୁ ସେ ଦାମୀ ଚପଲ ପିନ୍ଧି ଯାଆନ୍ତି ନାହିଁ । ପ୍ରସନ୍ନଙ୍କ ମତ ହେଲା- ଯଦି ଦାମିକିଆ ଚପଲ ପିନ୍ଧି ଯାଇଥିବ ଆଉ ସେହି ଚପଲକୁ ଥୋଇ ଖାଲିପାଦରେ ସଭାକୁ ଯିବ ତେବେ ମନ ସଭାରେ ଲାଗିବ ନାହିଁ । ସବୁବେଳେ ମନ ଥିବ ଚପଲ ଉପରେ । ତେଣୁ ମୂଳରୁ ଏହି ଅସୁବିଧାକୁ ଦୂର କରିଦେଲେ ଆଉ ତେଣିକି ଚିନ୍ତା ନଥିବ । ପ୍ରସନ୍ନ ଆଉ ପୂର୍ବପରି ଦାମୀ ଚପଲ ପିନ୍ଧୁନାହାନ୍ତି । ସଭାସମିତିକୁ ଯଦି ସେ ଚପଲ ଓହ୍ଲାଇ ଯାଆନ୍ତି ତେବେ ତାଙ୍କ ଚପଲକୁ କେହିବି ଅନାନ୍ତି ନାହିଁ । ବୋଧହୁଏ ପ୍ୟାରୀମୋହନଙ୍କର ଏହି ଚପଲ ଚୋରି ଘଟଣା ପ୍ରଥମ । ନହେଲେ ପ୍ୟାରୀମୋହନ ମଧ୍ୟ ପ୍ରସନ୍ନଙ୍କ ପରି ଆଉ ଦାମୀ ଚପଲ ନପିନ୍ଧି ଶସ୍ତା ଚପଲ ପିନ୍ଧିବା ଅଭ୍ୟାସ କରିସାରନ୍ତେଣି । ■



# ସୂର୍ଯ୍ୟଙ୍କ ମାହାତ୍ମ୍ୟ

ଏ ସୂର୍ଯ୍ୟ ଚନ୍ଦ୍ର, ତାରାଙ୍କ ପରି ଆକାଶର ସୂର୍ଯ୍ୟ ନୁହନ୍ତି । ବିଜେଡି ରାଜନୀତିରେ ସୂର୍ଯ୍ୟ କୁହାଗଲେ ବୁଝାଉଛି ସୂର୍ଯ୍ୟନାରାୟଣ ପାତ୍ରଙ୍କୁ । ଏମିତି ୧୯୯୦ ମସିହାରୁ ଏଯାବତ୍ ବିଧାୟକ ହୋଇଆସିଥିବା ସୂର୍ଯ୍ୟନାରାୟଣ ପାତ୍ର ୪ ଥର ମନ୍ତ୍ରୀ ହେଲେଣି । ୨୦୦୯ରେ ସେ ପୁଣି ଗୁରୁତ୍ୱପୂର୍ଣ୍ଣ ରାଜସ୍ୱ

ବିଭାଗର ମନ୍ତ୍ରୀ । ସୂର୍ଯ୍ୟ ଯେ ଦୁଃଖି ଓ ଅଭାବୀ ଲୋକଙ୍କର ସାଥି ଏହା ବୋଧହୁଏ କମ୍ ଲୋକ ଜାଣନ୍ତି । ଏମିତି ଏକ ଘଟଣା ନିକଟରେ ଘଟିଥିଲା ଯାହାକୁ ନେଇ ସୂର୍ଯ୍ୟଙ୍କର ନିର୍ବାଚନମଣ୍ଡଳୀ ଦିଗପହଣ୍ଡିରେ ଜୋରଦାର୍ ଚର୍ଚ୍ଚା ହୋଇଥିଲା । ଏହି ଚର୍ଚ୍ଚା ଏବେ ଗଂଜାମ ଜିଲାରେ ବ୍ୟାପିଚାଲିଛି । ପୁଣି ରାଜଧାନୀ ଭୁବନେଶ୍ୱରରେ ମଧ୍ୟ ଏହି ଚର୍ଚ୍ଚା ଚାଲିଛି । ସୂର୍ଯ୍ୟଙ୍କ ନିର୍ବାଚନମଣ୍ଡଳୀ ଦିଗପହଣ୍ଡିରେ ଜନୈକ ବିଜେଡି କର୍ମୀଙ୍କର ଅକାଳ ମୃତ୍ୟୁ ହେଲା । ଏହି କର୍ମୀ ଜଣଙ୍କ ଅତ୍ୟନ୍ତ ଅଭାବୀ ଥିଲେ । ଏହାସତ୍ତ୍ୱେ ସେ ବିଜେଡିର ଖାସ୍ କର୍ମୀ ଥିଲେ । ତାଙ୍କ ମୃତ୍ୟୁରେ ବିଜେଡି କର୍ମୀ ଓ ନେତାମାନେ ଶୋକାଭିଭୂତ ହୋଇଗଲେ । ବିଜେଡି କର୍ମୀମାନେ ପ୍ରସ୍ତାବ ଦେଲେ ଯେ, ମୃତ ବିଜେଡି କର୍ମୀଙ୍କର ଶୁଦ୍ଧକାର୍ଯ୍ୟରେ ଯାହା ଖର୍ଚ୍ଚ ହେବ ତାହାକୁ ବିଜେଡ଼ି ବହନ କରିବ । ଏହା ଦିଗପହଣ୍ଡିର ବିଜେଡି ବିଧାୟକ ସୂର୍ଯ୍ୟନାରାୟଣ ପାତ୍ରଙ୍କ କାନକୁ ଆସିଲା । ବିଜେଡି କର୍ମୀ ଓ ନେତାମାନେ ମଧ୍ୟ ସୂର୍ଯ୍ୟନାରାୟଣ ପାତ୍ରଙ୍କ ସହିତ ଏସମ୍ପର୍କରେ ଆଲୋଚନା ବି କଲେ । ସୂର୍ଯ୍ୟନାରାୟଣ ଏ ଦିଗରେ ବେଶ୍ ସହଯୋଗର ହାତ ବଢ଼ାଇ ଦେଲେ । ବିଭିନ୍ନ ବ୍ୟକ୍ତିବିଶେଷଙ୍କୁ ସୂର୍ଯ୍ୟନାରାୟଣ ଅନୁରୋଧ କଲେ । ଏହି ଅନୁରୋଧକ୍ରମେ କିଏ ଚାଉଳ ଦେଲେ ତ କିଏ ଡାଲି । ପୁଣି କିଏ ପରିବା ଦେଲେ ତ କିଏ ଲୁଗାପଟା । ପୁଣି ଆର୍ଥିକ ସାହାଯ୍ୟ ଭାବେ କିଏ ୫୦୦ ଟଙ୍କା ତ କିଏ ୧୦୦୦ ଟଙ୍କା ଦେଲେ । ଶୁଦ୍ଧିକ୍ରିୟା କାର୍ଯ୍ୟ ବେଶ୍ ଭଲରେ ସରିଲା । ଏକାଦଶାହରେ ୪ ହଜାରରୁ ଅଧିକ ଲୋକ ଭୋଜନ କଲେ । ପୁଣି ପ୍ରସଙ୍ଗ ଏଇଠି ଶେଷ ହେଲାନାହିଁ । ମୃତ ବିଜେଡି କର୍ମୀଙ୍କର ପୁଅକୁ ମଧ୍ୟ ବିବାହ କରିଦିଆଗଲା । ଆଉ ଏ ବାବଦୀୟ ଖର୍ଚ୍ଚ ମଧ୍ୟ ଚାନ୍ଦା ଭେଦା କରି ତୁଲାଇ ଦିଆଗଲା । ଏହି କାମରେ ଯେଉଁମାନେ ସଂପୃକ୍ତ ଥିଲେ ସମସ୍ତଙ୍କୁ ବେଶ୍ ଆତ୍ମସନ୍ତୋଷ ମିଳିଛି । ଏଭଳି ଏକ ମହତ କାମରେ ସହଯୋଗ କରି ସୂର୍ଯ୍ୟ ମଧ୍ୟ ବେଶ୍ ଆତ୍ମସନ୍ତୋଷ ଲାଭ କରିଛନ୍ତି । ଅଭାବ, ଅନଟନ ଦିଗପହଣ୍ଡି ବିଜେଡି କର୍ମୀଙ୍କ ପାଇଁ ସମସ୍ୟା ହେବନାହିଁ ବୋଲି ଏଥିରୁ ସ୍ପଷ୍ଟ ହୋଇଯାଇଛି । ଯାହାର କେହି ନାହାନ୍ତି ତାଙ୍କର ବିଜେଡି ଅଛି ବୋଲି ଏବେ ଦିଗପହଣ୍ଡି ନିର୍ବାଚନମଣ୍ଡଳୀରେ ଚର୍ଚ୍ଚା ଚାଲିଛି । ■

## ବାଲକଟା ଓ ରାଜକିଶୋର ନାୟକ



ଏମିତି ବଂଚିଥିବା ବେଳେ ସାଧାରଣତଃ ମଣିଷଙ୍କର ଅନେକ କଥା ଲୋକଲୋଚନକୁ ଆସି ନଥାଏ । ମୃତ୍ୟୁପରେ କ୍ରମେ ତାହା ଲୋକଲୋଚନକୁ ଆସେ ଆଉ ତାକୁ ନେଇ ଚର୍ଚ୍ଚା ବି ହୁଏ । ପାଟକୁରାରୁ ଦୁଇଥର ବିଧାୟକ ହୋଇଥିବା ତଥା ଖଦୀବୋର୍ଡ଼ର ଦୁଇଥର ଅଧ୍ୟକ୍ଷ ହୋଇଥିବା ରାଜକିଶୋର ନାୟକଙ୍କ ସମ୍ପର୍କରେ ଏବେ ଅନେକ ଆଲୋଚନା ହେଉଛି । ଅନେକ ଲୁଚି ରହିଥିବା କଥା ପଦାକୁ ଆସୁଛି । ୧୯୨୫ ମସିହା ନଭେମ୍ବର ୧୨ ତାରିଖରେ ଜନ୍ମଗ୍ରହଣ କରିଥିବା ରାଜକିଶୋରଙ୍କର ମୃତ୍ୟୁ ଘଟିଲା ୨୦୧୦ ମସିହା ଜାନୁୟାରୀ ୪ ତାରିଖରେ । ଏମିତି ବିଦେଶରେ ପଡିଙ୍କର ଦାଢ଼ି ଓ

ବାଳ କାଟିବା ପାଇଁ ସେଲୁନର ଆବଶ୍ୟକତା ପଡ଼ି ନଥାଏ ଆଉ କୁଆଡ଼େ ପତ୍ନୀ ସ୍ୱାମୀଙ୍କର ବାଳ କାଟି ଦେଇଥା'ନ୍ତି । ଓଡ଼ିଶାର ଗାଁଗହଳିରେ ଏହି କଥା ଆଲୋଚନା ହେଲେ କେହି ବି ବିଶ୍ୱାସ କରନ୍ତି ନାହିଁ । ସାଧାରଣତଃ ବାଳ କିମ୍ବା ଦାଢ଼ି କାଟିବା ପାଇଁ ଭଣ୍ଡାରୀର ଆବଶ୍ୟକତା ପଡ଼ିଥାଏ । ସହରରେ ମଧ୍ୟ ଅନୁରୂପ ବ୍ୟବସ୍ଥା । ସାଧାରଣ ଲୋକ ସେଲୁନକୁ ଯାଇଥା'ନ୍ତି ବାଳ ଓ ଦାଢ଼ି କାଟିବାକୁ । ଅନେକ କ୍ଷେତ୍ରରେ ମଧ୍ୟ ଦାଢ଼ିକୁ ଘରେ ରେଜର ଯୋଗେ କଟାଯାଇଥାଏ କିନ୍ତୁ ବାଳ କାଟିବା ବେଳକୁ ଭଣ୍ଡାରୀର ଆବଶ୍ୟକତା ହୋଇଥାଏ । ଏଠାରେ ରାଜକିଶୋର ନାୟକଙ୍କ ପ୍ରସଙ୍ଗ ଏଇଥିପାଇଁ ଆସୁଛି ଯେ, ସେ ତାଙ୍କର ଦାଢ଼ି ଓ ମୁଣ୍ଡ ବାଳ କାଟିବା ପାଇଁ ସେଲୁନକୁ ଯାଆନ୍ତି ନାହିଁ । ଅନେକ ମଧ୍ୟ ଭାବିବେ ଯେ ଯେହେତୁ ରାଜକିଶୋର ଦୁଇଥର ବିଧାୟକ ଆଉ ବିଜୁ ପଟ୍ଟନାୟକଙ୍କର ଅନ୍ୟତମ ଘନିଷ୍ଠ ସହଯୋଗୀ ଥିଲେ ପୁଣି ଦୁଇଥର ଖଦୀବୋର୍ଡ଼ ଅଧ୍ୟକ୍ଷ ଥିଲେ ସେହି ଦୃଷ୍ଟିରୁ ତାଙ୍କର ଖାତିର ରହିଥିବ ଆଉ ସେ ସେଲୁନକୁ ବାଳ କଟିବାକୁ ନଯାଇ ତାଙ୍କ ଘରକୁ ଭଣ୍ଡାରୀ ଆସି ତାଙ୍କ ବାଳ ଓ ଦାଢ଼ି କାଟୁଥିବ ବୋଲି । କିନ୍ତୁ ଘଟଣା ତାହା ନୁହେଁ । ରାଜକିଶୋର ସେଲୁନ ଯାଆନ୍ତି ନାହିଁ । ତାଙ୍କ ପତ୍ନୀ ନିର୍ମଳା ଦେବୀ ଯେ କି ବୃତିରେ ଶିକ୍ଷୟତ୍ରୀ ଥା'ନ୍ତି ସେ ହିଁ ତାଙ୍କ ପାଇଁ ଭଣ୍ଡାରୀ ହୋଇଥା'ନ୍ତି । ମାନେ ରାଜକିଶୋରଙ୍କର ଦାଢ଼ି ଓ ବାଳକୁ ବାରିକ ହୋଇ କାଟନ୍ତି ତାଙ୍କ ପତ୍ନୀ ନିର୍ମଳା । ଏମିତି ଦେଖିଲେ ସ୍ୱାମୀଙ୍କର ଯତ୍ନ ନେବାରେ କେବେବି ଅବହେଳା କରନ୍ତି ନାହିଁ ନିର୍ମଳା ବୋଲି ପ୍ରମାଣିତ ହୋଇଯାଏ ଏହି ସାମାନ୍ୟ ବାଳକଟାରୁ । ଏଭଳି ଉଦାହରଣ କ୍ୱଚିତ୍ ମିଳିବ ଆଉ ଏହି ଉଦାହରଣ ଆଜି ହୋଇଯାଇଛି ଅତୀତର ସ୍ମୃତି । ନିଜର ପ୍ରଚାର କେବେବି କରୁ ନଥିବା ରାଜକିଶୋରଙ୍କର ଅତୀତର ଜୀବନରୁ ଗୋଟିଏ ଗୋଟିଏ ଆଦର୍ଶର ଖିଅ ଏବେ ବାହାରିବାରେ ଲାଗିଛି । ■

## ରୋଷେୟା ସୁବର୍ଣ୍ଣ



କେନ୍ଦୁଝରର ବିଜେଡି ବିଧାୟକ ହେଉଛନ୍ତି ସୁବର୍ଣ୍ଣ ନାୟକ । ଗୋଟିଏ ସମୟରେ ସେ ଆର୍‌ଡବ୍ଲ୍ୟୁଏସ୍ଏସ୍‌ର କନିଷ୍ଠ ଯନ୍ତ୍ରୀ ଥିଲେ । ଏହି ସମୟରେ ତାଙ୍କର ପତ୍ନୀ ପ୍ରତିଭା ମଂଜରୀ ନାୟକ ମଧ୍ୟ ବିଜେପି ସମର୍ଥନରେ କେନ୍ଦୁଝର ଜିଲାର ଝୁମ୍ପୁରା ବ୍ଲକର ଅଧ୍ୟକ୍ଷା ହୋଇଥିଲେ । ଏମିତି ଦେଖିଲେ ସେତେବେଳେ କେନ୍ଦୁଝର ବିଧାୟକ ମୋହନ ମାଝୀଙ୍କ ସହିତ ସୁବର୍ଣ୍ଣଙ୍କର ପଡୁ ନଥିଲା । ସୁବର୍ଣ୍ଣ ଚାହୁଁଥିଲେ ମୋହନଙ୍କୁ ହଟାଇ କେନ୍ଦୁଝରରୁ ବିଜେପି ଟିକେଟ ନେଇ ପ୍ରତିଦ୍ୱନ୍ଦିତା କରିବେ ବୋଲି । ଏହା ମୋହନଙ୍କ କାନରେ ପଡ଼ିଲା । ମୋହନ ବି ଚାହିଁଲେ କେମିତି ସୁବର୍ଣ୍ଣଙ୍କୁ ପାନେ ଦେବେ ବୋଲି ଆଉ ଏଥିରେ ମୋହନ ସଫଳ ହେଲେ । ସେ ସୁବର୍ଣ୍ଣଙ୍କୁ ଚାକିରିରୁ ସସ୍‌ପେଣ୍ଡ କରାଇଦେଲେ । ଏହା ପରଠାରୁ ଆରମ୍ଭ ହେଲା ମୋହନ ଓ ସୁବର୍ଣ୍ଣଙ୍କ ମଧ୍ୟରେ

ଖୋଲାଖୋଲି ଯୁଦ୍ଧ । ସୁବର୍ଣ୍ଣଙ୍କ ପତ୍ନୀ ପ୍ରତିଭା ମଂଜରୀ ଆଉ ବିଜେପିରେ ରହିଲେ ନାହିଁ । ସେ ହୋଇଗଲେ ବିଜେଡି । ସୁବର୍ଣ୍ଣ ମଧ୍ୟ ସସ୍‌ପେଣ୍ଡ ଆଦେଶ ପ୍ରତ୍ୟାହାର କରାଇନେଇ ଚାକିରିରେ ଯୋଗ ଦେଲେ ଆଉ ଚାକିରିରୁ ଇସ୍ତଫା ଦେଇ ବିଜେଡି ଟିକେଟ ନେଇ କେନ୍ଦୁଝରରୁ ଲଢ଼ି ବିଜୟୀ ହେଲେ । ଏବେ ସୁବର୍ଣ୍ଣ ଓ ତାଙ୍କ ପତ୍ନୀ ପ୍ରତିଭା ଉଭୟେ ରାଜନେତା । ସୁବର୍ଣ୍ଣଙ୍କର ଯେମିତି ସମର୍ଥକ ଅଛନ୍ତି ପ୍ରତିଭାଙ୍କର ମଧ୍ୟ ସେମିତି ସମର୍ଥକ ରହିଛନ୍ତି । ଉଭୟେ ସେମାନଙ୍କର କର୍ମୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ ମଧ୍ୟ କରୁଛନ୍ତି । ସୁବର୍ଣ୍ଣ ଯେଉଁ ଉପାୟ ପ୍ରୟୋଗ କରୁଛନ୍ତି ତାହା କିନ୍ତୁ ଅନ୍ୟମାନଙ୍କ ଠାରୁ ଭିନ୍ନ ଅଟେ । ଏମିତି ତ ପତ୍ନୀ ପ୍ରତିଭା ରାଜନୀତିରେ ବ୍ୟସ୍ତ ରହୁଥିବାରୁ ସ୍ୱାମୀ ସୁବର୍ଣ୍ଣଙ୍କୁ ରୋଷେଇ କରି ଖାଇବାକୁ ଦେବାଟା ସବୁବେଳେ ସମ୍ଭବ ହୁଏନାହିଁ । ପୁଣି ଅନେକ ସମୟରେ ସବୁର୍ଣ୍ଣ ତାଙ୍କ ସମର୍ଥକ ଓ କର୍ମୀଙ୍କୁ ଭୋଜିଭାତରେ ଆପ୍ୟାୟିତ କରିବାକୁ ଚାହିଁଥା'ନ୍ତି ଆଉ ସେହି ସମୟରେ ସେ ନିଜେ ରାନ୍ଧୁଣିଆ ହୋଇଯାଆନ୍ତି । କେବଳ ସେତିକି ନୁହେଁ ବଜାରରୁ ମାଛ ଆଣି ସେ ତାକୁ ବଛାଖୋଳା କରିଥା'ନ୍ତି ଆଉ କାଟି ବି ଥା'ନ୍ତି । ନିଜେ ରୋଷେଇ କରି ସେ ସମସ୍ତଙ୍କୁ ଖାଇବାକୁ ଦେଇଥା'ନ୍ତି । ସୁବର୍ଣ୍ଣଙ୍କ ହାତପରଷା ଖାଇ ତାଙ୍କ କର୍ମୀ ଓ ସମର୍ଥକମାନେ ବହୁ ସମୟରେ ସନ୍ତୁଷ୍ଟ ହେଉଛନ୍ତି । ଏବେ ମାଛ କାଟିବା, ରୋଷେଇ କରିବା ସତେ ଯେମିତି ସୁବର୍ଣ୍ଣଙ୍କ ପାଇଁ ନିଶା ହୋଇଯାଇଛି । ଭୁବନେଶ୍ୱର ଆସିଲେ ସେ ଯେମିତି ହେଲେ ମାଛ କିଣିବେ ଆଉ ନିଜେ ତାକୁ ବଛାଖୋଳା, କଟାକଟି କରି ରୋଷେଇ କରିବେ । କେନ୍ଦୁଝର ନିର୍ବାଚନମଣ୍ଡଳୀର ସ୍ୱାସ୍ଥ୍ୟ, ରାସ୍ତାଘାଟ, ଜଳସେଚନ, ଶିକ୍ଷା ପ୍ରଭୃତି କ୍ଷେତ୍ରରେ ତାଙ୍କର ଲୋକଙ୍କ ପାଇଁ କାମ କରିବାର ଅଭିଳାଷ ରହିଛି । ଏ କ୍ଷେତ୍ରରେ ଭୁବନେଶ୍ୱରରେ ମଧ୍ୟ କେତେକ ସଚିବାଳୟ କର୍ମଚାରୀ ତାଙ୍କୁ ସହଯୋଗ କରିଥା'ନ୍ତି । ସୁବର୍ଣ୍ଣ ମଧ୍ୟ ସେମାନଙ୍କୁ ନିଜେ ରୋଷେଇ କରି ଖାଇବାକୁ ଦିଅନ୍ତି । ସୁବର୍ଣ୍ଣ ଜଣେ ଭଲ ବିଧାୟକ କି ନୁହେଁ ତାହା ଜାଣିବାକୁ ଆହୁରି ୪ ବର୍ଷ ଲାଗିଯିବ । କିନ୍ତୁ ସେ ଯେ ଜଣେ ଭଲ ରୋଷେୟା ଆଉ ଭଲ ମାଛ କଟାଳି ତାହା ଏବେ ପ୍ରଚାର ହୋଇଗଲାଣି । ■

## ଅରବିନ୍ଦଙ୍କ ବ୍ୟାଡ଼ମିଂଟନ



ଅରବିନ୍ଦ ଢାଲି ସତେ ଯେମିତି ବ୍ୟାଡ଼ମିଂଟନକୁ ଛାଡ଼ି ରହିପାରୁନାହାନ୍ତି । ରାଜନୀତି ବ୍ୟସ୍ତତା ମଧ୍ୟରେ ଯେତେ ଥିଲେ ମଧ୍ୟ ବ୍ୟାଡ଼ମିଂଟନ ଖେଳକୁ ସେ ଭୁଲି ପାରୁନାହାନ୍ତି । ଯେମିତି ହେଲେ ପ୍ରତିଦିନ ସେ ବ୍ୟାଡ଼ମିଂଟନ ଖେଳିବେ । ତାଙ୍କ ସହିତ ଖେଳିବା ପାଇଁ ଖେଳାଳିଙ୍କୁ ସେ ନିମନ୍ତ୍ରଣ କରିବେ । ସେମାନଙ୍କୁ ଚା' ଦେବେ ଆଉ ବ୍ୟାଡ଼ମିଂଟନ ର୍‌ୟାକେଟ୍ ବି ଦେବେ । ବ୍ୟାଡ଼ମିଂଟନ ଖେଳ ପରି କୁଆଡେ ତାଙ୍କର ରାଜନୀତି । ଯେମିତି ରାଜନୀତି ନିଶା ସେମିତି

ବ୍ୟାଡ଼ମିଂଟନ ଖେଳିବା ମଧ୍ୟ ତାଙ୍କର ନିଶା । ବ୍ୟାଡ଼ମିଂଟନ ନିଶାରେ କାହିଁକି ଅରବିନ୍ଦ ପଡ଼ିଲେ ତାହାର କାରଣ ବି ରହିଛି । ଯେତେବେଳେ ଅରବିନ୍ଦ ୨୦୦୪ ନିର୍ବାଚନରେ ହାରିଗଲେ ସେତେବେଳେ ତାଙ୍କ ପାଖରେ ସମୟ ଅଧିକ ରହିଲା । ତେଣୁ ଏହି ସମୟକୁ ସେ ବିନିଯୋଗ କରିବା ପାଇଁ ଚାହିଁଲେ । ସଂଧ୍ୟାରେ ବ୍ୟାଡ଼ମିଂଟନ ଖେଳିଲେ । ତାଙ୍କ ପାଖକୁ ଆସୁଥିବା ଲୋକମାନଙ୍କୁ ମଧ୍ୟ ବ୍ୟାଡ଼ମିଂଟନ ଖେଳିବା ପାଇଁ ପ୍ରବର୍ତ୍ତାଇଲେ । କିଏ ଖେଳିଲେ ତ ଆଉ କିଏ ଦର୍ଶକ ହେଲେ । ଯେମିତି ଅରବିନ୍ଦଙ୍କ ପାଇଁ ବ୍ୟାଡ଼ମିଂଟନ ନିଶା ହୋଇଗଲା ସେହିପରି ସେଠାକୁ ଖେଳିବା ପାଇଁ ଓ ଦର୍ଶକ ହେବା ନିମନ୍ତେ ଯାଉଥିବା ବ୍ୟକ୍ତିମାନଙ୍କ ପାଇଁ ମଧ୍ୟ ବ୍ୟାଡ଼ମିଂଟନ ନିଶା ହୋଇଗଲା । ଏହା ଫଳରେ ଅରବିନ୍ଦ ଆଉ ନିଃସଙ୍ଗ ହେଲେନାହିଁ । ଅନେକ କ୍ଷେତ୍ରରେ ଅରବିନ୍ଦଙ୍କ ପାଇଁ ବ୍ୟାଡ଼ମିଂଟନ ସତେ ଯେମିତି ଏକ ସାଥି ହୋଇଗଲା । ୨୦୦୯ରେ ବିଧାୟକ ହେବାପରେ ଆଶା କରାଯାଉଥିଲା ଯେ, ଅରବିନ୍ଦ ବ୍ୟସ୍ତତା ମଧ୍ୟରେ ରହୁଥିବାରୁ ବ୍ୟାଡ଼ମିଂଟନ ଖେଳକୁ ଛାଡ଼ିଦେବେ ବୋଲି । କିନ୍ତୁ ଯେତେ ବ୍ୟସ୍ତତା ଥିଲେ ମଧ୍ୟ ଅରବିନ୍ଦ ବ୍ୟାଡ଼ମିଂଟନ ଖେଳକୁ ଛାଡ଼ି ପାରୁନାହାନ୍ତି । ସକାଳୁ ଉଠିଲେ ଝାଡ଼ା, ପରିସ୍ରା, ଦାନ୍ତ ଘସିବା ଯେପରି ଅଭ୍ୟାସ ସେହିପରି ସବୁଦିନ ବ୍ୟାଡ଼ମିଂଟନ ଖେଳିବା ଅରବିନ୍ଦଙ୍କର ଅଭ୍ୟାସ ହୋଇଯାଇଛି । ମାନିବାକୁ ପଡ଼ିବ ଅରବିନ୍ଦଙ୍କୁ । ରାଜନୀତି ସହିତ ଖେଳକୁ ସେ ସାମିଲ କରିଦେଇଛନ୍ତି । ଅବଶ୍ୟ ତାଙ୍କ ଖେଳରେ ରାଜନୀତି ପଶିନାହିଁ କି ତାଙ୍କ ରାଜନୀତିରେ ଖେଳ ପଶିଯାଇନାହିଁ । ■



## ଆକର୍ଷଣର କେନ୍ଦ୍ର ପ୍ୟାରୀମୋହନ

ଶିକ୍ଷାମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ ବାପା ରାଜକିଶୋର ନାୟକଙ୍କ ଏକାଦଶାହ ଉପଲକ୍ଷେ ପ୍ରସାଦ ସେବନର ବ୍ୟବସ୍ଥା ହୋଇଥାଏ । ଯେହେତୁ ଅତନୁ ସବ୍ୟସାଚୀ ବିଜେଡିର ଜଣେ ତୁଙ୍ଗ ନେତା ଏବଂ ଜଣେ ଦକ୍ଷ ମନ୍ତ୍ରୀ ସେହି ଦୃଷ୍ଟିରୁ ଏହି ସଭାରେ ନାମୀଦାମୀ ବିଜେଡି ମନ୍ତ୍ରୀଙ୍କ ସହିତ ବହୁ ନେତା ଉପସ୍ଥିତ ହେବେ ବୋଲି ଏକ ଧାରଣା ସୃଷ୍ଟି ହୋଇଥିଲା । ଏମିତି କାର୍ଯ୍ୟକ୍ରମ ଥିଲା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମଧ୍ୟ ଏହି ସଭାକୁ ଆସିବାର । କିନ୍ତୁ ବାଲେଶ୍ୱରରୁ ହେଲିକପ୍ଟର ଯୋଗେ ନଆସି ରାସ୍ତାରେ କାର୍ ଯୋଗେ ଭୁବନେଶ୍ୱର ଆସିବାରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଥକ୍କା ହୋଇଯାଇଥିଲେ । ଯେଉଁଥିପାଇଁ ଏହି ସଭାରେ ସେ ଯୋଗ ଦେଇପାରିଲେ ନାହିଁ । ତେବେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଏହି ସଭାକୁ ଆସିବା ପରେ ସଭାଟି ଚଳଚଂଚଳ ହୋଇଯାଇଥିଲା । ପ୍ୟାରୀମୋହନଙ୍କର ପାଦ ଛୁଇଁବା ପାଇଁ ନେତାଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଥାଏ । କିଏ ପ୍ୟାରୀମୋହନଙ୍କର ପାଦ ଧରିଲାଣି ତ କିଏ ନଇଁପଡ଼ି ତାଙ୍କୁ ନମସ୍କାର କଲାଣି । ପୁଣି କିଏ ତାଙ୍କ କାନ ପାଖକୁ ଆସି ଗୁଣୁଗୁଣୁ ହୋଇ କହିଲାଣି । ଅନ୍ୟ କେଉଁ ସ୍ଥାନ

ହୋଇଥିଲେ ପ୍ୟାରୀମୋହନ ବିରକ୍ତ ଭାବ ପ୍ରକାଶ କରିଥା'ନ୍ତେ । କିନ୍ତୁ ଏଠାରେ ତାଙ୍କର ବିରକ୍ତ ଭାବ ଦେଖିବାକୁ ମିଳିଲା ନାହିଁ । ଯିଏ ଆସିଲା ତାଙ୍କ ପାଖକୁ ପ୍ୟାରୀମୋହନ ତାଙ୍କ ସହିତ ଦୁଇପଦ ମଧ୍ୟ କଥା ହେଲେ । ଦୂରରେ ଅନେକ ବିଜେଡି ନେତା, ବିଧାୟକ ମଧ୍ୟ ଠିଆ ହୋଇଥା'ନ୍ତି । ସେମାନେ ପ୍ୟାରୀମୋହନଙ୍କ ପାଖକୁ ନଯାଇ ଦୂରରୁ ସେହି ଦୃଶ୍ୟକୁ ଉପଭୋଗ କରୁଥା'ନ୍ତି । ପ୍ୟାରୀମୋହନଙ୍କ ପାଖରେ ଠିଆ ହେବା ପାଇଁ ମଧ୍ୟ ନେତାଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଥାଏ । ପ୍ରସାଦ ସେବନ କରିବାକୁ ଯେଉଁମାନେ ଆସିଥା'ନ୍ତି ସେମାନଙ୍କର ଦୃଷ୍ଟି ଥାଏ ପ୍ୟାରୀମୋହନଙ୍କ ଉପରେ । ଏପଟେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସଭାକୁ ଆସି ନଥିବାରୁ ପ୍ୟାରୀମୋହନ ହୋଇଯାଇଥିଲେ ମୁଖ୍ୟ ଆକର୍ଷଣ କେନ୍ଦ୍ର । ଅନ୍ୟ କେଉଁଠିକୁ ଯାଇଥିଲେ ପ୍ୟାରୀମୋହନ ଅଳ୍ପ ସମୟ ମଧ୍ୟରେ ଚାଲି ଆସିଥା'ନ୍ତେ । କିନ୍ତୁ କେଜାଣି କାହିଁକି ପ୍ୟାରୀମୋହନ ଦୀର୍ଘସମୟ ପର୍ଯ୍ୟନ୍ତ ସେଠାରେ ରହିଥିଲେ । ସଭାସାରା ପ୍ୟାରୀମୋହନଙ୍କୁ ନେଇ ଚର୍ଚ୍ଚା ପରେ ଚର୍ଚ୍ଚା ଚାଲିଥିଲା । ସତେ ଯେମିତି ପ୍ୟାରୀମୋହନ ଭାଗ୍ୟବାନ ପୁରୁଷ । ସାରାଜୀବନ ଆଇଏଏସ୍ ଚାକିରି ଆଉ ଆଇଏଏସ୍‌ରୁ ଅବସର ଗ୍ରହଣ କରିବା ପରେ ରାଜ୍ୟର କ୍ଷମତା କେନ୍ଦ୍ର । ମନ୍ତ୍ରୀ ହୁଅନ୍ତୁ, ବିଧାୟକ ହୁଅନ୍ତୁ କି ଅଫିସର ହୁଅନ୍ତୁ ସମସ୍ତେ ହିଁ ତାଙ୍କର ନିକଟତର ହେବାକୁ ଚାହୁଁଛନ୍ତି । ସଭାରେ ଏହା ହିଁ ଦେଖିବାକୁ ମିଳିଥିଲା । ■

## ବାପ୍ ସେ ଯ୍ୟାଦା ବେଟୀ

ଏମିତି କଥାରେ ଅଛି- ବାପ୍ ସେ ଯ୍ୟାଦା ବେଟା ବୋଲି । ମାନେ ବାପଠାରୁ ପୁଅ ଅଧିକ । କିନ୍ତୁ ବାପଠାରୁ ଯେ ଝିଅ ଅଧିକ ଏହା ବୋଧହୁଏ ଦେଖିବାକୁ ବେଶି ବାଟ ଯିବାକୁ ପଡ଼ିବ ନାହିଁ । ଆଉ ବାପ୍ ସେ ଯ୍ୟାଦା ବେଟା କୁହା ନଯାଇ ବେଟୀ ବି କୁହାଯାଇପାରିବ । ଆମେ ଏବେ ଯିବା ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କ ପାଖକୁ । ବ୍ରହ୍ମଗିରିରୁ କ୍ରମାଗତ ଭାବେ ତିନିଥର କଂଗ୍ରେସ ଟିକେଟରେ ବିଜୟୀ ହୋଇଥିବା ଲଲାଟେନ୍ଦୁ ୨୦୦୯ ନିର୍ବାଚନରେ ପରାଜିତ ହୋଇଯାଇଛନ୍ତି । କିନ୍ତୁ ତାଙ୍କ ଦରବାରକୁ ଗଲେ ସିଏ ଜଣେ ଅଣବିଧାୟକ ବୋଲି କେହି ବି ଭାବିବେ ନାହିଁ । ଯେତେବେଳେ ଯିବେ ସେତେବେଳେ ତାଙ୍କ ଚାରିପଟେ କଂଗ୍ରେସର ବହୁ ବିଧାୟକ ବସିଥିବେ । ପୁଣି କଂଗ୍ରେସର ନାମୀଦାମୀ ନେତା ମଧ୍ୟ ତାଙ୍କ ଦରବାରରେ ବହୁ ସମୟରେ ଉପସ୍ଥିତ ଥା'ନ୍ତି । ୧୯୮୭ ମସିହାରେ ଛାତ୍ର କଂଗ୍ରେସର ସଭାପତି ହେବାପରେ ଆଉ ପଛକୁ ଫେରି ଚାହିଁ ନଥିଲେ ଲଲାଟେନ୍ଦୁ । ପରବର୍ତ୍ତୀ ସମୟରେ ସେ ଯୁବ କଂଗ୍ରେସର ସଭାପତି ହୋଇଥିଲେ ଆଉ ଏବେ ସେ ପ୍ରଦେଶ କଂଗ୍ରେସର କାର୍ଯ୍ୟକାରୀ ସଭାପତି । ବିଧାନସଭା ହେଉ କି ଅନ୍ୟ ଯେକୌଣସି ସ୍ଥାନ ହେଉ ଲଲାଟେନ୍ଦୁଙ୍କର ବିଚକ୍ଷଣତାକୁ କେହିବି ଅସ୍ୱୀକାର କରିବେ ନାହିଁ । ତାଙ୍କ ଦରବାରକୁ ଯିଏ ଆସିଲା ଆଉ ସେ ଯଦି ଅନୁଭବ କଲେ ତାଙ୍କୁ ସାହାଯ୍ୟ

କରିବା ପାଇଁ ତେବେ ସଙ୍ଗେସଙ୍ଗେ ସେ ତାହାକୁ ସଂପାଦନ କରିଦିଅନ୍ତି । ସେଦିନ ଦରବାର ଚାଲିଯାଏ । ହଠାତ୍ ଦରବାର ମଧ୍ୟକୁ ପଶିଆସିଲେ ତାଙ୍କର ଏକମାତ୍ର କନ୍ୟା । ସେ ସପ୍ତମ ଶ୍ରେଣୀରେ ପଢ଼ନ୍ତି ଆଉ ଇଂରାଜୀ ମିଡ଼ିୟମରେ । ସଙ୍ଗେସଙ୍ଗେ ସେ ଆସି କହିଲେ- ଅଙ୍କଲଙ୍କୁ ଡାକିଦିଅ । ଲଲାଟେନ୍ଦୁ କହିଲେ- ରହ, ତୁ ଏବେ ପାଟି କରନା । ତାଙ୍କ ଝିଅ କହିଲେ- ମୋର ଫୋନ୍ ନମ୍ବର ମନେ ଅଛି । ମୁଁ କହିଦେଉଛି ତମେ ତାଙ୍କୁ ଫୋନ୍ କରି ଡାକିଦିଅ । ଲଲାଟେନ୍ଦୁ କହିଲେ- କେତେ ନମ୍ବର କହ । ଲଲାଟେନ୍ଦୁଙ୍କ ଝିଅ ଫୋନ୍‌ନମ୍ବର ତୁରନ୍ତ କହିଦେଲେ । ଲଲାଟେନ୍ଦୁ ଫୋନ୍ ଲଗାଇଲେ ଆଉ କହିଲେ- ତୁ କଥା ହେଇଯା । ଲଲାଟେନ୍ଦୁଙ୍କ ଝିଅ ସଙ୍ଗେସଙ୍ଗେ ଉତର ଦେଲେ- ଆରେ ବାବା, ମୁଁ ତାଙ୍କ ସହିତ କଥା ହେବିନାହିଁ । ସେଦିନ ତମେ ତାଙ୍କୁ ଏମିତି ଗାଳି ଦେଲ ଯେ, ସେ କାନ୍ଦି ପକାଇଲେ । ତମେ ଗାଳିଦେବ ଆଉ ମୁଁ ତାଙ୍କ ସହିତ ଫୋନ୍‌ରେ କଥା ହେବି । ତାହା ହେବନାହିଁ । ସେ ମୋ ଉପରେ କାହିଁକି ରାଗିବେ ବରଂ ତମ ଉପରେ ରାଗନ୍ତୁ । ଲଲାଟେନ୍ଦୁ ଫୋନ୍ ଲଗାଇଲେ ଆଉ ଫୋନ୍‌ଟିକୁ ଦେଇଦେଲେ ଝିଅକୁ କଥା ହେବା ପାଇଁ । ଲଲାଟେନ୍ଦୁଙ୍କ ଝିଅ ଫୋନ୍‌ଟିକୁ ଧରି ମୋତେ କାହିଁକି ଦେଲ ବୋଲି କହିଲେ । ତେବେ ଫୋନ୍‌ରେ ସେ କଥା ହେଲେ । ବଡ଼ ଅଜବ କଥା ସେ କଲେ । ସେ କହିଲେ- ହାଲୋ ଅଙ୍କଲ । ତମକୁ ଟିକିଏ ମୋତେ ଶିକ୍ଷା ଦେବାକୁ ପଡ଼ିବ । ମାନେ ତମେ କେଉଁଠି ପାଠ ପଢୁଥିଲ ସେସବୁ ମୋତେ କୁହ । ହାଇସ୍କୁଲରେ କେଉଁଠି, କଲେଜରେ କେଉଁଠି, ଏମ୍.ଏ. କେଉଁଠି, ଏମିତି ଅନେକ ଅନେକ ପ୍ରଶ୍ନ ପଚାରି ଚାଲିଲେ ଲଲାଟେନ୍ଦୁଙ୍କ ଝିଅ । ହଠାତ୍ ସେ କହିଲେ- ପାପାଙ୍କୁ କହିବ । ଲଲାଟେନ୍ଦୁଙ୍କ ଝିଅ ସଙ୍ଗେସଙ୍ଗେ ପ୍ରତିକ୍ରିୟା ପ୍ରକାଶ କଲେ ଓ କହିଲେ- ପାପା ନୁହେଁ ବାବା କୁହ । ସେପଟୁ ସ୍ୱର ଶୁଣାଗଲା- ଡ୍ୟାଡ଼ି ବୋଲି । ଲଲାଟେନ୍ଦୁଙ୍କ ଝିଅ କହିଲେ- ହଁ, ଡ୍ୟାଡ଼ି ହେଲେ ଚଳିବ କିନ୍ତୁ ବାବା । ଏହାପରେ ଫୋନ୍‌ଲାଇନ୍‌ଟି କଟିଗଲା । ଏହି ସମୟରେ ସେଠାରେ ବସିଥିବା ଜଣେ ସ୍ୱନାମଧନ୍ୟ ବ୍ୟକ୍ତିଙ୍କ ଉପରେ ନଜର ପଡ଼ିଲା ଲଲାଟେନ୍ଦୁଙ୍କ ଝିଅଙ୍କର । ସେ ସେହି ବ୍ୟକ୍ତିଙ୍କ ଆଡ଼କୁ ଚାହିଁ କହିଲେ- ଅଙ୍କଲ, ତମ ନିଶକୁ ଏମିତି ସାଇଜ କରନ୍ତୁ । ନିଶ ଏତେ ମୋଟା ନରଖି ଆଉ ଟିକିଏ ପତଳା କରିଦିଅନ୍ତୁ ଆଉ ନିଶକୁ ତଳକୁ ନଲମେଇ ଏହି ପର୍ଯ୍ୟନ୍ତ ଛୋଟ କରିଦିଅନ୍ତୁ । ଦେଖିବେ ଆପଣଙ୍କ ନିଶ ଚକାଚକ୍ ଦେଖାଯିବ । ଏହି ସମୟରେ ଲଲାଟେନ୍ଦୁ କହିଲେ- ତୁ ଏଠି ଡିଷ୍ଟର୍ବ କରନା । ତୁ ଏଠାରୁ ଚାଲିଯା । ଲଲାଟେନ୍ଦୁଙ୍କ ଝିଅ କହିଲେ- ଅଙ୍କଲ, ମୁଁ ଯାହା କହଲି ଠିକ୍ କଥା । ଆପଣ ନିଶକୁ ମୁଁ ଯେମିତି କହିଲି ସେମିତି ଷ୍ଟାଇଲରେ କାଟନ୍ତୁ । ବଢ଼ିଆ ଦେଖାଯିବ । ଠିକ୍ ଅଛି, ଚାଲିଲି ବୋଲି କହି ଲଲାଟେନ୍ଦୁଙ୍କ ଝିଅ ସେଠାରୁ ଘର ଭିତରକୁ ଚାଲିଯାଇଥିଲେ । ତେବେ ଲଲାଟେନ୍ଦୁଙ୍କ ଝିଅ ସେଠାରୁ ଚାଲିଯିବା ପରେ ଆଲୋଚନା ଆରମ୍ଭ ହେଲା । କୁଆଡ଼େ ବହୁ ଟାଲେଂଟେଡ଼ ତାଙ୍କ

ଝିଅ । ସ୍ମରଣଶକ୍ତି ଅତି ପ୍ରଖର । ଲଲାଟେନ୍ଦୁଙ୍କୁ ସେ ବହୁତ ଟପିଯିବ । ଏବେଠାରୁ ଏତେ ଟାଲେଂଟ । ବଡ଼ ହେଲେ ଲଲାଟେନ୍ଦୁଙ୍କର ନାମ ହିଁ ସେ ରଖିବେ । ସେଠାରେ ପ୍ରସଙ୍ଗ ଆସିଲା ବାପ୍ ସେ ଯ୍ୟାଦା ବେଟୀ ହେବ । ■

## ସଂଜୀବଙ୍କ ଖନା ବଚନ

ପରିବହନ ଓ ବାଣିଜ୍ୟ ମନ୍ତ୍ରୀ ସଂଜୀବ ସାହୁ ସଚିବାଳୟ କାର୍ଯ୍ୟାଳୟରେ ବସି ଫାଇଲ କାମ କରୁଥା'ନ୍ତି । ଏହି ସମୟରେ ତାଙ୍କ ପାଖକୁ ବିଭିନ୍ନ ଶ୍ରେଣୀର ଲୋକମାନେ ଯିବାଆସିବା କରୁଥା'ନ୍ତି । ସଂଜୀବ ହଠାତ୍ ଜଣଙ୍କୁ କହିଲେ- ବସ, ମୁଁ କିଛି କହୁଛି ଶୁଣ । ତୁମେ ଖନାବଚନ ପଢ଼ିଛ କି । ସେ କହିଲେ- ନା, ମୁଁ ପଢ଼ିନାହିଁ । ସଂଜୀବ କହିଲେ- ଦେଇଥିଲେ ପାଇ ସମ୍ପର୍କରେ ଶୁଣିଛ କି । ବ୍ୟକ୍ତି ଜଣଙ୍କ କହିଲେ- ହଁ, ଶୁଣିଛି । ଓଃ ହୋ, ଏହା ଲୀଳାବତୀଙ୍କ କଥା । ମାନେ ଲୀଳାବତୀ ଏତେ ସତକଥା କହୁଥିଲେ ଯେ ଯେଉଁଥିପାଇଁ ସ୍ୱାମୀ ତାଙ୍କ ଉପରେ ଇର୍ଷା ପରାୟଣ ହେଲେ ଏବଂ ତାଙ୍କର ଜିଭ ମଧ୍ୟ କାଟିଦେଲେ । ଏହାପରେ ସେ ଖନା ହୋଇଥିଲେ ମଧ୍ୟ ଯେଉଁସବୁ ବାଣୀ କହିଯାଇଥିଲେ ତାହା ଅକ୍ଷରେ ଅକ୍ଷରେ ସତ ହୋଇଥିଲା । ସେହି ବାଣୀକୁ ଖନାବଚନ କୁହାଯାଉଛି । ଆପଣ ସେହି ଖନାବଚନ କଥା କହିଲେ ମୁଁ ଜାଣିପାରିଲି ନାହିଁ ସତ କିନ୍ତୁ ଲୀଳାବତୀଙ୍କ କଥା କହିଲେ ଜାଣିପାରୁଛି । ସଂଜୀବ କହିଲେ- ଖନାବଚନରେ ଅଛି ଦେଇଥିଲେ ପାଇ । ମାନେ ବାଛବିଚାର ନକରି ଦିଅ । ସେହି ବ୍ୟକ୍ତିଙ୍କ ଠାରୁ ତୁମକୁ ମିଳି ନପାରେ । କିନ୍ତୁ ଅନ୍ୟ କେହି ତୁମକୁ ଦେବ । ଏହା ବହୁ ପରୀକ୍ଷିତ । ବିଶେଷ ଭାବେ ରାଜନେତାଙ୍କ ନିକଟରେ । ପୁଣି ସଂଜୀବ କହିଲେ- ବୁଣି ଥିଲେ ଦାଇ । ମାନେ ବୁଣି ଥିଲେ ନିଶ୍ଚିତ ତୁମେ ତାହାର ଫଳ ପାଇବ । ତେଣୁ କ'ଣ ପାଇବ ନପାଇବ ଆଶା ନରଖି ବୁଣିଚାଲ । ନିଶ୍ଚିତ ଭାବେ ଫଳ ମିଳିବ । ସଂଜୀବ ପୁଣି କହିଲେ-



ଘରକୁ ସୁନ୍ଦର ଦିଶେ ଘରଣୀ ଥିଲେ,
ଘରଣୀ ଥିଲେ କି ହେବ ଉଦଣ୍ଡି ହେଲେ ।

ଏହାକୁ ସଂଜୀବ ବୁଝାଇବାକୁ ଯାଉଥିବା ବେଳେ ଆଉ ଅଧିକ କୁହନ୍ତୁ ନାହିଁ ଆମେ ଭଲ ଭାବେ ବୁଝିଛୁ ବୋଲି ସେଠାରେ ଥିବା ବ୍ୟକ୍ତିମାନେ କହିବାରୁ ସଂଜୀବ ସେ ସମ୍ପର୍କରେ ନକହି ଅନ୍ୟ ଖନାବଚନକୁ ଗଲେ । ସଂଜୀବ ପୁଣି କହିଲେ-

ଭଉଣୀ ଘରେ ଭାଇ କୁତା ସମାନ ।

ଏହି ସମୟରେ ସେଠାରେ ଥିବା ଆଉ ଜଣେ ବ୍ୟକ୍ତି ସେହି ପଦକୁ ପୂରଣ କରିବାକୁ ଯାଇ କହିଲେ- ଶଶୁର ଘରେ ଜ୍ୱାଇଁ କୁତା ସମାନ ।

ସଂଜୀବ ପୁଣି କହିଲେ-

ଖାଇ ବସିଲେ ବଢ଼ଇ ପେଟ,<br>
ଖାଇ ଖାଇଲେ ଯମର ଭେଟ ।

ଏହି ସମୟରେ ସେଠାରେ ଥିବା ଆଉ ଜଣେ ବ୍ୟକ୍ତି କହିଲେ- ଆଜ୍ଞା, ମୋର ବି ଖନାବଚନ ମନେ ଅଛି । ଆପଣ ଯେଉଁ ବଚନ କହିଲେ ତା' ସହିତ ମୁଁ ଆଉ ଦୁଇପଦ ଯୋଡ଼ି ଦେଉଛି । ତାହା ହେଲା-

ଖାଇ ଚାଲିଲେ ବଢ଼ଇ ବାୟୁ,<br>
ଖାଇ ଶୋଇଲେ ବଢ଼ଇ ଆୟୁ ।

ସଂଜୀବ କହିଲେ- ହଁ ଏସବୁ ଖନାବଚନରେ ଅଛି । ସଂଜୀବ ପୁଣି କହିଲେ-

ମଙ୍ଗଳ ରାତି ବୁଧ ପାହାନ୍ତି,<br>
ଯୁଆଡ଼େ ଗଲେ ଶୁଭ ପାଆନ୍ତି ।<br>
ବାମ ପାଖେ ଦେଖିଲେ ଶୃଗାଳ,<br>
ମନୋକାମନା ହେବ ସୁଫଳ ।

ସଂଜୀବଙ୍କ ମୁହଁରୁ ଖନାବଚନ ସେଦିନ ଅନେକ ବାହାରିଥିଲା । ସତେ ଯେମିତି ସଂଜୀବ ଖନାବଚନକୁ ମୁଖସ୍ଥ କରିଦେଇଛନ୍ତି । ଏପଟେ ସେ ଫାଇଲ କାମ କରୁଥା'ନ୍ତି, ସେପଟେ ସେ ଖନାବଚନ ସମ୍ପର୍କରେ କହିଚାଲିଥା'ନ୍ତି । ଯେଉଁ ଲୋକମାନେ ସଂଜୀବଙ୍କ ପାଖକୁ ଆସୁଥା'ନ୍ତି ସେମାନେ କିନ୍ତୁ ଆଉ ସେଠାରୁ ଯାଉ ନଥା'ନ୍ତି । ସଂଜୀବଙ୍କ ପାଟିରୁ ଖନାବଚନ ଶୁଣି ସେମାନେ ଆଶ୍ଚର୍ଯ୍ୟ ବି ହୋଇଯାଉଥିଲେ । ସଂଜୀବ କହିଲେ- ଖନାବଚନକୁ ସେ ଅକ୍ଷରେ ଅକ୍ଷରେ ମନେ ରଖିଛନ୍ତି । ତାଙ୍କ ମତରେ ଏହି ଖନାବଚନ ନେତାମାନେ ପଢ଼ିବା ଉଚିତ । ତାହା ହେଲେ ଯାଇ ନେତାମାନେ ସମାଜସେବା କରିବାକୁ ଆଗେଇ ଆସିବେ । ଅବଶ୍ୟ ସେଦିନ ସଂଜୀବଙ୍କ ପାଖରେ ଥିବା ଲୋକମାନଙ୍କ ମଧ୍ୟରୁ କିଏ ଖନାବଚନ ପୁସ୍ତକ କଣିଛନ୍ତି ନା ନାହିଁ ଜଣାନାହିଁ । କିନ୍ତୁ ସେମାନେ ଯେ ସଂଜୀବଙ୍କ ମୁହଁରୁ ଖନାବଚନ ଶୁଣିବାକୁ ଅତ୍ୟନ୍ତ ଆଗ୍ରହୀ ହୋଇଯାଇଥିଲେ ତାହା ସେଠାରେ ସ୍ପଷ୍ଟ ହୋଇଯାଇଥିଲା । ସଂଜୀବଙ୍କ ପରି ଅନ୍ୟ ମନ୍ତ୍ରୀମାନେ ସେମାନଙ୍କ ନିକଟକୁ ଯାଉଥିବା ଜନସାଧାରଣଙ୍କୁ ଖନାବଚନ ଶୁଣାଇଲେ ଆଉ କିଛି ହେଉ କି ନ ହେଉ କିନ୍ତୁ ସମାଜର କଲ୍ୟାଣ ନିଶ୍ଚିତ ହୁଅନ୍ତା । ■

## ଶ୍ରୀକୃଷ୍ଣ ଚାଳିଶା ଓ ବିକ୍ରମ ବର୍ମା



ଏମିତି ସମସ୍ତେ ଜାଣିଛନ୍ତି ହନୁମାନ ଚାଳିଶା ସମ୍ପର୍କରେ । ହନୁମାନ ଚାଳିଶା ପାଠ କଲେ ସେହି ଭକ୍ତଙ୍କ ଆଡ଼କୁ ଆସିବାକୁ ଥିବା ବିପଦ ଟଳିଯିବ ବୋଲି ଏକ ଧାରଣା ରହିଛି । ଏବେ କିନ୍ତୁ ଶ୍ରୀକୃଷ୍ଣ ଚାଳିଶା ଛୋଟ ପୁସ୍ତକଟିଏ ମାହାଙ୍ଗାର ପୂର୍ବତନ ବିଧାୟକ ବିକ୍ରମ

କେଶରୀ ବର୍ମା ଛାପି ବାଂଟୁଛନ୍ତି । ଅନେକ କ୍ଷେତ୍ରରେ ମଧ୍ୟ ତାଙ୍କୁ ପ୍ରଶ୍ନ ହେଉଛି- ଏ ଶ୍ରୀକୃଷ୍ଣ ଚାଳିଶା ପୁଣି କ'ଣ । ହନୁମାନ ଚାଳିଶା ବୋଲି ସମସ୍ତେ ଜାଣିଛନ୍ତି । ହନୁମାନ ଚାଳିଶା ପରି ଶ୍ରୀକୃଷ୍ଣ ଚାଳିଶା ପଢ଼ିଲେ କ'ଣ ବିପଦ ଟଳିଯିବ ବୋଲି ମଧ୍ୟ ପ୍ରଶ୍ନ ହେଉଥିବା ବେଳେ ବିକ୍ରମ କିନ୍ତୁ ଏହାକୁ ଅତି ସୁନ୍ଦର ଭାବେ ବୁଝାଇ ଦେଉଛନ୍ତି । ସେ କହୁଛନ୍ତି- ହନୁମାନ ଚାଳିଶା ଆଉ ଶ୍ରୀକୃଷ୍ଣ ଚାଳିଶା ମଧ୍ୟରେ ଆକାଶପାତାଳ ପ୍ରଭେଦ ରହିଛି । ହନୁମାନ ଚାଳିଶା ପାଠ କଲେ ବିଶ୍ୱାସ ରହିଛି ଯେ, ବିପଦ ଟଳିଯିବ ବୋଲି । ସେଭଳି ଏକ ବିଶ୍ୱାସ ମଧ୍ୟ ଶ୍ରୀକୃଷ୍ଣ ଚାଳିଶାରେ ଅଛି । ଶ୍ରୀକୃଷ୍ଣ ହେଉଛନ୍ତି ପ୍ରେମ ଓ କରୁଣାର ଅବତାର । ପ୍ରତ୍ୟେକ ମଣିଷ ତା'ର ଜୀବନର ଆଦ୍ୟଭାଗ ବାଲ୍ୟ ଅବସ୍ଥାରେ, ମଧ୍ୟଭାଗ ଯୌବନରେ ଏବଂ ଶେଷଭାଗ ବାର୍ଦ୍ଧକରେ ଭଗବାନ ଶ୍ରୀକୃଷ୍ଣଙ୍କ ନାମ ନେବା ଆବଶ୍ୟକ । ଏହି ଶ୍ରୀକୃଷ୍ଣ ଚାଳିଶା ପାଠ କଲେ ମନରୁ ଘୃଣା, କ୍ରୋଧ ଓ ହିଂସା ପରିତ୍ୟାଗ ହୋଇ ସତ୍ୟ, ପ୍ରେମ ଓ ଜ୍ଞାନର କରୁଣା ଲାଭ ହେବ । ସଂସାରରେ ସତ୍ୟ, ପ୍ରେମ ଓ ଜ୍ଞାନ ହେଉଛି ଚିରନ୍ତନ ଆଉ ଏହାର ପ୍ରତୀକ ହେଉଛନ୍ତି ଶ୍ରୀକୃଷ୍ଣ । ତେଣୁ ଶ୍ରୀକୃଷ୍ଣ ଚାଳିଶା ପାଠ କଲେ ଜଣେ ଜ୍ଞାନୀ ହେବ, ଜଣେ ପ୍ରେମିକ ବି ହୋଇପାରିବ ଆଉ ସେ ମଧ୍ୟ ସତ୍ୟକୁ ସାଥିରେ ନେଇ ଚାଲିପାରିବ । ଏବେ ବିକ୍ରମ ଯୁଆଡ଼େ ଯାଉଛନ୍ତି ସାଥିରେ ଭଗବାନ ଶ୍ରୀକୃଷ୍ଣ ଚାଳିଶା ଛୋଟ ପୁସ୍ତକଟିକୁ ନେଇ ଯାଉଛନ୍ତି । ଆଉ ସବୁଠି ସେ ତାକୁ ବାଂଟିବାରେ ଲାଗିଛନ୍ତି । ଏମିତି ଶ୍ରୀକୃଷ୍ଣ ଚାଳିଶା ବାଂଟୁଥିବା ବେଳେ ଜଣେ କେହି ତାଙ୍କୁ ପ୍ରଶ୍ନ ପଚାରିଲେ- ତୁମେ ତ ଶ୍ରୀକୃଷ୍ଣ ଚାଳିଶା ଲେଖୁଛ, ପୁଣି ଶ୍ରୀକୃଷ୍ଣଙ୍କ ପ୍ରେମରେ ପଡ଼ିଛି, ଆଛା କହିଲ ମାହାଙ୍ଗା ପାଇଁ ଏତେ କାମ କରି ଟିକେଟ କାହିଁକି ତୁମକୁ ମିଳିଲା ନାହିଁ । ଫିକିନା ହସିଦେଲେ ବିକ୍ରମ । କହିଲେ- ସତ୍ୟକୁ ମୁଁ ଭଲ ପାଏ । ମୁଁ ମଧ୍ୟ ଜଣେ ଭଲ ପ୍ରେମିକ ଆଉ ଅଧ୍ୟାପକ ଥିବାରୁ ମୁଁ ବହୁ ଜ୍ଞାନ ଆହରଣ ବି କରିଛି । ବିଧାନସଭାରେ ଯେତେବେଳେ ବିଧାୟକମାନଙ୍କ ଦରମା ବଢ଼ିବା ପ୍ରସଙ୍ଗ ଆସିଲା ସେତେବେଳେ ମୁଁ ନିଜେ ବିଧାୟକ ଥାଇ ଦରମା ନବଢୁ ବୋଲି କହିଲି । ସମସ୍ତେ କହିଲେ- ବିକ୍ରମ ଜଣେ ଅଜବ ବ୍ୟକ୍ତି । ସେ ଥିଲେ ଦରମା ବଢ଼ିବ ନାହିଁ । ଏଭଳି ଅନେକ କାରଣ ଅଛି ମୋର ଟିକେଟ ନପାଇବାରେ । ପୁଣି ସତକଥା କହିବାରେ ମୁଁ ଓସ୍ତାଦ । ଏହା ମଧ୍ୟ ଏକ କାରଣ ଟିକେଟ ନମିଳିବାରେ । ତେବେ ଟିକେଟ ନମିଳିଲେ ମଧ୍ୟ ମୁଁ ଶ୍ରୀକୃଷ୍ଣ ଚାଳିଶା ପୁସ୍ତକ ପ୍ରକାଶ କରି ବେଶ୍ ସନ୍ତୋଷଲାଭ କରିଛି । ଶ୍ରୀକୃଷ୍ଣଙ୍କ ବାଣୀ ମୁଁ ଲୋକଙ୍କ ମଧ୍ୟରେ ବାଂଟି ଚାଲିଛି ଏବଂ ଶ୍ରୀକୃଷ୍ଣ ହିଁ ମୋତେ ମୋର ପ୍ରେମ, ସତ୍ୟ ଓ ଜ୍ଞାନର ଫଳ ଭବିଷ୍ୟତରେ ଦେବେ ବୋଲି ମୁଁ ବି ଆଶା ରଖିଛି । ଆଉ ଏହା ସତ ଯେ, ଶ୍ରୀକୃଷ୍ଣଙ୍କ ପାଖରେ ଯିଏ ନିଜକୁ ସମର୍ପି ଦେଇଛି ଶ୍ରୀକୃଷ୍ଣ ନିଶ୍ଚିତ ଭାବେ କଳେବଳେ କୌଶଳେ ତା'ର ଇଚ୍ଛାକୁ ପୂରଣ କରିବେ ହିଁ କରିବେ । ଦେଖାଯାଉ ବିକ୍ରମଙ୍କ ଇଚ୍ଛାକୁ ଶ୍ରୀକୃଷ୍ଣ ପୂରଣ କରୁଛନ୍ତି ନା ନାହିଁ । ■

# ଅତନୁ, ଅରୁଣ ଓ ସଂଜୟ

ଅତନୁ ସବ୍ୟସାଚୀ ନାୟକ ହେଉଛନ୍ତି ଶକ୍ତିମନ୍ତ୍ରୀ । ଅରୁଣ ସାହୁ ହେଉଛନ୍ତି ସରକାରୀ ଦଳ ଉପମୁଖ୍ୟ ସଚେତକ । ସଂଜୟ ଦାସବର୍ମା ହେଉଛନ୍ତି ବ୍ରହ୍ମଗିରି ବିଧାୟକ ତଥା ଯୁବ ବିଜୁ ଜନତା ଦଳର ଆବାହକ । ଏହି ତିନିଜଣଙ୍କ ମଧ୍ୟରେ ସାମଂଜସ୍ୟ କ'ଣ ବୋଲି ଯଦି ପଚରାଯାଏ ତେବେ ତାହାର ଉତର ହେବ ଏମାନେ ସମସ୍ତେ ହେଉଛନ୍ତି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କର ଶିଷ୍ୟ । ଗୋଟିଏ ସମୟରେ ଏହି ତିନିଜଣ ଏକାଠି ହୋଇ ପ୍ୟାରୀଙ୍କ ହୁକୁମ ପାଳନ କରୁଥିଲେ । କିନ୍ତୁ ସମୟ ଆସିଲା ଏହି ତିନିଜଣ ଭାଗଭାଗ ହୋଇଗଲେ । ରାଜନୀତିରେ ଏମିତି କେହି କାହାର ଚିର ଶତ୍ରୁ କି କେହି କାହାର ଚିର ମିତ୍ର ନଥା'ନ୍ତି । ଏହାକୁ ଦେଖିବାକୁ ଅଧିକ ବାଟ ଯିବାର ଆବଶ୍ୟକତା ନାହିଁ । ଅତନୁ, ଅରୁଣ ଓ ସଂଜୟଙ୍କ ସମ୍ପର୍କକୁ ପରଖି ଦେଲେ ଏହା ସ୍ପଷ୍ଟ ହୋଇଯିବ । ତିନି ବନ୍ଧୁ ଅତନୁ, ଅରୁଣ ଓ ସଂଜୟଙ୍କ ମଧ୍ୟରେ ଗୋଟିଏ ସମୟରେ ଫାଟ ସୃଷ୍ଟି ହେଲା । ଅବଶ୍ୟ ଏହି ଫାଟ ଅନ୍ୟ କେଉଁ କାରଣ ପାଇଁ ନୁହେଁ । ସବୁ କ୍ଷମତାକୁ ନେଇ । ପୁଣି ପ୍ୟାରୀମୋହନ ମହାପାତ୍ରଙ୍କର କିଏ କେତେ ନିକଟତର ହେବ ତାହାକୁ ନେଇ ଚାଲିଲା ଏହି ତିନିଜଣ ଯୁବନେତାଙ୍କ ମଧ୍ୟରେ ପ୍ରତିଯୋଗିତା । ଗୋଟିଏ ସମୟରେ ପରସ୍ପରକୁ ହଟାଇବା ପାଇଁ ମଧ୍ୟ ଚାଲିଥିଲା ଉଦ୍ୟମ । ପ୍ରଥମେ ୨୦୦୯ ନିର୍ବାଚନ । ସେତେବେଳକୁ ଏହି ତିନିଜଣଙ୍କ ମଧ୍ୟରେ ଶତ୍ରୁତା ଭାବ ଆସିଗଲାଣି । ପ୍ରଚାର ହେଲା  ତିନିଜଣ ନେତା ଯେପରି ହାରିବେ ସେ ଦିଗରେ ତିନିଜଣ ଯାକ ପରସ୍ପର ବିରୋଧରେ କୁଆଡ଼େ ନିର୍ବାଚନରେ ଶର ଖଂଜିଥିଲେ । କିନ୍ତୁ ନବୀନ ପଟ୍ଟନାୟକଙ୍କ ଲୋକପ୍ରିୟତା ଓ ନିର୍ମଳ ଭାବମୂର୍ତ୍ତୀ ଆଗରେ ଏହି ତିନିଜଣ ପରସ୍ପର ବିରୋଧରେ ଖଂଜିଥିବା ଶର କିଛି କାମ ଦେଲାନାହିଁ । ନିର୍ବାଚନରେ ତିନିଜଣ ବିଜୟୀ ହେଲେ । ଏହାପରେ ମନ୍ତ୍ରୀ ହେବାକୁ ନେଇ ଚାଲିଲା ପ୍ରତିଯୋଗିତା । ଅତନୁ ସବ୍ୟସାଚୀ ନାୟକ ମନ୍ତ୍ରୀ ହେଉଛନ୍ତି ବୋଲି ଜଣାପଡ଼ିବା ପରେ ସେ କିପରି ମନ୍ତ୍ରୀ ହେବେନାହିଁ ସେ ଦିଗରେ ଉଦ୍ୟମ ଅନ୍ୟମାନେ କଲେ । ଏହା ମଧ୍ୟ ଫସର ଫାଟିଲା । ମନ୍ତ୍ରିମଣ୍ଡଳ ଗଠନ ହେବାପରେ ଅତନୁ, ଅରୁଣ ଓ ସଂଜୟଙ୍କ ମଧ୍ୟରେ ଆଉ ମଧୁର ସମ୍ପର୍କ ରହିଲା ନାହିଁ । ନିର୍ବାଚନ ପୂର୍ବରୁ ଅରୁଣ ଓ ସଂଜୟଙ୍କ ମଧ୍ୟରେ ସମ୍ପର୍କ ଏତେ ତିକ୍ତ ହୋଇଯାଇଥିଲା ଯେ, ଏଥିରେ ପ୍ୟାରୀମୋହନ ମହାପାତ୍ରଙ୍କୁ ହସ୍ତକ୍ଷେପ କରିବାକୁ ପଡ଼ିଲା । ପ୍ୟାରୀମୋହନଙ୍କ ନିର୍ଦ୍ଦେଶକ୍ରମେ ଅରୁଣଙ୍କ ପାଇଁ ସଂଜୟ ପ୍ୟାଂଟସାର୍ଟ କପଡ଼ା ମଧ୍ୟ କିଣି ଉପହାର ଦେଲେ । ପ୍ୟାରୀମୋହନ ମହାପାତ୍ର ଜାଣିଛନ୍ତି ଯେ, ଯଦି ବିଜେଡିର ସବୁଶକ୍ତି ଏକାଠି ହୋଇଯିବେ ତେବେ ତାହା ତାଙ୍କ ପାଇଁ ସମସ୍ୟା ଭାବେ ଠିଆ ହେବ । ଯେଉଁଥିପାଇଁ ସେ ମଧ୍ୟ ନେତାମାନଙ୍କ ମଧ୍ୟରେ ଟଣାଓଟରା ଲାଗିଲେ ତାହାକୁ କୁଆଡ଼େ ଉପଭୋଗ କରିଥା'ନ୍ତି । ଏମିତି ପରସ୍ପର ମଧ୍ୟରେ ଶତ୍ରୁତା ଥିଲେ ମଧ୍ୟ ସମସ୍ତେ ତାଙ୍କ ନିକଟରେ ଅନୁଗତ ରହିଥା'ନ୍ତି । ଗତ ବିଧାନସଭା ଅଧିବେଶନର ଶେଷ ସମୟରେ ଏକ ଅଜବ ଦୃଶ୍ୟ

ମଧ୍ୟ ଦେଖିବାକୁ ମିଳିଲା । ଗୋଟିଏ ସମୟରେ ଅତନୁଙ୍କର ସବୁଠାରୁ ବଡ଼ ଶତ୍ରୁ ହୋଇଥିଲେ ସଂଜୟ ଦାସବର୍ମା । ସେହିପରି ଅତନୁଙ୍କ ସହିତ ମଧ୍ୟ ପୂର୍ବପରି ଆଉ ମଧୁର ସମ୍ପର୍କ ନଥିଲା ଅରୁଣଙ୍କର । କିନ୍ତୁ ଅତନୁଙ୍କ ବିଧାନସଭା ମନ୍ତ୍ରୀ କାର୍ଯ୍ୟାଳୟରେ ଅତନୁ, ଅରୁଣ ଓ ସଂଜୟଙ୍କୁ ଏକାଠି ବସି ବହୁ ସମୟ ଆଲୋଚନା କରୁଥିବାର ଦେଖିବାକୁ ମିଳିଥିଲା । ଅବଶ୍ୟ ପୂର୍ବରୁ କେତେବେଳେ କାଁ ଭାଁ ଏମାନଙ୍କ ମଧ୍ୟରେ ଆଲୋଚନା ହୁଏନାହିଁ ଯେ ତାହା ନୁହେଁ । କିନ୍ତୁ ଏହି ଆଲୋଚନାଟି ଚର୍ଚ୍ଚାର ଖୋରାକ ଯୋଗାଇ ଦେଇଥିଲା । ବର୍ତ୍ତମାନ ନହେଲେ ମଧ୍ୟ ବିଳମ୍ବରେ ନବୀନ ପଟ୍ଟନାୟକ ନିଶ୍ଚିତ ଭାବେ ମନ୍ତ୍ରିମଣ୍ଡଳ ଅଦଳବଦଳ କରିବେ । ଏହି ସମୟରେ ସଂଜୟ ଓ ଅରୁଣ ଯେପରି ମନ୍ତ୍ରୀ ହେବେ ସେ କ୍ଷେତ୍ରରେ ଏବେଠାରୁ ସେମାନେ ଗୋଟିଚାଳନା ଚଳାଇଛନ୍ତି । ସେମାନେ ଭଲ ଭାବେ ଜାଣିସାରିଲେଣି ଯେ, ଅତନୁଙ୍କୁ ବିରୋଧ କରି ମନ୍ତ୍ରୀ ହେବାଟା ସେତେ ସହଜ ନୁହେଁ । ଏହି ଦୃଷ୍ଟିରୁ ସଂଜୟ ଓ ଅରୁଣ ଏବେ ଅତନୁଙ୍କର ନିକଟତର ହେବା ନିମନ୍ତେ ଉଦ୍ୟମ ଜାରି ରଖିଛନ୍ତି । ଏ କ୍ଷେତ୍ରରେ ଅରୁଣ ଟିକିଏ ଆଗକୁ ଚାଲିଯାଇଛନ୍ତି । ନୟାଗଡ଼ ଜିଲା ମହୋତ୍ସବରେ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କୁ ଅରୁଣ ଅତିଥି କରାଇ ନେଇଥିଲେ । ତେବେ ବିଜେଡି ରାଜନୀତିରେ ଘଡ଼ିକେ ଘୋଡ଼ା ଛୁଟେ । ଯେପରି ନିଗମ ଅଧ୍ୟକ୍ଷ ନିଯୁକ୍ତି ସବୁଦିନ ହେବ ବୋଲି ପ୍ରଚାର ଚାଲିଛି କିନ୍ତୁ ହେଉନାହିଁ । ସେହିପରି ମଧ୍ୟ ମନ୍ତ୍ରିମଣ୍ଡଳ ସଂପ୍ରସାରଣ ପ୍ରସଙ୍ଗ । ତେବେ ଏହା ସତ ଯେ, ସବୁବେଳେ ଏକାଠି ବସୁଥିବା ଅତନୁ, ଅରୁଣ ଓ ସଂଜୟ ଏବେ କାଁ ଭାଁ କେତେବେଳେ ଏକାଠି ବସିଲେ ଯେ, ସେମାନଙ୍କ ମନ ଏକ ହୋଇଯିବ ତାହା ନୁହେଁ । ରାଜନୀତିରେ ଥରେ ମନ ଭାଙ୍ଗିଗଲେ ଆଉ ମନ ଯୋଡ଼ି ହୁଏନାହିଁ । ଯେଉଁଠି ମନ ଯୋଡ଼ି ହୋଇଯାଏ ବୋଲି କୁହାଯାଏ ତାହା କେବଳ ତାଳିପକା ଛଡ଼ା ଅନ୍ୟ କିଛି ନୁହେଁ । ମନ୍ତ୍ରିମଣ୍ଡଳ ସଂପ୍ରସାରଣରେ ଜଣାପଡ଼ିଯିବ ଅତନୁ, ଅରୁଣ ଓ ସଂଜୟଙ୍କର ମନ ଯୋଡ଼ି ହୋଇଛି କି ନାହିଁ । ■

## ଜାନକୀ ଓ ସୁରେଶ



ଜାନକୀ ବଲ୍ଲଭ ପଟ୍ଟନାୟକ ହେଉଛନ୍ତି ଓଡ଼ିଶା ରାଜନୀତିରେ ଜଣେ ସଫଳତମ ବ୍ୟକ୍ତିତ୍ୱ । ଯଦିଓ ସେ ଏକାଦିକ୍ରମେ ତିନିଥର ମୁଖ୍ୟମନ୍ତ୍ରୀ ହୋଇନାହାନ୍ତି କିନ୍ତୁ ସେ ଏକାଦିକ୍ରମେ ଦୁଇଥର ଏବଂ ପୁଣି ଥରେ ଏହିପରି ତିନିଥର ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ଏଯାବତ୍ ତାଙ୍କର ମୁଖ୍ୟମନ୍ତ୍ରୀ କାର୍ଯ୍ୟକାଳ ରେକର୍ଡ଼କୁ କେହିବି ଭାଙ୍ଗି ପାରିନାହାନ୍ତି । ସେ ୧୯୭୧ ଲୋକସଭା ନିର୍ବାଚନରେ କଟକରୁ କଂଗ୍ରେସ ପ୍ରାର୍ଥୀ ହୋଇ ବିଜୟୀ ହେବାପରେ ୧୯୭୩ରେ କେନ୍ଦ୍ର ପ୍ରତିରକ୍ଷା ଉପମନ୍ତ୍ରୀ, ୧୯୭୫ରେ କେନ୍ଦ୍ର ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ୧୯୮୦ରେ ସେ ପର୍ଯ୍ୟଟନ, ବେସାମରିକ ବିମାନ ଚଳାଚଳ, ଶ୍ରମ ବିଭାଗର କେନ୍ଦ୍ରମନ୍ତ୍ରୀ ହୋଇଥିଲେ । ପ୍ରାୟ ୧୪ ବର୍ଷ ପାଖାପାଖି

ସେ ତିନୋଟି ପର୍ଯ୍ୟାୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ପୁଣି ବିରୋଧୀ ଦଳ ନେତା ବି ହୋଇଥିଲେ । ଏବେ ଜାନକୀ ବଲ୍ଲଭ ପଟ୍ଟନାୟକ ଆସାମର ରାଜ୍ୟପାଳ । ଓଡ଼ିଶାରେ କଂଗ୍ରେସର ପରିସ୍ଥିତି ଏମିତି ଯେ ସତେ ଯେମିତି ଏଠାରେ ଆଉ ମୁଣ୍ଡି ନାହାନ୍ତି । ନହେଲେ ଜାନକୀ ବଲ୍ଲଭ ପଟ୍ଟନାୟକ ଆସାମର ରାଜ୍ୟପାଳ ହୋଇଥିଲେ ମଧ୍ୟ ତାଙ୍କୁ ନେଇ ଓଡ଼ିଶା କଂଗ୍ରେସରେ ସବୁବେଳେ ଜଳ୍ପନାକଳ୍ପନା ପ୍ରକାଶ ପାଉ ନଥା'ନ୍ତା । ସୁରେଶ କୁମାର ରାଉତରାୟ ସିଧାସଳଖ କହୁଛନ୍ତି ମେ. ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଛାଡ଼ିଦେଲେ ଓଡ଼ିଶାରେ ଆଉ ଦ୍ୱିତୀୟ କଂଗ୍ରେସ ନେତା ନାହାନ୍ତି ଯେ କି କଂଗ୍ରେସ ପାଇଁ ସଫଳତା ଆଣିଦେବେ । ଯଦିଓ ଜାନକୀ ବଲ୍ଲଭ ରାଜ୍ୟପାଳ ହୋଇଛନ୍ତି ଆଉ ବର୍ତ୍ତମାନ ପରିସ୍ଥିତିରେ ରାତାରାତି ମଧ୍ୟ ଜାନକୀ ବଲ୍ଲଭ ପଟ୍ଟନାୟକ ଓଡ଼ିଶାକୁ ଫେରିଆସି କଂଗ୍ରେସ ଦାୟିତ୍ୱ ତୁଲାଇବେ ତାହା ମଧ୍ୟ ଭାବିବା ଭୁଲ୍ । ଏହାସତ୍ତ୍ୱେ ସୁରେଶ କୁମାର ରାଉତରାୟଙ୍କ ସିଧାସଳଖ ଯୁକ୍ତି ହେଉଛି ଗୋଟିଏ ସମୟରେ ହରେକୃଷ୍ଣ ମହତାବ ମଧ୍ୟ ମହାରାଷ୍ଟ୍ରର ରାଜ୍ୟପାଳ ହୋଇଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେ ରାଜ୍ୟପାଳ ପଦବୀ ଛାଡ଼ିଦେଇ ଓଡ଼ିଶାକୁ ଫେରିଆସି କଂଗ୍ରେସ ରାଜନୀତି ସହିତ ସଂପୃକ୍ତ ହେଲେ । ତେଣୁ ଜାନକୀ ବଲ୍ଲଭ ଯେ ଓଡ଼ିଶାକୁ ଫେରିଆସିପାରିବେ ନାହିଁ ତାହା ଭାବିବା ଭୁଲ୍ । ସୁରେଶ ହେଉଛନ୍ତି କଂଗ୍ରେସର ଜଣେ ଆଗଧାଡ଼ିର ନେତା । ୫ ଥର ସେ ଜଟଣୀ ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ବିଧାୟକ ଏବଂ ମନ୍ତ୍ରୀ ବି ହୋଇଛନ୍ତି । ନବୀନ ପଟ୍ଟନାୟକଙ୍କୁ ଯଦି କେହି ମୁକାବିଲା କରିପାରିବ ତେବେ ସେ ହେଲେ ଜାନକୀ ବଲ୍ଲଭ ପଟ୍ଟନାୟକ ବୋଲି ସୁରେଶ ଏବେ ଖୋଲାଖୋଲି କହୁଛନ୍ତି । କିନ୍ତୁ ଓଡ଼ିଶା କଂଗ୍ରେସରେ ଗୋଷ୍ଠୀକନ୍ଦଳ ଜୋର୍‌ଦାର୍ । ଯେଉଁଥିପାଇଁ ପିସିସି ସଭାପତି ପଦ ନିମନ୍ତେ ଅନେକଙ୍କର ଯୋଗ୍ୟତା ନଥିଲେ ବି ସେମାନେ ଏହି ପଦବୀରେ ବସିବା ପାଇଁ ଲବି ମଧ୍ୟ କରୁଛନ୍ତି । ଗୋଟିଏ ସମୟରେ ସୁରେଶ ରାଉତରାୟ ଥିଲେ ହରେକୃଷ୍ଣ ମହତାବଙ୍କର ଚେଲା । ସେ ହରେକୃଷ୍ଣ ମହତାବଙ୍କ ସହିତ ଏମିତି ଅନେକ ଫଟୋ ଉଠାଇଛନ୍ତି ଯାହା ଦେଖିବା କଥା । ଚେଲା କିପରି ଗୁରୁଙ୍କ ପାଖରେ ବସିବ ତାହା ସେହି ଫଟୋରୁ ସ୍ପଷ୍ଟ ହୋଇଯାଇଛି । ଏହି ଫଟୋରେ ହରେକୃଷ୍ଣ ମହତାବ ଚୌକିରେ ବସିଥିବା ବେଳେ ତାଙ୍କ ଚୌକି ତଳେ ବସିଛନ୍ତି ସୁରେଶ କୁମାର ରାଉତରାୟ । ସେଥିପାଇଁ ସୁରେଶ ୧୯୭୭ ମସିହାରେ ହରେକୃଷ୍ଣ ମହତାବଙ୍କ ସୁପାରିଶକ୍ରମେ ଜନତା ଦଳରୁ ଟିକେଟ ପାଇଥିଲେ । ପୁଣି ୧୯୮୦ ମସିହାରେ ହରେକୃଷ୍ଣ ମହତାବଙ୍କ ସୁପାରିଶକ୍ରମେ ସୁରେଶ କଂଗ୍ରେସରୁ ଟିକେଟ ପାଇଲେ । ହରେକୃଷ୍ଣ ମହତାବଙ୍କ ଚେଲା ଭାବେ ଚର୍ଚ୍ଚିତ ହୋଇଥିବା ସୁରେଶ ଏଥିପାଇଁ ସବୁବେଳେ ଗର୍ବ ଅନୁଭବ କରିଥା'ନ୍ତି । ଜାନକୀ ବଲ୍ଲଭଙ୍କର ମଧ୍ୟ ସୁରେଶ ଅନୁଗତ ଅଟନ୍ତି । ଏପରିକି ଜାନକୀ ବଲ୍ଲଭଙ୍କ ସେ ହନୁମାନ ବୋଲି ମଧ୍ୟ କହନ୍ତି । ୨୦୦୯ ନିର୍ବାଚନରେ ଜାନକୀ ବଲ୍ଲଭଙ୍କୁ ପ୍ରତିଦ୍ୱନ୍ଦିତା କରିବା ପାଇଁ ଟିକେଟ ମିଳିଲା ନାହିଁ । ଏହା କଂଗ୍ରେସର ଏକ ଭୁଲ୍ ନିଷ୍ପତି

ଥିଲା । ଯଦି ଜାନକୀ ବଲ୍ଲଭଙ୍କୁ ପ୍ରତିଦ୍ୱନ୍ଦିତା କରିବା ପାଇଁ ଟିକେଟ ମିଳିଥା'ନ୍ତା ତା' ହେଲେ ଜନସାଧାରଣ ନବୀନଙ୍କର ବିକଳ୍ପ ଜାନକୀ ବଲ୍ଲଭ ପଟ୍ଟନାୟକ ବୋଲି ବିଚାର କରିଥା'ନ୍ତେ ଆଉ କଂଗ୍ରେସ ଏଥର ସରକାର ଗଢ଼ିଥା'ନ୍ତା । ଏବେ ନବୀନ ପଟ୍ଟନାୟକଙ୍କ ବିରୋଧରେ ବହୁ ଇସ୍ୟୁ ରହିଛି । ଜାନକୀ ବଲ୍ଲଭ ପଟ୍ଟନାୟକ ବର୍ତ୍ତମାନ ପରିସ୍ଥିତିରେ ଓଡ଼ିଶା କଂଗ୍ରେସର ନେତୃତ୍ୱ ନେଲେ ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀରୁ ହଟିଯିବେ ବୋଲି ସୁରେଶ ଦୃଢ଼ତା ପ୍ରକାଶ କରିଛନ୍ତି । ସୁରେଶ ହନୁମାନ କହି ଜାନକୀ ବଲ୍ଲଭଙ୍କର ଭକ୍ତ ହୋଇଛନ୍ତି । କିନ୍ତୁ ଜାନକୀ ବଲ୍ଲଭ ଯେ ରାଜନୀତିରେ ଗଭୀର ଜଳର ମାଛ ଅଟନ୍ତି ତାହା ବୋଧହୁଏ ସୁରେଶ ଜାଣିନାହାନ୍ତି । ଯଦି ଜାନକୀ ବଲ୍ଲଭ ପଟ୍ଟନାୟକ ଆସାମ ରାଜ୍ୟପାଳ ହୋଇ ନଥା'ନ୍ତେ ତେବେ ଓଡ଼ିଶାରେ କଂଗ୍ରେସ ନେତାମାନଙ୍କ ଦ୍ୱାରା ସେ ଏତେ ବେଳକୁ ଖିନ୍‌ଭିନ୍ ହୋଇଯାଇ ସାରନ୍ତେଣି । ଜାନକୀ ବଲ୍ଲଭ ପଟ୍ଟନାୟକ ଆସାମର ରାଜ୍ୟପାଳ ହୋଇଯିବା ପରେ ଓଡ଼ିଶାରେ ତାଙ୍କର ସ୍ଥିତି ଦୃଢ଼ ହେବାରେ ଲାଗିଛି । ଏମିତି ନିର୍ବାଚନ ଆହୁରି ୪ ବର୍ଷ ପାଖାପାଖି ଅଛି । ସେହି ସମୟକୁ ଜାନକୀ ବଲ୍ଲଭଙ୍କ ଆଖି ରହିଛି । ଅବଶ୍ୟ ଏବେଠାରୁ ତାଙ୍କର ହନୁମାନ ହୋଇଥିବା ସୁରେଶ କୁମାର ରାଉତରାୟ ପେଡ଼ି ଖୋଲିଦେଲେଣି । ଏଭଳି ପେଡ଼ି ଖୋଲାଯିବାର ରହସ୍ୟ କ'ଣ ତାହା କେବଳ ସୁରେଶଙ୍କୁ ହିଁ ମାଲୁମ୍ ଥିବ । ଏବେ ଦେଖାଯାଉ ଆସାମର ରାଜ୍ୟପାଳ ହୋଇ ଓଡ଼ିଶା କଂଗ୍ରେସ ରାଜନୀତିର ଦଉଡ଼ି ଜାନକୀ ବଲ୍ଲଭଙ୍କ ହାତରେ ରହୁଛି କି ନାହିଁ । ■

## ଲୟାଲ ଅତନୁ



ଅତନୁ ଜଣେ ଲୟାଲ ମନ୍ତ୍ରୀ ବୋଲି ସାଧାରଣରେ କେହି ଜାଣନ୍ତି ନାହିଁ । ଯେହେତୁ ବିଜୟ ମହାପାତ୍ରଙ୍କୁ ରାଜନୀତିରେ ଖତମ କରିଦେବା ପାଇଁ ଅତନୁ ଏବେବି ଗୋଟିଚାଳନା କରୁଛନ୍ତି ସେହି ଦୃଷ୍ଟିରୁ ତାଙ୍କୁ ନବୀନ ପଟ୍ଟନାୟକଙ୍କର ଅତ୍ୟନ୍ତ ଲୟାଲ ବୋଲି କୁହାଯାଇଥାଏ । କିନ୍ତୁ ମନ୍ତ୍ରୀ ହେବା ଦିନ ସେ ଯେତେବେଳେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କୁ ଦେଖାକରିବାକୁ ଯାଇଥିଲେ କୁଆଡ଼େ ପ୍ୟାରୀମୋହନଙ୍କର ତାଙ୍କ ପ୍ରତି ପରାମର୍ଶ ଥିଲା ଯେ, ଭୁବନେଶ୍ୱରରେ ଥିବାବେଳେ ସବୁବେଳେ ସଚିବାଳୟ ଯିବ । ସଚିବାଳୟ ସମୟରେ ଘରେ ଅଫିସ କରିବ ନାହିଁ । ମୁଖ୍ୟମନ୍ତ୍ରୀ ସଚିବାଳୟ ଯିବା ପୂର୍ବରୁ ଅଫିସ ଯିବ । ମୁଖ୍ୟମନ୍ତ୍ରୀ ସଚିବାଳୟ ଛାଡ଼ିବା ପରେ ଅଫିସ ଛାଡ଼ିବ । ଅବଶ୍ୟ କେବଳ ଅତନୁଙ୍କୁ ଯେ ପ୍ୟାରୀମୋହନ ମହାପାତ୍ର ଏଭଳି ପରାମର୍ଶ ଦେଇଥିଲେ ତାହା ନୁହେଁ । ଯେଉଁମାନେ ନୂଆ ମନ୍ତ୍ରୀ ହୋଇଥିବେ ସେମାନଙ୍କୁ ବି ପ୍ୟାରୀମୋହନ ଏଭଳି ପରାମର୍ଶ ଦେଇଥିବେ । କିନ୍ତୁ ଅଧିକାଂଶ ମନ୍ତ୍ରୀ ଭୁବନେଶ୍ୱରରେ ଥାଇ ସଚିବାଳୟ ଯାଆନ୍ତି ନାହିଁ ଆଉ ଘରେ ଅଫିସ କରିଥା'ନ୍ତି । ତେବେ ଏ କ୍ଷେତ୍ରରେ ସତେ ଯେମିତି

ମନ୍ତ୍ରୀମାନଙ୍କ ମଧ୍ୟରେ ଅତନୁ ବ୍ୟତିକ୍ରମ ହୋଇଯାଇଛନ୍ତି । ମନ୍ତ୍ରୀ ହେବାଦିନ ତାଙ୍କୁ ପ୍ୟାରୀମୋହନ ଯେଉଁ ପରାମର୍ଶ ଦେଇଥିଲେ ତାହାକୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଛନ୍ତି । ଭୁବନେଶ୍ୱରରେ ଥିବାବେଳେ ସେ ମୁଖ୍ୟମନ୍ତ୍ରୀଙ୍କ ଆଗରୁ ସଚିବାଳୟ କାର୍ଯ୍ୟାଳୟକୁ ଯାଉଛନ୍ତି ଆଉ ମୁଖ୍ୟମନ୍ତ୍ରୀ ଯିବାପରେ ସେ ସଚିବାଳୟ କାର୍ଯ୍ୟାଳୟରୁ ଘରକୁ ଫେରୁଛନ୍ତି । ଏମିତି କହୁକହୁ ଅତି ଆବେଗମୟ ହୋଇ ଏହା କହିଦେଇଥିଲେ ଅତନୁ ସବ୍ୟସାଚୀ ନାୟକ । ଅବଶ୍ୟ ତାଙ୍କର ଉଦ୍ଦେଶ୍ୟ କୌଣସି ମନ୍ତ୍ରୀଙ୍କୁ ନିନ୍ଦା କରିବାର ନଥିଲା । କିନ୍ତୁ ଏହା ସତ ଯେ, ଅତନୁ ଏଯାବତ୍ ପ୍ୟାରୀମୋହନ ମହାପାତ୍ରଙ୍କ ସେହି ପରାମର୍ଶ ଅନୁଯାୟୀ କାର୍ଯ୍ୟ କରିଚାଲିଛନ୍ତି । ଅତନୁଙ୍କୁ ଏଥିପାଇଁ କୁହାଯିବ ଲୟାଲ ମନ୍ତ୍ରୀ । ■

## ସୁପର ବିଧାୟକ

ସାଧାରଣତଃ ବିଧାୟକମାନଙ୍କ ପାଇଁ ସୁପର ବିଧାୟକ ହେଉଛନ୍ତି ମୁଖ୍ୟମନ୍ତ୍ରୀ । କିନ୍ତୁ ଏଠାରେ ଏମିତି ଜଣେ ବିଧାୟକଙ୍କ ପ୍ରସଙ୍ଗ ଚର୍ଚ୍ଚାକୁ ଆସୁଛି ଯଦିଓ ସେ ମୁଖ୍ୟମନ୍ତ୍ରୀ ନୁହନ୍ତି କି ମନ୍ତ୍ରୀ ବି ନୁହନ୍ତି ତଥାପି ବି ତାଙ୍କୁ ସୁପର ବିଧାୟକ ବୋଲି କୁହାଯାଉଛି । ଏହାର କାରଣ ଆଉ କିଛି ନୁହେଁ । ତାଙ୍କ ନିର୍ବାଚନମଣ୍ଡଳୀରେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ମନ୍ତ୍ରୀ, ବହୁ ବିଧାୟକଙ୍କ ଘର । ପୁଣି ସମସ୍ତେ ଭୋଟର । ଆଉ ତାଙ୍କୁ ସେମାନେ ଭୋଟ ଦେଇ ଜିତାଇଛନ୍ତି । ଏହି ବିଧାୟକ ଜଣଙ୍କ ହେଲେ ଅଶୋକ ଚନ୍ଦ୍ର ପଣ୍ଡା । ତାଙ୍କ ନିର୍ବାଚନମଣ୍ଡଳୀ ହେଲା ଏକାମ୍ର-ଭୁବନେଶ୍ୱର । ଏମିତି ତ ଅଶୋକଙ୍କ ଘର ଏହି ନିର୍ବାଚନମଣ୍ଡଳୀରେ । ଏହି ନିର୍ବାଚନମଣ୍ଡଳୀରେ ରହିଛି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ନବୀନ ନିବାସ । ଏଠାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ରହୁଛନ୍ତି ଆଉ ସେ ମଧ୍ୟ ଏହି ନିର୍ବାଚନମଣ୍ଡଳୀର ଭୋଟର ଅଟନ୍ତି । ପଂଚାୟତିରାଜ, ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ପ୍ରଫୁଲ୍ଲ ସାମଲଙ୍କ ଘର ଯଦିଓ ଭଦ୍ରକ କିନ୍ତୁ ଏହି ନିର୍ବାଚନମଣ୍ଡଳୀରେ ତାଙ୍କର ନିଜର ଘର ରହିଛି । ସେ ମନ୍ତ୍ରୀ ହୋଇଥିବାରୁ ତାଙ୍କୁ ସରକାରୀ କ୍ୱାର୍ଟର ମିଳିଥିଲେ ମଧ୍ୟ ସେ ଏହି ନିର୍ବାଚନମଣ୍ଡଳୀରେ ଥିବା ତାଙ୍କର ନିଜ ଘରେ ରହୁଛନ୍ତି । ଉତ୍ତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା ମଧ୍ୟ ଏହି ନିର୍ବାଚନମଣ୍ଡଳୀର ବାସିନ୍ଦା । ସେହିପରି ମଧ୍ୟ-ଭୁବନେଶ୍ୱର ବିଧାୟକ ବିଜୟ ମହାନ୍ତି ମଧ୍ୟ ବାସିନ୍ଦା ହେଉଛନ୍ତି ଏହି ନିର୍ବାଚନମଣ୍ଡଳୀର । ବିରୋଧୀ ଦଳ ନେତା ଭୁପିନ୍ଦର ସିଂ ମଧ୍ୟ ଏହି ଏକାମ୍ର-ଭୁବନେଶ୍ୱର ନିର୍ବାଚନମଣ୍ଡଳୀର ବାସିନ୍ଦା ଅଟନ୍ତି । ବହୁଥର ବିଧାୟକ ହୋଇଥିବା ଏବଂ ଏବେବି ରାଜନୀତିରେ ସକ୍ରିୟ ଥିବା କଂଗ୍ରେସ ନେତା ସୁରେଶ କୁମାର ରାଉତରାୟ ମଧ୍ୟ ଏହି ନିର୍ବାଚନମଣ୍ଡଳୀର ବାସିନ୍ଦା । ସିଧାସଳଖ କୁହାଗଲେ ଏହା ହେବ ଯେ, ଏକାମ୍ର-ଭୁବନେଶ୍ୱର ନିର୍ବାଚନମଣ୍ଡଳୀଟି ଏକ ଗୁରୁତ୍ୱପୂର୍ଣ୍ଣ ନିର୍ବାଚନମଣ୍ଡଳୀ ଅଟେ । ଏଠାରେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ମନ୍ତ୍ରୀ, ବିଧାୟକ, ବିରୋଧୀ ଦଳ ନେତା ପ୍ରଭୃତି ରହୁଛନ୍ତି । ପୁଣି ଭୁବନେଶ୍ୱରର ତିନୋଟି ଯାକ

ନିର୍ବାଚନମଣ୍ଡଳୀର ବିଧାୟକ ମଧ୍ୟ ଏହି ନିର୍ବାଚନମଣ୍ଡଳୀରେ ରହନ୍ତି । ଏହି ଦୃଷ୍ଟିରୁ ଏହି ନିର୍ବାଚନମଣ୍ଡଳୀର ବିଧାୟକଙ୍କୁ ସୁପର ବିଧାୟକ ବୋଲି କୁହାଯାଉଛି । ଦେଖାଯାଉ ସୁପର ବିଧାୟକ ହୋଇ ଅଶୋକ ନିଜ ନିର୍ବାଚନମଣ୍ଡଳୀର ସୁପର ସମସ୍ୟାକୁ ସମାଧାନ କରିପାରୁଛନ୍ତି କି ନାହିଁ । ■

## ଦାମ ଚଳାଇବେ ବୁଲ୍‌ଡୋଜର



୧୯୭୪ ମସିହାରେ ସରକାରୀ ଚାକିରି ଛାଡ଼ି ବିଜୁ ପଟ୍ଟନାୟକଙ୍କ ଆହ୍ୱାନରେ ରାଜନୀତିକୁ ଆସିଥିବା କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ କେଜାଣି କାହିଁକି ନିଜ ବିଭାଗ ଉପରେ ବେଳେବେଳେ ଅସନ୍ତୋଷ ପ୍ରକାଶ କରୁଛନ୍ତି । ଏମିତି ବିଜୁ ପଟ୍ଟନାୟକଙ୍କର ଗୋଟିଏ ସମୟରେ ଡାହାଣ ହାତ ହୋଇଥିବା ଡାକ୍ତର ଦାମୋଦର ରାଉତ ସବୁବେଳେ ପଂଚାୟତିରାଜ ବିଭାଗର ମନ୍ତ୍ରୀ ହୋଇଥା'ନ୍ତି । ୨୦୦୯ ନିର୍ବାଚନରେ ଦାମ ରାଉତଙ୍କ କ୍ଷେତ୍ରରେ ବ୍ୟତିକ୍ରମ ଦେଖାଯାଇଥିଲା । ପଂଚାୟତିରାଜ ପରିବର୍ତ୍ତେ ତାଙ୍କୁ ମିଳିଥିଲା କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିଭାଗ । ଦାମ ରାଉତ ଏହି ବିଭାଗକୁ ଏବେ ଆପଣେଇ ନେଲେଣି । କିନ୍ତୁ ଓଡ଼ିଶାରେ କୃଷକଙ୍କ ଦୁଃଖକୁ ଦୂର କରିବାରେ ସେ ସକ୍ଷମ ହେଉନାହାନ୍ତି । ଏଥିପାଇଁ କୁଆଡ଼େ ଅଫିସରମାନେ ଦାୟୀ ବୋଲି ଦାମ ସିଧାସଳଖ କହୁଛନ୍ତି । ଯଦି ସେ ଅଫିସରଙ୍କୁ ସାବାଡ଼ ନକରନ୍ତି ତେବେ ଆଉ କେଉଁ ମନ୍ତ୍ରୀ ସାବାଡ଼ କରିପାରିବେ ନାହିଁ । ଯେମିତି ହେଲେ ତାଙ୍କ ମନ୍ତ୍ରୀ ସମୟରେ ସେ ରାଜ୍ୟରେ କୃଷି ଓ କୃଷକଙ୍କର ବିକାଶ ଘଟାଇବେ ବୋଲି ପ୍ରତିଜ୍ଞାବଦ୍ଧ ହୋଇଯାଇଛନ୍ତି । ଏବେ ଦାମଙ୍କ ପାଖକୁ ସେ ବିଧାୟକ ହୁଅନ୍ତୁ କି ମନ୍ତ୍ରୀ ହୁଅନ୍ତୁ କି ଅନ୍ୟ ଯିଏ ହୁଅନ୍ତୁ ଯେଉଁମାନେ ଯାଉଛନ୍ତି ସେମାନେ ଦାମଙ୍କ ମୁହଁରୁ ଏକ ଅଜବ କଥା ଶୁଣୁଛନ୍ତି । ଏମିତି ଦାମ ହେଉଛନ୍ତି ମନ୍ତ୍ରୀ । ସେ କୌଣସି ହେଭି ଗାଡ଼ି ଚଳାଇବା ପାଇଁ ଲାଇସେନ୍ସ ବି କରିନାହାନ୍ତି । କିନ୍ତୁ ଯେଉଁ ଗାଡ଼ି ଚଳାଇବେ ବୋଲି ସେ କହୁଛନ୍ତି ତାହାର ଡ୍ରାଇଭିଂ ଲାଇସେନ୍ସ ମଧ୍ୟ ସହଜରେ ମିଳେନାହିଁ । ପୁଣି ଦାମ ମଧ୍ୟ ସେହି ଗାଡ଼ିର ଡ୍ରାଇଭିଂ ଜାଣି ବି ନାହାନ୍ତି । ଏହାସତ୍ତ୍ୱେ ସେ ଦୃଢ଼ତାର ସହ କହିବାରେ ଲାଗିଛନ୍ତି । ଏଣିକି ଆଉ ସେ ଛାଡ଼ିବେ ନାହିଁ । ପୂରାପୂରି ବୁଲଡ଼ୋଜର ଚଳାଇବେ ଆଉ ଯେଉଁଠି ଦରକାର ହେବ ବୁଲଡ଼ୋଜରରେ ସେ ଭଙ୍ଗାରୁଜା କରିବେ ଏବଂ ସଫା ବି କରିଦେବେ । ଦାମଙ୍କର ଏହି ଦୃଢ଼ତାକୁ ନେଇ ଏବେ ରାଜନୀତି ମହଲରେ ଚାଲିଛି ଚର୍ଚ୍ଚା । କୁଆଡ଼େ ତୃତୀୟ ମହଲାର ବାହୁତଳେ ରହି ତାଙ୍କ ବିଭାଗର କେତେକ ଅଫିସର ତାଙ୍କୁ ମାନୁନାହାନ୍ତି । ପୁଣି ସେମାନେ କାମ ନଜାଣିଥିବାରୁ କାମ ବି ହେଉନାହିଁ । ଏହାକୁ ଆଉ ସେ ସହିପାରିବେ ନାହିଁ । ଅବଶ୍ୟ ଦାମଙ୍କ ବୁଲଡ଼ୋଜର ଚଳାଇବା ଦୃଢ଼ତାକୁ ଯେକୌଣସି ବ୍ୟକ୍ତି ଶୁଣିବେ ତାହା ତାଙ୍କୁ ବେଶ୍

ଭଲ ଲାଗିବ । ତେବେ ଦାମ କେବେ ବୁଲଡ଼ୋଜର ଚଳାଇବେ ତାହାକୁ ତାଙ୍କର ନିନ୍ଦୁକ ଏବଂ ପ୍ରଶଂସକ ସମସ୍ତେ ଉତ୍ସୁକତାର ସହ ଚାହିଁ ରହିଛନ୍ତି । ■

## ନିଦ୍ରା ଦେବୀ ଓ ବଦ୍ରି



ବଦ୍ରିନାରାୟଣ ପାତ୍ରଙ୍କ ନିର୍ବାଚନମଣ୍ଡଳୀ ହେଉଛି କେନ୍ଦୁଝର ଜିଲାର ଘସିପୁରା । ଏମିତି ବଦ୍ରି ନିର୍ବାଚନମଣ୍ଡଳୀରେ ବିଜେଡି ସଂଗଠନ ପ୍ରତି ସବୁବେଳେ ଗୁରୁତ୍ୱ ଦେଇଆସିଥା'ନ୍ତି । ଯେତେବେଳେ ଯିଏ ନିର୍ବାଚନମଣ୍ଡଳୀ ବାସିନ୍ଦା ହୁଅନ୍ତୁ କି ଦଳୀୟ କର୍ମୀ କି ନେତା ହୁଅନ୍ତୁ ଯେ କେହି ତାଙ୍କୁ ନିମନ୍ତ୍ରଣ କଲେ ବଦ୍ରି ନିଶ୍ଚିତ ଭାବେ ସେହି ନିମନ୍ତ୍ରଣ ରକ୍ଷା କରିବେ ହିଁ କରିବେ । ଏମିତି ଅଧିକାଂଶ ଦିନ ବଦ୍ରି ନିର୍ବାଚନମଣ୍ଡଳୀ ଗସ୍ତରେ ଯାଆନ୍ତି । ପୂର୍ବରୁ ସକାଳେ ଭୁବନେଶ୍ୱରରେ ରୁହନ୍ତି ଆଉ ସଂଧାରେ ନିର୍ବାଚନମଣ୍ଡଳୀ ଗସ୍ତ କରନ୍ତି ବଦ୍ରି । କିନ୍ତୁ କେନ୍ଦୁଝର ଜିଲା ନକ୍ସଲ ପ୍ରବଣ ଜିଲା ହୋଇଥିବାରୁ ରାତିରେ ଫେରିବା ବେଳେ ସମୟେ ସମୟେ ବଦ୍ରିଙ୍କ ପାଇଁ ସମସ୍ୟା ହେଉଛି । ପୁଣି ଗାଡ଼ି ଚଳାଉଥିବା ଡ୍ରାଇଭର ପାଇଁ ମଧ୍ୟ ବିଳମ୍ବିତ ରାତିରେ ଗାଡ଼ି ଚଳାଇବା ବି ସମସ୍ୟା ହୋଇଯାଉଛି । ଏହାକୁ ଆଖି ଆଗରେ ରଖି ବଦ୍ରି ତାଙ୍କର ନିର୍ବାଚନମଣ୍ଡଳୀ ଗସ୍ତ କାର୍ଯ୍ୟକ୍ରମରେ ମଧ୍ୟ ପରିବର୍ତ୍ତନ କରୁଛନ୍ତି । ଯେଉଁଠି ସେ ଫେରିବାରେ ବିଳମ୍ବ ହେବ ବୋଲି ଭାବୁଛନ୍ତି ସେଠାରେ ସେ ଆଉ ଭୁବନେଶ୍ୱର ଫେରୁନାହାନ୍ତି । ବରଂ ରାତିରେ ନିର୍ବାଚନମଣ୍ଡଳୀରେ ରହିଯାଉଛନ୍ତି । ଏମିତି ଶନିବାର ଦିନ ନିର୍ବାଚନମଣ୍ଡଳୀକୁ ଗଲେ ସେ ରବିବାର ଦିନ ଭୁବନେଶ୍ୱର ଫେରିଆସନ୍ତି । ତେବେ ନିର୍ବାଚନମଣ୍ଡଳୀ ଗଲେ ବଦ୍ରିଙ୍କୁ ଫୁରସତ୍ ମିଳି ନଥାଏ । ବଦ୍ରି ଏବେ ଗୋଟିଏ ନୂଆ ଯୋଜନା କରିଛନ୍ତି । ମାନେ ଗାଡ଼ିରେ ଯିବା ଆସିବା କରିବା ସମୟରେ ସେ ଶୋଉଛନ୍ତି । ତେଣୁ ତାଙ୍କ ପାଇଁ ଆଉ ନିଦ ସମସ୍ୟା ହେଉନାହିଁ । ଗାଡ଼ିରେ ବସିବା ମାତ୍ରେ ସେ ନିଦ୍ରାଦେବୀଙ୍କ କୋଳକୁ ଚାଲିଯାଉଛନ୍ତି ଆଉ ଗାଡ଼ିରୁ ଓହ୍ଲାଇବା ମାତ୍ରେ ସେ ହୋଇଯାଉଛନ୍ତି ଚଳଚଂଚଳ । ମାନିବାକୁ ପଡ଼ିବ ବଦ୍ରିଙ୍କୁ । ବଦ୍ରିଙ୍କର ଏହି ନିଦ୍ରାଦେବୀଙ୍କ ପ୍ରୀତିକୁ ଅନ୍ୟ ମନ୍ତ୍ରୀମାନେ ଗ୍ରହଣ କଲେ ସେମାନଙ୍କ ପାଇଁ ମଧ୍ୟ ନିଦ ସମସ୍ୟା ହୁଅନ୍ତା ନାହିଁ । ■



## ଦେବରାଜଙ୍କ ହନୁମାନ ଚାଳିଶା

ଆସିକା ବିଧାୟକ ହେଉଛନ୍ତି ଦେବରାଜ ମହାନ୍ତି । ୨୦୦୦ ମସିହାରେ ସେ ବିଜେଡିରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । ୨୦୦୪ରେ ତାଙ୍କୁ ବିଜେଡିରୁ ଟିକେଟ ମିଳିଲା ନାହିଁ । ୨୦୦୯ରେ ସେ ବିଜେଡିରୁ ପୁଣି ଟିକେଟ ପାଇ ବିଧାୟକ ହୋଇଛନ୍ତି । ଏମିତି ଦେବରାଜ ବେଶ୍ ସାଧାସିଧା ନେତା ଅଟନ୍ତି । ନମସ୍କାର ସତେ ଯେପରି ତାଙ୍କର ସର୍ବସ୍ୱ । ଛୋଟଛୁଆକୁ

ଦେଖିଦେଲେ ମଧ୍ୟ ସେ ନମସ୍କାର କରନ୍ତି ଆଉ ବୟସ୍କ ଲୋକଙ୍କୁ ମଧ୍ୟ ସେ ନମସ୍କାର କରନ୍ତି । ମାନେ ଯିଏ ଆଖିରେ ପଡ଼ିଲା ତାଙ୍କୁ ସେ ନମସ୍କାର କରିଚାଲନ୍ତି । ଏହା ଦେବରାଜଙ୍କ ରାଜନୀତି ପାଇଁ ଏକ ଅସ୍ତ୍ର ହୋଇଯାଇଛି । ମହାବିଷୁବ ସଂକ୍ରାନ୍ତି ଦିନ ଆସିକାରେ ହନୁମାନ ଚାଳିଶା ହେଉଥିଲା । ଦେଖାଗଲା ଦେବରାଜ ଏହି ଚାଳିଶା ପଢୁଛନ୍ତି । ଏମିତି ଦେବାଦେବୀଙ୍କ ପ୍ରତି ଦେବରାଜଙ୍କର ବେଶ୍ ଭକ୍ତି ରହିଥାଏ । ହନୁମାନ ଚାଳିଶା ପଢ଼ିବାର କିଛି କାରଣ ମଧ୍ୟ ରହିଛି ଦେବରାଜଙ୍କର । ହନୁମାନ ଚାଳିଶା ପଢ଼ିଲେ ସଙ୍କଟମୋଚନ ହୋଇଥାଏ । ଏମିତି ବହୁ ସଙ୍କଟ ଦେଇ ଦେବରାଜ ଉଠିଛନ୍ତି ଆଉ ସଙ୍କଟ ଆସିଲେ ନେତାମାନଙ୍କର ଅବସ୍ଥା କ'ଣ ହୁଏ ତାହା ଅନ୍ୟ କାହା ଅପେକ୍ଷା ଦେବରାଜ ଅଙ୍ଗେଅଙ୍ଗେ ଅଧିକ ନିଭାଇଛନ୍ତି । ତେଣୁ ହନୁମାନ ଚାଳିଶା ପଢ଼ିବା ପାଇଁ ପଣା ସଂକ୍ରାନ୍ତି ଦିନ ସତେ ଯେମିତି ବଦ୍ଧପରିକର ଥିଲେ ଦେବରାଜ । ଦେବରାଜଙ୍କର ଏହି ହନୁମାନ ଚାଳିଶା ପାଠ ସମ୍ପର୍କରେ ସାରା ନିର୍ବାଚନମଣ୍ଡଳୀରେ ପ୍ରଚାରିତ ହୋଇଗଲା । ଅନେକ ବ୍ୟକ୍ତି ମଧ୍ୟ ଦେବରାଜଙ୍କ ହନୁମାନ ଚାଳିଶା ପାଠ ଦେଖିବାକୁ ଭିଡ଼ ଜମାଇଥିଲେ । ଦେବରାଜଙ୍କ ହନୁମାନ ଚାଳିଶା ପାଠକୁ ନେଇ ଚର୍ଚ୍ଚା ପରେ ଚର୍ଚ୍ଚା ଚାଲିଲା । ଦେଖାଯାଉ ହନୁମାନ ଚାଳିଶା ପାଠ ପରେ ଦେବରାଜ ଦେବାଦେବୀଙ୍କର ଅନ୍ୟ କେଉଁ ପାଠ କରୁଛନ୍ତି । ■

## ଚୁଇଁ ଓ ସାଇନା



ଚୁଇଁ କିଏ ପୁଣି ସାଇନା କିଏ । ଖୋଜିଲେ ମଧ୍ୟ ପାଇବା କଷ୍ଟ । କିନ୍ତୁ ଯଦି ପଂଚାୟତିରାଜ, ଖଣି, ଇସ୍ପାତ, ସଂସଦୀୟ ବ୍ୟାପାର ବିଭାଗ ମନ୍ତ୍ରୀ ରଘୁନାଥ ମହାନ୍ତିଙ୍କ ପାଖକୁ ଚାଲିଯାଇ ସେଠାରେ ଏହି ଚୁଇଁ ଓ ସାଇନା କଥା ଉଠାଇବେ ତେବେ ତାଙ୍କ ମୁହଁରେ ସଙ୍ଗେସଙ୍ଗେ ହସ ଖେଳିଯିବ । ଯେତେ ଟେନ୍‌ସନ୍ ଥିଲେ ମଧ୍ୟ ଏହି ନାଁ ଶୁଣିବା ମାତ୍ରେ ସେହି ଟେନ୍‌ସନ୍ ତାଙ୍କଠାରୁ ତୁରନ୍ତ ଉଭେଇଯିବ । ଏବେ ଦେଖିବା ଏହି ଚୁଇଁ ଆଉ ସାଇନା କିଏ ଏବଂ କାହିଁକି ରଘୁନାଥ ମହାନ୍ତି ଏହି ନାମ ଶୁଣିବାକୁ ସବୁବେଳେ ବ୍ୟଗ୍ର ଅଟନ୍ତି । ପ୍ରଥମେ ଏହି ପ୍ରସଙ୍ଗ ରଘୁନାଥଙ୍କୁ ପଚାରିବା ପୂର୍ବରୁ ଆଗ ଯିବା ତାଙ୍କ ମୋବାଇଲକୁ । ମୋବାଇଲରେ ଏକ ଛୋଟ ଝିଅର ଫଟୋଟିଏ ଅଛି । ଏହି ଫଟୋଟି ଆଉ କେହି ନୁହେଁ ରଘୁନାଥଙ୍କ ଝିଅଙ୍କର ଝିଅ ତଥା ନାତୁଣୀଙ୍କର । କୁଆଡ଼େ ଯେତେବେଳେ ରଘୁନାଥ ଟେନ୍‌ସନ୍ ହୋଇଯାଆନ୍ତି ସେତେବେଳେ ଏହି ଫଟୋଟିକୁ ଦେଖନ୍ତି ଆଉ ଟେନ୍‌ସନ୍ ଆପେଆପେ ଦୂରେଇଯାଏ । ସେଦିନ ହଠାତ୍ ରଘୁନାଥ ଅଫିସ ଯିବାକୁ ବାହାରିଥିଲେ । ପତ୍ନୀ ପ୍ରୀତିଲତା ସେପଟୁ ଖବର ପଠାଇଲେ ନାତୁଣୀ ମହାଶୟା ଆସୁଛନ୍ତି ଟିକିଏ ଅପେକ୍ଷା କରିଯାଅ । ରଘୁନାଥ ଅଫିସ ଯିବାକୁ ପାଦ କାଢୁଥିବା

ବେଳେ ଆପେଆପେ ପାଦ ପଛକୁ ଫେରିଆସିଲା ଏବଂ ଡାଇନିଂ ଟେବୁଲ ପାଖରେ ସେ ବସିରହିଲେ । କିଛି ସମୟ ପରେ ତାଙ୍କ ନାତୁଣୀ ଆସି ପାଦ ଛୁଇଁଲା । ସେତେବେଳକୁ ରଘୁନାଥଙ୍କ ଖୁସି କାହିଁରେ କ'ଣ । ସଙ୍ଗେସଙ୍ଗେ ପଚାରିଲେ- କେତେବେଳେ ଘରୁ ବାହାରିଲୁ, ଗଗଲ୍‌ସଟି କିଏ କିଣିଦେଇଛି । ଏମିତି ଅନେକ । ଆଉ ଅଜା, ନାତୁଣୀଙ୍କ ଖେଳ କିଛି ସମୟ ପାଇଁ ଚାଲିଲା । ତାହାକୁ ରଘୁନାଥଙ୍କର ପତ୍ନୀ ପ୍ରୀତିଲତା ବେଶ୍ ଉପଭୋଗ କରୁଥିଲେ । ସେଠାରେ ଥିବା ଜଣେ ବ୍ୟକ୍ତି ପ୍ରଶ୍ନ କଲେ ରଘୁନାଥଙ୍କୁ- ଏ କ'ଣ ସେହି ନାତୁଣୀ ଯାହାଙ୍କର ଫଟୋ ଆପଣଙ୍କର ମୋବାଇଲରେ ଅଛି । ରଘୁନାଥ ସଙ୍ଗେସଙ୍ଗେ 'ହଁ' କଲେ ଏବଂ କହିଲେ- ନାତୁଣୀକୁ ଦେଖିଦେଲେ ମୁଁ ସବୁ ଦୁଃଖକୁ ଭୁଲିଯାଏ । ଟେନ୍‌ସନ୍ କୁଆଡ଼େ ଆପେଆପେ ଚାଲିଯାଏ । କିନ୍ତୁ ନାତୁଣୀ ମହାଶୟା ଭାରି ଚାଲାକ । ମୋତେ ବାବା ବୋଲି ଡାକିଲେ । ମୁଁ କହିଲି- ଆଣ ବାଡ଼ି, ତାକୁ ଆଗ ଦି' ପାହାର ଦେବା । ନାତୁଣୀ ମହାଶୟା କହିଲେ- କାହିଁକି ମୋତେ ବାଡ଼େଇବ । ମୁଁ କହିଲି- ବାବା ଡାକିବାରୁ । ସେ କହିଲା- ଏଥିରେ ତ କିଛି ଅସୁବିଧା ନାହିଁ । ଅଧିକାଂଶଙ୍କ ଘରେ ଅଜାଙ୍କୁ ବାବା ଡାକୁଛନ୍ତି । ମୁଁ ଡାକିଲି । ସେଇଠ୍ କ'ଣ ହେଲା । ରଘୁନାଥ କହିଲେ- ଆଉ ବିଳମ୍ବ କରିବାକୁ ହେବନାହିଁ । ବାଡ଼ିରେ ପିଟିବାକୁ ପଡ଼ିବ । ଭୟ କରିଗଲା ରଘୁନାଥଙ୍କ ନାତୁଣୀ ଏବଂ କହିଲା- ମୋତେ ବାଡ଼ାଅ ନାହିଁ । ମୁଁ ଏଣିକି ଅଜା ଡାକିବି । ସେହି ଦିନଠାରୁ ରଘୁନାଥଙ୍କୁ ତାଙ୍କ ନାତୁଣୀ ଅଜା ଡାକି ଆସୁଛି । ପୁଣି କହୁକହୁ ରଘୁନାଥ କହିଲେ- ଯେତେବେଳେ ନାତୁଣୀ ଜନ୍ମ ହେଲା ସେତେବେଳେ କିଏ କେଉଁ ପ୍ରକାର ନାମ ଦେଲେ । ଏକଦମ୍ ଛୋଟିଆଟିଏ ସେ ହୋଇଥାଏ । ତେଣୁ ତା' ନାମ ସେ ଦେଲେ ଚୁଇଁ । କିନ୍ତୁ ଏହି ଚୁଇଁ ନାମ କାହାର ପସନ୍ଦ ହେଲାନାହିଁ । ସମସ୍ତେ ଭାବିଚିନ୍ତି ତା'ର ନାମ ରଖିଲେ ସାଇନା । ତେବେ ଏ ସାଇନା ନାମଟି ତାଙ୍କର ପସନ୍ଦ ହେଲାନାହିଁ । ସେ ଚୁଇଁ ଡାକି ଚାଲିଲେ । ଏବେ ଦେଖାଗଲାଣି ସାଇନା ଆଉ କିଏ ଡାକୁନାହାନ୍ତି । ସମସ୍ତେ ଡାକୁଛନ୍ତି ଚୁଇଁ ବୋଲି । ମାନିବାକୁ ପଡ଼ିବ ରଘୁନାଥ ମହାନ୍ତିଙ୍କୁ । ଆଗକୁ କ'ଣ ହେବ ସେ ସମ୍ପର୍କରେ ସେ ବେଶ୍ ଭଲ ଭାବେ ଚିନ୍ତା କରି ପଦକ୍ଷେପ ନେଇଥା'ନ୍ତି । ଏମିତି ରାଜନୀତିରେ ତାଙ୍କୁ ଜଣେ ସଫଳ ନେତା ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । ତେବେ ଏହି ବିଶେଷଣ ସହିତ ଆଉ ଗୋଟିଏ ବିଶେଷଣ ରଘୁନାଥଙ୍କ ଠାରେ ଯୋଡ଼ି ହୋଇଯାଇଛି । ତାହା ହେଲା ନାମକରଣ କରିବା । ଆଉ ଏହା ତାଙ୍କର ନାତୁଣୀଙ୍କ ନାମକରଣରୁ ସ୍ପଷ୍ଟ ହୋଇଯାଇଛି । ଯେମିତି ଚୁଇଁ ନାମ ରହିଲା ଆଉ ସାଇନା ନାମ ଉଭେଇଗଲା । ଏଣିକି ନାମକରଣ ପାଇଁ ରଘୁନାଥଙ୍କୁ ଲୋଡ଼ିଲେ ଜାଣ ତାଙ୍କରି ନାମ ହିଁ ସ୍ଥାୟୀ ହୋଇ ରହିବ । ■

# ବେଛପରି ବିଧାୟକ

ବିଧାୟକ ତ ବିଧାୟକ ପୁଣି ଏ ବେଛପରି ବିଧାୟକ କ'ଣ । ଏହି ବେଛପରି ଶବ୍ଦଟି ସାଧାରଣତଃ ଗାଁଗହଳିରେ କୁହାଯାଉଥିବାର ଦେଖାଯାଏ । ମାନେ ଯାହାର ଘର ନଥିବ ତାଙ୍କୁ ବେଛପରି ଲୋକ ବୋଲି ଗାଁଗହଳିରେ ଲୋକମାନେ କହିଥା'ନ୍ତି । ବିଧାୟକମାନେ ସାଧାରଣତଃ ଗୋଟିଏ ନିର୍ବାଚନମଣ୍ଡଳୀକୁ ପ୍ରତିନିଧିତ୍ୱ କରିଥା'ନ୍ତି । ସେହି ନିର୍ବାଚନମଣ୍ଡଳୀର ଉନ୍ନୟନ, ବିକାଶ ସମେତ ଲୋକଙ୍କ ସୁଖସୁବିଧା ସେମାନେ ବୁଝିଥା'ନ୍ତି । ତେଣୁ ବିଧାୟକମାନଙ୍କୁ ବେଛପରି ବୋଲି କୁହାଯାଇପାରିବ ନାହିଁ । ସେଦିନ କିନ୍ତୁ ଅଶୋକ ପଣ୍ଡା ହଠାତ୍ ବେଛପରି ବିଧାୟକ ବୋଲି କହୁଥିଲେ । ସେ ଏକଥା ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳର ବରିଷ୍ଠ ତଥା ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଏବଂ ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ରଙ୍କ ଆଗରେ ବଖାଣି ଥିଲେ । ଅଶୋକ ଭୁବନେଶ୍ୱରର ଯେଉଁ ତିନି ବିଧାୟକ ଅଛନ୍ତି ସେମାନେ ସମସ୍ତେ ବେଛପରି ବୋଲି କହିଲେ । ମାନେ ତାଙ୍କ ନିର୍ବାଚନମଣ୍ଡଳୀ ଉପରେ ସେମାନଙ୍କ କିଛି କ୍ଷମତା ନାହିଁ । ଏମିତି ଯେକୌଣସି ନିର୍ବାଚନମଣ୍ଡଳୀରେ କଲେଜଟିଏ ଥିଲେ ତାହାର ଅଧକ୍ଷ ଓ ଅଧ୍ୟାପକ କିଏ ହେବେ ସେ ନେଇ ବିଧାୟକଙ୍କର ପରାମର୍ଶ ନିଆଯାଇଥାଏ । ସେହିପରି ତହସିଲଦାର ହୁଅନ୍ତୁ କି ବିଡିଓ ହୁଅନ୍ତୁ କିମ୍ବା ଅନ୍ୟ ଯେଉଁ କାର୍ଯ୍ୟାଳୟର ମୁଖ୍ୟ ହୁଅନ୍ତୁ ସେ କ୍ଷେତ୍ରରେ ସଂପୃକ୍ତ ନିର୍ବାଚନମଣ୍ଡଳୀର ବିଧାୟକଙ୍କ ମତ ପ୍ରତି ଗୁରୁତ୍ୱ ଦିଆଯାଇଥାଏ । କିନ୍ତୁ ଭୁବନେଶ୍ୱରରେ ବିଚିତ୍ର ପରିସ୍ଥିତି । ଏଠାରେ ବିଧାୟକଙ୍କ ମତକୁ ସରକାର ଗୁରୁତ୍ୱ ଦିଅନ୍ତି ନାହିଁ । ଭୁବନେଶ୍ୱରରେ ଯେଉଁମାନେ ବିଧାୟକ ଅଛନ୍ତି ସତେ ଯେମିତି ସେମାନେ ନାମକୁ ମାତ୍ର । ଭୁବନେଶ୍ୱରର ଏହି ତିନୋଟି ନିର୍ବାଚନମଣ୍ଡଳୀ ଉପରେ ସବୁ ନେତା ଜବରଦଖଲ କରୁଛନ୍ତି । ଏହା ଫଳରେ ସ୍ଥାନୀୟ ବିଧାୟକମାନେ ଅସୁବିଧାରେ ପଡୁଛନ୍ତି । ଏ କ୍ଷେତ୍ରରେ କିଛି ଗୋଟିଏ ନୀତି ନିର୍ଦ୍ଧାରଣ କରାଯିବା ପାଇଁ ଅଶୋକ ପ୍ରସ୍ତାବ ଦେଲେ । ନଚେତ୍ ଭୁବନେଶ୍ୱରର ବିଧାୟକଙ୍କୁ ବେଛପରି ବିଧାୟକ ଭାବେ ସରକାର ନାମିତ କରନ୍ତୁ ବୋଲି ଅଶୋକ କହିଲେ । ଏମିତି ଦେଖିଲେ ଭୁବନେଶ୍ୱରର ତିନି ବିଧାୟକଙ୍କ ନିର୍ବାଚନମଣ୍ଡଳୀର ସମସ୍ୟା ଗୋଟିଏ । ଯେଉଁଥିପାଇଁ ତିନି ବିଧାୟକମାନେ ଯେକୌଣସି କାମ ପାଇଁ ଏକାଠି ହୋଇଯାଉଥିବାର ଦେଖାଯାଉଛି । ତେବେ ବେଛପରି ବିଧାୟକ ଯେ ସେମାନେ ଅଟନ୍ତି ଏହା ବୋଧହୁଏ ସେମାନଙ୍କର ଧାରଣା ନଥିଲା । ନଚେତ୍ ସେମାନେ ଭୁବନେଶ୍ୱର ଛାଡ଼ି ଅନ୍ୟ ନିର୍ବାଚନମଣ୍ଡଳୀ ପ୍ରତି ଆଗ୍ରହୀ ହୋଇଥା'ନ୍ତେ । ଭୁବନେଶ୍ୱରର ବିଧାୟକ ହେଲେ ଖୁସ୍ ଅପେକ୍ଷା ଗମ୍ ଯେ ଅଧିକ ଏହା ଏହି ତିନି ବିଧାୟକମାନେ ଜାଣିଗଲେ ଆଉ ନିଜକୁ ବେଛପରି ବିଧାୟକ ବୋଲି କହିବେ ନାହିଁ । ■

# ଭାଗିରଥୀ ହେବେ ଚଳଚ୍ଚିତ୍ର ପ୍ରଯୋଜକ



୨୦୦୯ ନିର୍ବାଚନରେ ବିଜୟୀ ହୋଇଥିବା ବିଧାୟକମାନଙ୍କ ମଧ୍ୟରେ କେତେକଙ୍କର ଚେହେରା ବେଶ୍ ଡଉଲଡାଉଲ ଅଟେ । ଯଦିଓ ଉତ୍ତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନାଙ୍କ ବୟସ ଅଧିକ ହୋଇଗଲାଣି ତେବେ ସେ ତାଙ୍କର ଯୁବକ ସମୟର ଫଟୋକୁ ଅନ୍ୟମାନଙ୍କୁ ବେଳେବେଳେ ଦେଖାନ୍ତି । ସେତେବେଳେ ସେ ବେଶ୍ ଡଉଲଡାଉଲ ଥିଲେ । ଏବେବି ଭାଗିରଥୀଙ୍କ ଚେହେରା ମଳିନ ପଡ଼ିଯାଇନାହିଁ । ଅନେକ ସମୟରେ ଚଳଚ୍ଚିତ୍ରରେ ଅଭିନୟ କରିବା ପାଇଁ ତାଙ୍କୁ ମଧ୍ୟ ଅଫର ମିଳିଥାଏ । ଯଦିଓ ଚଳଚ୍ଚିତ୍ରରେ ଅଭିନୟ କରିବା ପାଇଁ ଭାଗିରଥୀଙ୍କ ମନ କୁତୁକୁତୁ ହେଉଥାଏ କିନ୍ତୁ ସକ୍ରିୟ ରାଜନୀତିରେ ଥିବାରୁ ସେ ଏଥିରୁ ଦୂରେଇ ରହନ୍ତି । ତେବେ ଚଳଚ୍ଚିତ୍ର ପ୍ରତି ତାଙ୍କର ଦୁର୍ବଳତା ଥିବାର ଜଣାପଡ଼ିଲା ଯେଉଁଦିନ ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ପେଡ଼ି ଖୋଲିଦେଲେ । ପ୍ରଫୁଲ୍ଲ କହୁକହୁ କହିଦେଲେ ଏଥର ଭାଗିରଥୀ ସିନେମା କରିବେ । ତେଣୁ ଆଉ ବିଳମ୍ବ କାହିଁକି । ପ୍ରଫୁଲ୍ଲଙ୍କ ଏହି କଥା ସେଠାରେ ଥିବା କିଛି ଲୋକଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ପ୍ରଫୁଲ୍ଲଙ୍କର ଏହି କଥାକୁ ଖଣ୍ଡନ ନକରି ଭାଗିରଥୀଙ୍କ ମୁହଁରେ ମୁଚୁକୁନ୍ଦି ହସ ଲାଗି ରହିଥିଲା । ଏଥିରୁ ସ୍ପଷ୍ଟ ହେଉଥିଲା ଯେ, ଭାଗିରଥୀ ଚଳଚ୍ଚିତ୍ର ପ୍ରଯୋଜକ ହେବାକୁ ଯାଉଛନ୍ତି ବୋଲି । ଏହି ସମୟରେ ସେଠାରେ ବସିଥିବା ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ସଙ୍ଗେସଙ୍ଗେ କହିଲେ- ଭଲ ହେଲା । ଭାଗିରଥୀବାବୁ ଆପଣଙ୍କୁ ମୋର ଗୋଟିଏ ଅନୁରୋଧ । ସିନେମା ଯେତେବେଳେ କରିବେ ସେତେବେଳେ ଆପଣଙ୍କର ସେହି ସିନେମାରେ ମୋତେ ରୋଲ୍‌ଟିଏ ଦେବେ । ଏହି ସମୟରେ ଭାଗିରଥୀ କହିଲେ- ମୂଳରୁ ମାଇପ ନାହିଁ ପୁଅ ନାଁ ଗୋପାଳିଆ । ସିନେମା ପ୍ରଯୋଜନା ପ୍ରସଙ୍ଗ ମୋ ମୁଣ୍ଡକୁ ଛୁଇଁନାହିଁ । ତେଣୁ ରୋଲ୍ କିଏ କରିବ ସେ ପ୍ରସଙ୍ଗ ଆସୁଛି କେଉଁଠୁ । ଏହି ସମୟରେ ପ୍ରଫୁଲ୍ଲ ଘଡ଼ାଇ କହିଲେ- ମୋ ପାଖରେ ତଥ୍ୟ ନଥିଲେ ମୁଁ ଏ କଥା କହି ନଥା'ନ୍ତି । ତୁମକୁ ଜାଣିବାକୁ ହେବ ଯେ, ମୁଁ ହେଉଛି ଅର୍ଥମନ୍ତ୍ରୀ । ସିନେମା ପ୍ରଯୋଜନା କରିବାକୁ ହେଲେ ଋଣ ନେବାକୁ ହୋଇଥାଏ । ତେଣୁ ଅର୍ଥମନ୍ତ୍ରୀ ଭାବେ ମୁଁ ଜାଣିସାରିଲିଣି ତୁମେ ସିନେମା କରିବାକୁ ଯାଉଛ ବୋଲି ଆଉ ମିଛକଥା କୁହନାହିଁ । ସଙ୍ଗେସଙ୍ଗେ ସୂର୍ଯ୍ୟନାରାୟଣ ପାତ୍ର କହିଲେ- ଅର୍ଥମନ୍ତ୍ରୀଙ୍କ କଥା ଆମ ସରକାରରେ ବେଦବାକ୍ୟ । ସେ ଯାହା କହନ୍ତି ସବୁ ସତ ଆଉ ମୁଁ ତ ତାଙ୍କର କଥାକୁ କେବଳ ସତ ନୁହେଁ ଖାଂଟି ସତ ବୋଲି ଧରିନିଏ । ଆଉ କିଛି କୁହନାହିଁ । ସିଧାସଳଖ କୁହ ମୋତେ ସିନେମାରେ ରୋଲ୍‌ଟିଏ ମିଳିବ କି ନାହିଁ । ଭାଗିରଥୀ ଆଉ କିଛି କହିଲେ ନାହିଁ । ମୁଣ୍ଡରେ ହାତ ମାରିଦେଇ କହିଲେ- କଥାରେ ଅଛି ତିନି ତୁଣ୍ଡରେ ଛେଳି, କୁକୁର ଆଉ ମୁଁ ବା କିଏ । ଏବେ ଏହା ମୋ ପାଇଁ

ଲାଗୁ ହୋଇଗଲାଣି । ହଉ ହେଲା ମୁଁ ସିନେମା ପ୍ରଯୋଜକ ହେବି । ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ କହିଲେ- କେବେ ସିନେମା କରିବ କୁହ । ସୂର୍ଯ୍ୟନାରାୟଣ ପାତ୍ର କହିଲେ- ମୋତେ ଆଗରୁ କହିବ । ମୁଁ ସେହି ଅନୁସାରେ ରୋଲ୍ କରିବା ପାଇଁ ପ୍ରସ୍ତୁତ ହେବି । ଭାଗିରଥୀ କହିଲେ- ହଉ ହେଲା । ମୁଁ ସିନେମା କଲି । ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଋଣ ଦେଲେ ଆଉ ରାଜସ୍ୱ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ରୋଲ୍ କଲେ । ଏହାପରେ ସେଠାରେ ଉପସ୍ଥିତ ଲୋକମାନେ ହୋ ହୋ ହୋଇ ହସି ଉଠିଥିଲେ । ■

## ମୁଁ ଯଦି ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତି



ଏମିତି ଅନେକ ନେତା ଅଛନ୍ତି ସେମାନେ କେବେବି ମୁଖ୍ୟମନ୍ତ୍ରୀ ହେବେ ବୋଲି ସ୍ୱପ୍ନ ବି ଦେଖି ନଥା'ନ୍ତି । ସେହିପରି ଅନେକ ନେତା ବି ଅଛନ୍ତି ନିଜେ ଜାଣିଛନ୍ତି ଯେ ମୁଖ୍ୟମନ୍ତ୍ରୀ ହେବେନାହିଁ ବୋଲି କିନ୍ତୁ ବେଳେବେଳେ ଯଦି ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତେ ତେବେ ଏହିସବୁ କାମ କରିଥା'ନ୍ତେ ବୋଲି କହିବାକୁ ପଛାନ୍ତି ନାହିଁ । ସେମିତି ଜଣେ ନେତା ହେଲେ ରୁଦ୍ରମାଧବ ରାୟ । କଂଗ୍ରେସ ବିରୋଧରେ ଦଶପଲାରେ ରାଜନୀତି ଆରମ୍ଭ କରିଥିବା ରୁଦ୍ର ବହୁଦିନ ପରେ ୧୯୯୦ ମସିହାରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳରୁ ପ୍ରାର୍ଥୀ ହୋଇ ଦଶପଲାର ବିଧାୟକ ହୋଇଥିଲେ । ୧୯୯୫ରେ ବି ସେ ବିଧାୟକ ଭାବେ ପୁଣି ନିର୍ବାଚିତ ହେଲେ । କିନ୍ତୁ ବିଧାୟକ ପଦବୀ ଛାଡ଼ି ସେ ଜିଲା ପରିଷଦ ସଭ୍ୟ ଭାବେ ନିର୍ବାଚନ ଲଢ଼ିଲେ ଏବଂ ନୟାଗଡ଼ ଜିଲା ପରିଷଦର ପ୍ରଥମ ସଭାପତି ହେଲେ । ୨୦୦୪ ନିର୍ବାଚନରେ ରୁଦ୍ର ସାଧୀନ ପ୍ରାର୍ଥୀ ହୋଇ ବିଜୟୀ ହେଲେ ଆଉ ପରବର୍ତ୍ତୀ ସମୟରେ ସେ ବିଜେଡିର ସହଯୋଗୀ ବିଧାୟକ ହେଲେ । ୨୦୦୯ ବେଳକୁ ଦଶପଲା ସୀମା ପୁନଃନିର୍ଦ୍ଧାରଣରେ ସଂରକ୍ଷିତ ହୋଇଗଲା । ଏହା ଫଳରେ ରୁଦ୍ରଙ୍କ ଭବିଷ୍ୟତ ଅନ୍ଧକାର ଆଡ଼କୁ ଠେଲି ହୋଇଗଲା । କିନ୍ତୁ ବିଜେଡିର ଦ୍ୱିତୀୟ କ୍ଷମତା କେନ୍ଦ୍ର ବୋଲି କୁହାଯାଉଥିବା ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ଗୁଡ୍‌ବୁକ୍‌ରେ ରହିଥିଲେ ରୁଦ୍ର । ସେଥିପାଇଁ ବିଜେଡିରୁ ତାଙ୍କୁ କନ୍ଧମାଳ ଲୋକସଭା ଆସନରୁ ପ୍ରାର୍ଥୀ କରାଗଲା ଆଉ ରୁଦ୍ର ଏହି ନିର୍ବାଚନରେ ବିଜୟୀ ହେଲେ । ଏମିତି ରାଜନୀତି ମହଲରେ ରୁଦ୍ରଙ୍କ ସମ୍ପର୍କରେ ଆଲୋଚନା ହେଲେ ତାଙ୍କୁ ଜଣେ ଭାଗ୍ୟବାନ ନେତା ବୋଲି ଗଣନା କରାଯାଏ । ସେ ଦିନ ରୁଦ୍ର ଉଚ୍ଚଶିକ୍ଷା, ପର୍ଯ୍ୟଟନ, ସଂସ୍କୃତି ମନ୍ତ୍ରୀ ଦେବୀପ୍ରସାଦ ମିଶ୍ରଙ୍କ ଘରକୁ ଯାଇଥିଲେ । ତାଙ୍କ ଲୋକସଭା ନିର୍ବାଚନମଣ୍ଡଳୀର ତୁମୁଡ଼ିବନ୍ଧ ଠାରେ ଆୟୋଜନ ହେଉଥିବା ମହୋତ୍ସବରେ ଦେବୀଙ୍କୁ ମୁଖ୍ୟ ଅତିଥି ଭାବେ ନିମନ୍ତ୍ରଣ କରିବାକୁ ଯାଇଥିଲେ । ଦେବୀ କିନ୍ତୁ ସେହିଦିନ ଦିଲ୍ଲୀ ଯାଉଥିବାରୁ ସେ ସେହି ଉତ୍ସବକୁ ଯାଇପାରିବେ ନାହିଁ ବୋଲି ସୂଚାଇ ଦେଇଥିଲେ । ସେହି ସମୟରେ ବହୁ ନେତାଙ୍କର ସେଠାରେ ସମାଗମ ହୋଇଥିଲା

ଆଉ ରୁଦ୍ରଙ୍କ ସହିତ ସେମାନଙ୍କର ଆଳାପ ବି ହୋଇଥିଲା । ହଠାତ୍ କହୁକହୁ ରୁଦ୍ର ଏମିତି ଏକ ପ୍ରସଙ୍ଗ ସମ୍ପର୍କରେ କହିଲେ ଯେ, ଯାହାକୁ ନେଇ ସମସ୍ତେ ଚକିତ ହୋଇରହିଲେ । ରୁଦ୍ର କହିଲେ- ଯଦି ସେ ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତେ ତେବେ ଦେବୀ ମିଶ୍ରଙ୍କୁ ବିଭାଗବିହୀନ ମନ୍ତ୍ରୀ କରିଥା'ନ୍ତେ । ରୁଦ୍ରଙ୍କର ଏହି ବାଣୀ ଶୁଣି ସେଠାରେ ଥିବା ଦେବୀଙ୍କର କେତେକ ସମର୍ଥକଙ୍କ ମୁହଁ ଶୁଖି ଯାଇଥିଲା । ଏହା ଭଲ ଭାବେ ହୃଦୟଙ୍ଗମ କଲେ ରୁଦ୍ର । ରୁଦ୍ର କହିଲେ- ମୁଁ ମୋର କଥା ଶେଷ କରିନାହିଁ । ଆପଣମାନେ ଧୈର୍ଯ୍ୟ ଧରି ଶୁଣନ୍ତୁ । ତା'ପରେ ରୁଦ୍ର କହିଲେ- ମୁଁ ମୁଖ୍ୟମନ୍ତ୍ରୀ ହୋଇଥିଲେ ଦେବୀ ମିଶ୍ରଙ୍କୁ ବିଭାଗବିହୀନ ମନ୍ତ୍ରୀ କରି ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ ସହିତ ତାଙ୍କୁ ସଂପୃକ୍ତ ରଖିଥା'ନ୍ତି । ତାଙ୍କୁ ଗୁରୁ ଦାୟିତ୍ୱ ଦେଇଥା'ନ୍ତି । ସବୁ ଗଠନମୂଳକ କାମ ତାଙ୍କରି ଦ୍ୱାରା ହୋଇଥା'ନ୍ତା । ମାନେ ସେ ହୋଇଥା'ନ୍ତେ ସବୁ ବିଭାଗର ମନ୍ତ୍ରୀ କିନ୍ତୁ ତାଙ୍କର ବିଭାଗ ନଥା'ନ୍ତା । ରୁଦ୍ରଙ୍କର ଏହି କଥାକୁ ନେଇ ସେଠାରେ ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ରୁଦ୍ର କହିଲେ- ହସିବାର କିଛି ନାହିଁ । ଦେବୀଙ୍କୁ ସେ ହାଡ଼େହାଡ଼େ ଜାଣିଛନ୍ତି । ତାଙ୍କ ପାଇଁ କୌଣସି କାମ କଠିନ ନୁହେଁ । ରାଜ୍ୟର ବିକାଶ ପାଇଁ କ'ଣ ଦରକାର ସେ ଦାୟିତ୍ୱ ଦେବୀଙ୍କୁ ଦେଇଦେଲେ ସେ ରାଜ୍ୟର ବିକାଶ ଦିଗରେ ନିଜକୁ ସମର୍ପି ଦେବେ । ଦିନରାତି ମଧ୍ୟ ପରିଶ୍ରମ କରିବେ । ଏବେ ବି ସେ ସେମିତି ପରିଶ୍ରମ କରୁଛନ୍ତି । କାଳେ ରୁଦ୍ରଙ୍କର କଥା ଦେବୀଙ୍କର ମନକୁ ପାଇବ ନାହିଁ ତେଣୁ ରୁଦ୍ର ମଧ୍ୟ ଦେବୀଙ୍କୁ ଏ ସମ୍ପର୍କରେ ପଚାରି ବୁଝିଲେ । ଆଉ ସେ ଯାହା କହୁଛନ୍ତି ସତ ନୁହେଁ କି ବୋଲି କହିବାରୁ ଦେବୀ କିନ୍ତୁ କୌଣସି ଉତର ନଦେଇ ମୁରୁକୁନ୍ଦି ହସ ହସିଲେ । ଏତିକିରେ ରୁଦ୍ରଙ୍କର ହସ ଦେଖେ କିଏ । ଆଉ ରୁଦ୍ରଙ୍କ ସହିତ ସେଠାରେ ଥିବା ସମସ୍ତେ ହସିବାରେ ଲାଗିଲେ । ■

## ଦୁଇ ପ୍ରଭାତଙ୍କ ମଝିରେ...





କଟକ ସହରର ଦୁଇପଟେ ବୋହି ଯାଇଛି ମହାନଦୀ ଓ କାଠଯୋଡ଼ି ନଦୀ । ଏହି ଦୁଇ ନଦୀକୁ ନେଇ ଦୁଇଜଣ ବିଧାୟକଙ୍କ ମଧ୍ୟରେ ଚାଲିଛି ପ୍ରତିଯୋଗିତା । ଜଣେ ହେଲେ ବାଙ୍କୀ ବିଜେଡି ବିଧାୟକ ପ୍ରଭାତ ତ୍ରିପାଠୀ ଏବଂ ଅନ୍ୟ ଜଣେ ହେଲେ ଚୌଦ୍ୱାର-କଟକ ବିଧାୟକ ପ୍ରଭାତ ବିଶ୍ୱାଳ । ଉଭୟେ ଏକାଧିକବାର ବିଧାୟକ ହେଲେଣି । ଉଭୟଙ୍କର ସଂଗଠନ ମଧ୍ୟ ବେଶ୍ ସୁଦୃଢ଼ । ଉଭୟେ କଟକରେ ରହନ୍ତି । ନିକଟରେ ଏକ ସମୟରେ ଦୁଇଟି ମହୋତ୍ସବ ହୋଇଥିଲା । ଗୋଟିଏ ହେଲା ମହାନଦୀ ମହୋତ୍ସବ ଏବଂ ଅନ୍ୟଟି ହେଲା କାଠଯୋଡ଼ି ମହୋତ୍ସବ । ମହାନଦୀ ମହୋତ୍ସବର ଆୟୋଜକ ଥିଲେ ଚୌଦ୍ୱାର-କଟକ ବିଧାୟକ ପ୍ରଭାତ ବିଶ୍ୱାଳ । କାଠଯୋଡ଼ି ମହୋତ୍ସବର ଆୟୋଜକ ଥିଲେ ବାଙ୍କୀ ବିଧାୟକ ପ୍ରଭାତ ତ୍ରିପାଠୀ । ଉଭୟ ମହୋତ୍ସବ ବେଶ୍

ଜାକଜକମରେ ଶେଷ ହୋଇଥିଲା । ଏମିତି କଟକ ହେଉଛି ସଂସ୍କୃତିର ପ୍ରାଣକେନ୍ଦ୍ର । ଏଠାରେ ସାଂସ୍କୃତିକ ଉତ୍ସବ ହେଲେ ରାତିସାରା ସହର ଜନାରଣ୍ୟ ହୋଇଯାଏ । କଟକବାସିନ୍ଦାଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ବେଶ୍ ଆଗ୍ରହ ରହିଛି । ଉଭୟ ପ୍ରଭାତ ତ୍ରିପାଠୀ ଓ ପ୍ରଭାତ ବିଶ୍ୱାଳ ଏହାକୁ ବେଶ୍ ଭଲ ଭାବେ ହୃଦୟଙ୍ଗମ କରିଛନ୍ତି । ଯେଉଁଥିପାଇଁ ଏକ ସମୟରେ କାଠଯୋଡ଼ି ଆଉ ମହାନଦୀ ମହୋତ୍ସବର ଆୟୋଜନ ହୋଇଥିଲା । ଅବଶ୍ୟ ଉଭୟ ବିଜେଡି ବିଧାୟକଙ୍କର ଏଭଳି ଆଗ୍ରହ କଟକର ପୁରୁଖା ବିଜେଡି ନେତା ମଧୁ ସାହୁଙ୍କୁ ଆକୃଷ୍ଟ କରିଥିଲା । ଯେଉଁଥିପାଇଁ ସେ ମଧ୍ୟ ସାଂସ୍କୃତିକ ଉତ୍ସବ କରିବା ପାଇଁ ଆଗ୍ରହୀ ହୋଇଥିଲେ । ଏହି ଦୁଇ ବିଧାୟକଙ୍କର ମହୋତ୍ସବ ଶେଷ ହେବାମାତ୍ରେ ସେ ଆଉ ଏକ ମହୋତ୍ସବର ଆୟୋଜନ କଲେ । ମାନିବାକୁ ପଡ଼ିବ କଟକର ବିଜେଡି ନେତାଙ୍କୁ । ସେମାନେ କଟକବାସିନ୍ଦାଙ୍କର ନାଡ଼ି ଚିପି ଜାଣିଯାଇଛନ୍ତି ଯେ, ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ହେଲେ ସେମାନେ ତାହାକୁ ଉପଭୋଗ କରିବେ ହିଁ କରିବେ । ସଂସ୍କୃତି ପ୍ରିୟ କଟକବାସିନ୍ଦାଙ୍କ ପାଇଁ କଟକର ବିଜେଡି ନେତାମାନେ ଯେଭଳି ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରୁଛନ୍ତି ତାହା ପ୍ରଶଂସନୀୟ ଅଟେ । ଆମର ଅନୁରୋଧ କଟକରେ ରହୁଥିବା ସବୁ ବିଧାୟକ ଓ ସାଂସଦମାନେ ଗୋଟିଏ ଗୋଟିଏ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରନ୍ତୁ । ଏହା ହେଲେ ଯାଇ ସେମାନେ କଟକର ଟେକ ରଖିବେ । ■

## ଦାମ ଖୁସ୍ ତଥାପି...

କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ ଏବେ ବେଶ୍ ଖୁସ୍ । ଏମିତି ପ୍ୟାରୀମୋହନ ମହାପାତ୍ରଙ୍କ ବିରୋଧରେ ସେ ସମୟେ ସମୟେ ଟେଙ୍ଗ ବାଣ ଛାଡ଼ି ଦେଇଥା'ନ୍ତି । ଆଉ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ସେ ଗୋଟାପଣ ବୋଲି ମଧ୍ୟ କହିବାକୁ ପଛାନ୍ତିନାହିଁ । ଅନେକ ଭାବିଥା'ନ୍ତି ଯେ ପ୍ୟାରୀମୋହନ ମହାପାତ୍ରଙ୍କ ବିରୋଧରେ ମନ୍ତବ୍ୟ ଦେଇ ଦାମଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିବ । ଏହା ଯେ ଦାମ ଜାଣନ୍ତି ନାହିଁ ତାହା ନୁହେଁ । ଅତୀତରେ ମଧ୍ୟ ତାଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିଛି । ତେବେ ଧୋତିପିନ୍ଧା ରାଜନୀତିରେ ଅଭ୍ୟସ୍ତ ହୋଇଯାଇଥିବା ଦାମୋଦରଙ୍କୁ ବେଳେବେଳେ ବିଜେଡି ରାଜନୀତିରେ ଅଣନିଶ୍ୱାସୀ ହେବାକୁ ପଡ଼ିଥାଏ । କେତେବେଳେ ସେ ପ୍ୟାରୀମୋହନ ମହାପାତ୍ରଙ୍କୁ ସମାଲୋଚନା କଲେଣି ତ କେତେବେଳେ ସେ ଅତନୁ ସବ୍ୟସାଚୀ ନାୟକଙ୍କୁ ତ କେତେବେଳେ ସଂଜୟ ଦାସବର୍ମାଙ୍କୁ ତ ଆଉ କେତେବେଳେ ଅରୁଣ ସାହୁଙ୍କୁ ସେ ସମାଲୋଚନା କରିବାକୁ ପଛାଇନାହାନ୍ତି । ଗୋଟିଏ ସମୟରେ ଦାମୋଦର ରାଉତ ଏବଂ ପ୍ରଫୁଲ ଚନ୍ଦ୍ର ଘଡ଼ାଇ ଏକାଠି ଥିଲେ । ଦାମୋଦର ଯେତେବେଳେ ବିଜେଡିର ମହାସଚିବ ଥିଲେ ସେତେବେଳେ ପ୍ରଫୁଲ ଘଡ଼ାଇ ବିଜେଡିର ଉପସଭାପତି ଥିଲେ । ଦୁହିଁଙ୍କ ମଧ୍ୟରେ ବେଶ୍ ଘନିଷ୍ଠତା ଥିଲା । କିନ୍ତୁ ସମୟ ଆସିଲା ଉଭୟଙ୍କ ମଧ୍ୟରେ

ଆଉ ସେ ସମ୍ପର୍କ ରହିଲା ନାହିଁ । ଦାମୋଦର ଯେତେବେଳେ ମନ୍ତ୍ରୀ ପଦ ହରାଇଲେ ସେତେବେଳେ କୁଆଡ଼େ ସେ ସମସ୍ତଙ୍କୁ ଚିହ୍ନି ଯାଇଥିଲେ । ଏବେ ଦାମୋଦର ମନ୍ତ୍ରୀ ଅଛନ୍ତି କିନ୍ତୁ ବିଜେଡିର ମହାସଚିବ ପଦବୀଟି ତାଙ୍କ ପାଖରେ ନାହିଁ । ମହାସଚିବ ପଦବୀଟି ଚାଲିଯିବାରୁ ସେ ଭାରି କ୍ଷୁବ୍ଧ ହୋଇଯାଇଥିଲେ ପ୍ୟାରୀମୋହନଙ୍କ ଉପରେ । ଅନେକ ମଧ ଦାମୋଦରଙ୍କୁ ସୂଚାଇ ଦେଇଥିଲେ ଯେ, ପ୍ୟାରୀମୋହନଙ୍କ ବିରୋଧରେ ମନ୍ତବ୍ୟ ଦେଲେ ଦାମଙ୍କୁ ମନ୍ତ୍ରୀ ପଦ ହରାଇବାକୁ ପଡ଼ିପାରେ । ଏହାସତ୍ତ୍ୱେ ଦାମୋଦର ପ୍ୟାରୀମୋହନଙ୍କ ବିରୋଧରେ ମନ୍ତବ୍ୟ ଦେବାକୁ ପଛାଉ ନଥିଲେ । ଦାମଙ୍କର ଯୁକ୍ତି ଥିଲା ମନ୍ତ୍ରୀ ପଦ ଚାଲିଯାଇପାରେ । ମନ୍ତ୍ରୀ ପଦ କାହା ପାଇଁ ସ୍ଥାୟୀ ନୁହେଁ । କିନ୍ତୁ ୫ ବର୍ଷ ପାଇଁ ବିଧାୟକ ହୋଇ ସେ ନିଶ୍ଚିତ ରହିବେ । ଏଥିରୁ କେହି ତାଙ୍କୁ ହଟାଇପାରିବେ ନାହିଁ । ଦାମ ମନ୍ତ୍ରୀ ପଦ ପାଇ ଯେତିକି ଖୁସ୍ ନଥିଲେ ତା'ଠାରୁ ଅଧିକ ଖୁସ୍ ହୋଇଛନ୍ତି ପୋସ୍କୋ ସମ୍ପର୍କରେ ବୈଠକ ଡକାଯାଇଥିବା ବେଳେ ତାଙ୍କୁ ସେହି ବୈଠକକୁ ନିମନ୍ତ୍ରଣ କରାଯାଇଥିବାରୁ । ଏମିତି ତାଙ୍କ ନିର୍ବାଚନମଣ୍ଡଳୀରେ ପୋସ୍କୋ କାରଖାନା ସ୍ଥାପନ କରିବାକୁ ଯାଉଥିବା ବେଳେ ଯେତେସବୁ ବୈଠକ ଡକାଯାଉଥିଲା ସେଥିରେ ତାଙ୍କୁ ସାମିଲ କରାଯାଉ ନଥିଲା । ଏବେ ଦାମଙ୍କୁ ବୈଠକକୁ ଡକାଯିବା ପରେ ଆଉ ଦାମଙ୍କର ପୂର୍ବପରି ଅଭିମାନ ନାହିଁ । ଏମିତି ଦାମ କୁଆଡ଼େ ମନ୍ତବ୍ୟ ଦେଉଥିଲେ ଯେ, ତାଙ୍କୁ ଛାଡ଼ିଦେଇ ତାଙ୍କ ନିର୍ବାଚନମଣ୍ଡଳୀରେ ପୋସ୍କୋ କାରଖାନା ବସାଇପାରିବ ନାହିଁ । ଏବେ ଦାମଙ୍କୁ ବୈଠକକୁ ଡକାଯିବା ପରେ ଦାମ ଖୁସ୍ ଅଛନ୍ତି । କିନ୍ତୁ ପୋସ୍କୋ କାରଖାନା ପ୍ରତିଷ୍ଠା କରିପାରୁଛି ନା ନାହିଁ ତାହା ମଧ ଏଯାବତ୍ ନିଶ୍ଚିତ ହୋଇପାରିନାହିଁ । ଦେଖାଯାଉ ଦାମଙ୍କ ଖୁସ୍ କେତେଦୂର କାମ ଦେଉଛି । ■

## ଜାନକୀ ବୁଲାଇବେ ଖଣ୍ଡା



ଅନେକ ଭାବୁଥିବେ ଜାନକୀ ବଲ୍ଲଭ ପଟ୍ଟନାୟକ କାୟସ୍ଥ ହୋଇଥିବାରୁ ଖଣ୍ଡା ବୁଲାଇବା ଜାଣି ନଥିବେ ବୋଲି । ଯେହେତୁ ଖଣ୍ଡା ବୁଲାଇବା ଖଣ୍ଡାୟତଙ୍କର କାମ ତେଣୁ ଜାନକୀ ବଲ୍ଲଭ ପଟ୍ଟନାୟକ କାୟସ୍ଥ ହୋଇଥିବାରୁ ଖଣ୍ଡା ବୁଲାଇବା ଜାଣି ନଥିବା ବୋଲି ଭାବିବା ମଧ ସ୍ୱାଭାବିକ ଅଟେ । ଏମିତି ତ ଜାନକୀ ବଲ୍ଲଭ ଏବେ ଆସାମର ରାଜ୍ୟପାଳ । ପୂର୍ବରୁ କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଓଡ଼ିଶା ବିଧାନସଭାର ବିରୋଧୀ ଦଳ ନେତା ପ୍ରଭୃତି ବହୁ ପଦବୀରେ ସେ ରହିଆସିଛନ୍ତି । କିନ୍ତୁ ଖଣ୍ଡା ବୁଲାଇବା ପାଇଁ କେବେବି ସେ ଇଚ୍ଛା ପ୍ରକାଶ କରୁ ନଥିଲେ । ଏବେ ଆସାମର ରାଜ୍ୟପାଳ ହୋଇଯିବା ପରେ କୁଆଡ଼େ ଖଣ୍ଡା ବୁଲାଇବା ପାଇଁ ଜାନକୀ ବଲ୍ଲଭ ଅଧିକ ଆଗ୍ରହୀ ହୋଇଯାଇଛନ୍ତି । ଅନେକ ଭାବିପାରନ୍ତି ୮୬ ବର୍ଷରେ ପହଂଚିଥିବା ଜାନକୀ ବଲ୍ଲଭ ପଟ୍ଟନାୟକ ଖଣ୍ଡା ବୁଲାଇବା ପାଇଁ ଆଗ୍ରହୀ କାହିଁକି ହେଉଛନ୍ତି । ଏହି ବୟସରେ

ସାଧାରଣତଃ ଖଣ୍ଡା କେହି ବୁଲାଇ ନଥା'ନ୍ତି । ଆସାମର ରାଜ୍ୟପାଳ ହୋଇଯିବା ପରେ ଜାନକୀ ବଲ୍ଲଭ ପଟ୍ଟନାୟକ କେଉଁଠି ଆସାମୀ ଭାଷାରେ ଭାଷଣ ଦେଲେଣି ତ କେଉଁଠି ଓଡ଼ିଆରେ ଭାଷଣ ଦେଲେଣି । ପୁଣି କେଉଁଠି ସଂସ୍କୃତରେ ଭାଷଣ ଦେଲେଣି ତ କେଉଁଠି ଇଂରାଜୀ କିମ୍ବା ହିନ୍ଦୀରେ ଭାଷଣ ଦେଲେଣି । କେଉଁ ସଭାରେ ତାଙ୍କ ବେକରେ ଫୁଲମାଳ ପଡ଼ିଲାଣି ତ କେଉଁ ସଭାରେ ତାଙ୍କ ହାତରେ ଖଣ୍ଡା ଧରାଇ ଦିଆଗଲାଣି । ଏମିତି ଯଦିଓ ଜାନକୀ ବଲ୍ଲଭ ୮୦ ବର୍ଷ ଟପିଗଲେଣି କିନ୍ତୁ ତାଙ୍କ ଚେହେରାକୁ ଦେଖିଲେ କେହି କହିପାରିବେ ନାହିଁ ଯେ, ତାଙ୍କର ବୟସ ୬୦କୁ ଟପିଯାଇଛି ବୋଲି । ଚେହେରାକୁ ସତେଜ ରଖିବାରେ ଜାନକୀ ବଲ୍ଲଭ ସବୁବେଳେ ଯତ୍ନବାନ ଥା'ନ୍ତି । କେଉଁ ଖାଦ୍ୟ ଖାଇବା ଜରୁରୀ, କେଉଁ ଖାଦ୍ୟ ଆଦୌ ଖାଇବେ ନାହିଁ ତାହାକୁ ମଧ୍ୟ ସେ ସବୁବେଳେ ଜଗି ରହିଥା'ନ୍ତି । ନିକଟରେ ଜାନକୀ ବଲ୍ଲଭ ଓଡ଼ିଶା ଆସିଥିଲେ । ହଠାତ୍ କୁଆଡ଼େ ସେ ଚାହିଁଲେ ଖଣ୍ଡା ବୁଲାଇବାକୁ ହେଲେ ତାଙ୍କର ଶକ୍ତି ରହିବା ଦରକାର । ଶରୀରର ହାଡ଼ ଏବଂ ମାଂସପେଶୀ ମଧ୍ୟ ସେହି ଅନୁଯାୟୀ ଶକ୍ତିଶାଳୀ ହେବା ଉଚିତ । ଆସାମର ରାଜ୍ୟପାଳ ହେବାପରେ କେତେକ ସଭାରେ ମଧ୍ୟ ତାଙ୍କୁ ଖଣ୍ଡା ଧରିବାକୁ ହେଉଛି । ଆଉ କେତେକ ସଭାରେ ମଧ୍ୟ ତାଙ୍କୁ ଖଣ୍ଡା ବୁଲାଇବାକୁ ପଡୁଛି । ଅବଶ୍ୟ ଖଣ୍ଡା ବୁଲାଇବା ପାଇଁ ଜାନକୀଙ୍କ ପାଇଁ ସମସ୍ୟା ହେଉନାହିଁ । କିନ୍ତୁ ଜାନକୀ ସ୍ୱାସ୍ଥ୍ୟ ବିଜ୍ଞାନ ଉପରେ ବେଶ୍ ସଚେତନ ଅଛନ୍ତି । ଏହି ଦୃଷ୍ଟିରୁ ସେ ଅସ୍ଥିଶଲ୍ୟ ଡାକ୍ତରଙ୍କର କୁଆଡ଼େ ପରାମର୍ଶ ନେଇଛନ୍ତି ଏବଂ ସେଥିପାଇଁ ମଧ୍ୟ ସେ ଔଷଧ ସେବନ ବି କରୁଛନ୍ତି । ମାନିବାକୁ ପଡ଼ିବ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ । ନହେଲେ ୮୬ ବର୍ଷରେ ସେ ଖଣ୍ଡା ବୁଲାଇବା ପାଇଁ ସାହସ ବି କରୁ ନଥା'ନ୍ତେ । ୮୬ ବର୍ଷରେ ପହଂଚିଥିଲେ ବି ତାଙ୍କର ଚେହେରା ୬୦ ବର୍ଷରୁ କମ୍ ପରି ହୋଇ ନଥା'ନ୍ତା । ଯଦିଓ ଖଣ୍ଡା ବୁଲାଇବା ଖଣ୍ଡାୟତଙ୍କର ମୁଖ୍ୟ କାମ ଅଟେ କିନ୍ତୁ ରାଜନୀତିରେ ଖଣ୍ଡାୟତମାନେ ଖଣ୍ଡା ବୁଲେଇଲେ ଆଗ ନିଜ ସମ୍ପର୍କୀୟ, ଚିହ୍ନା ପରିଚୟ ଏବଂ ଜ୍ଞାତିକୁଟୁମ୍ବଙ୍କ ଦେହରେ ଖଣ୍ଡା ବଜାନ୍ତି । ପୁଣି ବେଳେବେଳେ ସେହି ଖଣ୍ଡା ନିଜ ଦେହରେ ମଧ୍ୟ ବାଜିଯାଏ । କିନ୍ତୁ କାୟସ୍ଥ ଖଣ୍ଡା ବୁଲାଇଲେ ଆଗ ଶତ୍ରୁଙ୍କ ଦେହରେ ବାଜେ । ତେଣୁ ଜାନକୀ ବଲ୍ଲଭ ଯେଉଁ ଖଣ୍ଡା ବୁଲାଇବେ ସେଥିରେ ତାଙ୍କର ଶତ୍ରୁ ନିପାତ ହେବେ । ଦେଖାଯାଉ ଖଣ୍ଡା ବୁଲାଇ ଜାନକୀ ବଲ୍ଲଭ କେଉଁ ଶତ୍ରୁଙ୍କୁ ନିପାତ କରୁଛନ୍ତି । ■

## ପ୍ୟାରୀଙ୍କ ଗୁରୁ



ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ହେଉଛନ୍ତି ବିଜେଡିର ଦ୍ୱିତୀୟ କ୍ଷମତା କେନ୍ଦ୍ର । ପୁଣି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ସେ ହେଉଛନ୍ତି ପରାମର୍ଶ ଦାତା । ଏମିତି ବି ତାଙ୍କୁ ଅନେକ ସମୟରେ ନବୀନଙ୍କର ଗୁରୁ ବୋଲି ମଧ୍ୟ ଚର୍ଚ୍ଚା କରାଯାଉଛି । କିନ୍ତୁ ପ୍ୟାରୀମୋହନଙ୍କର କିଏ ଯେ ଗୁରୁ ଅଛନ୍ତି ତାହା ବୋଧହୁଏ କେହି ଜାଣନ୍ତି ନାହିଁ । ଏମିତି ଏକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ପ୍ୟାରୀମୋହନ । ସତେ ଯେମିତି

କିଛି ସତ୍ୟ କଥା କହିବା ପାଇଁ ପ୍ୟାରୀମୋହନ ଦୀର୍ଘଦିନରୁ ଅପେକ୍ଷା କରି ରହିଥିଲେ । କହୁକହୁ ପ୍ରଥମେ କହିଦେଲେ ତାଙ୍କର ଗୁରୁ ଥିଲେ କମ୍ୟୁନିଷ୍ଟ ନେତା ପ୍ରାଣନାଥ ପଟ୍ଟନାୟକ । ଆଉ ତାଙ୍କର ସେ ଚେଲା ଥିଲେ । ଏହା କହିବାର ଅନ୍ୟ ଦିଗଟି ହେଲା ଗୋଟିଏ ସମୟରେ ସେ କମ୍ରେଡ ବି ଥିଲେ । ଅବଶ୍ୟ ଯେବେଠାରୁ ବିଜେଡିକୁ କ୍ୟାଡ଼ର ପାର୍ଟିରେ ପରିଣତ କରିବା ପାଇଁ ପ୍ୟାରୀମୋହନ ଉଦ୍ୟମ କଲେ ସେବେଠାରୁ କମ୍ୟୁନିଷ୍ଟ ପ୍ରତି ତାଙ୍କର ଦୁର୍ବଳତା ଥିବ ବୋଲି ଏକ ଧାରଣା ମଧ୍ୟ ସାଧାରଣରେ ସୃଷ୍ଟି ହୋଇଥିଲା । ଏବେ ଗୁମର କଥାକୁ ଫିଟାଇ ଦେଇଛନ୍ତି ପ୍ୟାରୀମୋହନ । କେବଳ ଯେ ଏହି ଗୋଟିଏ ଗୁମର କଥା ସେ ଫିଟାଇବା ପାଇଁ ଉଚିତ ମଣିଥିଲେ ତାହା ନୁହେଁ । ଏମିତି ଆଉ କେତେକ ଗୁମର କଥା ସେ ସେଠାରେ ଫିଟାଇ ଦେଇଥିଲେ । ସେ କହୁକହୁ କହିଦେଇଥିଲେ ସମ୍ବାଦପତ୍ରଗୁଡ଼ିକ ସରକାରର ଉଭୟ ଖରାପ ଓ ଭଲ ଦିଗ ଖୋଲିଦେବା ଉଚିତ । ତା' ହେଲେ ଯାଇ ସମ୍ବାଦପତ୍ର ସରକାରର ଉପକାର କରୁଛନ୍ତି ବୋଲି କୁହାଯିବ । ନହେଲେ ସମ୍ବାଦପତ୍ର ଯଦି ଖୁସାମତିଆ ହୋଇଯିବ ତେବେ ସବୁ ସରିଲା । ମିତ୍ରତା ଗଠନମୂଳକ ହେବା ଉଚିତ, ଖୁସାମତିଆ ନୁହେଁ । ଅନେକ କ୍ଷେତ୍ରରେ ସମ୍ବାଦପତ୍ର ମଧ୍ୟ ସତ୍ୟ ପରିବେଷଣ ନାମରେ ଡାହ ମିଛ ଲେଖୁଛନ୍ତି । ତାଙ୍କ ନାମରେ ମଧ୍ୟ ଏଭଳି ଡାହ ମିଛକଥା ଲେଖାଯାଉଛି । ଏହାକୁ ସେ ଆଦୌ ଭ୍ରୁକ୍ଷେପ କରନ୍ତି ନାହିଁ । ଏମିତି କହୁକହୁ ମଧ୍ୟ ସେ କହିଦେଲେ ତାଙ୍କ ମାଲିକାନାରେ 'ଖବର' ସମ୍ବାଦପତ୍ର ପ୍ରକାଶ ପାଉଥିବା ବେଳେ ସେଥିରେ ମଧ୍ୟ ସରକାର ବିରୋଧୀ ଖବର ପ୍ରକାଶିତ ହେଉଛି । ଯାହା ସତ ତାହା ହିଁ ପ୍ରକାଶ ପାଇବାର ଆବଶ୍ୟକତା ରହିଛି । ସକାଳ ହେଲାମାତ୍ର ସେ ୧୮ ଟି ସମ୍ବାଦପତ୍ର ପାଠ କରନ୍ତି । ଯେହେତୁ ରାଜନୀତିରେ ଅଛନ୍ତି ତେଣୁ ତାଙ୍କୁ ସମ୍ବାଦପତ୍ର ପଢ଼ିବାକୁ ହେବ । ସମ୍ବାଦପତ୍ରଟିଏ ପ୍ରକାଶ କରିବାକୁ ହେଲେ ତାହାର ଯେଉଁ କଷ୍ଟ ତାହାକୁ ସେ ଭଲ ଭାବେ ହୃଦୟଙ୍ଗମ କରିଛନ୍ତି । ଏମିତି ପ୍ୟାରୀମୋହନ ସଭାରେ ଅନେକ କଥା ବଖାଣି ଦେଇଗଲେ । ତେବେ ପ୍ୟାରୀମୋହନଙ୍କର ବକ୍ତବ୍ୟରୁ ତାଙ୍କର ଦୁଇଟି କଥା ସ୍ପଷ୍ଟ ହୋଇଗଲା । ତା' ହେଲା ସେ ଏକଦା କମ୍ୟୁନିଷ୍ଟ ଥିଲେ, ଅନ୍ୟଟି ହେଲା ତାଙ୍କ ବିରୋଧରେ ଯେତେ ଯେ ଯାହା ଲେଖିଲେ ମଧ୍ୟ ତାହାକୁ ସେ ଖାତିର କରନ୍ତି ନାହିଁ । ପ୍ୟାରୀମୋହନଙ୍କ ବୟସ ଏବେ ୭୦ ଟପିଗଲାଣି । କିନ୍ତୁ ସେହି ସଭାରେ ଯେ ଯେଉଁ ବକ୍ତବ୍ୟ ରଖିଲେ ତାହା ବେଶ୍ ଦୃଢ଼ ଥିଲା । କମ୍ୟୁନିଷ୍ଟମାନଙ୍କର ଭାଷଣ ଯେପରି ହୋଇଥାଏ ସେହିପରି ବକ୍ତବ୍ୟ ରଖିଥିଲେ ପ୍ୟାରୀମୋହନ । ଏମିତି ପ୍ୟାରୀମୋହନ ବକ୍ତବ୍ୟ ଦେଇ ସଙ୍ଗେସଙ୍ଗେ ଦିଲ୍ଲୀ ଚାଲିଗଲେ । କିନ୍ତୁ ତାଙ୍କ ବକ୍ତବ୍ୟକୁ ନେଇ ଚାଲିଲା ଚର୍ଚ୍ଚା । କିଏ କହିଲା ୭୦ ପରେ ପ୍ୟାରୀମୋହନଙ୍କର ଏହି ଦୃଢ଼ତା ଆଦୌ ଶୋଭା ପାଉନାହିଁ । ଯଦି ପ୍ୟାରୀମୋହନ ଚାକିରି ନକରି ମୂଳରୁ ରାଜନୀତି କରିଥା'ନ୍ତେ ତେବେ ଯୁବ ଅବସ୍ଥାରେ ତାଙ୍କ ପାଟିରେ ଏହି ବକ୍ତବ୍ୟ ସେତେବେଳେ ବେଶ୍ ଶୋଭା ପାଇଥା'ନ୍ତା । ଅନ୍ୟ କେତେକ ମଧ୍ୟ ପ୍ୟାରୀମୋହନଙ୍କ ବକ୍ତବ୍ୟକୁ ନେଇ

ମତ ଦେଲେ । ସେମାନଙ୍କର ମତ କିନ୍ତୁ ଭିନ୍ନ ଥିଲା । ଯଦି ସବୁ ଦଳରେ ପ୍ୟାରୀମୋହନଙ୍କ ପରି ଜଣେ ଜଣେ ନେତା ରହନ୍ତେ ତା' ହେଲେ ଓଡ଼ିଶାରେ ରାଜନୀତି ବେଶ୍ ଜମି ଯାଆନ୍ତା । ଯେମିତି ୭୦ ବର୍ଷ ପରେ ମଧ୍ୟ ପ୍ୟାରୀମୋହନ ୨୦ ବର୍ଷ ବୟସର ନିର୍ଭିକ ଭାଷଣ ଦେଇପାରୁଛନ୍ତି ସେହିପରି ଅନ୍ୟ ଦଳର ପରିସ୍ଥିତି ମଧ୍ୟ ହୁଅନ୍ତା । ତେବେ ସେ ଯାହା ହେଉନା କାହିଁକି ପ୍ୟାରୀମୋହନଙ୍କ ରକ୍ତରେ ଯେ ବିଜେଡି ସହିତ କମ୍ୟୁନିଷ୍ଟ ପ୍ରବାହିତ ହେଉଛି ଏହା ସ୍ପଷ୍ଟ ହୋଇଯାଇଛି ୨୦୦୯ ନିର୍ବାଚନରେ । ନଚେତ କମ୍ୟୁନିଷ୍ଟ ସହିତ ବିଜେଡି ବୁଝାମଣା କରି ନଥା'ନ୍ତା । ସବୁ ପ୍ୟାରୀମୋହନଙ୍କର କମାଲ । ■

## ରସଗୋଲା ଓ ଗୋଲାପଜାମୁନ

ରାଜ୍ୟସଭା ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରେ ବିଧାନସଭା ପ୍ରାଙ୍ଗଣରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସମେତ ବିଜୟୀ ପ୍ରାର୍ଥୀ ପ୍ୟାରୀମୋହନ ମହାପାତ୍ର, ଶଶୀଭୂଷଣ ବେହେରା ଏବଂ ବୈଷ୍ଣବ ପରିଡ଼ାଙ୍କୁ ବେଶ୍ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏହାପରେ ପ୍ୟାରୀମୋହନ ମହାପାତ୍ର ତାଙ୍କର ସହିଦନଗର ବାସଭବନକୁ ଫେରିଯାଇଥିଲେ । ପ୍ୟାରୀମୋହନ ମହାପାତ୍ରଙ୍କର ଗୋଟିଚାଳନା ଅସମ୍ଭବକୁ ସମ୍ଭବ କରିଦେଇଥିବାରୁ ସେଥିପାଇଁ ତାଙ୍କୁ ଶୁଭେଚ୍ଛା ଜଣାଇବା ପାଇଁ ତାଙ୍କ ବାସଭବନରେ ବହୁ ଭିଡ଼ ହୋଇଥିଲା । ବହୁ ମନ୍ତ୍ରୀ, ବିଧାୟକ ତଥା ବିଜେଡି ନେତାମାନେ ମଧ୍ୟ ସେଠାରେ ଜମା ହୋଇଥିଲେ । ପ୍ୟାରୀମୋହନ ମହାପାତ୍ର ମଧ୍ୟ ତାଙ୍କର ସ୍ୱଭାବସୁଲଭ ଢଙ୍ଗରେ ବିଭିନ୍ନ ବ୍ୟକ୍ତିବିଶେଷଙ୍କ ସହ କଥାବାର୍ତ୍ତା କରୁଥା'ନ୍ତି । ହଠାତ୍ ଦେଖାଗଲା ରସଗୋଲା ଓ ଗୋଲାପଜାମୁନ ବଂଟା ଯାଉଥିବାର । ୩ ଜଣ ବିଜେଡି ପ୍ରାର୍ଥୀଙ୍କର ବିଜୟକୁ ନେଇ ବେଶ୍ ଖୁସିଥା'ନ୍ତି ପ୍ୟାରୀମୋହନ ମହାପାତ୍ର । ରାଜ୍ୟସଭା ନିର୍ବାଚନ ପ୍ୟାରୀମୋହନଙ୍କର କ୍ଷମତାକୁ ଆହୁରି ଦୃଢ଼ୀଭୂତ କରିଦେଇଥିଲା । ସେଠାରେ ଉପସ୍ଥିତ ଥିଲେ ତୃତୀୟ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିବା ବୈଷ୍ଣବ ପରିଡ଼ା । ରସଗୋଲା ଓ ଗୋଲାପଜାମୁନ ବଂଟା ଚାଲିଥାଏ । ଖୁସିର ଲହରି ଜୋରଦାର୍ ବାରି ହୋଇଯାଉଥାଏ । ସମସ୍ତଙ୍କ ମୁହଁରେ ହସ ଆଉ ହସ । ହଠାତ୍ ବୈଷ୍ଣବଙ୍କ ଆଡ଼କୁ ଲକ୍ଷ୍ୟ ରଖି ପ୍ୟାରୀମୋହନ କହିଲେ- ବୈଷ୍ଣବବାବୁଙ୍କୁ ମିଠା ଦିଅ । ସେ ଜିତିଛନ୍ତି । ବେଶ୍ ଖୁସି ମିଜାଜରେ ଥିବା ବୈଷ୍ଣବ ପରିଡ଼ା କିନ୍ତୁ ମିଠା ଖାଇବାକୁ ମନା କଲେ । ସେ କହିଲେ- ଆଜ୍ଞା, ମୋର ଡାଇବେଟିସ୍ । ମିଠା ଖାଇବାକୁ ମନା । ଏହି ସମୟରେ ପ୍ୟାରୀମୋହନ କୁଆଡ଼େ କହିଲେ- ଏମିତି ଡାଇବେଟିସ ରୋଗୀଙ୍କୁ ମିଠା ଖାଇବା ମନା । କିନ୍ତୁ ବିଜୟୀ ହୋଇ ମିଠା ଖାଇଲେ ଡାଇବେଟିସ୍ ବଢ଼ିବା ପରିବର୍ତ୍ତେ କମିଯିବ । ପ୍ୟାରୀମୋହନଙ୍କ ପାଟିରୁ ଏହି କଥା ଶୁଣିବା ପରେ ଆଉ ତିଳେମାତ୍ର ଅପେକ୍ଷା କଲେନାହିଁ ବୈଷ୍ଣବ । ଅନ୍ୟ ହାତରୁ ଛଡ଼ାଇନେଇ ସେ ରସଗୋଲା ଓ ଗୋଲାପଜାମୁନ ଖାଇଲେ । ପ୍ୟାରୀମୋହନଙ୍କ ଔଷଧ ବୈଷ୍ଣବଙ୍କ ପ୍ରତି ବେଶ୍ କାମ ଦେଲା ବୋଲି ସେଠାରେ ଥିବା ବ୍ୟକ୍ତିମାନେ ଲଘୁ ମନ୍ତବ୍ୟ ଦେବାରୁ ହାସ୍ୟରୋଳ ସୃଷ୍ଟି ହୋଇଥିଲା । ■

# କ'ଣ ମଣି



ବେଳେବେଳେ ସାମାନ୍ୟ ଦୁଇପଦ କଥା ଏମିତି ସମସ୍ୟା ଆଣିଦିଏ ଯେ, ସେଥିରେ ସବୁକିଛି ଓଲଟପାଲଟ ହୋଇଯାଇଥାଏ । ରାଜ୍ୟସଭା ନିର୍ବାଚନ ପାଇଁ ଭୋଟ ଗ୍ରହଣ ହେଉଥିବା ସମୟରେ ଏମିତି ଏକ ଦୁଇପଦିଆ କଥା ବିଜେଡି ପାଇଁ ସମସ୍ୟା ହୋଇଯାଇଥିଲା । ବିଜେଡିର ଏଜେଂଟ୍ ଥିଲେ ପୂର୍ବତନ ବାଚସ୍ପତି ତଥା ପୁରୀ ବିଧାୟକ ମହେଶ୍ୱର ମହାନ୍ତି । ହଠାତ୍ ଦେଖାଗଲା ଏନ୍‌ସିପିର ଚାରିଜଣ ବିଧାୟକ ଭୋଟ ଦେବାକୁ ବିଧାନସଭାର ୫୪ ନମ୍ବର ପ୍ରକୋଷ୍ଠରେ ଥିବା ଭୋଟଗ୍ରହଣ କେନ୍ଦ୍ରକୁ ଗଲେ । ପ୍ରଥମେ ଭୋଟ ଦେଲେ ଢେଙ୍କାନାଳ ବିଧାୟକ ନବୀନ ନନ୍ଦ । ଏନ୍‌ସିପି ଗୋଟିଏ ସମୟରେ ବିଜେଡିକୁ ଭୋଟ ନଦେଇପାରେ ବୋଲି ଆଶଙ୍କା ପ୍ରକାଶ ପାଇଥିଲା । ପରବର୍ତ୍ତୀ ସମୟରେ ଏନ୍‌ସିପିର ଚାରିଜଣ ବିଧାୟକ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ବିଜେଡି ପ୍ରାର୍ଥୀଙ୍କୁ ଭୋଟ ଦେବେ ବୋଲି ସୂଚନା ଦେଇଥିଲେ । ନବୀନ ନନ୍ଦ ଭୋଟ ଦେଇସାରିବା ପରେ ହଠାତ୍ ତାଙ୍କୁ ବିଜେଡି ଏଜେଂଟ ମହେଶ୍ୱର ମହାନ୍ତି ହାସ୍ୟପରିହାସରେ କହିଲେ- କ'ଣ ମଣି ସବୁ ଠିକ୍ ତ ? ଏଥିରେ ବେଶ୍ ପ୍ରତିକ୍ରିୟାଶୀଳ ହୋଇଯାଇଥିଲେ ନବୀନ ନନ୍ଦ । ସେ ଭୋଟ କାଗଜରେ ବିଜେଡିକୁ ଭୋଟ ଦେଇଛନ୍ତି ବୋଲି ଖୋଲିକରି ସେଠାରେ ଦେଖାଇଦେଲେ । ଯଦିଓ ରାଜ୍ୟସଭା ନିର୍ବାଚନକୁ ଖୋଲା ଭୋଟ ବୋଲି କୁହାଯାଉଛି କିନ୍ତୁ ନିୟମ ହେଉଛି ଯେ, ଦଳର ଏଜେଂଟ ଯଦି ଚାହିଁବେ ତେବେ ସେହି ଦଳର ବିଧାୟକ କାହାକୁ ଭୋଟ ଦେଇଛନ୍ତି ତାହାକୁ ତାଙ୍କୁ ଦେଖାଇପାରିବେ । କିନ୍ତୁ ଖୋଲାଖୋଲି ସମସ୍ତଙ୍କୁ ଦେଖାଇପାରିବେ ନାହିଁ । ମହେଶ୍ୱରଙ୍କର ସାମାନ୍ୟ ମଣି ଶବ୍ଦଟି ନବୀନ ନନ୍ଦଙ୍କୁ କିପରି ସମସ୍ୟା ମଧ୍ୟକୁ ଠେଲି ନେଇଯାଇଥିଲା ତାହା ସମସ୍ତେ ଜାଣନ୍ତି । ସମସ୍ତଙ୍କ ଆଗରେ ଭୋଟ କାଗଜଟିକୁ ଖୋଲିକରି ଦେଖାଇଥିବାରୁ ଏହି ଭୋଟଟି ନାକଚ ହୋଇଯାଇଥିଲା । ଉଣିଶବିଶରେ ଥିବା ବିଜେଡିର ତୃତୀୟ ପ୍ରାର୍ଥୀଙ୍କ ପାଇଁ ନବୀନ ନନ୍ଦଙ୍କର ଏହି ଭୋଟଟି ବହୁ ମୂଲ୍ୟବାନ ଥିଲା । କିନ୍ତୁ ଭୋଟ ଗ୍ରହଣ ବେଳେ ହାସ୍ୟପରିହାସ ଯେ ବେଳେବେଳେ ଓଲଟ କିଳା ହୋଇଯାଏ ତାହା ରାଜ୍ୟସଭା ନିର୍ବାଚନରୁ ସ୍ପଷ୍ଟ ହୋଇଯାଇଥିଲା । ■



# ବିଦେଶ ବୁଲା ନିଶାରେ ରଘୁ ମସ୍‌ଗୁଲ୍

ଏ ହେଲେ ରଘୁନାଥ ସାହୁ । ଚିଲିକାର ବିଜେଡ଼ି ବିଧାୟକ । ଏମିତି ଚିଲିକା ଗୋଟିଏ ସମୟରେ ଥିଲା କଂଗ୍ରେସର ଗଡ଼ । ପରବର୍ତ୍ତି ସମୟରେ ଏହା ହୋଇଥିଲା ବିଜେପିର ଗଡ଼ । କିନ୍ତୁ ଏଥର ଏହି ଗଡ଼କୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିଦେଲେ ରଘୁନାଥ ସାହୁ । ଯଦିଓ ରଘୁନାଥଙ୍କ ମୂଳ ଦଳ ବିଜେଡ଼ି

ନଥିଲା । ସେ କଂଗ୍ରେସ ଛାଡ଼ି ବିଜେଡ଼ି ଟିକଟ ନେଇ ଚିଲିକାରେ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ଚିଲିକାରେ ଯେପରି ବିଜେଡ଼ି ସଙ୍ଗଠନ ଦୃଢ଼ୀଭୂତ ହେବ ସେ ଦିଗରେ ଅହରହ ଉଦ୍ୟମ ଜାରିରଖିଛନ୍ତି ରଘୁନାଥ । ତେବେ ରଘୁନାଥଙ୍କର ଭାରି ଦୁର୍ବଳତା ରହିଛି ବୁଲାବୁଲି କରିବାରେ । ଆଉ ଯଦି ଦେଶ ନ ହୋଇ ବିଦେଶ ହୋଇଗଲା ତେବେ ରଘୁନାଥଙ୍କର ଖୁସି ଦେଖେ କିଏ । ଏମିତି ରଘୁନାଥଙ୍କ ବିଦେଶ ପର୍ଯ୍ୟଟନ ଏବେ ହ୍ୱାଟ୍ ନଟ୍‌ରେ ପହଂଚିଛି । ମାନେ ଛାଁ ଭାଁ କେତୋଟି ନାମିଦାମୀ ବିଦେଶ ରାଷ୍ଟ୍ରକୁ ସେ ବୁଲିବାକୁ ଯାଇନାହାନ୍ତି । ଏବେ ଦେଖିବା ରଘୁନାଥ କେଉଁ ବିଦେଶ ରାଷ୍ଟ୍ର ବୁଲିଛନ୍ତି । ତାଙ୍କ ପାଖରେ ଯେଉଁ ତାଲିକା ଅଛି ତାହାହେଲା ଲଣ୍ଡନ, ଫ୍ରାନ୍ସ, ଜର୍ମାନ, ଅଷ୍ଟ୍ରେଲିଆ, ଇଟାଲୀ, ସୁଇଜରଲ୍ୟାଣ୍ଡ, ଚୀନ, ସିଙ୍ଗାପୁର, ମାଲେସିଆ, ଦୁବାଇ, ତୁର୍କୀ, ଥାଇଲାଣ୍ଡ, ଆମେରିକା । ଏମିତି କେତେକ ଛୋଟମୋଟ ରାଷ୍ଟ୍ର ଅଛି ଯାହାକୁ ସେ ବୁଲିଛନ୍ତି କିନ୍ତୁ ନାଁ ମନେରଖିନାହାନ୍ତି । ରଘୁଙ୍କ ହିସାବ ଅନୁଯାୟୀ ସେ ପ୍ରାୟ ୧୭ଟି ରାଷ୍ଟ୍ର ବୁଲିଲେଣି । ଏବେ ଆହୁରି ବୁଲିବେ ବୋଲି ଯୋଜନା କରିଛନ୍ତି । ତାଲିକା ବି ହୋଇଛି । ସୋଭିଏତ୍ ଋଷ ଯିବାନିମନ୍ତେ ମଧ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଛି । ତେବେ ବିଧାୟକ ହୋଇଯିବାରୁ ତାଙ୍କୁ ବ୍ୟସ୍ତତା ଘାରୁଛି । ଅବଶ୍ୟ ରଘୁ ଜାଣିଛନ୍ତି ବିଦେଶ ବୁଲିଲେ ଟେନ୍‌ସନ୍ କମିଯାଏ ବୋଲି । ଏହି ଦୃଷ୍ଟିରୁ ରଘୁ ଟେନ୍‌ସନ୍ କମାଇବା ପାଇଁ ବିଦେଶ ବୁଲିବାକୁ ଯା'ନ୍ତି । ବିଧାୟକ ହୋଇଯିବା ପରେ ରଘୁ ଅନେକ ସମୟରେ ଟେନ୍‌ସନ୍ ହୋଇଯାଉଛନ୍ତି । ଏବେ ଜଣାପଡ଼ିଲାଣି ଏହି ଟେନ୍‌ସନ୍ ରଘୁଙ୍କୁ ଗୋଟିଏ ପରେ ଗୋଟିଏ ରାଷ୍ଟ୍ରକୁ ବୁଲାଇ ନେବ । ଦେଖାଯାଉ ରଘୁ ବିଧାୟକ ହୋଇ ବିଦେଶ ରାଷ୍ଟ୍ର ଭ୍ରମଣ କରିବାରେ ଅର୍ଦ୍ଧଶତକ କରିପାରୁଛନ୍ତି କି ନାହିଁ । ■

## ମନ୍ତ୍ରୀଙ୍କ ସିନେମା ଦେଖା ନିଶା




ଏମିତି ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ବେଶ୍ ସିନେମାଖୋର୍ ଅଟନ୍ତି । ମାନେ ଓଡ଼ିଆ ହେଉ, ତେଲୁଗୁ ହେଉ, ଇଂରାଜୀ ହେଉ କି ହିନ୍ଦୀ ହେଉ ଯେକୌଣସି ସିନେମା ଦେଖିବାକୁ ସୂର୍ଯ୍ୟ ପରିବାର ସହ ସିନେମା ହଲ୍‌ରେ ହାଜର ହୋଇଯାଆନ୍ତି । ସୂର୍ଯ୍ୟଙ୍କର ଏହି ସିନେମା ଦେଖା ନିଶା ଆଜିର ନୁହେଁ । ରାଜନୀତିରେ ପ୍ରବେଶ କରିବା ପୂର୍ବରୁ ଛାତ୍ର ଅବସ୍ଥାରୁ ଏହି ସିନେମା ନିଶା ତାଙ୍କୁ ଘାରିଛି । ଏମିତି ଅନେକ ନିଶା ସୂର୍ଯ୍ୟଙ୍କର ଥିଲା । କିନ୍ତୁ ବାହା ହେବାପରେ ଆଉ ରାଜନୀତିକୁ ଆସି ବିଧାୟକ, ମନ୍ତ୍ରୀ ହେବାପରେ ସେଥିରୁ କେତେକ ନିଶା ସୂର୍ଯ୍ୟ ଛାଡ଼ିଦେଲେଣି । କିନ୍ତୁ ସିନେମା ନିଶାକୁ ଛାଡ଼ି ପାରୁନାହାନ୍ତି ସୂର୍ଯ୍ୟ । ଏହା ବିଭିନ୍ନ ସମୟରେ ଉଲ୍ଲେଖ କରାଯାଇଛି । ଏବେ ଯିବା ସୂର୍ଯ୍ୟଙ୍କ ପରେ କିଛି ମନ୍ତ୍ରୀଙ୍କୁ ସିନେମା ନିଶା କିପରି ଘାରୁଛି ସେହି ପ୍ରସଙ୍ଗକୁ । ଏଠାରେ ଦୁଇଜଣ ମନ୍ତ୍ରୀଙ୍କ କଥା ଉଲ୍ଲେଖ କରାଯାଉଛି । ଜଣେ

ହେଲେ ଶ୍ରମମନ୍ତ୍ରୀ ପୁଷ୍ପେନ୍ଦ୍ର ସିଂହଦେଓ ଏବଂ ଅନ୍ୟ ଜଣେ ହେଲେ ବିଦ୍ୟାଳୟ ଓ ଗଣଶିକ୍ଷାମନ୍ତ୍ରୀ ପ୍ରତାପ ଜେନା । ମନ୍ତ୍ରୀ ହେବା ପୂର୍ବରୁ ବିଧାୟକ ଥିଲାବେଳେ ଏହି ଦୁଇଜଣ ବେଶ୍ ଘନିଷ୍ଠ ଥିଲେ । ପୁଣି ଖୋର୍ଦ୍ଧା ଜିଲାର ଉଗ୍ରତାରା ପୀଠରୁ ଦର୍ଶନ ସାରି ଫେରିଲା ବେଳକୁ ଉଭୟଙ୍କୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଫୋନ୍ ଯୋଗେ ଜଣାଇଲେ ଯେ, ସେମାନେ ମନ୍ତ୍ରୀ ହେଉଛନ୍ତି ବୋଲି । ଏବେ ହଠାତ୍ ଏହି ଦୁଇଜଣଙ୍କୁ ଦେଖିବାକୁ ମିଳିଲା ସ୍ୱାତୀ ସିନେମା ହଲ୍‌ରେ । ସେଠାରେ ସେମାନେ 'ରାଜନୀତି' ସିନେମା ଦେଖିବା ପାଇଁ ଯାଇଥା'ନ୍ତି । ବେଶ୍ ଖୁସି ମିଜାଜ୍‌ରେ ସେମାନେ 'ରାଜନୀତି' ସିନେମା ଦେଖିଲେ । ଏମିତି 'ରାଜନୀତି' ସିନେମା ନଦେଖିଲେ ନେତାମାନଙ୍କର ରାଜନୀତି ସତେ ଯେମିତି ଅସମ୍ପୂର୍ଣ୍ଣ ରହିଯିବ । କିଛିଦିନ ପୂର୍ବରୁ କେନ୍ଦୁଝରର ଯାଇଥିବା ପ୍ରଦୀପ ମହାରଥୀଙ୍କ ସମେତ କେତେଜଣ ବିଧାୟକ ସେଠାରେ 'ରାଜନୀତି' ସିନେମା ଦେଖିଥିଲେ । ତାହାକୁ ନେଇ ମଧ ସେଠାରେ ଚର୍ଚ୍ଚା ହୋଇଥିଲା । ସ୍ୱାତୀ ସିନେମା ହଲ୍‌ରେ ସେଦିନ ଦୁଇ ମନ୍ତ୍ରୀ ପାଖାପାଖି ବସି ସିନେମା ଦେଖିବାକୁ ନେଇ ସେଠାରେ ଥିବା ଦର୍ଶକମାନଙ୍କ ମଧ୍ୟରେ ବେଶ୍ ଚର୍ଚ୍ଚା ହୋଇଥିଲା । ଅବଶ୍ୟ 'ରାଜନୀତି' ସିନେମା ଦେଖି ଏହି ଦୁଇ ମନ୍ତ୍ରୀ ସେଥିରୁ କ'ଣ ଶିଖିଲେ ଜଣାନାହିଁ । କିନ୍ତୁ ଯେଉଁ ତିନିଘଂଟା ସେମାନେ ସିନେମା ହଲ୍‌ରେ କଟାଇଲେ ତାହା ସେମାନଙ୍କ ପାଇଁ ଆମୋଦ ଆଣିଦେଇଥିବ ନିଶ୍ଚିତ । ପୁଣି ସିନେମା ଦେଖୁଦେଖୁ କିଛି ପାଟିଚାଖଣି ମଧ ସେମାନଙ୍କର ହୋଇଥିଲା । କେବଳ ସୂର୍ଯ୍ୟ, ପୁଷ୍ପେନ୍ଦ୍ର, ପ୍ରତାପଙ୍କ ନିକଟରେ ସିନେମା ଦେଖା ଅଟକି ନରହୁ । ସିନେମା ଦେଖିଲେ ଯେ ଏକ ଦୋଷ ତାହା ନୁହେଁ । ତେଣୁ ସବୁ ମନ୍ତ୍ରୀ ସିନେମା ଦେଖନ୍ତୁ ଆଉ ଖୁସ୍ ମିଜାଜରେ ରୁହନ୍ତୁ । ତା' ହେଲେ ଯାଇ ଓଡ଼ିଶାର ବିକାଶକୁ ସେମାନେ ଖୁସ୍‌ମିଜାଜରେ ଆଗେଇ ନେବେ । ■

## ଦୂତୀକୃଷ୍ଣଙ୍କ ଗିଲାସ



ଦୂତୀକୃଷ୍ଣ ପଣ୍ଡା ହେଉଛନ୍ତି ଖାଂଟି କମ୍ୟୁନିଷ୍ଟ ନେତା । ଯୁବକ ଅବସ୍ଥାରେ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଦୂତୀକୃଷ୍ଣ । ସେହିଦିନ ଠାରୁ ସେ କମ୍ୟୁନିଷ୍ଟ ସହିତ ରହିଆସିଛନ୍ତି । ନିକଟରେ ତାଙ୍କର ୮୮ତମ ଜନ୍ମଜୟନ୍ତୀ ପାଳିତ ହୋଇଥିଲା । ଦୂତୀକୃଷ୍ଣ ହେଉଛନ୍ତି ଆସିକାର ପୂର୍ବତନ ସାଂସଦ ଓ ପୂର୍ବତନ ବିଧାୟକ ମଧ । ଦୂତୀକୃଷ୍ଣଙ୍କୁ ଏବେ ଦେଖିଦେଲେ କେହି କହିପାରିବେ ନାହିଁ ଯେ, ତାଙ୍କର ବୟସ ୮୮ ବୋଲି । ବେଶ୍ ଦ୍ରୁତବେଗରେ ସେ ଚାଲିପାରୁଛନ୍ତି ଏବଂ ରାଜନୀତିରେ ବି ସେ ବେଶ୍ ସକ୍ରିୟ ଅଛନ୍ତି । କ'ଣ ପାଇଁ ଦୂତୀକୃଷ୍ଣ ଦୀର୍ଘାୟୁ ହୋଇଛନ୍ତି ତାହା ମଧ କେହି ଜାଣିପାରୁନାହାନ୍ତି । ଭିତରକୁ ଗଲେ ଜାଣିହେବ ଯେ, ଏକ୍ଷେତ୍ରରେ ରହସ୍ୟ କ'ଣ ଅଛି ବୋଲି । ତାଙ୍କର ହାର୍ଟ ଅସ୍ତ୍ରୋପଚାର ତିନିଥର ହେଲାଣି । ଔଷଧ ସେବନରେ ସେ କେବେ ଅବହେଳା କରନ୍ତି ନାହିଁ । ଯଦି କେତେବେଳେ

ସେ ଅସୁସ୍ଥ ଅନୁଭବ କରନ୍ତି ତେବେ ତୁରନ୍ତ ଯାଇ ଡାକ୍ତରଙ୍କ ପାଖରେ ହାଜର ହୋଇଯାଆନ୍ତି । ଏବେ ପ୍ରାୟ କଂସା ଥାଳି, ଗିନା, ଗିଲାସ କେହି ବ୍ୟବହାର କରୁନାହାନ୍ତି । ବହୁ ପୁରୁଣାକାଳରେ ଏହା ବ୍ୟବହାର ହେଉଥିଲା । ଏହାର ଔଷଧୀୟ ଗୁଣ ମଧ୍ୟ ଅଛି । କିନ୍ତୁ ଆଧୁନିକ ସମାଜ ଷ୍ଟିଲ୍ ବାସନ ଆଉ ପ୍ଲେଟ୍ ବ୍ୟବହାର କରୁଛନ୍ତି । ଯାହାଫଳରେ କଂସାବାସନ କ୍ରମେ ସପ୍ନ ହେବାକୁ ଲାଗିଯାଇଛି । ଦୂତୀକୃଷ୍ଣ ଏହି କଂସାବାସନକୁ ଛାଡ଼ିପାରିନାହାନ୍ତି । କଂସା ଥାଳି, ଗିନା ଓ ଗିଲାସ ହେଉଛି ତାଙ୍କର ପ୍ରିୟ । ଘରେ ଥିବାବେଳେ ସେ କେବେବି କଂସାବାସନ ବ୍ୟତୀତ ଅନ୍ୟ କେଉଁଥିରେ ଖାଆନ୍ତି ନାହିଁ । ଏହା ହିଁ କୁଆଡ଼େ ଦୂତୀକୃଷ୍ଣଙ୍କ ଆୟୁ ବଢ଼ାଇବାରେ ସକ୍ଷମ ହୋଇଛି ବୋଲି କୁହାଯାଉଛି । ଏମିତି ଦୂତୀକୃଷ୍ଣ ଜଣେ ବିଶିଷ୍ଟ ଶ୍ରମିକ ନେତା । କମ୍ୟୁନିଷ୍ଟ ବହିରେ ଯେତେସବୁ ବିଶେଷଣ ଅଛି ସବୁକିଛି ଦୂତୀକୃଷ୍ଣଙ୍କ ନାମ ଆଗରେ ଲାଗିଗଲାଣି । କମ୍ରେଡ଼ ଠାରୁ ଆରମ୍ଭ କରି ଲଙ୍ଗଲିଭ୍ ଦୂତୀକୃଷ୍ଣ ପର୍ଯ୍ୟନ୍ତ । ତେବେ ଦୂତୀକୃଷ୍ଣ କଂସାବାସନରେ ଖାଇବାର ରହସ୍ୟକୁ ବାହାରକୁ ଫିଟାଉନାହାନ୍ତି । ଯେତେସବୁ ସଭାସମିତିରେ ସେ ଯୋଗ ଦେଉଛନ୍ତି ସେଠାରେ ଯଦି ସେ ନିଜର ସ୍ୱାସ୍ଥ୍ୟ ସମ୍ପର୍କରେ ଦୁଇପଦ କହି ସେଥିରେ କଂସାବାସନ ବ୍ୟବହାର କରୁଥିବାରୁ କିପରି ସେ ଦୀର୍ଘାୟୁ ହୋଇଛନ୍ତି ତାହା ଉଲ୍ଲେଖ କରନ୍ତେ ତେବେ କିଛିନା କିଛି ଶ୍ରୋତା କଂସାବାସନ ବ୍ୟବହାର କରିବା ପାଇଁ ଆଗଭର ହୁଅନ୍ତେ । ଆଉ ତାହା ହିଁ ସୁସ୍ଥସମାଜ ଗଠନ କରିବାରେ ସହାୟକ ହୁଅନ୍ତା । ■

## ସେକେଣ୍ଡହ୍ୟାଣ୍ଡ ଓ ପ୍ରସନ୍ନ ପାଟ୍ଟଶାଣୀ



ସେ ଦିନ କହୁକହୁ ଏମିତି ଗୋଟିଏ କଥା ପ୍ରସନ୍ନ ପାଟ୍ଟଶାଣୀ ବଖାଣିଲେ ଯେ, ତାହା ଶୁଣି ନହସିବା ଲୋକ ବି ହସିଲେ । ଦରବାରରେ ପ୍ରାୟ ଶତାଧିକ ଲୋକ ବସିଥା'ନ୍ତି । ଗେରୁଆ ବସ୍ତ୍ର ପିନ୍ଧି ପ୍ରସନ୍ନ ପାଟ୍ଟଶାଣୀ ହାତରେ ବାଡ଼ିଟିଏ ଧରି ଦରବାର ଚଳାଉଥା'ନ୍ତି । ହଠାତ୍ କେହି ଜଣେ କହିଲା- ଆପଣଙ୍କୁ ଗରମ ହେଉଥିବ ବୋଧେ । ମୁଁ ଏହି ଷ୍ଟାଣ୍ଡଫ୍ୟାନ୍‌ର ମୁହଁଟିକୁ ଆପଣଙ୍କ ଆଡ଼କୁ କରିଦେଉଛି । ପ୍ରସନ୍ନ ସଙ୍ଗେସଙ୍ଗେ କହିଲେ- ମୋତେ ଗରମ ହୁଏନାହିଁ । ମୁଁ ତ ସବୁବେଳେ ମୋ ମିଜାଜକୁ ଶୀତଳ କରି ରଖିଥାଏ । ରାଜନୀତି କଲେ ଗରମ ହେଲେ ଚଳିବ ନାହିଁ । ତେଣୁ ଫ୍ୟାନ୍‌ର ପବନ ମୋ ଆଡ଼କୁ ଆସିବାର ନାହିଁ । ବରଂ ଦରବାରରେ ବସିଥିବା ଲୋକଙ୍କ ଆଡ଼କୁ ଯାଉ । ଏହାପରେ ପ୍ରସନ୍ନ କିଛି ମୁହୂର୍ତ୍ତ ପାଇଁ ଭାବିଲେ । ତା' ପରେ କହିଲେ- ଦିନେ ଏକ ଗାଡ଼ିରେ ସେ ଯାଉଥିଲେ । ଗାଡ଼ିରେ ବସିବା ମାତ୍ରେ ଡ୍ରାଇଭର ଜଣଙ୍କ ଏସି ଲଗାଇଦେଲେ । ସେ ତାଙ୍କୁ କହିଲେ- ବାବୁ ଏସି ବନ୍ଦ କର । ବାହାରେ ଏତେ ଭଲ ପବନ ହେଉଛି । ଆମେ ଭଗବାନଙ୍କ ପ୍ରଦତ୍ତ ପବନକୁ ଉପଭୋଗ କରିବା । କାଚ ଖୋଲିଦିଅ । ଡ୍ରାଇଭର ଅନିଚ୍ଛା ପ୍ରକାଶ

କଲେ । ପ୍ରସନ୍ନ ଡ୍ରାଇଭରର ଉପରେ ବିରକ୍ତ ହେବାରୁ ସେ ଏ଼ସି ବନ୍ଦ କଲେ ଆଉ ପ୍ରସନ୍ନ କାଚ ଖୋଲିଦେଲେ । କିଛି ସମୟ ଗାଡ଼ି ଚାଲିଲା । ହଠାତ୍ ଡ୍ରାଇଭରର କହିଲା- ଆଜ୍ଞା, ମୁଁ ମରିଯିବି । ପ୍ରସନ୍ନ ପଚାରିଲେ- କାହିଁକି । ଡ୍ରାଇଭରର କହିଲେ- ଆଜ୍ଞା, ଆପଣ ହେଉଛନ୍ତି ପ୍ରଥମ ଲୋକ ଯେ କି ଗାଡ଼ିରେ ବସିଲେ ଏସି ଚାଲିବ ନାହିଁ ବୋଲି କହୁଛନ୍ତି । ନହେଲେ ସମସ୍ତେ ଗାଡ଼ିରେ ବସିବା ମାତ୍ରେ ଏସି ଚଲା ବୋଲି କହନ୍ତି । ମୋର ଏସିରେ ଗାଡ଼ି ଚଲାଇବା ଅଭ୍ୟାସ ହୋଇଗଲାଣି । ମୋର ମାଲିକ ମଧ ମୋତେ ସେକେଣ୍ଡହ୍ୟାଣ୍ଡ ଏସିଟିଏ ଦେଇଛନ୍ତି ଯାହାକୁ ମୁଁ ଘରେ ଲଗାଇଛି । ସଙ୍ଗେସଙ୍ଗେ ପ୍ରସନ୍ନ କହିଲେ- ବିଳମ୍ବ ନ କରି ଏସି ଚଲା । ତୁ ଯଦି ଏସି ନଚାଲିଲେ ମରିଯିବୁ ତେବେ ମୋତେ କିଏ ନେବ । ମୁଁ ଗାଡ଼ିରେ ଯିବି କେମିତି । ତେବେ ଏସିର ବହୁ ଖରାପ ଗୁଣ ରହିଛି । ତାହା ହେଲା- ଥଣ୍ଡା ଛାଡ଼ିବନାହିଁ, ସ୍ପଣ୍ଡିଲାଇଟିଜ୍ ହେବ, ବ୍ରୋଙ୍କାଇଂଟିସ୍ ମଧ ହେବ । ସଙ୍ଗେସଙ୍ଗେ ଡ୍ରାଇଭରର କହିଲେ- ଆଜ୍ଞା, ଆପଣ ଯାହା କହୁଛନ୍ତି ସବୁ ସତକଥା । ଘରେ ଯେଉଁ ସେକେଣ୍ଡହ୍ୟାଣ୍ଡ ଏସି ଲଗାଇଛି ସେଥିରେ ଶୋଇ ମୋର ପତ୍ନୀ ଏହିସବୁ ରୋଗରେ ପୀଡ଼ିତ । ଆପଣ ମୋ ପାଇଁ ଭଗବାନ ସଦୃଶ୍ୟ ହେଲେ । କିନ୍ତୁ ମୋ ଭାଗ୍ୟରେ କାହିଁ ସବୁ ସେକେଣ୍ଡହ୍ୟାଣ୍ଡ ମୁଁ ଜାଣିପାରୁନାହିଁ । ପ୍ରସନ୍ନ ଡ୍ରାଇଭରର ଏହି କଥାରୁ କିଛି ବୁଝିପାରିଲେ ନାହିଁ । ସେ ପଚାରିଲେ- କ'ଣ ତୁ ଭାବୁଛୁ ପ୍ରସନ୍ନ ପାଟଣାଣୀ ସେକେଣ୍ଡହ୍ୟାଣ୍ଡ ବୋଲି । ଡ୍ରାଇଭର କହିଲେ- ଏ ଧୃଷ୍ଟତା ସେ କରିପାରିବ ନାହିଁ । ତେବେ ଯେଉଁ ଗାଡ଼ିରେ ସେ ବସିଛନ୍ତି ତାହା ହେଲା ସେକେଣ୍ଡହ୍ୟାଣ୍ଡ । ଯେଉଁ ଏସିଟି ସେ ଘରେ ଲଗାଇଛି ତାହା ହେଉଛି ସେକେଣ୍ଡହ୍ୟାଣ୍ଡ । ଯାହାକୁ ସେ ବାହା ହୋଇଛି ସେ ମଧ ସେକେଣ୍ଡହ୍ୟାଣ୍ଡ । ଡ୍ରାଇଭରର ଏହି କଥାରେ ପ୍ରସନ୍ନ ଜୋର୍‌ରେ ହସିଲେ । କହିଲେ- ସତରେ ତୋ ଭାଗ୍ୟଟା ସେକେଣ୍ଡହ୍ୟାଣ୍ଡ । ଡ୍ରାଇଭର୍ ଜଣଙ୍କ ପ୍ରସନ୍ନଙ୍କ କଥାରେ ମଧ ହସିଲେ ଏବଂ କହିଲେ- ସାର୍, ଆପଣ ଭଗବାନଙ୍କ ଅବତାର ପରି ମୋତେ ଦେଖାଯାଉଛନ୍ତି । ଆପଣଙ୍କ ପାଖକୁ ମୋ ସ୍ତ୍ରୀକୁ ଆଣିଲେ ତାହାର ରୋଗ ଭଲ ହୋଇଯିବ । ହଠାତ୍ ପ୍ରସନ୍ନ ତାଙ୍କର ହସ ବନ୍ଦ କରିଦେଲେ ଆଉ ଗମ୍ଭୀର ହୋଇଗଲେ । କହିଲେ- ସେକେଣ୍ଡହ୍ୟାଣ୍ଡ ଜିନିଷ ସେ ଗ୍ରହଣ କରନ୍ତି ନାହିଁ । ଏମିତି ସେଦିନ ଫ୍ୟାନ୍ ପବନ କଥା କହୁକହୁ ପ୍ରସନ୍ନ ଏସି ଆଉ ସେକେଣ୍ଡହ୍ୟାଣ୍ଡ କଥା କହିଦେଲେ । ପ୍ରସନ୍ନଙ୍କ କଥା ଶେଷ ହେବା ବେଳକୁ ଦରବାରରେ ଥିବା ଲୋକମାନେ ହୋ ହୋ ହୋଇ ହସିଲେ । ପ୍ରସନ୍ନ ମଧ ତାଙ୍କ ସହିତ ହସିହସି ଆଖିବୁଜି କହିଲେ- ସତକଥା ତୁମ୍ଭେମାନେ କୁହ । ମୁଁ କେବେ ସେକେଣ୍ଡହ୍ୟାଣ୍ଡ ଜିନିଷ ଗ୍ରହଣ କରିଛି କି । କେହି କିଛି କହିବା ପୂର୍ବରୁ ପ୍ରସନ୍ନ ନିଜେ ତାହାର ଉତର ଦେଲେ ଯେ, ନୁହେଁ, ଆଦୌ ନୁହେଁ । ପ୍ରସନ୍ନ ସେହିପରି ଫାଷ୍ଟହ୍ୟାଣ୍ଡ ହୋଇରହିଥା'ନ୍ତୁ ଆଉ ସେକେଣ୍ଡହ୍ୟାଣ୍ଡକୁ ଆଦୌ ନଜର ପକାନ୍ତୁ ନାହିଁ । ■

# ବିଧାୟକଙ୍କ ଫୁଟବଲ ରାଜନୀତି

ଅନେକ ବିଧାୟକ ଅଛନ୍ତି ଯେଉଁମାନଙ୍କୁ କ୍ରିକେଟ୍ ଖେଳ ଆଦୌ ପସନ୍ଦ ଲାଗେନାହିଁ । ଜଣେ ବଲ୍ ଫୋପାଡ଼ିବ ଆଉ ଜଣେ ବାଡ଼ିରେ ତାକୁ ବାଡ଼େଇବ ଏହାକୁ ସାଧାରଣତଃ ଗ୍ରାମାଂଚଳ ଲୋକମାନେ ପସନ୍ଦ କରି ନଥା'ନ୍ତି । ପୁଣି ସେହି ଖେଳକୁ ଦେଖିବାକୁ ଦିନ ତମାମ ସବୁ କାମ ବାତିଲ କରିବାକୁ ପଡ଼ିବ । ସବୁ ଦୃଷ୍ଟିରୁ ବିଚାର କରାଗଲେ ଫୁଟବଲ ହେଉଛି ଶ୍ରେଷ୍ଠ । ମାତ୍ର ଦେଢ଼ଘଂଟା ମଧ୍ୟରେ ଖେଳ ଶେଷ । ଦର୍ଶକ ମଧ୍ୟ ଭରପୂର । ହୋ ହଲା କିଛି କମ୍ ନୁହେଁ । ପୁଣି ଖେଳାଳୀଙ୍କ ଦେହରୁ ଝାଳ ଗମ୍‌ଗମ୍ ବୋହିବ । ଅବଶ୍ୟ ଫୁଟବଲ ଖେଳ ପ୍ରତି ଆଉ ସେତେଟା ଆଗ୍ରହ ନାହିଁ । ଏବେ ଆଗ୍ରହ କ୍ରିକେଟ୍‌ରେ । କିନ୍ତୁ ବିଧାନସଭାର କେତେଜ ବିଧାୟକ ଫୁଟବଲ ଖେଳକୁ ରାଜ୍ୟରେ ଲୋକପ୍ରିୟ କରାଇବା ପାଇଁ ଆରମ୍ଭ କରିଦେଇଛନ୍ତି ଉଦ୍ୟମ । ଏମିତି ସେମାନେ ଅତୀତରେ ଭଲ ଫୁଟବଲ ଖେଳାଳୀ ଥିଲେ । ବିଧାୟକ ହୋଇଯିବା ପରେ ଫୁଟବଲ ଖେଳ ପ୍ରାୟ ଛାଡ଼ି ଦେଇଥିଲେ । କେଜାଣି କେମିତି ସେମାନଙ୍କ ମୁଣ୍ଡକୁ ପଶିଲା ଚାଲ ଫୁଟବଲ ଖେଳିବା । ଏମିତି ଯଦି କେହି ଭୁବନେଶ୍ୱରର କଳିଙ୍ଗ ଷ୍ଟାଡ଼ିୟମକୁ ସକାଳେ ଚାଲିଯିବ ତେବେ ବିଧାୟକଙ୍କ ଫୁଟବଲ ଖେଳ ସେ ଦେଖିବେ ହିଁ ଦେଖିବେ । କଳିଙ୍ଗ ଷ୍ଟାଡିୟମରେ ଫୁଟବଲ ଖେଳ ଚାଲିଥାଏ । ଦେଖାଗଲା ବିଜେଡି ବିଧାୟକ ଅରୁଣ ସାହୁ, ଦେବେନ୍ଦ୍ର କର୍ଅଁର, ସିଦ୍ଧାର୍ଥ ଶେଖର ସିଂ, ରାଜେନ୍ଦ୍ର ଦାସ, ଜିନା ହିକା, କଂଗ୍ରେସ ବିଧାୟକ ସୁବଳ ସାହୁ, ଦୁଷ୍ମନ୍ତ ନାୟକ, ବିଜେପି ବିଧାୟକ କରେନ୍ଦ୍ର ମାଝୀ, ଏନ୍‌ସିପି ବିଧାୟକ ରାମଚନ୍ଦ୍ର ହାଂସଦା ଫୁଟବଲ ଖେଳିବାରେ ମାତି ଯାଇଛନ୍ତି । ଏମିତି ଫୁଟବଲ ଖେଳିବା ପାଇଁ ଗୋଟିଏ ଟିମ୍‌ରେ ୧୧ ଜଣ ଖେଳାଳୀଙ୍କର ଆବଶ୍ୟକତା ରହିଛି । ଏହି ବିଧାୟକଙ୍କ ସଂଖ୍ୟା ୧୧ ନଥିବାରୁ ସେହି ଟିମ୍‌ରେ କିଛି ଅଣବିଧାୟକ ଥିଲେ । ଏହି ଅଣବିଧାୟକମାନେ ଯେ ଆଜେବାଜେ ଖେଳାଳୀ ତାହା ନୁହେଁ । ସେମାନଙ୍କ ମଧ୍ୟରେ ମଧ୍ୟ ଜାତୀୟ ସ୍ତରର ଖେଳାଳୀ ମଧ୍ୟ ଥିଲେ । ଓଡ଼ିଶା ମହିଳା ଫୁଟବଲ ଦଳର ଅଧିନାୟିକା ତଥା ଜାତୀୟ ସ୍ତରରେ ସୁଖ୍ୟାତି ଅର୍ଜନ କରିଥିବା ଶ୍ରଦ୍ଧାଂଜଳି ସାମନ୍ତରାୟ ମଧ୍ୟ ଏହି ବିଧାୟକଙ୍କ ସହିତ ଫୁଟବଲ ଖେଳୁଥିବାର ଦେଖାଯାଇଥିଲା । ସତେ ଯେମିତି ପଡ଼ିଆଟି ଏକ ମିନି ବିଧାନସଭା ପାଲଟି ଯାଇଥିଲା । ମାନେ ପ୍ରମୁଖ ଦଳର ବିଧାୟକଙ୍କୁ ସେଠାରେ ଫୁଟବଲ ଖେଳୁଥିବାର ଦେଖାଗଲା । କେବଳ ପୁରୁଷମାନେ ଖେଳିଲେ ଅସୁନ୍ଦର ହେବ ବୋଲି ଶ୍ରଦ୍ଧାଂଜଳି ସାମନ୍ତରାୟଙ୍କୁ ମଧ୍ୟ ଦଳରେ ସାମିଲ କରାଯାଇଥିଲା । ସମସ୍ତେ କିନ୍ତୁ ମାନୁଥା'ନ୍ତି ସରକାରୀ ଦଳ ଉପମୁଖ୍ୟ ସଚେତକ ଅରୁଣ ସାହୁଙ୍କୁ । ମାନେ

ପଢ଼ିଆ ବାହାରୁ ଦର୍ଶକ ସେହି ଖେଳକୁ ଦେଖିଲେ ଜାଣିପାରିବ ଯେ, ଅରୁଣ ହେଉଛନ୍ତି ଅଧିନାୟକ ବୋଲି । କୁଆଡ଼େ ଫୁଟବଲ ଖେଳ ସ୍ୱାସ୍ଥ୍ୟପକ୍ଷେ ହିତକାରକ । ମାନେ ଦେହରୁ ଝାଳ ବାହାରିବ ଆଉ ଶରୀର ସତେଜ ମଧ୍ୟ ରହିବ । ଏମିତି ସାଧାରଣତଃ ଫୁଟବଲ ଖେଳ ଅପରାହ୍ନରେ ହୋଇଥାଏ । କିନ୍ତୁ ବିଧାୟକଙ୍କ ଏହି ଫୁଟବଲ ଖେଳ ସକାଳେ ହେଉଛି । ଯାହା ହେଲେ ମଧ୍ୟ ଓଡ଼ିଶାବାସୀଙ୍କୁ ଫୁଟବଲପ୍ରେମୀ କରାଇବା ଆଉ ସ୍ୱାସ୍ଥ୍ୟ ପ୍ରତି ସଚେତନ କରାଇବା ପାଇଁ ବିଧାୟକମାନଙ୍କର ଏହି ଉଦ୍ୟମ ପ୍ରଶଂସନୀୟ ଅଟେ । ■

## ଆମର ୨୦ ଗୁଣ



ସେ ଦିନ ବିଧାନସଭାରେ ମୁହାଁମୁହିଁ ହୋଇଗଲେ ନୂତନ ଭାବେ ରାଜ୍ୟସଭା ସଭ୍ୟ ହୋଇଥିବା ବୈଷ୍ଣବ ପରିଡ଼ା ଆଉ ଗୋପାଳପୁର ବିଧାୟକ ଡକ୍ଟର ପ୍ରଦୀପ କୁମାର ପାଣିଗ୍ରାହୀ । ଉଭୟେ ଉଭୟଙ୍କୁ ନମସ୍କାର କଲେ । ହଠାତ୍ ପ୍ରଦୀପଙ୍କ ପାଟିରୁ ବାହାରି ଆସିଲା ଆମର ଆଜ୍ଞା ୨୦ ଗୁଣ । ସମଝଦାର ଆଦମୀ ପରି ବୈଷ୍ଣବ ପଚାରିଲେ ୨୦ ଗୁଣ କାହିଁକି । ପ୍ରଦୀପ କହିଲେ- ଆପଣଙ୍କୁ ଜିତାଇବା ପାଇଁ ବହୁ ପରିଶ୍ରମ କରିଛୁ । ତେଣୁ ପରିଶ୍ରମର ଫଳ ଏବେ ମାଗୁଛୁ । ଆପଣ ସେ ପରିଶ୍ରମ କଥା ଜାଣିପାରିବେ ନାହିଁ । ଏବେ ଖୋଲାଖୋଲି କଥା । ମାନେ ଆପଣଙ୍କ ସାଂସଦ ପାଣ୍ଠି ଆମ ଅଂଚଳକୁ ଯିବ । ଆପଣ ଅନ୍ୟ ଯାହାକୁ ସାଂସଦ ପାଣ୍ଠି ମଂଜୁର କରନ୍ତୁ ଆମର ସେଥିରେ କିଛି ଯାଏଆସେ ନାହିଁ । କିନ୍ତୁ ଅନ୍ୟମାନଙ୍କୁ ଯେତିକି ପାଣ୍ଠି ଦେବେ ତାହାର ୨୦ ଗୁଣ ଆମକୁ ଦେବେ । ବୈଷ୍ଣବ ପରିଡ଼ା ହସିହସି କହିଲେ- ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଜିଲା ହେଉଛି ଆପଣଙ୍କର ଗଂଜାମ ଜିଲା । ଯେଉଁଠି ମୁଖ୍ୟମନ୍ତ୍ରୀ ଅଛନ୍ତି ସେଠାରେ ଆମେ ନିମିତ ମାତ୍ର । ମୁଖ୍ୟମନ୍ତ୍ରୀଙ୍କ ଜିଲାରେ ଉନ୍ନୟନ କାମ ପାଇଁ ଅର୍ଥର ଅଭାବ ନାହିଁ । ଏହି ସମୟରେ ପ୍ରଦୀପ କହିଲେ- ଆପଣ ମୁଖ୍ୟମନ୍ତ୍ରୀଙ୍କ ନାମ କହି ଖସିଯିବାକୁ ଉଦ୍ୟମ କରନ୍ତୁ ନାହିଁ । ଆପଣଙ୍କ ଠାରୁ ସାଂସଦ ପାଣ୍ଠି ଆମ ଅଂଚଳକୁ ନେବା ପାଇଁ ଆମର ଅଧିକାର ଅଛି । ଯେହେତୁ ଆପଣଙ୍କ ନିର୍ବାଚନରେ ଆମକୁ ଝାଳନାଳ ହୋଇ ପରିଶ୍ରମ କରିବାକୁ ପଡ଼ିଛି । ଆମର ଯାହା ଦରକାର ହେବ ଆମେ ଆପଣଙ୍କୁ କହିବୁ ଏବଂ ଆପଣ ସାଂସଦ ପାଣ୍ଠିରୁ ତାହାକୁ ମଂଜୁର କରିବେ । ଏହି ସମୟରେ ଗୃହ ମଧ୍ୟରୁ କିଛି ବିଜେଡି ବିଧାୟକ ବାହାରିଲେ । ସେମାନଙ୍କୁ ଦେଖି ବୈଷ୍ଣବ କହିଲେ- ମୁଁ ଆଗ ପଳାଇଯାଏ ଲବିକୁ । ସେଠାରେ ଆଉ ଏ ଆଲୋଚନା ହେବନାହିଁ । ନଚେତ୍ ଯେଉଁଠି ଦେଖିଲେ ଏବେ କେବଳ ସାଂସଦ ପାଣ୍ଠି ସମ୍ପର୍କରେ ବିଜେଡି ବିଧାୟକମାନେ ଆଲୋଚନା କରୁଛନ୍ତି । ପ୍ରଦୀପ

କହିଲେ- ଯିଏ ଯେତେ ଆଲୋଚନା କଲେ ମଧ୍ୟ ଆମର କିଛି ଯାଏଆସେ ନାହିଁ । ଆମେ ଆପଣଙ୍କ ପାଇଁ ଝାଳନାଳ ହୋଇ ପରିଶ୍ରମ କରିଛୁ । ଆପଣ ମଧ୍ୟ ଆମକୁ ସେମିତି ଝାଳନାଳ ହୋଇ ସହଯୋଗର ହାତ ବଢ଼ାଇବେ । ବୈଷ୍ଣବ କହିଲେ- ହଉ ଏବେ ହେଲା । ଏହାପରେ ଉଭୟେ ଜୋର୍‌ରେ ହସି ଉଠିଲେ । ଆଉ ସେହି ହସକୁ ଦେଖି ନିକଟରେ ଥିବା ଅନ୍ୟ ବ୍ୟକ୍ତିମାନେ ମଧ୍ୟ ହସି ଚାଲିଲେ । ଦେଖାଯାଉ ବୈଷ୍ଣବ ତାଙ୍କର ସାଂସଦ ପାଣ୍ଠିରୁ କାହାକୁ କେତେ ଦେଉଛନ୍ତି । ଆଉ ସେଥିରୁ ଗୋପାଳପୁର ବିଧାୟକ ପ୍ରଦୀପ ପାଣିଗ୍ରାହୀଙ୍କ ଭାଗରେ କେତେ ପଡୁଛି । ■

## ଟାଲ ଗଛ ଲଗାଇବା



କେତେକ ବିଧାୟକଙ୍କର ଗଛ ଲଗାଇବା ଏକ ମାନିଆ ହୋଇଗଲାଣି । କିଏ କହିଲାଣି ଏହା ଏକ ଅଭିନବ ପ୍ରଚାର ବୋଲି ତ ଆଉ କିଏ କହିଲାଣି ଗଛ ନଲଗାଇଲେ ନେତାମାନଙ୍କୁ ଆଉ ଭୋଟ ମିଳିବ ନାହିଁ ବୋଲି । ଏବେ ଯିବା ଉତର ଭୁବନେଶ୍ୱରର ବିଜେଡି ବିଧାୟକ ଭାଗିରଥୀ ବଡ଼ଜେନାଙ୍କ ପାଖକୁ । ଏମିତି ଭାଗିରଥୀଙ୍କର ଦୁର୍ବଳତା କଥା ଉଠିଲେ କୁହାଯିବ ସମବାୟ । ମାନେ ସମବାୟ ରାଜନୀତିରୁ ତାଙ୍କର ରାଜନୀତି ଆରମ୍ଭ । ସମବାୟକୁ ସେ ଏଯାବତ୍ ବି ଧରି ରଖିଛନ୍ତି । ଭାଗିରଥୀଙ୍କର ଅନ୍ୟ କେଉଁ ଦୁର୍ବଳତା ପ୍ରସଙ୍ଗ ଉଠିଲେ ତାହା ହେବ ଧଳା ରଙ୍ଗର ପୋଷାକ ପିନ୍ଧିବା । ପୁଣି ଯଦି କେହି ଆଉ କେଉଁ ଦୁର୍ବଳତା ପ୍ରସଙ୍ଗ ଉଠାନ୍ତି ତେବେ ତାହା ହେବ ଭୋଜିଭାତ କରି ଭାଗିରଥୀ ଅନ୍ୟଙ୍କୁ ଖାଇବାକୁ ଦେବା । ଏହାପରେ ଭାଗିରଥୀଙ୍କ ଠାରେ ଆଉ ଏକ ଦୁର୍ବଳତା ଏବେ ଦେଖାଦେଇଛି । ତାହା ହେଲା ଗଛ ଲଗାଇବା ଦୁର୍ବଳତା । ମାନେ ଉତର-ଭୁବନେଶ୍ୱରକୁ ସବୁଜିମା କରିବା ପାଇଁ ଭାଗିରଥୀ ଏବେ ଉଦ୍ୟମରତ । କୁଆଡ଼େ ବହୁ ନାମୀଦାମୀ ଗଛ ଭାଗିରଥୀ କିଣିଛନ୍ତି ଆଉ ତାଙ୍କ ନିର୍ବାଚନମଣ୍ଡଳୀରେ ଥିବା ଗାଁରେ ସେ ତାଙ୍କ ଦ୍ୱାରା ପ୍ରଦତ ଗଛକୁ ଲଗାଇବା ଆରମ୍ଭ କରିଛନ୍ତି । ବର୍ଷାଦିନରେ ଗଛ ଲଗାଇଲେ ପ୍ରାୟ ଶତ ପ୍ରତିଶତ ଗଛ ବଂଚେ । ତେଣୁ ବର୍ଷାଦିନର ଫାଇଦା ନେବା ପାଇଁ ଭାଗିରଥୀ ଏବେ ଆଗଭର ହୋଇଛନ୍ତି । ଭାଗିରଥୀଙ୍କ ଦରବାର ବି କିଛି କମ୍ ନୁହେଁ । ଯିଏ ଯେତେବେଳେ ଆସନ୍ତି ସମସ୍ତେ ଏହି ଦରବାରରେ ଚା' ନିଶ୍ଚିତ ପିଇବେ । ଏବେ ଦରବାରକୁ ଆସୁଥିବା ଲୋକମାନଙ୍କୁ ଚା' ସହିତ ଗଛଟିଏ ବି ଦିଆଯାଉଛି । ଭାଗିରଥୀଙ୍କ ଏହି ଗଛ ରାଜନୀତି କ୍ରମେ ଆଦୃତ ହେବାରେ ଲାଗିଲାଣି । ଚାରିଆଡ଼େ ପ୍ରଚାର ହେଲାଣି ଯେ, ଭାଗିରଥୀଙ୍କ ଘରକୁ ଗଲେ ଚା' ପିଇବାକୁ ମିଳିବ ଆଉ ମାଗଣାରେ ଗଛଟିଏ ମଧ୍ୟ ମିଳିବ । ଏହି ପ୍ରଚାର ଏତେ ଜୋର୍‌ଦାର୍ ହେଲା ଯେ, ସକାଳେ ଭାଗିରଥୀଙ୍କ ଘରେ ଲୋକଙ୍କର ଜୋର୍‌ଦାର୍ ଭିଡ଼ ଦେଖିବାକୁ ମିଳିଲା । ସମସ୍ତେ ଗଛ ନେବା ପାଇଁ

ଆସିଥା'ନ୍ତି । ଭାଗିରଥୀ ମଧ୍ୟ ଅକୁଣ୍ଠିତ ଚିତରେ ଗଛ ଦେଇଥା'ନ୍ତି । ଏବେ ତାଙ୍କର ପ୍ରଚାର ହେଉଛି ରାଜନୀତି ବହୁତ ହେଲାଣି । ଗଛ ଲଗାଅ । ପ୍ରଥମେ ଗଛ ଲଗାଯାଉ ତା'ପରେ ରାଜନୀତି ଚର୍ଚ୍ଚା । ଭାଗିରଥୀ ଗଛ ପ୍ରିୟ କାହିଁକି ହେଲେ ତାହା ମଧ୍ୟ କେହି କହିପାରୁନାହାନ୍ତି । ଭାଗିରଥୀ ଯେ ଆଜି ରାଜନୀତି କରୁଛନ୍ତି ତାହା ନୁହେଁ । ଛାତ୍ର ଜୀବନରୁ ସେ ଭୁବନେଶ୍ୱରରେ ରାଜନୀତି କରିଆସୁଛନ୍ତି । ପୁଣି ତାଙ୍କର ନିଜ ଗ୍ରାମ ମେଣ୍ଢାଶାଳ ବି ଚନ୍ଦକା ଜଙ୍ଗଲ ଅଂଚଳରେ । ଏହାସତ୍ତ୍ୱେ ଗଛ ପ୍ରେମୀ ହେବା ସତ୍ତ୍ୱେ ଭାଗିରଥୀ ସମବାୟ ପ୍ରେମୀ ହୋଇଥିଲେ । ଏବେ କେତେକ ବିଜେଡି ନେତା କହୁଛନ୍ତି ଯେ, ଭାଗିରଥୀ ରହୁଛନ୍ତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଘର ନବୀନ ନିବାସ ନିକଟରେ । ସେହି ଅଂଚଳରେ ଜିରାଟିଏ ଫୁଟିଲେ ତାହା ନବୀନଙ୍କୁ ଶୁଣାଯିବ ନିଶ୍ଚିତ । ନବୀନ ଏମିତି ତ ସଂସ୍କୃତି ପ୍ରିୟ ଅଟନ୍ତି ପୁଣି ବୃକ୍ଷ ପ୍ରିୟ ମଧ୍ୟ । ନହେଲେ ଏକାମ୍ର ନିର୍ବାଚନମଣ୍ଡଳୀରେ ତାଙ୍କରି ନିର୍ଦ୍ଦେଶକ୍ରମେ ଏକାମ୍ରକାନନ ହେଉ କିମ୍ବା ଅନ୍ୟ କେଉଁଠି ହେଉ ବୃକ୍ଷରୋପଣ କାର୍ଯ୍ୟକ୍ରମ ଜୋରଦାର୍ ହେଉ ନଥା'ନ୍ତା । ଔଷଧୀୟ ବୃକ୍ଷରୋପଣ କରାଯିବା ପାଇଁ ନବୀନଙ୍କର ବେଶ୍ ଆଗ୍ରହ ରହିଛି । ନବୀନଙ୍କର ଗଛ ପ୍ରତି ଦୁର୍ବଳତା ଥିବାର ଜାଣିବା ପରେ ଭାଗିରଥୀଙ୍କର ଏବେ ଗଛ ପ୍ରତି ଦୁର୍ବଳତା ଆସିଯାଇଛି । ଆଉ ପ୍ରତିଦିନ ଶହଶହ ଲୋକଙ୍କୁ ବୃକ୍ଷରୋପଣ ପାଇଁ ଭାଗିରଥୀ ଗଛ ବାଂଟୁଥିବାରୁ ସେହି ଖବର ନିଶ୍ଚିତ ଭାବେ ନବୀନଙ୍କ କାନରେ ପଡ଼ିବ ହିଁ ପଡ଼ିବ । ଆଉ ନବୀନଙ୍କର ମଧ୍ୟ ଭାଗିରଥୀ ପ୍ରିୟ ହୋଇଯିବେ । ଦେଖାଯାଉ ଗଛ ବାଂଟି ଭାଗିରଥୀ ନବୀନଙ୍କର ପ୍ରିୟ ତାଲିକାରେ ସ୍ଥାନ ପାଇପାରୁଛନ୍ତି ନା ନାହିଁ । ■

## ଅରୁଣଙ୍କ ରଙ୍ଗେଲି ସ୍ୱପ୍ନ



ଅରୁଣ ସାହୁ ବିଜେଡି ଟିକେଟରେ କ୍ରମାଗତ ଭାବେ ଦୁଇଥର ନୟାଗଡ଼ରୁ ବିଧାୟକ ହେବାପରେ ଏବେ ସେ ସରକାରୀ ଦଳ ଉପମୁଖ୍ୟ-ସଚେତକ । ଏମିତି ଯେକୌଣସି ବିଧାୟକ ପରବର୍ତୀ ସମୟରେ ଯେପରି ପୁଣି ବିଧାୟକ ହେବେ ସେହି ସ୍ୱପ୍ନ ସେମାନେ ଦେଖିବା ସ୍ୱାଭାବିକ ଅଟେ । ଅରୁଣ ଯେ ଏହି ସ୍ୱପ୍ନ ଦେଖୁନାହାନ୍ତି ତାହା ନୁହେଁ । କିନ୍ତୁ ତାଙ୍କର ଆଉ ଏକ ସ୍ୱପ୍ନ ଅଛି ଯାହାକି ଅନ୍ୟ ସ୍ୱପ୍ନ ଠାରୁ ବ୍ୟତିକ୍ରମ ଅଟେ । ଏମିତି ତ ଅରୁଣଙ୍କର ସ୍ୱପ୍ନ କ'ଣ ତାହା କେହି ପ୍ରାୟ ଜାଣନ୍ତି ନାହିଁ । ସେଦିନ ନୟାଗଡ଼ କଲେଜ ସୁବର୍ଣ୍ଣ ଜୟନ୍ତୀ ପାଳନ ପାଇଁ ପୂର୍ବତନ ଛାତ୍ରମାନଙ୍କର ହୋଇଥିବା ବୈଠକରେ ଯୋଗ ଦେଇଥିଲେ ଅରୁଣ । ଏହି ଅବସରରେ ଅରୁଣ ନୟାଗଡ଼ କଲେଜ-ପରିସରରେ ବୃକ୍ଷରୋପଣ କରିଥିଲେ । ବହୁ ଦାମୀ ଗଛ ସେ କଲେଜରେ ଲଗାଇଥିଲେ । ତେବେ ନୟାଗଡ଼ କଲେଜକୁ ବୃକ୍ଷରୋପଣ କରି ଜଙ୍ଗଲ କରିଦେବା ପାଇଁ ଯେ ଅରୁଣଙ୍କର ଇଚ୍ଛା ତାହା ନୁହେଁ । ଅରୁଣ ସେଦିନ କହୁକହୁ ତାଙ୍କର ମନର କଥା କହିଦେଲେ । ନୟାଗଡ଼ରେ ଯେଉଁ ପାହାଡ଼ ରହିଛି ସେଥିରେ

ବିଭିନ୍ନ ରଙ୍ଗର କାଗଜିଫୁଲ ଗଛ ଲଗାଇବାକୁ କୁଆଡ଼େ ତାଙ୍କର ଭାରି ଇଚ୍ଛା । ଏହା ହେଲେ ପାହାଡ଼ ବହୁ ସୁନ୍ଦର ଦେଖାଯିବ । ମାନେ କାଗଜିଗଛର ରଙ୍ଗବେରଙ୍ଗ ଫୁଲରେ ପାହାଡ଼ ଭରପୂର ହୋଇଯିବ ଆଉ ପାହାଡ଼ ରଙ୍ଗୀନ ଦେଖାଯିବ । ଏହାକୁ ଦେଖିବା ପାଇଁ ଦୂରଦୂରାନ୍ତରରୁ ପର୍ଯ୍ୟଟକ ବି ଆସିବେ । ଅରୁଣଙ୍କର ଏହି ଇଚ୍ଛା ପୂରଣ ହେବ କି ନାହିଁ ତାହା ଏବେଠାରୁ କହି ହେବନାହିଁ । କିନ୍ତୁ ଅରୁଣ ସତେ ଯେମିତି ପ୍ରତିଜ୍ଞାବଦ୍ଧ ହୋଇଯାଇଛନ୍ତି । ନୟାଗଡ଼ରେ ଥିବା ପାହାଡ଼ ସାରା କାଗଜିଫୁଲ ଗଛ ଲଗାଇବା ପାଇଁ ସେ ଏବେଠାରୁ ଉଦ୍ୟମରତ । ଏମିତି ପାହାଡ଼ରେ କିଏ ଶାଗୁଆନ ଗଛ ତ କିଏ ଶାଳ ଗଛ କିମ୍ବା ଅଣଶାଳଗଛ ଲଗାଇବା ପାଇଁ ପରାମର୍ଶ ଦିଅନ୍ତି । କିନ୍ତୁ ଅରୁଣଙ୍କର ଜିଦ୍ ଯେ, ପାହାଡ଼ରେ ଯେଉଁ ଗଛ ଥାଉ ପଛେ ସେ କିନ୍ତୁ ଲଗାଇବେ କାଗଜିଫୁଲ ଗଛ । ନୟାଗଡ଼ ସହରଟି ପାହାଡ଼ରେ ଲାଗିଥିବା କାଗଜି ଗଛର ଫୁଲରେ ହୋଇଯିବ ରଙ୍ଗବେରଙ୍ଗ । ଆଉ କିଛି ହେଉ କି ନହେଉ ଏହି ରଙ୍ଗବେରଙ୍ଗ ନୟାଗଡ଼କୁ ଦେଖିବା ପାଇଁ ସାରା ଓଡ଼ିଶାବାସୀ ନୟାଗଡ଼ ଆସିବେ ହିଁ ଆସିବେ ବୋଲି ଅରୁଣ ମତ ଦିଅନ୍ତି । ଦେଖାଯାଉ ନୟାଗଡ଼କୁ ରଙ୍ଗବେରଙ୍ଗ ସହରରେ ପରିଣତ କରିବା ପାଇଁ ଅରୁଣ ଯେଉଁ କାଗଜିଫୁଲ ଗଛ ଲଗାଇବା ନିମନ୍ତେ ସ୍ୱପ୍ନ ଦେଖିଛନ୍ତି ତାହା ସାକାର ହୋଇପାରୁଛି କି ନାହିଁ । ■

## ଚାଷୀ ସୁବର୍ଣ୍ଣ



କେନ୍ଦୁଝର ସଦର ବିଧାୟକ ସୁବର୍ଣ୍ଣ ନାୟକଙ୍କର **ଚାଷ ଉପରେ ଧ୍ୟାନ** ଅଛି ବୋଲି ଏମିତି କେହି ଜାଣନ୍ତି ନାହିଁ । ଇଂଜିନିୟର ଚାକିରିରୁ ଅବ୍ୟାହତି ନେଇ ସୁବର୍ଣ୍ଣ ରାଜନୀତିକୁ ଆସିଛନ୍ତି । ଆଉ ବିଜେଡି ଟିକେଟରେ ସେ କେନ୍ଦୁଝର ସଦରରୁ ଏଥର ବିଧାୟକ ହୋଇଛନ୍ତି । ବିଧାୟକ ଭାବେ ଏମ୍ଏଲ୍ଏ କଲୋନୀରେ ସେ ଯେଉଁ କ୍ୱାର୍ଟରଟି ପାଇଛନ୍ତି ଚାଲନ୍ତୁ ସେଠାକୁ ଯିବା । ଏମିତି ବିଧାୟକମାନେ କ୍ୱାର୍ଟର ପାଖରେ ଥିବା ଖାଲି ସ୍ଥାନରେ ଗଛ ପ୍ରାୟ ଲଗାଇ ନଥା'ନ୍ତି । ନିର୍ବାଚନମଣ୍ଡଳୀରୁ ଆସୁଥିବା ଲୋକଙ୍କ କଥା ଶୁଣୁଶୁଣୁ ତାଙ୍କର ସମୟ ଚାଲିଯାଏ ଆଉ ଏହି ଗଛ ପ୍ରତି ସାମାନ୍ୟ ଦୃଷ୍ଟି ଦେବା ପାଇଁ ସେମାନଙ୍କ ପାଖରେ ସମୟ ବି ନଥାଏ । ସୁବର୍ଣ୍ଣ କିନ୍ତୁ ଏଥିରୁ ବ୍ୟତିକ୍ରମ । ସେ କୁଆଡ଼େ ବେଶ୍ ଗଛ ପ୍ରିୟ । ତାଙ୍କୁ ମିଳିଥିବା କ୍ୱାର୍ଟର ପାଖରେ ଥିବା ଖାଲି ସ୍ଥାନରେ ସେ ବିଭିନ୍ନ ଗଛ ଲଗାଇଛନ୍ତି । ଏହା ପୁଣି ଫୁଲ ନୁହେଁ ପନିପରିବା । କେତେବେଳେ ବଗିଚାରେ କାମ କରିବାକୁ ସମୟ ମିଳୁଛି ବୋଲି ପଚରାଗଲେ ସୁବର୍ଣ୍ଣଙ୍କର ଉତ୍ତର ହେଉଛି ସେମିତି କିଛି ନିର୍ଦ୍ଦିଷ୍ଟ ସମୟ ନଥାଏ । ତେବେ ସକାଳେ ସେ ବଗିଚା କାମ କରିଥା'ନ୍ତି । ନିଜେ ମାଟି ହାଣନ୍ତି, ଗଛ ଲଗାନ୍ତି, ଘାସ ବି ବାଛନ୍ତି । ଚାଷକୁ ନିଜେ ନଦେଖିଲେ ତାହା ଉଜୁଡ଼ିଯିବ ହିଁ ଯିବ । କେନ୍ଦୁଝର ପରି ଏକ ଅଗମ୍ୟ ଅଂଚଳର ବାସିନ୍ଦା ହୋଇଥିବାରୁ ସେ ଏହାକୁ ବେଶ୍ ଭଲ ଭାବେ ଜାଣିଛନ୍ତି । ଯେଉଁଥିପାଇଁ ତାଙ୍କୁ

ମିଳିଥିବା ବିଧାୟକ କ୍ୱାର୍ଟରରେ ପନିପରିବା ଗଛ ସେ ଲଗାଇଛନ୍ତି । ଏମିତି ଗଛର ଯତ୍ନ ନେଲେ ତାହାର ଆର୍ଶବାଦ ମିଳେ । ଗଛର ଆଶିର୍ବାଦ ମଣିଷଙ୍କ ଆଶିର୍ବାଦ ଠାରୁ ବହୁ ଉପରେ । ତେଣୁ ଗଛର ଯତ୍ନ ନେଲେ ଆଶିର୍ବାଦ ମିଳିବ ଆଉ ଭବିଷ୍ୟତରେ ଉତୋରତୋର ଉନ୍ନତି ହେବ ଏହା ଭାବି ନେଇଛନ୍ତି ସୁବର୍ଣ୍ଣ । ଦେଖାଯାଉ ଗଛପ୍ରିୟ ହୋଇ ସୁବର୍ଣ୍ଣ ତାଙ୍କର ରାଜନୈତିକ ଜୀବନକୁ କେତେଦୂର ସାର୍ଥକ କରିପାରୁଛନ୍ତି । ■

# ଗୁରୁ-ଶିଷ୍ୟ



ରାଜନୀତିରେ ଗୁରୁ ରହିବେ ଆଉ ଶିଷ୍ୟ ବି ରହିବେ । ଏହା କେଉଁ ଆଦିମ କାଳରୁ ଚାଲିଆସିଛି । ତେବେ ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ କାହାର ଶିଷ୍ୟ ଆଉ ତାଙ୍କର ଗୁରୁ କିଏ ତାହା ପ୍ରାୟ କେହି ଜାଣନ୍ତି ନାହିଁ । ଏମିତି ୧୯୬୬ ମସିହାରେ ନାକ ତଳ ନିଶ ଟାଣ ନହେଉଣୁ ପ୍ରଫୁଲ୍ଲ ପଶ୍ଚିମ ଯାଜପୁର ବିଧାନସଭା ଆସନରେ ଜନକଂଗ୍ରେସରୁ ପ୍ରାର୍ଥୀ ହୋଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେହି ସମୟରେ ସେ ସରକାରୀ ଦଳର ଉପମୁଖ୍ୟ ସଚେତକ ଭାବେ ମଧ୍ୟ ନିଯୁକ୍ତି ପାଇଥିଲେ । ସେତେବେଳେ ଜନକଂଗ୍ରେସ କଥା ଉଠୁଥିଲେ ହରେକୃଷ୍ଣ ମହତାବଙ୍କ ପ୍ରସଙ୍ଗ ଉଠେ । ଏହି ଦୃଷ୍ଟିରୁ ପ୍ରଫୁଲ୍ଲ ଘଡ଼ାଇଙ୍କୁ ହରେକୃଷ୍ଣ ମହତାବଙ୍କ ଚେଲା ବୋଲି ଅନେକ ଭାବୁଥିଲେ । କିନ୍ତୁ ଜୟଦେବଭବନ ଠାରେ ଅନୁଷ୍ଠିତ ଦୂତିକୃଷ୍ଣ ପଣ୍ଡାଙ୍କ ୮୮ତମ ଜନ୍ମଜୟନ୍ତୀ ପାଳନ ଅବସରରେ ପ୍ରଫୁଲ୍ଲ ଗୁମର ପେଡ଼ି ଫିଟାଇ ଦେଇଥିଲେ । ସେଠାରେ ସିଏ କହିଥିଲେ ଯେ, କମ୍ୟୁନିଷ୍ଟ ନେତା ଦୂତିକୃଷ୍ଣଙ୍କର ସେ ହେଉଛନ୍ତି ଚେଲା । ଆଉ ଦୂତିକୃଷ୍ଣଙ୍କୁ ଗୁରୁ ଭାବେ ସେ ମାନିଥିଲେ ବୋଲି ମଧ୍ୟ ଖୋଲାଖୋଲି କହିଲେ । ଏମିତି ପ୍ରଫୁଲ୍ଲ ମଧ୍ୟ ଜଣେ ଶ୍ରମିକ ନେତା ଅଟନ୍ତି । ଏବେ ସେ ନବୀନ ପଟ୍ଟନାୟକ ସରକାରରେ ଗୁରୁତ୍ୱପୂର୍ଣ୍ଣ ଅର୍ଥ ଓ ଅବକାରୀ ବିଭାଗର ମନ୍ତ୍ରୀ ଅଟନ୍ତି । ସାଧାରଣତଃ ଶ୍ରମିକ ନେତା ହେଲେ କମ୍ୟୁନିଷ୍ଟ ଆଦର୍ଶରେ କିଛିଟା ପରିଚାଳିତ ହେବାକୁ ହୁଏ । ଏମିତି ଖଣି ଶ୍ରମିକ ହୁଅନ୍ତୁ କି ଅନ୍ୟ ଶ୍ରମିକ ହୁଅନ୍ତୁ ସେମାନଙ୍କର ନେତା ପ୍ରଫୁଲ୍ଲ ହୋଇଥିଲେ । ଦୂତିକୃଷ୍ଣଙ୍କ ଶିଷ୍ୟ ହୋଇ ତାଙ୍କର ଏହି ଶ୍ରମିକ ରାଜନୀତି ବେଶ୍ ସଫଳ ହୋଇଥିଲା । ଅବଶ୍ୟ ଦୂତିକୃଷ୍ଣଙ୍କୁ ଗୁରୁ ବୋଲି ସ୍ୱୀକାର କରିବା ପାଇଁ ପ୍ରଫୁଲ୍ଲଙ୍କୁ ୪୩ ବର୍ଷ ଲାଗିଯାଇଛି । ତେବେ ପ୍ରଫୁଲ୍ଲଙ୍କ ଠାରେ ଗୁରୁ-ଶିଷ୍ୟ ପରମ୍ପରା ବେଶ୍ ସମ୍ମାନଜନକ ହୋଇଛି । ଏମିତି ରାଜନୀତିରେ ସାଧାରଣତଃ ଗୁରୁ-ଶିଷ୍ୟ ସମ୍ପର୍କ କଳୁଷିତ ହେବାରେ ଲାଗିଛି । ଗୁରୁଙ୍କ ତ ଂଟିରେ ଗୋଡ଼ ଦେଇ ଯେଉଁ ଶିଷ୍ୟ ଉଠିପାରବ ନାହିଁ ତାଙ୍କୁ ଏବେ ପ୍ରକୃତ ଶିଷ୍ୟ ବୋଲି କୁହାଯାଉନାହିଁ । କିନ୍ତୁ ପ୍ରଫୁଲ୍ଲ ଏଥିରୁ ବ୍ୟତିକ୍ରମ ଅଟନ୍ତି । ସେ ଗୁରୁ ବୋଲି ସ୍ୱୀକାର କରିଥିବା ଦୂତିକୃଷ୍ଣଙ୍କ ତଂଟିରେ ଗୋଡ଼ ପକାଇ ଉପରକୁ ଉଠିନାହାନ୍ତି । ଭବିଷ୍ୟତରେ କ'ଣ ହେବ ତାହା କହି ହେବନାହିଁ । କିନ୍ତୁ ଏଯାବତ୍ ଗୁରୁ-ଶିଷ୍ୟ ସମ୍ପର୍କକୁ ବେଶ୍ ଅତୁଟ ରଖିବାରେ ପ୍ରଫୁଲ୍ଲଙ୍କୁ ସାବାସି ଦେବାକୁ ହେବ ହିଁ ହେବ । ■

# ପ୍ୟାରୀଙ୍କ ପ୍ରତିନିଧି

ବିଜେଡିର ଦ୍ୱିତୀୟ କ୍ଷମତା କେନ୍ଦ୍ର ବୋଲି କୁହାଯାଉଥିବା ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କର ନିକଟତର ହେବା ପାଇଁ ଏମିତି ବିଜେଡିର ବହୁ ମନ୍ତ୍ରୀ, ବିଧାୟକଙ୍କ ସମେତ ଦଳର ବହୁ ନେତା ମଧ୍ୟ ସବୁବେଳେ ଉଦ୍ୟମ ଜାରି ରଖିଛନ୍ତି । ଏ କ୍ଷେତ୍ରରେ ସୁଯୋଗ ପାଇଲା ମାତ୍ରେ ତାହାକୁ ସଦ୍‌ବ୍ୟବହାର କରିବା ପାଇଁ ସେମାନେ ସବୁବେଳେ ଓରଉଣି ବସିଛନ୍ତି । କିନ୍ତୁ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇ ଛାତ୍ର ଜୀବନରେ ରାଜନୀତି କରି ପରବର୍ତ୍ତୀ ସମୟରେ ଆଇଏଏସ୍ ଅଫିସର ହୋଇଥିବା ପ୍ୟାରୀମୋହନ ଚାକିରିରୁ ଅବସର ନେବା ପରେ ବିଜେଡି ରାଜନୀତିରେ ସକ୍ରିୟ ଭୂମିକା ଏବେ ଗ୍ରହଣ କରୁଥିବାରୁ ସେ ତାଙ୍କ ଅଭିଜ୍ଞତାରେ କାହାକୁ ପାଖରେ ରଖିବେ ଆଉ କାହାକୁ ଛାଡ଼ିବେ ତାହା ଭଲ ଭାବେ ଜାଣନ୍ତି । ଏମିତି ତ ପ୍ୟାରୀମୋହନ କୁଆଡ଼େ ଭବିଷ୍ୟଗଣନା ମଧ୍ୟ କରନ୍ତି । ମହାଭାରତରେ ସହଦେବ ଭବିଷ୍ୟଗଣନାରେ ଓସ୍ତାଦ ଥିଲେ । କିନ୍ତୁ ତାଙ୍କୁ ଭବିଷ୍ୟତ ସମ୍ପର୍କରେ ପଚରା ଗଲେ ହିଁ ସେ ତାହା କହିପାରୁଥିଲେ । ଯଦି କେହି ନପଚାରନ୍ତି ତେବେ ସେ ଭବିଷ୍ୟତ ସମ୍ପର୍କରେ କହିପାରୁ ନଥିଲେ । ଏହାର ବ୍ୟତିକ୍ରମ ହେଉଛନ୍ତି ପ୍ୟାରୀମୋହନ । ସେ ଅନ୍ୟ କାହାର ଭବିଷ୍ୟତ ସମ୍ପର୍କରେ ଜାଣନ୍ତୁ କିମ୍ବା ନଜାଣନ୍ତୁ କିନ୍ତୁ ନିଜର ଗୋଟିଚାଳନା ଭବିଷ୍ୟତ ସମ୍ପର୍କରେ ସେ ଭଲ ରୂପେ ଜାଣିନିଅନ୍ତି । ଯେଉଁଥିପାଇଁ ୨୦୦୦ ମସିହାରୁ ଏଯାବତ୍ ସେ ଯେଉଁ ଭବିଷ୍ୟଗଣନା କରିଛନ୍ତି ତାହାସବୁ ଖାଂଟି ସତ ହୋଇଛି । ଏହି ଦୃଷ୍ଟିରୁ ପ୍ୟାରୀମୋହନ ତାଙ୍କର ପାଖଲୋକ ଭାବେ କାହାକୁ ରଖିଲେ ତାଙ୍କର ଗୋଟିଚାଳନା ଓ ବିଜେଡି ରାଜନୀତି ଉପରକୁ ଉଠିବ ତାହା ସେ ଭଲ ରୂପେ ଜାଣି ନେଇଛନ୍ତି । ଅନେକ ସମୟରେ ବିଭିନ୍ନ ନେତା ପ୍ୟାରୀମୋହନଙ୍କର ନିକଟତମ ବୋଲି ଚର୍ଚ୍ଚା ହୁଏ । ଏବେ ପ୍ୟାରୀମୋହନଙ୍କର ସବୁଠାରୁ ନିକଟତମ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ ବୋଲି ବେଶ୍ ବାରି ହୋଇଯାଇଛି । ଏମିତି ସୂଚନା ଭବନ ଠାରେ ଅନୁଷ୍ଠିତ ହେବାକୁ ଥିବା ଦୃତିକୃଷ୍ଣ ପଣ୍ଡାଙ୍କ ୮୮ତମ ଜୟନ୍ତୀ ଉତ୍ସବରେ ପ୍ୟାରୀମୋହନ ମହାପାତ୍ର ମୁଖ୍ୟ ଅତିଥି ଭାବେ ଯୋଗ ଦେବାର କାର୍ଯ୍ୟକ୍ରମ ଥିଲା । ଦେଖାଗଲା ପ୍ୟାରୀମୋହନ ସେହି ସଭାକୁ ଆସିନାହାନ୍ତି । ଆଉ ନିମନ୍ତ୍ରଣ ପତ୍ରରେ ଯାହାର ନାମ ନଥିଲା ସେହି ଅତନୁ ସବ୍ୟସାଚୀ ନାୟକ ସେଠାରେ ଅତିଥି ଭାବେ ଯୋଗ ଦେବାକୁ ଉପସ୍ଥିତ ହୋଇଛନ୍ତି । ସଭାରେ ଉପସ୍ଥିତ ଦର୍ଶକଙ୍କୁ ଏହା ଟିକିଏ ଖଟ୍‌କା ଲାଗିଲା । କିନ୍ତୁ ଭାଷଣ ଦେବା ବେଳକୁ ଅତନୁ ଏସମ୍ପର୍କରେ ସ୍ପଷ୍ଟ କରିଦେଲେ । ସେ କହିଦେଲେ ପ୍ୟାରୀମୋହନ ମହାପାତ୍ର ଦିଲ୍ଲୀରେ ଅଛନ୍ତି । ସେ ଏଠାକୁ ଆସିପାରୁ ନଥିବାରୁ ଏହି ସଭାରେ ତାଙ୍କ ପକ୍ଷରୁ ଯୋଗ ଦେବା ପାଇଁ ତାଙ୍କୁ କହିଲେ । ଏହି ନିର୍ଦ୍ଦେଶ ପାଇବା ବେଳକୁ ସେ କେନ୍ଦ୍ରାପଡ଼ା ଜିଲାରେ ଥିଲେ । ନିର୍ଦ୍ଦେଶ ପାଇ ତୁରନ୍ତ ସଭାକୁ ଆସିଛନ୍ତି ବୋଲି ଅତନୁ

କହିଲେ । ପୁଣି ଯେତେବେଳେ ଦୂତିକୃଷ୍ଣଙ୍କୁ ଅତନୁ ଲାଲରଙ୍ଗର ଗୋଲପ ଫୁଲମାଳ ପିନ୍ଧାଇଲେ ସେତେବେଳେ ସେ ଦୂତିକୃଷ୍ଣଙ୍କୁ ସୂଚାଇ ଦେଲେ ଯେ, ଏହି ମାଳଟି ଦିଲ୍ଲୀରୁ ଆସିଛି । ମାନେ ଦିଲ୍ଲୀରେ ଥିବା ପ୍ୟାରୀମୋହନ ମହାପାତ୍ର ତାଙ୍କ ମାଧ୍ୟମରେ ଏହି ମାଳଟି ପଠାଇଛନ୍ତି । ଅତନୁଙ୍କର ଏହି ସ୍ପଷ୍ଟୀକରଣକୁ ନେଇ ସଭାସ୍ଥଳରେ ବିଜେଡି ରାଜନୀତି ସମ୍ପର୍କରେ ବେଶ୍ ଚର୍ଚ୍ଚା ହେଲା । ଆଉ ସବୁ ଚର୍ଚ୍ଚାର ମୁଖ୍ୟ ହେଲେ ଅତନୁ ଏବଂ ସେ ହେଉଛନ୍ତି ପ୍ୟାରୀମୋହନ ମହାପାତ୍ରଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଓ ପ୍ରକୃତ ଶିଷ୍ୟ ବୋଲି ସଭାସ୍ଥଳରେ ଚର୍ଚ୍ଚା ହେଉଥିବାର ଦେଖିବାକୁ ମିଳିଲା । ଏବେ ଆଉ ଦ୍ୱନ୍ଦ୍ୱରେ କେହି ରହିବା ଉଚିତ ନୁହେଁ । ପ୍ୟାରୀମୋହନଙ୍କର ସବୁଠାରୁ ନିକଟତର ଅତନୁ ସବ୍ୟସାଚୀ ନାୟକ ବୋଲି ସ୍ପଷ୍ଟ କରିଦେଇଛି ଦୂତିକୃଷ୍ଣ ପଣ୍ଡାଙ୍କ ୮୮ତମ ଜନ୍ମଜୟନ୍ତୀ ଉତ୍ସବ । ରାଜନୀତିରେ ସବୁଦିନ ଶତ୍ରୁ ନଥା'ନ୍ତି କି ବନ୍ଧୁ ବି ନଥା'ନ୍ତି । ତେବେ ଦୀର୍ଘଦିନ ଧରି ଶିଷ୍ୟ ରହିଥା'ନ୍ତି । ଦେଖାଯାଉ ପ୍ୟାରୀମୋହନ ଓ ଅତନୁଙ୍କ ଗୁରୁ-ଶିଷ୍ୟ ସମ୍ପର୍କ କେତେଦିନ ଅତୁଟ ରହୁଛି । ■

## ନରସିଂହଙ୍କ ନିଶ



ନରସିଂହ ମିଶ୍ର ହେଉଛନ୍ତି ପୂର୍ବତନ ମନ୍ତ୍ରୀ । ୨୦୦୪ରେ ବିଧାନସଭାରେ କଂଗ୍ରେସର ସେ ପ୍ରବକ୍ତା ଥିଲେ ବୋଲି କହିଲେ କିଛି ଅତ୍ୟୁକ୍ତି ବି ହେବନାହିଁ । ତାଙ୍କର ଆଇନ ଜ୍ଞାନ ଏତେ ଗଭୀର ଯେ ତାଙ୍କୁ ଯୁକ୍ତିରେ ବି କେହି କାଟିପାରିବେ ନାହିଁ । କେବେ ନରସିଂହ ମିଶ୍ର ନିଶ ରଖୁଥିବେ ତାହା କହି ହେବନାହିଁ । କେବଳ ଦେଖିବା ଲୋକ ହିଁ ତାହା କହିବେ । ୨୦୦୪ରେ ବିଧାୟକ ଥିବାବେଳେ ନରସିଂହ ମିଶ୍ରଙ୍କର ମଧ୍ୟ ସେମିତି ନିଶ ଥିବାର କେହି ଜାଣନ୍ତି ନାହିଁ । ଏବେ କିନ୍ତୁ ଅତି ଆକସ୍ମିକ ଭାବେ ଦେଖାଗଲା ଯେ, ନରସିଂହ ମିଶ୍ର ନିଶ ରଖିଛନ୍ତି । ହୋଇପାରେ କେଉଁ ପରିସ୍ଥିତିରେ ପଡ଼ି ସେ ନିଶକୁ କଅଁଳିବାକୁ ଛାଡ଼ି ଦେଇଛନ୍ତି ଆଉ ତାଙ୍କର ନିନ୍ଦୁକ ଗୋଷ୍ଠୀ ନିଶୁଆ ନରସିଂହ ବୋଲି କହୁଛନ୍ତି । କିନ୍ତୁ ଭିତିରେଇ ଦେଖିଲେ ନରସିଂହଙ୍କ ନିଶ ରଖିବାର ଉଦ୍ଦେଶ୍ୟ ରହିଛି । ଏମିତି ବଲାଙ୍ଗିରରେ ନରସିଂହ ମିଶ୍ରଙ୍କୁ ଜଣେ ପାରିବାର ନେତା ବୋଲି କୁହାଯାଏ । ରାଜପରିବାର ସହିତ ତାଙ୍କର ଲଢ଼େଇ ସବୁବେଳେ ଜୋରଦାର୍ । କମ୍ୟୁନିଷ୍ଟ ରାଜନୀତିରୁ ଆସିଥିବା ନରସିଂହ ମିଶ୍ର କ୍ରମେ ବିଜୁ ପଟ୍ଟନାୟକଙ୍କ ଆଦର୍ଶରେ ଜନତା ଦଳରେ ଯୋଗ ଦେଇ ୧୯୯୦ରୁ ୧୯୯୫ ପର୍ଯ୍ୟନ୍ତ ମନ୍ତ୍ରୀ ଥିଲେ । ୧୯୯୫ରେ ମଧ୍ୟ ସେ ବିଧାୟକ ହୋଇଥିଲେ । ତାଙ୍କର ଆଇନ ଜ୍ଞାନ ଏତେ ଜୋର୍ ଥିଲା ଯେ, ସେଥିପାଇଁ ସେତେବେଳର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କୁ ନିଜଆଡ଼କୁ ଆଣିବା ପାଇଁ ଉଦ୍ୟମ ଜାରି ରଖିଥିଲେ । ବିଧାନସଭାରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସେ ଏମିତି ତଥ୍ୟ ରଖି ସମାଲୋଚନା କରୁଥିଲେ ଯେ, ସାରା ବିଧାନସଭା ସେତେବେଳେ ସେଥିରେ ସ୍ତବ୍ଧ

ହୋଇଯାଉଥିଲା । ନରସିଂହଙ୍କୁ ଖୁସି କରିବା ପାଇଁ ଜାନକୀ ଯେଉଁ ଉପାୟ ବାହାର କରିଥିଲେ ତାହା ସଫଳ ହୋଇଥିଲା । ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ପ୍ରଥମ ସଭାପତି ଭାବେ ନିଯୁକ୍ତି ଦେଇଥିଲେ ନରସିଂହଙ୍କୁ ଜାନକୀ । ଯଦିଓ ନରସିଂହ ସେତେବେଳେ ବିରୋଧୀ ଦଳରେ ଥିଲେ । ଏହା ମଧ୍ୟ ସେତେବେଳେ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ଏବେ ୨୦୦୯ ଲୋକସଭା ନିର୍ବାଚନରେ ନରସିଂହ ପ୍ରାର୍ଥୀ ହୋଇଥିଲେ ବଲାଙ୍ଗିର ଲୋକସଭା ଆସନରୁ । କିନ୍ତୁ ଅନଙ୍ଗ ପୁତ୍ର କଳିକେଶଙ୍କ ଠାରୁ ସେ ହାରିଯାଇଥିଲେ । ଏବେ ଚୁପ୍ ହୋଇ ବସିରହିବାକୁ ନରସିଂହ ଚାହୁଁନାହାନ୍ତି । ଯେକୌଣସି ପ୍ରସଙ୍ଗ ହେଲେ ସେ ସେଥିରେ ପାଟି ଫିଟାଇବାକୁ ଆଗଭର ହେଉଛନ୍ତି । ନରସିଂହଙ୍କର ସ୍ୱର ବେଶ୍ କଠିନ କିନ୍ତୁ ମୁହଁକୁ ଦେଖିଲେ ନରମ ବୋଲି ଜଣାପଡ଼ନ୍ତି । ବୋଧହୁଏ କେଉଁ ଭବିଷ୍ୟ ଗଣନାକାରୀ ନରସିଂହଙ୍କୁ କହିଛନ୍ତି ଯେ, ନାକ ତଳେ ନିଶକୁ କଅଁଳିବାର ସୁଯୋଗ ଦିଅନ୍ତୁ ଆଉ ସ୍ୱର କଠିନ ସହିତ ନିଶକୁ ବି କଠିନ କରନ୍ତୁ । ତାହା ହେଲେ ଭବିଷ୍ୟତ ଉଜ୍ଜଳମୟ । ଦେଖାଯାଉ ନରସିଂହଙ୍କ ନିଶ ତାଙ୍କୁ ଭବିଷ୍ୟତ ରାଜନୀତିରେ କେତେ ଉପରକୁ ନେଉଛି । ■

## ଅଗାଡ଼ି ଓ ପାଢଶାଣୀ

ପ୍ରସନ୍ନ ପାଢଶାଣୀ ୧୯୮୦ ମସିହାରେ ପ୍ରଥମ ଥର ପାଇଁ ବିଧାୟକ ଭାବେ ନିର୍ବାଚିତ ହେଲେ । ସେତେବେଳେ ତାଙ୍କ ଦଳ ଥିଲା କଂଗ୍ରେସ ଆଉ ନିର୍ବାଚନମଣ୍ଡଳୀ ଥିଲା ଖୋର୍ଦ୍ଧା । ଏହାପରେ ୧୯୮୫ରେ ସେ ସ୍ୱାଧୀନ ପ୍ରାର୍ଥୀ ହୋଇ କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇଲେ । ୧୯୯୦ରେ ଜନତା ଦଳ ପ୍ରାର୍ଥୀ ହୋଇ ବିଜୟୀ ହେଲେ ଆଉ ବିଜୁ ପଟ୍ଟନାୟକ ସରକାରରେ କ୍ୟାବିନେଟ ମନ୍ତ୍ରୀ ହେଲେ । ୧୯୯୫ରେ ସେ ଖୋର୍ଦ୍ଧାରୁ ବିଜୟୀ ହୋଇଥିବା ବେଳେ ୧୯୯୮ରେ ସେ ଭୁବନେଶ୍ୱର ଲୋକସଭା ଆସନରୁ ବିଜେଡି ପ୍ରାର୍ଥୀ ହୋଇ ବିଜୟୀ ହେଲେ । ଏହାପରେ ୧୯୯୯, ୨୦୦୪ ଓ ୨୦୦୯ ମସିହାରେ ଲୋକସଭା ନିର୍ବାଚନରେ ସେ ଭୁବନେଶ୍ୱର ଲୋକସଭା ଆସନରୁ ସାଂସଦ ଭାବେ ନିର୍ବାଚିତ ହୋଇଛନ୍ତି । ଏମିତି ତାଙ୍କୁ ଅପରାଜେୟ ନେତା ବୋଲି କୁହାଯାଉଛି । ମାନେ କେବଳ ବିଜୟ ହିଁ ବିଜୟ । ପରାଜୟ କ'ଣ ବୋଲି ସେ ଜାଣନ୍ତି ନାହିଁ । ଏମିତି ନେତା ଓଡ଼ିଶାରେ ପାଇବା ମୁସ୍କିଲ ଅଟେ । ରାଜନୀତି ପୁସ୍ତକର ଫର୍ଦ୍ଦଫର୍ଦ୍ଦ ଓଲଟାଇଲେ ମଧ୍ୟ ପ୍ରସନ୍ନଙ୍କ ପରି ନେତା ପାଇବା ସମ୍ଭବ ବି ହେବନାହିଁ । କିନ୍ତୁ ଏସବୁ ବିଶ୍ଳେଷଣଗୁଡ଼ିକ ତାଙ୍କ କ୍ଷେତ୍ରରେ ଯେତିକି ଲାଗୁନାହିଁ ଅନ୍ୟ ବିଶ୍ଳେଷଣଗୁଡ଼ିକ ଅଧିକ ଲାଗୁଛି । ଯେପରି ପ୍ରସନ୍ନ ସ୍ଥାନରେ ବାବା ପୁଣି ଅଗାଡ଼ି ଏହିପରି ଅନେକ କିଛି । ଅଗାଡ଼ି ନେତା କୁହାଗଲେ ବୁଝାଯାଏ କେବଳ ପ୍ରସନ୍ନ ପାଢଶାଣୀଙ୍କୁ । ମାନେ ଓଡ଼ିଶାରେ ପ୍ରସନ୍ନ ପାଢଶାଣୀ ହେଉଛନ୍ତି ଏଭଳି ଏକ ନେତା ଯାହାଙ୍କର ଗାଡ଼ି ନାହିଁ । ତାଙ୍କୁ ଯିଏ ଯେଉଁ ସ୍ଥାନକୁ ଅତିଥି କରି ନେବ ସେ ସେହି ବ୍ୟକ୍ତିଙ୍କ ଗାଡ଼ିରେ ଯିବେ । ଯେହେତୁ ପ୍ରସନ୍ନଙ୍କର ଗାଡ଼ି ନାହିଁ ତେଣୁ ତାଙ୍କୁ ଅଗାଡ଼ି

ନେତା ବୋଲି କହିଲେ ଯେ ବେଦ ଅଶୁଦ୍ଧ ହୋଇଯିବ ତାହା ନୁହେଁ । କିନ୍ତୁ ପ୍ରସନ୍ନଙ୍କର ଯୁକ୍ତି ବଡ଼ ବିଚିତ୍ର । ସେ କହନ୍ତି- ଗାଡ଼ି ନଥିବାରୁ ସେ ଅଗାଡ଼ି ବୋଲି କୁହାଯାଉନାହିଁ । ସେ ହେଉଛନ୍ତି ଧାନଗଛ ମଧ୍ୟରେ ଅଗାଡ଼ି । ସବୁ ବିଲରେ ଯେତେ ଭଲ ଧାନଗଛ ହେଉପଛେ ଅଗାଡ଼ି ନିଶ୍ଚିତ ରହିବ । ତେଣୁ ସାରାରାଜ୍ୟରେ ତାଙ୍କର ସ୍ଥାନ । ସବୁଆଡ଼େ ଚାଷଜମି ଅଛି ଆଉ ଧାନ ଭିତରେ ଅଗାଡ଼ି ବି ରହିଛି । ତେଣୁ ସାରାରାଜ୍ୟ ତାଙ୍କୁ ଜାଣନ୍ତି । ସେ ଆଉ ଭୁବନେଶ୍ୱର ନିର୍ବାଚନମଣ୍ଡଳୀ ଭିତରେ ସୀମିତ ନାହାନ୍ତି । ମାନିବାକୁ ପଡ଼ିବ ପ୍ରସନ୍ନ ପାଟ୍ଟଶାଣୀଙ୍କୁ । ଗାଡ଼ି ନଥିବାରୁ ତାଙ୍କୁ ଅଗାଡ଼ି ବୋଲି କୁହାଯାଉଥିବା ବେଳେ ସେ କିନ୍ତୁ ଅଗାଡ଼ିର ଯୁକ୍ତିଯୁକ୍ତ କାରଣ ଦର୍ଶାଇ ନିଜକୁ ରାଜ୍ୟର ଲୋକପ୍ରିୟ ନେତା ବୋଲି ପ୍ରମାଣିତ କରୁଛନ୍ତି । ସେଦିନ ଅନେକ ଲୋକସମାଗମ ହୋଇଥା'ନ୍ତି । ପ୍ରସନ୍ନ ସେମାନଙ୍କ ଆଗରେ କହିଦେଲେ ସେ ଧାନ ହେବାକୁ ଚାହୁଁନାହାନ୍ତି । ଭଗବାନ ତାଙ୍କୁ ଅଗାଡ଼ି ଭାବେ ରଖନ୍ତୁ । ଅଗାଡ଼ି ହେଲେ ସମସ୍ତଙ୍କର ପାଖରେ ରହିହେବ । ପ୍ରସନ୍ନଙ୍କ ଏହି କଥା ଦୁଇପଦ ସେଠାରେ ଥିବା ଲୋକଙ୍କ ମନକୁ ବେଶ୍ ଛୁଇଁଦେଲା ଆଉ ସମସ୍ତେ ହୋ ହୋ ହୋଇ ହସିଲେ । ତାଙ୍କ ସହିତ ପ୍ରସନ୍ନ ମଧ୍ୟ ହସରେ ତାଳ ଦେଲେ । ■

## ନବୀନ ନିବାସ ଓ ବର୍ଷା

ଏମିତି ତ ଓଡ଼ିଶା ନୁହେଁ ଭାରତବର୍ଷରେ ରାଜନୀତି ମହଲରେ ଚର୍ଚ୍ଚା ହେଉଛି ଯେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଭାଗ୍ୟବାନ ବୋଲି । ପୂର୍ବଜନ୍ମ କର୍ମର ଫଳ ସେ ଏବେ ପାଉଛନ୍ତି । କ୍ରମାଗତ ଭାବେ ତୃତୀୟ ଥର ପାଇଁ ସେ ମୁଖ୍ୟମନ୍ତ୍ରୀ । ପୁଣି ତାଙ୍କୁ ନିଷ୍କଳଙ୍କ ମୁଖ୍ୟମନ୍ତ୍ରୀ ବୋଲି କୁହାଯାଉଛି । ସେଦିନ ସାରା ଭୁବନେଶ୍ୱରବାସୀ ଗରମରେ ଆଉଟୁପାଉଟୁ ହେଉଥା'ନ୍ତି । ପ୍ରବଳ ଖରା । ହଠାତ୍ ଦେଖାଗଲା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ରହୁଥିବା ନବୀନ ନିବାସ ଉପରେ ପ୍ରବଳରୁ ପ୍ରବଳ ବର୍ଷା ହେଉଛି ଆଉ ବର୍ଷା କ୍ରମେ ରେଳଲାଇନ ପଟକୁ ମାଡ଼ିଯାଉଛି । କିନ୍ତୁ ବର୍ଷା ସଚିବାଳୟ ଆଡ଼କୁ ଆସିଲା ନାହିଁ । ମାନେ ପ୍ରକୃତ ଭୁବନେଶ୍ୱର ବୋଲି କୁହାଯାଉଥିବା ଅଂଚଳକୁ ବର୍ଷାର ଧାସ ବି ଆସିଲା ନାହିଁ । ଅନେକ ଏହା ବି ଜାଣି ନଥିଲେ । ତେବେ ରାଜଧାନୀରେ ଜିରା ପରି ଘଟଣାଟିଏ ଘଟିଲେ ତାହା ପଥର ପରି ଶୁଣାଯିବ ସାରା ରାଜଧାନୀବାସୀଙ୍କୁ । ଏହି ବର୍ଷା ପ୍ରସଙ୍ଗ ସେହିପରି ହୋଇଥିଲା । ଚାରିଆଡ଼େ ପ୍ରଚାରିତ ହୋଇଗଲା ଯେ, ନବୀନ ନିବାସ ଉପରେ ପ୍ରବଳ ବର୍ଷା ହୋଇଛି ବୋଲି । ଏହାପରେ ଏହି ବର୍ଷାକୁ ନେଇ ଚାଲିଲା ବିଭିନ୍ନ ମହଲରେ ଚର୍ଚ୍ଚା । କିଏ କହିଲେଣି ନବୀନ ନିବାସ ବିଜୁ ପଟ୍ଟନାୟକ ତିଆରି କରିଥିବାରୁ ସ୍ୱର୍ଗରେ ଥିଲେ ମଧ୍ୟ ବିଜୁ ପଟ୍ଟନାୟକଙ୍କର ନବୀନ ନିବାସ ଉପରେ ଏବେବି ନଜର ରହିଛି । ତାଙ୍କର ଗେହ୍ଲାପୁଅ ନବୀନ ଯେପରି ଗରମରେ ଆଉଟୁପାଉଟୁ ନହେବ ସେଥିପାଇଁ ବିଜୁ ପଟ୍ଟନାୟକ ସ୍ୱର୍ଗରେ ଥାଇ ବର୍ଷା କରିଛନ୍ତି । ଆଉ କିଏ କହିଲାଣି ନବୀନ

ପଟ୍ଟନାୟକ ଭାଗ୍ୟବାନ ବ୍ୟକ୍ତି ବୋଲି । ଭାଗ୍ୟ ତାଙ୍କ ପଛେପଛେ ଗୋଡ଼ାଉଛି । ନଚେତ୍ ସାରା ରାଜଧାନୀବାସୀ ଗରମରେ ଆଉଟୁପାଉଟୁ ହେଉଥିବା ବେଳେ ବର୍ଷା ନବୀନ ନିବାସ ଉପରେ ଢାଳନ୍ତା ନାହିଁ । ଆଉ କିଏ କହିଲାଣି ନବୀନ ହେଉଛନ୍ତି ଯୋଗଜନ୍ମା ପୁରୁଷ । ସାଧାରଣତଃ ଏଭଳି ବ୍ୟକ୍ତିଙ୍କ କ୍ଷେତ୍ରରେ ବହୁ ଅଲୌକିକ ଘଟଣା ଘଟୁଥିବାର ଦେଖିବାକୁ ମିଳେ । ନବୀନ ନିବାସରେ ବର୍ଷା ସେଥିମଧ୍ୟରୁ ଅନ୍ୟତମ । ଆଉ କିଏ କହିଲାଣି ରାଜ୍ୟପତି ହେଉଛନ୍ତି ନବୀନ । ତେଣୁ ନବୀନ ନିବାସରେ ବର୍ଷା ହୋଇଗଲେ ସାରାରାଜ୍ୟରେ ବର୍ଷା ହୋଇଗଲା ବୋଲି ସେ ଭାବିନେବେ । ରାଜ୍ୟ ଚଳାଇବାକୁ ହେଲେ ରାଜ୍ୟପତିଙ୍କ ପ୍ରତି ଦେବାଦେବୀଙ୍କର ଆଶିର୍ବାଦ ରହିଥାଏ । ତେଣୁ ନବୀନଙ୍କ ପ୍ରତି ଦେବାଦେବୀଙ୍କର ଆଶିର୍ବାଦ ରହିଛି । ବର୍ଷା ଯେ ପାଖେଇ ଆସୁଛି ଆଉ ବର୍ଷା ନହେଲେ ବ୍ୟସ୍ତ ହେବାର ନାହିଁ ସେହି ବାର୍ତା ଦେବା ପାଇଁ ନବୀନ ନିବାସ ଉପରେ ପ୍ରବଳ ବର୍ଷା କରିଦେଇଛନ୍ତି ଦେବାଦେବୀ । ଦେଖାଯାଉ ରାଜ୍ୟପତି ନବୀନଙ୍କ ପାଇଁ ନବୀନ ନିବାସ ଉପରେ ହୋଇଥିବା ବ୍ୟତିକ୍ରମ ବର୍ଷାର ପ୍ରଭାବ କ'ଣ ପଡୁଛି । ■

# ସୂର୍ଯ୍ୟ ଓ ପ୍ରବୀଣ





ଏମିତି ସୂର୍ଯ୍ୟନାରାୟଣ ପାତ୍ର ହେଉଛନ୍ତି ରାଜସ୍ୱ ଓ ପ୍ରଶମନ ବିଭାଗର କ୍ୟାବିନେଟ ମନ୍ତ୍ରୀ । ହୋଇପାରେ ଏହି ବିଭାଗକୁ ଚେକ୍ ଓ ବାଲାନ୍ସରେ ରଖିବା ପାଇଁ ପ୍ରବୀଣ ଭଂଜଦେଓଙ୍କୁ ବିଭାଗର ରାଷ୍ଟ୍ରମନ୍ତ୍ରୀ କରାଯାଇଛି । ଏମିତି ପ୍ରବୀଣ ହେଉଛନ୍ତି କ୍ରୀଡ଼ା ଓ ଯୁବ ବ୍ୟାପାର ବିଭାଗର ସାଧୀନ ରାଷ୍ଟ୍ରମନ୍ତ୍ରୀ । ଏହି ଦୃଷ୍ଟିରୁ ତାଙ୍କୁ ରାଜସ୍ୱ ବିଭାଗର ରାଷ୍ଟ୍ରମନ୍ତ୍ରୀ କରାଯିବାରେ କୌଣସି ଆବଶ୍ୟକତା ବି ନଥିଲା । ଏହାସତ୍ୱେ ପ୍ରବୀଣଙ୍କୁ ରାଜସ୍ୱ ଓ ପ୍ରଶମନ ବିଭାଗର ରାଷ୍ଟ୍ରମନ୍ତ୍ରୀ ଭାବେ ଦାୟିତ୍ୱ ଦିଆଯାଇଛି । କୁଆଡ଼େ କ୍ୟାବିନେଟ ମନ୍ତ୍ରୀ ସୂର୍ଯ୍ୟ ପାତ୍ରଙ୍କୁ ଏ ସମ୍ପର୍କରେ ବୁଝାଇ ଦିଆଯାଇଥିଲା ଯେ, ଯେହେତୁ ପ୍ରବୀଣ ରାଜନୀତିରେ ନୂତନ ଏବଂ ମନ୍ତ୍ରୀ ପଦ ପାଇବାରେ ମଧ୍ୟ ନୂତନ ତେଣୁ ତାଙ୍କର ମନ୍ତ୍ରୀ ଭାବେ ଶିଖିବାର ବହୁତ ଅଛି । ରାଜସ୍ୱ ଓ ପ୍ରଶମନ ବିଭାଗରେ ଜଣେ ମନ୍ତ୍ରୀ ହେଲେ ସେଥିରେ ବହୁ କାମ ଶିଖିହେବ ଆଉ ଏ କ୍ଷେତ୍ରରେ ସୂର୍ଯ୍ୟନାରାୟଣ ପାତ୍ର ତାଙ୍କର ଗୁରୁ ହେବେ । ଏଥିରେ ସୂର୍ଯ୍ୟଙ୍କର କୌଣସି ଦ୍ୱିମତ ହେବାର ନଥିଲା । ଏମିତି ଆଇନରେ ଉଲ୍ଲେଖ ଅଛି ଯେ, ମନ୍ତ୍ରୀ ଭାବେ ନିଷ୍ପତି ନେବାର ସବୁକିଛି ଚୂଡ଼ାନ୍ତ ଦାୟିତ୍ୱ ହେଉଛି ସେହି ବିଭାଗର କ୍ୟାବିନେଟ ମନ୍ତ୍ରୀଙ୍କର । ରାଷ୍ଟ୍ରମନ୍ତ୍ରୀ ଯେଉଁ ନିଷ୍ପତି ନେଇଥା'ନ୍ତୁ ନା କାହିଁକି କ୍ୟାବିନେଟ ମନ୍ତ୍ରୀଙ୍କର ନିଷ୍ପତି ହିଁ ଚୂଡ଼ାନ୍ତ । ଏହି ଦୃଷ୍ଟିରୁ ଯେଉଁ ବିଭାଗର କ୍ୟାବିନେଟ ମନ୍ତ୍ରୀ ଥାଇ ମଧ୍ୟ ରାଷ୍ଟ୍ରମନ୍ତ୍ରୀ

ଥା'ନ୍ତି ସେଠାରେ ଅଫିସରମାନେ ରାଷ୍ଟ୍ରମନ୍ତ୍ରୀଙ୍କୁ ଖାତିର କରନ୍ତି ନାହିଁ କି ଫାଇଲ ବି ତାଙ୍କ ପାଖକୁ ପଠାନ୍ତି ନାହିଁ । ତେବେ ସୂର୍ଯ୍ୟଙ୍କ କଥା ଭିନ୍ନ । ସୂର୍ଯ୍ୟ ଚାହୁଁଥିଲେ ପ୍ରବୀଣ ମନ୍ତ୍ରୀ ଭାବେ କାମ ଶିଖନ୍ତୁ ବୋଲି । କିନ୍ତୁ ପ୍ରବୀଣଙ୍କର ଚେହେରା ଦେଖିବାକୁ ସତେ ଯେମିତି ସୂର୍ଯ୍ୟଙ୍କ ପାଇଁ ସପ୍ନ ହୋଇଯାଏ । ଏହା ଫଳରେ ସୂର୍ଯ୍ୟ ଆଉ ପ୍ରବୀଣଙ୍କ ଉପରେ ଗୁରୁତ୍ୱ ଦେଲେନାହିଁ । ହଠାତ୍ ସେଦିନ ଦେଖିବାକୁ ମିଳିଲା ସୂର୍ଯ୍ୟଙ୍କ ସଚିବାଳୟ କାର୍ଯ୍ୟାଳୟରେ ସୂର୍ଯ୍ୟଙ୍କ ପାଖରେ ପ୍ରବୀଣ ବସିଛନ୍ତି । ଅନେକ ଭାବିଲେ ଯେ, ଯେହେତୁ ରାଜସ୍ୱ ଓ ପ୍ରଶମନ ବିଭାଗର କ୍ୟାବିନେଟ ମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀ ବସିଛନ୍ତି ତେଣୁ ନିଶ୍ଚିତ ଭାବେ କିଛି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଆଲୋଚନା ଚାଲୁଥିବ । କିନ୍ତୁ ପ୍ରସଙ୍ଗ ତାହା ନଥିଲା । ସୂର୍ଯ୍ୟ ସମସ୍ତଙ୍କୁ କହୁଥିଲେ- ବସନ୍ତୁ, କେଉଁ କାମ ପାଇଁ ଆସିଛନ୍ତି କହନ୍ତୁ । ପ୍ରବୀଣବାବୁ ଏମିତି ଚାଲିଆସିଛନ୍ତି । କୌଣସି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହେଉନାହିଁ । ସୂର୍ଯ୍ୟଙ୍କ ସେହି କଥାରେ ପ୍ରବୀଣ ମଧ୍ୟ ମୁଣ୍ଡ ହଲାଉଥା'ନ୍ତି । ଯେତେଯାହା ହେଲେ ମଧ୍ୟ ପ୍ରବୀଣ ଯେହେତୁ ରାଜସ୍ୱ ଓ ପ୍ରଶମନ ବିଭାଗର ରାଷ୍ଟ୍ରମନ୍ତ୍ରୀ ତେଣୁ ଏହି ବିଭାଗର କ୍ୟାବିନେଟ ମନ୍ତ୍ରୀ ସୂର୍ଯ୍ୟଙ୍କ ସହିତ ତାଙ୍କର ସବୁବେଳେ ଯୋଗାଯୋଗ ରହିବା କଥା । କିନ୍ତୁ ବର୍ଷକରେ ଥରେ ପାଖରେ ଆସି ବସିଗଲେ ବିଭାଗର କାମ ଯେ ହୋଇଯିବ ତାହା ନୁହେଁ । ଅନ୍ୟପକ୍ଷରେ ରାଜନୈତିକ ପଣ୍ଡିତମାନଙ୍କର ମତ ହେଉଛି ରାଜସ୍ୱ ବିଭାଗ ପାଇଁ ସୂର୍ଯ୍ୟ ହେଉଛନ୍ତି ଏକାକୀ ଅନେକ । ସେଠାରେ ପ୍ରବୀଣଙ୍କର ଆବଶ୍ୟକତା ଆଦୌ ନାହିଁ । ଏହାକୁ ଅନୁଭବ କରିବା ପରେ ପ୍ରବୀଣ ବୋଧହୁଏ ରାଜସ୍ୱ ଓ ପ୍ରଶମନ ବିଭାଗରେ ମୁଣ୍ଡ ଖେଳାଉନାହାନ୍ତି । ଖାଲି ରାଷ୍ଟ୍ରମନ୍ତ୍ରୀ ହୋଇ ରହିଛନ୍ତି ଆଉ ଏହା ହିଁ ତାଙ୍କର ସମ୍ମାନକୁ ବଢ଼ାଇ ଦେଇଛି । ପ୍ରବୀଣଙ୍କ ପାଇଁ ମନ୍ତ୍ରୀ ପଦ ଦରକାର ଆଉ ଏହା ହେଲେ ସମ୍ମାନ ଆସିଯାଏ । ତେଣିକି ବିଭାଗର କାମ ହେଲେ କେତେ ନହେଲେ କେତେ । ■

## ତମେ ବୁଢ଼ାକୁ ଆମେ ବୁଢ଼ା

ଓଡ଼ିଆରେ ଏକ ପ୍ରବାଦ ଅଛି । ତାହା ହେଲା- ତୁ ତ ମୁତୁରି ମୁଁ ତ ମୁତୁରି ହେଂସ କାହିଁ ପାଇଁ ଧୋଇବା । ଏହାର ଭଲ ଅର୍ଥ ଆଉ ଖରାପ ଅର୍ଥ ବି ଅଛି । ଯିଏ ଯେଉଁ ଅର୍ଥରେ ନେଇପାରିଲା । ବ୍ରହ୍ମପୁରରେ ବିଜେଡି ଓ କମ୍ୟୁନିଷ୍ଟ ମହଲରେ ଏକ ଚର୍ଚ୍ଚା ବେଳେବେଳେ ହେଉଛି । ବ୍ରହ୍ମପୁରରେ କମ୍ୟୁନିଷ୍ଟ ନେତା ଦୂତିକୃଷ୍ଣ ପଣ୍ଡାଙ୍କର ଜନ୍ମବାର୍ଷିକୀ ପାଳନ ହେଉଥିଲା । ଏଥିରେ ନିଜେ ଦୂତିକୃଷ୍ଣ ପଣ୍ଡା ଉପସ୍ଥିତ ଥିଲେ । ସେତେବେଳେ କୁଆଡ଼େ ତାଙ୍କୁ ୮୬ ପୂରି ୮୭ ଚାଲୁଥିଲା । ଏହି ଜନ୍ମବାର୍ଷିକୀ ପାଳନ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ବିଜେଡିର ଦ୍ୱିତୀୟ କ୍ଷମତା କେନ୍ଦ୍ର

ବୋଲି କୁହାଯାଉଥିବା ତଥା ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ଉତ୍ସବରେ ନିଜ ପ୍ରସଙ୍ଗରେ ଦୂତିକୃଷ୍ଣ କିଛି ଉଲ୍ଲେଖ କରିଥିଲେ । କିଭଳି ଯୁବକ ସମୟରେ ସେ ଫାୟାରବ୍ରାଣ୍ଡ ନେତା ଥିଲେ । ପୁଣି କିପରି ସମ୍ପତିକୁ ବେଖାତିର କରି ସେ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇ ଭାଗଚାଷୀଙ୍କୁ ଜମି ଦିଆଯିବା ସପକ୍ଷରେ ସ୍ୱର ଉତୋଳନ କରିଥିଲେ । ପୁଣି ଲୋକସଭାରେ କିପରି ସେ ତତଲା ଭାଷଣ ଦେଉଥିଲେ । ଏମିତି ଅନେକ କଥା ସେ ପ୍ରସଙ୍ଗକ୍ରମେ ବର୍ଣ୍ଣନା କରିଥିଲେ । ସବୁ ଶେଷ ହେଲା ବେଳକୁ ଯେଉଁ ପ୍ରସଙ୍ଗଟି ସେ କହିଲେ ତାହା ହିଁ ଥିଲା ସବୁଠୁ ଗୁରୁତ୍ୱପୂର୍ଣ୍ଣ । ସେହି ପ୍ରସଙ୍ଗଟି ଥିଲା ଏଣିକି ସେ ବୁଢ଼ା ହୋଇଗଲେଣି । ପରେପରେ ମୁଖ୍ୟ ଅତିଥି ପ୍ୟାରୀମୋହନ ମହାପାତ୍ର ମଧ୍ୟ କମ୍ୟୁନିଷ୍ଟ ଆଦର୍ଶ ସମ୍ପର୍କରେ କିଛି ସମୟ ବଖାଣି ଥିଲେ । ପ୍ୟାରୀମୋହନ ମଧ୍ୟ ଦୂତିକୃଷ୍ଣଙ୍କ ପରି ଶେଷରେ କହିଲେ- କେବଳ ଦୂତିକୃଷ୍ଣ ବୁଢ଼ା ହୋଇନାହାନ୍ତି ସେ ବି ବୁଢ଼ା ହୋଇଗଲେଣି । ଆମେ ସମସ୍ତେ ଏବେ ବୁଢ଼ା । ଏହି ପ୍ରସଙ୍ଗଟି ଏବେବି ବ୍ରହ୍ମପୁରରେ ବିଭିନ୍ନ ସ୍ଥାନରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଯାଉଛି । ପ୍ୟାରୀମୋହନଙ୍କୁ ଏବେ ୭୦ ଟପିଗଲାଣି । ସେ ଯେ ନିରୋଗ ତାହା ନୁହେଁ । ଏମିତି ତାଙ୍କର ହୃଦ୍ ଅସ୍ତ୍ରୋପଚାର ମଧ୍ୟ ହୋଇଛି । କିନ୍ତୁ ବିଜେଡି ଦଳ ପାଇଁ ସେ ଦିନକୁ ଯେତିକି ସମୟ ଦେଉଛନ୍ତି ବିଜେଡିର ଟୋକାମାନେ ମଧ୍ୟ ସେତିକି ସମୟ ଦେଇପାରୁନାହାନ୍ତି । ପ୍ୟାରୀମୋହନଙ୍କ ପରିଶ୍ରମ ପାଇଁ ଆଜି ରାଜ୍ୟରେ ବିଜେଡି ଏକନମ୍ବର ଦଳ ଭାବେ ଠିଆ ହୋଇଛି । ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାରେ ଯେଉଁ ହ୍ୟାଟ୍ରିକ ଅର୍ଜନ କରିଛନ୍ତି ତାହାର ଶ୍ରେୟ ପ୍ୟାରୀମୋହନଙ୍କ ଆଡ଼କୁ ଯାଉଛି । ଏଭଳି କ୍ଷେତ୍ରରେ ପ୍ୟାରୀମୋହନ ନିଜକୁ ବୁଢ଼ା କହିଲେ ମଧ୍ୟ ତାହାକୁ କେହି ଗ୍ରହଣ କରୁନାହାନ୍ତି । ଏମିତି ପ୍ୟାରୀମୋହନଙ୍କ ନିନ୍ଦୁକ ହୁଅନ୍ତୁ କି ପ୍ରଶଂସକ ହୁଅନ୍ତୁ ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର ନିଶ୍ଚିତ ଭାବେ କରିବେ ଯେ, ବିଜେଡି ରାଜନୀତିରେ ପ୍ୟାରୀମୋହନ ବୁଢ଼ା ନୁହନ୍ତି କଂଚା ଟୋକା ବୋଲି । ■

## ସୁରଙ୍କ ଦସ୍ତଖତ



ଓଡ଼ିଶା ରାଜନୀତିରେ ଏମିତି ବହୁ ସୁର ଅଛନ୍ତି । କିନ୍ତୁ ଏଠାରେ ଯେଉଁ ସୁରଙ୍କ ନାମ କୁହାଯାଉଛି ସେ ଆଉ କେହି ନୁହନ୍ତି କଂଗ୍ରେସର ବାଘପରି ଗର୍ଜନ କରୁଥିବା ଜଟଣୀର ପୂର୍ବତନ ବିଧାୟକ ଓ ପୂର୍ବତନ ମନ୍ତ୍ରୀ ସୁରେଶ କୁମାର ରାଉତରାୟ । ବିଧାନସଭାରେ ସୁରେଶ ରାଉତରାୟ ଯଦି ସଭ୍ୟ ଥିବେ ତେବେ ଜାଣ ବିଧାନସଭାର ଆଲୋଚନା ପଡ଼ିଲାଉଠିଲା । ସେ ସମସ୍ତଙ୍କୁ ସାହାଯ୍ୟ କରିବା ପାଇଁ ସବୁବେଳେ ପ୍ରସ୍ତୁତ ଥା'ନ୍ତି । ଏମିତି ତ ଏକା ସେ କୌଣସି ସ୍ଥାନକୁ ଯାଆନ୍ତି ନାହିଁ । ଅଫିସରଙ୍କ ପାଖକୁ ଗଲେ ମଧ୍ୟ ସେ ସାଥିରେ ୮/୧୦ ଜଣଙ୍କୁ ନେଇଥା'ନ୍ତି । ସେଦିନ ହଠାତ୍ ଦେଖାଗଲା

ସୁରେଶ କୁମାର ରାଉତରାୟଙ୍କୁ ନଗର ଉନ୍ନୟନ ମନ୍ତ୍ରୀ ବ୍ରଦିନାରାୟଣ ପାତ୍ରଙ୍କ ସଚିବାଳୟ କାର୍ଯ୍ୟାଳୟରେ । ସିଧାସଳଖ ସୁରେଶ କହିଲେ ଯେ, ବଦ୍ରିଭାଇ ମୋର କାମ ନିଶ୍ଚିତ କରିଦେବ । ବଦ୍ରି ପାତ୍ର କହିଲେ ସୁରଭାଇ କୁହ, ତୁମର କେଉଁ କାମ ଅଛି । ସୁର ରାଉତରାୟ କହିଲେ- ସେ ଜନସ୍ୱାସ୍ଥ୍ୟ ବିଭାଗରେ କାମକରୁଥିବା ଜଣେ ସହକାରୀ ଯନ୍ତ୍ରୀଙ୍କୁ ତାଙ୍କ ପସନ୍ଦ ସ୍ଥାନକୁ ନେବାକୁ ଚାହୁଁଛନ୍ତି । ବଦ୍ରି ପାତ୍ର କହିଲେ- ଆପଣ ଲେଖିକରି ଦିଅନ୍ତୁ । ସୁରେଶ ରାଉତରାୟ କହିଲେ- ସେଇଥିପାଇଁ ତ ସେ ଲିଖିତ ଭାବେ ଏକ ଦରଖାସ୍ତ ସାଥିରେ ଆଣିଛନ୍ତି । ବଦ୍ରି ପାତ୍ର କହିଲେ- ଦିଅନ୍ତୁ । ସୁରେଶ ରାଉତରାୟ ସଙ୍ଗେସଙ୍ଗେ ବଦ୍ରିଙ୍କ ହାତକୁ ଦରଖାସ୍ତଟିଏ ବଢ଼ାଇ ଦେଲେ । ଏହାପରେ କାମ ଯେମିତି ହେବ ବୋଲି କହି ସୁରେଶ ସେଠାରୁ ଚାଲିଗଲେ । ସୁରେଶ ରାଉତରାୟ ଦେଇଥିବା ଦରଖାସ୍ତଟିକୁ ବଦ୍ରି ଭଲ ଭାବେ ଦେଖିନେଲେ । ତେବେ ଦରଖାସ୍ତଟିକୁ ପଢ଼ି ସେ କିଛି ବୁଝିପାରିଲେ ନାହିଁ । ଥରେ କି ଦୁଇଥର ନୁହେଁ ସେ ବାରମ୍ବାର ଦରଖାସ୍ତଟିକୁ ପଢ଼ିଲେ । ଯେଉଁ ସହକାରୀ ଯନ୍ତ୍ରୀ ବଦଳି ହେବା ପାଇଁ ଚାହିଁଛନ୍ତି ସେ ଲେଖିଛନ୍ତି ମନ୍ତ୍ରୀଙ୍କୁ ଦରଖାସ୍ତଟି । ଦରଖାସ୍ତଟିରେ ସେ ମଧ୍ୟ ଉଲ୍ଲେଖ କରିଛନ୍ତି ଯେ, ମୁଁ ବଦଳି ହେବାକୁ ଚାହୁଁଛି । ମୋତେ ମୋ ପସନ୍ଦ ସ୍ଥାନକୁ ବଦଳି କରାଯାଉ । ଦରଖାସ୍ତ ତଳେ ଯନ୍ତ୍ରୀ ଦସ୍ତଖତ କରିବା ପରିବର୍ତ୍ତେ ସେଠାରେ ସୁରେଶ କୁମାର ରାଉତରାୟ ଦସ୍ତଖତ କରିଛନ୍ତି । ଏମିତି ତ ସରକାରଙ୍କ ନିୟମ ଅନୁଯାୟୀ ଜଣେ କର୍ମଚାରୀ ତାଙ୍କର ପସନ୍ଦ ମୁତାବକ ସ୍ଥାନକୁ ବଦଳି ହେବା ପାଇଁ ମନ୍ତ୍ରୀଙ୍କୁ ଦରଖାସ୍ତ ଦେଇପାରିବେ ନାହିଁ । ଏହା ହେଲେ ଏ କ୍ଷେତ୍ରରେ ମଧ୍ୟ ଦଣ୍ଡର ବ୍ୟବସ୍ଥା ରହିଛି । ସେ ପ୍ରସଙ୍ଗକୁ ଆମର ଯିବାର ନାହିଁ । କିନ୍ତୁ ପ୍ରସଙ୍ଗ ହେଉଛି ସୁରେଶ ରାଉତରାୟ ୫ ଥର ବିଧାୟକ ଆଉ କଂଗ୍ରେସ ସରକାରରେ ମନ୍ତ୍ରୀ ବି ଥିଲେ । ଜଣେ ମନ୍ତ୍ରୀଙ୍କୁ ପୂର୍ବତନ ମନ୍ତ୍ରୀ ଭାବେ ସେ ଯେଉଁ ଦରଖାସ୍ତଟିଏ ଦେଲେ ତାହାକୁ ଆମୂଳଚୂଳ ପଢ଼ି ସେଥିରେ ସେ ଦସ୍ତଖତ କରିବା କଥା । ବୋଧହୁଏ ସୁରେଶ ରାଉତରାୟ ଭାବି ନେଇଥିଲେ ସେହି ଦରଖାସ୍ତଟି ହେଉଛି ସଂପୃକ୍ତ ଯନ୍ତ୍ରୀଙ୍କୁ ପସନ୍ଦ ମୁତାବକ ସ୍ଥାନକୁ ବଦଳି କରିବା ପାଇଁ ତାଙ୍କ ପକ୍ଷରୁ ମନ୍ତ୍ରୀଙ୍କୁ ଏକ ସୁପାରିଶପତ୍ର ବୋଲି । ଯେଉଁଥିପାଇଁ ଦରଖାସ୍ତର ତଳେ ସୁରେଶ ରାଉତରାୟ ଦସ୍ତଖତ କରିଛନ୍ତି । କିନ୍ତୁ ଦରଖାସ୍ତଟି ପ୍ରକୃତରେ ତାହା ନଥିଲା । ଦରଖାସ୍ତଟିରେ ନିଜ ନାମ ଉଲ୍ଲେଖ କରି ମନ୍ତ୍ରୀଙ୍କୁ ଲେଖିଥିଲେ ଯନ୍ତ୍ରୀ । କିନ୍ତୁ ଦସ୍ତଖତ ଯନ୍ତ୍ରୀ ନକରି ସୁରେଶ କୁମାର ରାଉତରାୟ କରିଦେଇଛନ୍ତି । ଏହି ଦରଖାସ୍ତଟି ସତେ ଯେମିତି ବିଜେଡି ସରକାରରେ ଦର୍ଶନୀୟ ହୋଇଯାଇଛି । ସହକାରୀ ଯନ୍ତ୍ରୀ ଜଣଙ୍କର ବଦଳି ହେବ କି ନହେବ ତାହା ପରର କଥା । ତେବେ ଏହି ଦରଖାସ୍ତଟି ନେତାଙ୍କ ପାଇଁ ହସର ଖୋରାକ ଯୋଗାଇ ଦେଇଥିଲା । ■

# ପାଙ୍ଗଶାଣୀ ଓ ରେଡ୍ ରିବନ୍





ଏଡ୍ସ ପ୍ରତିକାର ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ କରିବା ପାଇଁ ଏକ ସଭାର ଆୟୋଜନ ହୋଇଥାଏ । ଏଥିରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମୁଖ୍ୟ ଅତିଥି ଥିଲେ । ସଭାକୁ ମଧ୍ୟ ନବୀନ ଉଦ୍‌ଘାଟନ କରିଥିଲେ । ଭୁବନେଶ୍ୱର ସାଂସଦ ଡକ୍ଟର ପ୍ରସନ୍ନ ପାଟ୍ଟଶାଣୀ ଏଥିରେ ଅନ୍ୟତମ ଅତିଥି ଭାବେ ଯୋଗ ଦେଇଥିଲେ । ଏମିତି ତ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଓ ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ଯଦି ଗୋଟିଏ ସଭାରେ ଉପସ୍ଥିତ ଥା'ନ୍ତି ତେବେ ନବୀନ ଭାଷଣ ଦେବା ପୂର୍ବରୁ ପ୍ରସନ୍ନ ପାଟ୍ଟଶାଣୀ ଭାଷଣ ଦେଇଥା'ନ୍ତି । ପ୍ରସନ୍ନ ତାଙ୍କର ଚିରାଚରିତ ଢଙ୍ଗରେ ଏମିତି ଭାଷଣ ଦିଅନ୍ତି ଯେ, ସେଥିରେ ଜନସାଧାରଣଙ୍କ କରତାଳି ଜୋରଦାର୍ ହୋଇଥାଏ । ସେଦିନ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଭାଷଣ ଦେବା ପୂର୍ବରୁ ସାଂସଦ ପ୍ରସନ୍ନ ପାଟ୍ଟଶାଣୀଙ୍କୁ ଡକାଗଲା ଭାଷଣ ଦେବା ପାଇଁ । ପ୍ରଥମରୁ ଉଚ୍ଚ ସ୍ୱରରେ ଭାଷଣ ଦେବା ଆରମ୍ଭ କଲେ ପ୍ରସନ୍ନ । ସବୁ ସଭାରେ ଯେଭଳି ପ୍ରସନ୍ନ ମା, ଭଉଣୀଙ୍କ ଉଦ୍ଦେଶ୍ୟରେ ଭାଷଣ ଦେଇଥା'ନ୍ତି ସେହିପରି ଏହି ସଭାରେ ସେ ତାଙ୍କର ଭାଷଣ ଆରମ୍ଭ କଲେ । ପ୍ରସନ୍ନଙ୍କ ଭାଷଣ କ୍ଲାଇମାକ୍ସରେ ପହଂଚିଲା । ହଠାତ୍ ପ୍ରସନ୍ନ କହିଲେ- ଏଡ୍ସ ଠାରୁ ଆମେ ସମସ୍ତେ ଦୂରେଇ ରହିପାରିବା ଯଦି ଗୋଟିଏ ଉପାୟ ଅବଲମ୍ବନ କରିବା । ଏହି ସମୟରେ ସଭାରେ ଉପସ୍ଥିତ ଥିବା କେତେକ ଶ୍ରୋତା ପ୍ରସନ୍ନଙ୍କୁ ଲକ୍ଷ୍ୟ କରି କହିଲେ- କହିଦିଅ ସେ ଉପାୟ । ପ୍ରସନ୍ନ ଏଥିରେ ବେଶ୍ ଖୁସି ହୋଇଗଲେ । ସେ କହିଲେ- ବ୍ୟସ୍ତ ହୁଅନାହିଁ । ମୁଁ ସେହି ଉପାୟ ଆପଣମାନଙ୍କୁ ବତାଇ ଦେଉଛି । ଏହାପରେ କେତେକ ଶ୍ରୋତା କହିଲେ- ଆଉ ବିଳମ୍ବ କରନାହିଁ । ଉପାୟଟି ଶୀଘ୍ର ବତାଇ ଦିଅ । ପ୍ରସନ୍ନ କହିଲେ- ଉପାୟ ବୋଲି କିଛିନାହିଁ । ସଭାରେ ଦେଖନ୍ତୁ ଲୋକପ୍ରିୟ ନେତା ତଥା ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଅଛନ୍ତି । ତାଙ୍କର ବୟସ ୬୦ ପରେ ହେଲାଣି । କିନ୍ତୁ ତାଙ୍କୁ ଦେଖିଲେ କେହି କହିବେ ନାହିଁ ଯେ, ସେ ୬୦ ବର୍ଷରୁ ଅଧିକ ଟପିଗଲେଣି ବୋଲି । ତାଙ୍କ ମୁହଁ ଚକ୍‌ଚକ୍ କରୁଛି । ସେ ବେଶ୍ ଶାନ୍ତିରେ ଅଛନ୍ତି । ଏହାର କାରଣ ଆଉ କିଛି ନୁହେଁ । ତାହା ହେଲା ସେ ଅବିବାହିତ ଏବଂ ବ୍ରହ୍ମଚର୍ଯ୍ୟ ମଧ୍ୟ ପାଳନ କରୁଛନ୍ତି । ଯଦି ନବୀନ ପଟ୍ଟନାୟକଙ୍କ ପରି ସମସ୍ତେ ଅବିବାହିତ ରହିଯାଆନ୍ତେ ଏବଂ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତେ ତେବେ ଏଡ୍ସ ଆଉ ଓଡ଼ିଶା ମାଟି ମାଡ଼ିବ ନାହିଁ । ପ୍ରସନ୍ନଙ୍କ ଭାଷଣର ଏହି ଦୁଇପଦ ଉପସ୍ଥିତ ଶ୍ରୋତାଙ୍କ ମନକୁ ବେଶ୍ ଛୁଇଁଥିଲା । ଯେଉଁଥିପାଇଁ ତାଳିମାଡ଼ ଜୋରଦାର୍ ହୋଇଥିଲା । ସମସ୍ତେ ହସୁଥିଲେ । ଏପଟେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ମୁହଁରେ ମଧ୍ୟ ମୁରୁକୁଳି ହସ ଲାଗିରହିଥିଲା । ମାନିବାକୁ ପଡ଼ିବ ପ୍ରସନ୍ନଙ୍କୁ । ଯେଉଁ ଭାଷଣଟି ସେ ଦେଲେ ତାହାର ଗୁରୁତ୍ୱ ସେପରି କିଛି ନଥିଲା । କିନ୍ତୁ ତାହା ଶ୍ରୋତାଙ୍କୁ ବେଶ୍ ଖୁସ୍ କରିଥିଲା । ■

# ଭାଇ-ଭାଇ




ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ କିଏ ଭାଇ-ଭାଇ । ଏମିତି କେତେକ କହନ୍ତି ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ ଓ ଯୋଗାଣ ମନ୍ତ୍ରୀ ସାରଦା ନାୟକ କୁଆଡ଼େ ଦୁଇଭାଇ । କିନ୍ତୁ ସେମାନେ ଗୋଟିଏ ମା' ପେଟର ଭାଇ ନୁହନ୍ତି । ଏମିତି ସାରଦା, ଅତନୁ ଯେ ୨୦୦୯ ମସିହାରେ ରାଜନୀତି ଆରମ୍ଭ କରିଛନ୍ତି ତାହା ନୁହେଁ । ୨୦୦୦ ମସିହାରୁ ସେମାନେ ପ୍ରତ୍ୟକ୍ଷ ରାଜନୀତିକୁ ଆସିଲେଣି । ୨୦୦୪ରେ ସେମାନେ ବିଧାୟକ ହେଲେ । ସେତେବେଳକୁ ସେମାନେ ଦୁଇ ଭାଇ ବୋଲି କେହି ଜାଣି ନଥିଲେ । ଏବେ କୁହାଯାଉଛି ସେମାନେ ମାଉସୀ ପୁଅ ଭାଇ ବୋଲି । ସେଦିନ ଅତନୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ବସିଥିବା ବେଳେ କେତେକ ସାମ୍ବାଦିକ ସେଠାରେ ପହଂଚିଲେ । ଏମିତି ଚାଲିଲା ଅତନୁଙ୍କ ବିଭାଗ ସମ୍ପର୍କରେ ଆଲୋଚନା । । କେହି ଜଣେ ସାମ୍ବାଦିକ ତାଙ୍କୁ ପଚାରିଲେ ଆପଣଙ୍କର ଭାଇ କ'ଣ ସାରଦା ନାୟକ । ଏହାକୁ ଅତନୁ ଏଡ଼ାଇ ଗଲେ । କିନ୍ତୁ ସାମ୍ବାଦିକ ଜଣଙ୍କ ତାଙ୍କ ପ୍ରଶ୍ନର ଉତର ଅତନୁଙ୍କ ଠାରୁ ବାହାର କରିବାକୁ ଚାହିଁଲେ । ପୁଣି ଥରେ ଯେତେବେଳେ ସେହି ପ୍ରଶ୍ନ ପଚରାଗଲା ସେତେବେଳେ ଅତନୁ ତାଙ୍କର ଚିରାଚରିତ ଢଙ୍ଗରେ ହସିହସି ଉତର ଦେଲେ । ସେ କହିଲେ- ସାରଦା ଆଉ ସେ ଦୁଇ ଭାଇ ବୋଲି କେନ୍ଦ୍ରାପଡ଼ା ଅଂଚଳରେ ବି କେହି ଜାଣିନାହାନ୍ତି । ବିଜେଡି ରାଜନୀତିରେ ମଧ୍ୟ ଏହା କେହି ଜାଣି ନଥିଲେ । କିନ୍ତୁ ମନ୍ତ୍ରୀ ହେବାପରେ ଏହାକୁ ସାମ୍ବାଦିକମାନେ ଜାଣିଲେ । ଯେତେବେଳେ ସାମ୍ବାଦିକମାନେ କିଛି ଲେଖନ୍ତି ବା କହନ୍ତି ସେତେବେଳେ ତାହାର ପ୍ରତିବାଦ କରିବା ଉଚିତ ନୁହେଁ । ଏହା ହେଲେ ସାମ୍ବାଦିକ ରାଗି ଯାଆନ୍ତି ଏବଂ ଆହୁରି ଖୋଳତାଡ଼ କରନ୍ତି । ତେଣୁ ସାମ୍ବାଦିକ ଯାହା ପଚାରୁଛନ୍ତି ବା କହୁଛନ୍ତି କିମ୍ବା ଲେଖୁଛନ୍ତି ତାକୁ ପ୍ରତିବାଦ ସେ କରନ୍ତି ନାହିଁ । ଯାହା ସତ ତାହାକୁ କେହି ଲୁଚାଇ ପାରିବେ ନାହିଁ । ସେ ମଧ୍ୟ ଜଣେ ସାମ୍ବାଦିକ ଥିଲେ । ତେଣୁ ସାମ୍ବାଦିକଙ୍କର ମୁଡ୍ କ'ଣ ତାହା ସେ ଭଲ ଭାବରେ ଜାଣିଛନ୍ତି । ତାଙ୍କର କିଏ ଭାଇ, କିଏ ଭାଇ ନୁହେଁ ତାହା ସେ କାହାକୁ ବି କହନ୍ତି ନାହିଁ । ନେତା ହେଲେ ଅନେକ ଭାଇ ବାହାରିବେ ଆଉ ସେଠାରେ ଯଦି ସେମାନଙ୍କୁ ତୁମର ଭାଇ ନୁହଁନ୍ତି ବୋଲି କହିବ ତା' ହେଲେ ବିପଦକୁ ଡାକିଆଣିବା ଛଡ଼ା ଅନ୍ୟ କିଛି ହେବନାହିଁ । ସମସ୍ତଙ୍କୁ ସାଥିରେ ନେଇ ଚାଲିଲେ ଜଣେ ସଫଳ ନେତା ହେବ । ଆଉ ଏଥିପାଇଁ ଭାଇ-ଭାଇ ସମ୍ପର୍କର ଆବଶ୍ୟକତା ଥାଏ । ସାମ୍ବାଦିକ ଜଣଙ୍କ ପୁଣି ଜାଣିବାକୁ ଚାହିଁଲେ ଅତନୁ ଓ ସାରଦା ଦୁଇଭାଇ କି ନୁହେଁ । ଅତନୁ କହିଲେ ସେ ଯାହା କହିଲେ ତାହା ବୋଧହୁଏ ବୁଝିପାରିଲେ ନାହିଁ । ସେ ବହୁ

ବ୍ୟକ୍ତିଙ୍କର ଭାଇ । ଯେଉଁଥିପାଇଁ ତାଙ୍କୁ ଅଧିକାଂଶ ଡାକନ୍ତି ଅତନୁଭାଇ । ମାନିବାକୁ ପଡ଼ିବ ଅତନୁ ସବ୍ୟସାଚୀଙ୍କୁ । ତାଙ୍କ ପେଟ ଭିତରୁ କଥା ବାହାର କରିବା ଯେ କେତେ ମୁସ୍କିଲ ତାହା ଏହି ପ୍ରସଙ୍ଗରୁ ହିଁ ସ୍ପଷ୍ଟ ହୋଇଯାଇଛି । ■

## ଅନଙ୍ଗଙ୍କ ଗୋପନ ଆଲୋଚନା



ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଆଉ ଯୋଜନା, ସମନ୍ୱୟ ସରକାରୀ ଉଦ୍ୟୋଗ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କ ମଧ୍ୟରେ କି ସମ୍ପର୍କ ରହିଛି ତାହା ବୋଧହୁଏ ଅଧିକାଂଶ ଜାଣନ୍ତି ନାହିଁ। କୁଆଡ଼େ ନବୀନ ଆଉ ଅନଙ୍ଗ ହେଉଛନ୍ତି ପାଠପଢ଼ିବା ସମୟର ବନ୍ଧୁ । ଦୁହେଁ ଦୀର୍ଘ ସମୟ ଧରି ଗପନ୍ତି । ବେଳେବେଳେ ମଧ୍ୟ ଏକାଠି ଖାଆନ୍ତି । କିନ୍ତୁ ସେଦିନ ନବୀନ ନିବାସରେ ଯେଉଁଭଳି ଚର୍ଚ୍ଚା ହେଲା ସେହି ଚର୍ଚ୍ଚା ଦୀର୍ଘ ସମୟ ଧରି ଚାଲିଲା । ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରିବା ପାଇଁ ବିଜେଡିର ବହୁ ମନ୍ତ୍ରୀ, ବିଧାୟକ ଓ ନେତା ନବୀନ ନିବାସରେ ଅପେକ୍ଷା କରିଥା'ନ୍ତି । ସେମାନଙ୍କୁ ଖବର ଦିଆଗଲା ଯେ, ନବୀନ ଓ ଅନଙ୍ଗ ଗପୁଛନ୍ତି । ତେଣୁ ସେମାନେ ଅପେକ୍ଷା କରନ୍ତୁ । ଏହାର ସିଧାସଳଖ ଅର୍ଥ ହେଲା ଯେ, ଦୀର୍ଘଦିନ ପରେ ନବୀନ ପଟ୍ଟନାୟକ ଓ ଅନଙ୍ଗ ଉଦୟ ସିଂହଦେଓ ନବୀନ ନିବାସରେ ଗପୁଛନ୍ତି । ଗୋଟିଏ ସମୟ ଥିଲା ଯେତେବେଳେ ନବୀନ ଓ ଅନଙ୍ଗଙ୍କ ମଧ୍ୟରେ ଚାଲିଥିବା ଗପର ଶେଷ ହେଉ ନଥିଲା । ଏଥର କିନ୍ତୁ ଗପ ସୀମିତ ସମୟ ମଧ୍ୟରେ ଶେଷ ହୋଇଥିଲା । ଏମିତି ତ ଅନଙ୍ଗଙ୍କ ପକ୍ଷକୁ କୁଆଡ଼େ କାଟି ଦେଇଛନ୍ତି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ଅନଙ୍ଗ ଚାହୁଁଥିଲେ ପୂର୍ତ୍ତ ବିଭାଗ ତାଙ୍କୁ ମିଳୁ ବୋଲି । ଯେହେତୁ ନବୀନ ତାଙ୍କର ପାଠପଢ଼ିବା ସମୟର ବନ୍ଧୁ ତେଣୁ ଏହି ବିଭାଗଟି ତାଙ୍କୁ ନିଶ୍ଚିତ ମିଳିବ ବୋଲି ସେ ଭାବି ନେଇଥିଲେ । ବିଭାଗ ବଂଟନ ହେବା ପୂର୍ବରୁ ଅନଙ୍ଗଙ୍କ ପାଖକୁ ଖବର ଆସିଥିଲା ଯେ ସେ ପୂର୍ତ୍ତ ବିଭାଗ ପାଉଛନ୍ତି ବୋଲି । କିନ୍ତୁ ଯେତେବେଳେ ଘୋଷଣା ହେଲା ସେତେବେଳେ ସବୁକିଛି ଓଲଟପାଲଟ ହୋଇଯାଇଥିଲା । ଅନଙ୍ଗଙ୍କୁ କମ୍ ଗୁରୁତ୍ୱପୂର୍ଣ୍ଣ ବିଭାଗ ମିଳିଲା । ଯେଉଁଥିପାଇଁ ତାଙ୍କର ମନ ବିଭାଗରେ ଲାଗିଲା ନାହିଁ । ମାସକରେ ୨୦ ଦିନ ଏବେ ଅନଙ୍ଗ ଓଡ଼ିଶା ବାହାରେ ରହୁଛନ୍ତି । କାମ ନାହିଁ ପୁଣି ଫାଇଲ ନାହିଁ । ତେଣୁ ଓଡ଼ିଶାରେ ରହି ସମୟ ନଷ୍ଟ କରିବାକୁ ସେ ଚାହାନ୍ତି ନାହିଁ । ଯେତେବେଳେ ମନ୍ତ୍ରିମଣ୍ଡଳ ଅଦଳବଦଳ ଚର୍ଚ୍ଚା ଚାଲେ ସେତେବେଳେ ଅନଙ୍ଗ ଉଦ୍ୟମ ଚଳାନ୍ତି କିପରି ତାଙ୍କୁ ଇଂଜିନିୟରିଂ ବିଭାଗଟିଏ ମିଳିବ ବୋଲି । ଅବଶ୍ୟ ସେଦିନ ପାଠପଢ଼ା ସମୟର ଦୁଇ ବନ୍ଧୁ ନବୀନ ଓ ଅନଙ୍ଗ ଦୀର୍ଘ ସମୟ ଧରି ଗପସପ ହେଲେ । କେଉଁ ପ୍ରସଙ୍ଗରେ ସେମାନେ ଗପିଲେ ତାହା ମଧ୍ୟ ପଦାକୁ ଆସିଲାନାହିଁ । କିନ୍ତୁ ବାହାରେ ଯେଉଁ ଚର୍ଚ୍ଚା ହେଲା ତାହା ହେଲା ଯେ, ଅନଙ୍ଗ ଏଥର ନବୀନଙ୍କୁ କହିଛନ୍ତି ତାଙ୍କୁ ତାଙ୍କ ମନ ପସନ୍ଦର ବିଭାଗ ଦେବା ପାଇଁ । ନବୀନ କୁଆଡ଼େ

ଏଥିରେ ସମ୍ମତି ଜଣାଇଥିଲେ । ରାଜନୀତିରେ ବନ୍ଧୁତା କାମ ଦିଏନାହିଁ ବୋଲି ମଧ୍ୟ ରାଜନୈତିକ ପଣ୍ଡିତମାନେ ବିଭିନ୍ନ ସମୟରେ ମତ ଦେଇଛନ୍ତି । ଅନଙ୍ଗ ବି ଜାଣିଛନ୍ତି ନବୀନ ଚାହିଁଲେ ବି ତାଙ୍କୁ ଇଂଜିନିୟରିଂ ବିଭାଗ ମିଳିବ ନାହିଁ ବୋଲି । ଯେତେଦିନ ପର୍ଯ୍ୟନ୍ତ ପ୍ୟାରୀମୋହନଙ୍କ ଆଶିର୍ବାଦ ତାଙ୍କ ଉପରକୁ ଆସିବ ନାହିଁ ସେତେଦିନ ପର୍ଯ୍ୟନ୍ତ ଅନଙ୍ଗ ଏପରି କମ୍ ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ହୋଇରହିଥିବେ । ତେବେ ପ୍ୟାରୀ ଓ ଅନଙ୍ଗଙ୍କ ମଧ୍ୟରେ ସମ୍ପର୍କ ମଧୁର କରିବା ପାଇଁ କୁଆଡ଼େ ନବୀନ ମଧ୍ୟସ୍ଥତା କରିବେ । ଦୁଇ ବନ୍ଧୁଙ୍କ ଆଲୋଚନାର ଗୁରୁତ୍ୱ ରହୁଛି କି ନାହିଁ ତାହା କେବଳ ମନ୍ତ୍ରିମଣ୍ଡଳ ସଂପ୍ରସାରଣ ସମୟରେ ସ୍ପଷ୍ଟ ହେବ । ■



## ଚୀନ୍ ଓ ଦାମା

କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ ଦାମୋଦର ରାଉତ ଚୀନ୍ ଗସ୍ତରେ ଯାଇଥିଲେ । ଓଡ଼ିଶାକୁ କୃଷିରେ ଭାରତବର୍ଷର ଅଗ୍ରଣୀ ରାଜ୍ୟରେ ପରିଣତ କରିବା ପାଇଁ ଦାମୋଦର ବେଶ୍ ଆଗ୍ରହୀ ହୋଇଯାଇଛନ୍ତି । ଏମିତି ତ ମନ୍ତ୍ରୀ ହେବା ପରଠାରୁ ଭାରତର ପଡ଼ୋଶୀ ରାଷ୍ଟ୍ର ବାଙ୍ଗଲାଦେଶକୁ ମଧ୍ୟ ଦାମୋଦର ଗସ୍ତରେ ଯାଇଛନ୍ତି । ତେବେ ଚୀନ୍ ଗସ୍ତରେ ଯାଇ ଦାମୋଦର ବେଶ୍ ଖୁସି । ଚୀନ୍‌ରୁ ଫେରିବା ପରେ ଦାମୋଦର ସେଠାକାରର ପରିସ୍ଥିତି ସମ୍ପର୍କରେ ବିଭିନ୍ନ ସମୟରେ ଆଲୋଚନା କରୁଛନ୍ତି । ସତେ ଯେମିତି ଦାମୋଦର ଭାବୁନାହାନ୍ତି ଯେ, ସେ ଓଡ଼ିଶାରେ ଅଛନ୍ତି ବୋଲି । ଚୀନ୍‌ରେ କେଉଁଠି କେଉଁ ପ୍ରକାର ଚାଷ ହୋଇଛି, କେଉଁଠି କେଉଁ ପ୍ରକାର ଅତିଥିଙ୍କୁ କେଉଁ ପ୍ରକାରର ଅଭ୍ୟର୍ଥନା ଦିଆଯାଏ, କେଉଁ ଗୁଣରେ ଚୀନ୍ ଭାରତ ଠାରୁ ଆଗରେ ଅଛି ଏମିତି ଅନେକ ପ୍ରସଙ୍ଗରେ ଦାମୋଦର ବଖାଣିବାରେ ଲାଗିଛନ୍ତି । ସତେ ଯେମିତି ଚୀନ୍ ପ୍ରେମ ଘାରିଛି ଦାମୋଦରଙ୍କୁ । ଚୀନ୍‌ର କୃଷି ଉନ୍ନତମାନର ହୋଇଥିବାରୁ ସେହି ଅନୁଯାୟୀ ଓଡ଼ିଶାରେ କୃଷି କରାଯିବା ପାଇଁ ଦାମୋଦର ମଧ୍ୟ ପ୍ରସ୍ତାବ ଦେଉଛନ୍ତି । ତେବେ ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ଯେ, ଦାମୋଦରଙ୍କ ମୁହଁରୁ ଅନେକ ସମୟରେ ଚୀନ୍ ପ୍ରଶଂସା ବାହାରିବା । ଯାହା ଦେଖାଯାଉଛି କେତୋଟି ଦିନ ଚୀନ୍‌କୁ ଚାଲିଯିବା ପରେ ଦାମୋଦର ସତେ ଯେମିତି ଚୀନ୍ ବାସିନ୍ଦା ହୋଇଯାଇଛନ୍ତି । ଓଡ଼ିଶାର ମନ୍ତ୍ରୀ ଚୀନ୍‌କୁ ଯାଇ ଚୀନ୍ ପ୍ରେମରେ ପଡ଼ିଯାଇଥିବା ସମ୍ପର୍କରେ ଚୀନ୍ ସରକାର ଜାଣିବାର ଆବଶ୍ୟକତା ଥିଲା । ଏହା ହୋଇଥିଲେ ଦାମୋଦର ଯଦିଓ ଓଡ଼ିଶାର ମନ୍ତ୍ରୀ କିନ୍ତୁ ଚୀନ୍‌ର ପ୍ରଶଂସା କରୁଥିବାରୁ ଚୀନ୍ ସରକାର ତାଙ୍କୁ ଓଡ଼ିଶା ପାଇଁ ଚୀନ୍‌ର ବ୍ରାଣ୍ଡ ଆମ୍ବାସଡ଼ର କରିଦେଇଥା'ନ୍ତେ । ତେବେ ଦାମୋଦରଙ୍କର ଯୁକ୍ତି ହେଉଛି ଚୀନ୍‌ରେ ମଧ୍ୟ ସେ ଓଡ଼ିଶାର କିଛି କମ୍ ଗୁଣଗାନ କରିନାହାନ୍ତି । ସେ ଏମିତି ସେମିତି ନେତା ନୁହନ୍ତି । ଯାହା ଭଲ

ତାକୁ ସେ ଭଲ କହନ୍ତି । ଦାମୋଦରଙ୍କ ପରି ଅନ୍ୟ କିଛି ମନ୍ତ୍ରୀଙ୍କୁ ଯଦି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଚୀନ୍ ଗସ୍ତରେ ପଠାଇ ଦିଅନ୍ତେ ତେବେ ଓଡ଼ିଶାରେ କୃଷିର ପ୍ରଗତି ହେଉ କି ନହେଉ କିନ୍ତୁ ସେହି ମନ୍ତ୍ରୀମାନେ ସାଧାରଣ ସଭାରେ ଭାଷଣ ଦେବାବେଳେ ଓଡ଼ିଶାକୁ ଚୀନ୍ ପରି କୃଷି ରାଜ୍ୟରେ ପରିଣତ କରିଦିଅନ୍ତେ ବୋଲି ପ୍ରକାଶ କରନ୍ତେ । ଏହା ହେଲେ କୃଷି କ୍ଷେତ୍ରରେ ଓଡ଼ିଶାର ବିକାଶ ହେଉ କି ନହେଉ କିନ୍ତୁ ଭାଷଣରେ ଓଡ଼ିଶାର ବିକାଶ ହୋଇପାରନ୍ତା । ■

## ପଣସ ଖିଆ ଅରୁଣ



ଖାଇବାରେ କାହାର କେମିତି ପସନ୍ଦ ଥାଏ । କିଏ ଆମ୍ବ ଖାଇବାକୁ ଭଲ ପାଏ ତ କିଏ ପଣସ ଖାଇବାକୁ ଭଲ ପାଏ । କିଏ ପିଜୁଳି ଖାଇବାକୁ ଭଲ ପାଏ ତ କିଏ କଦଳୀ ଖାଇବାକୁ ଭଲ ପାଏ । କିନ୍ତୁ ଏଠାରେ ଯାହାଙ୍କ କଥା ଉଲ୍ଲେଖ କରାଯାଉଛି ସେ ପଣସ ଖାଇବାକୁ ଯେ ଭଲ ପାଆନ୍ତି ତାହା କେହିଁ ଜାଣନ୍ତି ନାହିଁ । କଥା ଯେ ଏତିକିରେ ଶେଷ ହୋଇଗଲା ତାହା ନୁହେଁ । ପଣସ ଖାଇବା ତ ପରର କଥା କିନ୍ତୁ ପଣସ ଗଛମୂଳେ ଶୋଇପଡ଼ିଲେ ବି ତାଙ୍କୁ ଆନନ୍ଦ ମିଳିଥାଏ । ଏହି ନେତା ଜଣଙ୍କ ହେଲେ ଅରୁଣ ସାହୁ । ନୟାଗଡ଼ର ଦୁଇଥର ବିଧାୟକ ହୋଇ ଏବେ ସେ ସରକାରୀ ଦଳର ଉପମୁଖ୍ୟ ସଚେତକ । ଏମିତି ତାଙ୍କର ନିଜ ଘର ହେଉଛି ଦଶପଲା ନିର୍ବାଚନମଣ୍ଡଳୀରେ । ଦଶପଲାକୁ ମଧ ଜଙ୍ଗଲ ଭରା ନିର୍ବାଚନମଣ୍ଡଳୀ କୁହାଯିବ । ପଣସ ହେଉ କି ଆମ୍ବ ହେଉ ସେହି ଅଂଚଳରେ ଏହାର ଅଭାବ ଆଦୌ ନଥାଏ । ଯେହେତୁ ଦଶପଲା ଅଂଚଳରୁ ଅରୁଣ ଆସିଛନ୍ତି ତେଣୁ ନିଜ ଅଂଚଳ ପ୍ରତି ତାଙ୍କର ଦୁର୍ବଳତା ରହିବା ସ୍ୱାଭାବିକ । ପଣସ ପାଚିଗଲେ କେମିତି ଖିଆଯାଏ ତାହା ଭୁବନେଶ୍ୱରରେ ଇଂରାଜୀ ମିଡ଼ିୟମ ସ୍କୁଲରେ ପାଠ ପଢୁଥିବା ପିଲାମାନେ ପ୍ରାୟ ଜାଣି ନଥିବେ । ପାଚିଲା ପଣସର ସ୍ୱାଦ ମଧ କ'ଣ ତାହା ବି ସେମାନେ ଜାଣି ନଥିବେ । ଅରୁଣଙ୍କୁ ଯୋଗାଇ ଦିଆଯାଇଥିବା ସରକାରୀ କ୍ୱାର୍ଟରରେ ଯୋଗକୁ ପଣସ ଗଛ ଅଛି । ବୋଧହୁଏ ପଣସ ଗଛ ଥିବାରୁ ଅରୁଣ ସେହି କ୍ୱାର୍ଟରଟିକୁ ନେଇଛନ୍ତି । ସେଦିନ ଦେଖାଗଲା ତାଙ୍କ କ୍ୱାର୍ଟରରେ ଥିବା ପଣସ ଗଛମୂଳେ ଅରୁଣ ଦିନ ଦ୍ୱି'ପ୍ରହରରେ ଶୋଇଛନ୍ତି । କାରଣ କ'ଣ କେହି ଜାଣିପାରିଲେ ନାହିଁ । ହଠାତ୍ ଦେଖାଗଲା ପଣସ ଗଛରେ ପଣସଟିଏ ପାଚିଛି । କେହି ଜଣେ କହିଲେ ପାଚିଲା ପଣସକୁ ନତୋଳିଲେ ଅରୁଣ ସେଠାରୁ ଉଠିବେ ନାହିଁ । ଏହାପରେ ପାଚିଲା ପଣସକୁ ଗଛରୁ ତୋଳାଯାଇ ତାକୁ ଅରୁଣଙ୍କ ପାଖକୁ ଅଣାଗଲା । ନିଘୋଡ଼ ନିଦରେ ପଣସ ଗଛମୂଳେ ଶୋଇଥିବା ଅରୁଣ ହଠାତ୍ ଉଠିପଡ଼ିଲେ । ସତେ ଯେମିତି ସେ ଜାଣିଥିଲେ ପାଚିଲା ପଣସଟି ତାଙ୍କ ପାଖକୁ ଆସିଯାଇଛି ବୋଲି । ଆଉ କାଳ ବିଳମ୍ବ ନକରି ସେ ପାଚିଲା ପଣସଟିକୁ ଦୁଇଫାଳ କଲେ ଏବଂ

ସେଥିରୁ ପଣସ ଖୋସା ବାହାର କରି ଖାଇଲେ । ମାନିବାକୁ ପଡ଼ିବ ଅରୁଣଙ୍କର ପଣସ ପ୍ରୀତିକୁ । ପାଚିଲା ପଣସ ଖାଇବା ପାଇଁ ଜଣେ ଯେ ପଣସ ଗଛମୂଳେ ଶୋଇବ ଆଉ ପାଚିଲା ପଣସ ତାଙ୍କ ପାଖକୁ ଆସିଗଲେ ତାଙ୍କ ନିଦ ଆପେଆପେ ଭାଙ୍ଗିଯିବ ଏହା ନଦେଖିଲା ଲୋକ ବିଶ୍ୱାସ କରିବେ ନାହିଁ । ଯାହା ହେଉ ନିଜ ଅଂଚଳର ଟେକ ଅରୁଣ ରଖି ଚାଲିଛନ୍ତି । ଦେଖାଯାଉ ଅରୁଣଙ୍କ ସନ୍ତାନ ସନ୍ତତିଙ୍କର ପଣସ ପ୍ରତି ଦୁର୍ବଳତା ରହୁଛି କି ନାହିଁ । ■

# ଜେଜେ-ବାପା-ପୁଅ ରାଜନୀତି

ବାପା ରାଜନୀତି କରୁଥିବେ । ପୁଣି ବାପା ରାଜନୀତିରୁ ସନ୍ୟାସ ନେବାପରେ ପୁଅ ରାଜନୀତି କରିବେ । ଏହା ସେହି ବାପ ପାଇଁ ଖୁସିର ଖବର ନିଶ୍ଚିତ ହେବ । ଏଠାରେ ଯେଉଁ ବାପ-ପୁଅଙ୍କ ପ୍ରସଙ୍ଗ ସମ୍ପର୍କରେ ବର୍ଣ୍ଣନା କରାଯାଉଛି ସେମାନେ ହେଲେ ବିଭୂତି ଭୂଷଣ ସିଂ ମର୍ଦ୍ଦରାଜ ଏବଂ ସିଦ୍ଧାର୍ଥ ଶେଖର ସିଂ । ସିଦ୍ଧାର୍ଥଙ୍କ ବାପା ହେଉଛନ୍ତି ବିଭୂତି । ଏମିତି ବିଭୂତି ଖଣ୍ଡପଡ଼ାରୁ ବିଧାୟକ ହୋଇଛନ୍ତି, ଉପବାଚସ୍ପତି ହୋଇଛନ୍ତି ଆଉ ମନ୍ତ୍ରୀ ବି ହୋଇଛନ୍ତି । ୨୦୦୯ ନିର୍ବାଚନରେ ବିଭୂତିଙ୍କ ପୁଅ ସିଦ୍ଧାର୍ଥ ଖଣ୍ଡପଡ଼ାରେ ବିଜେଡି ଟିକେଟରେ ପ୍ରାର୍ଥୀ ହେଲେ । ସିଦ୍ଧାର୍ଥ ବିଜୟୀ ହୋଇ ଏବେ ବିଧାୟକ । ସେଦିନ ଆବେଗ ହୋଇ କହି ଚାଲିଥିଲେ ତାଙ୍କ ବାପା ବିଭୂତି ଭୂଷଣ ସିଂ ମର୍ଦ୍ଦରାଜ । ସେ କହିଲେ - ସିଦ୍ଧାର୍ଥ ଛୋଟପିଲା ଥିଲା । ଏକ ସଭାରେ ସେ ଭାଷଣ ଦେଉଥିଲେ । ସାଥିରେ ଯାଇଥିଲେ ସିଦ୍ଧାର୍ଥ । ମଂଚରେ ସିଦ୍ଧାର୍ଥଙ୍କୁ ପାଖରେ ବସାଇଥିଲେ ବିଭୂତି । ଭାଷଣ ଦେବା ବେଳକୁ ସିଦ୍ଧାର୍ଥ ତାଙ୍କୁ ଚାହିଁ ରହିଥିଲେ । ଏହି ସମୟରେ କେହି ଜଣେ ସେହି ଦୃଶ୍ୟର ଫଟୋ ଉଠାଇ ନେଇଥିଲେ ଏବଂ ସେହି ଫଟୋକୁ ପରବର୍ତ୍ତୀ ସମୟରେ ବିଭୂତିଙ୍କୁ ଦେଇଥିଲେ । ଏମିତି ଅତୀତର ସ୍ମୃତିକୁ ଦରାଣ୍ଡୁ ଦରାଣ୍ଡୁ ବିଭୂତି ପାଇଯାଇଥିଲେ ଏହି ଫଟୋ । ଏହି ଫଟୋକୁ ଦେଖି ତାଙ୍କ ଆଖି କୁଆଡ଼େ ଲୁହ ଛଳଛଳ ହୋଇଯାଇଥିଲା । ଯେତେବେଳେ ସେ ଭାଷଣ ଦେଉଥିଲେ ଆଉ ସେହି ସମୟରେ ସିଦ୍ଧାର୍ଥ ମଂଚରେ ବସି ତାଙ୍କୁ ଚାହିଁ ରହିଥିଲେ ସେତେବେଳର ଦୃଶ୍ୟକୁ ମଧ୍ୟ ସେ ଅଙ୍ଗେଅଙ୍ଗେ ଅନୁଭବ କରିଥିଲେ । ପରବର୍ତ୍ତୀ ସମୟରେ ସେ କହିଥିଲେ ଯେ, ଦିନେ ନା ଦିନେ ସିଦ୍ଧାର୍ଥ ବିଧାୟକ ହେବେ ବୋଲି । ଏମିତି ଅନେକ ଥର ନହୋଇପାରେ କିନ୍ତୁ ଗୋଟିଏ ଥର ନିଶ୍ଚିତ ସିଦ୍ଧାର୍ଥ ବିଧାୟକ ହେବେ । ସେ ଭାଷଣ ଦେଉଥିବା ବେଳେ ସିଦ୍ଧାର୍ଥ ଯେଭଳି ତାଙ୍କୁ ଚାହିଁ ରହିଥିଲେ ସେହି ଚାହାଣିରୁ ସେ ଜାଣିପାରିଥିଲେ ସିଦ୍ଧାର୍ଥଙ୍କ ଭବିଷ୍ୟତ କ'ଣ ବୋଲି । ଏମିତି ବିଭୂତିଙ୍କ ବାପା

ମଧ ବିଧାୟକ ଥିଲେ । ସତେ ଯେମିତି ବିଧାୟକ ପଦବୀଟି ଖଣ୍ଡପଡ଼ା ରଜାଙ୍କ ପାଇଁ ଉଦ୍ଦିଷ୍ଟ ଅଟେ । ବିଭୂତିଙ୍କୁ ତାଙ୍କ ବାପା ମଧ ଭବିଷ୍ୟବାଣୀ କରିଥିଲେ ଯେ, ସେ ମଧ ବିଧାୟକ ହେବେ ବୋଲି । ଏବେ ଖଣ୍ଡପଡ଼ା ରାଜନୀତିକୁ ନେଇ ବିଭୂତି ଆଉ ସେତେ ଚିନ୍ତିତ ନୁହନ୍ତି । ସେ ଯାହା ଭବିଷ୍ୟବାଣୀ କରିଥିଲେ ତାହା ହିଁ ଘଟିଲା ଆଉ ଏଥିପାଇଁ ତାଙ୍କୁ ଖଣ୍ଡପଡ଼ାରେ ପରିଶ୍ରମ କରିବାକୁ ପଡୁଥିଲା । ବାପାଙ୍କ ପରେ ପୁଅ ଏମିତି ତିନିପୁରୁଷ ଖଣ୍ଡପଡ଼ା ରାଜ ପରିବାରରେ ବିଧାୟକ ହେଲେଣି । ତେବେ ସିଦ୍ଧାର୍ଥ ତାଙ୍କର ଭବିଷ୍ୟତ ବଂଶଧରଙ୍କୁ ତାଙ୍କ ବାପା କିମ୍ବା ଜେଜେବାପାଙ୍କ ପରି ବିଧାୟକ ହେବେ ବୋଲି ଭବିଷ୍ୟବାଣୀ କରିପାରୁଛନ୍ତି କି ନାହିଁ ତାହା ଭବିଷ୍ୟତ ହିଁ କହିବ । ■

## ବାପ-ପୁଅଙ୍କ ଜଳଖିଆ




ବିଜେଡି ରାଜନୀତିରେ ବାପ-ପୁଅ ରାଜନୀତି କୁହାଗଲେ ଦୁଇଜଣଙ୍କୁ ବୁଝାଏ । ଜଣେ ହେଲେ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଓ ତାଙ୍କ ପୁଅ ପ୍ରୀତିରଂଜନ ଘଡ଼ାଇ ଏବଂ ଆଉ ଜଣେ ହେଲେ କାଳନ୍ଦୀ ବେହେରା ଓ ତାଙ୍କ ପୁଅ ଚନ୍ଦ୍ର ସାରଥୀ ବେହେରା । ଏମାନେ ସମସ୍ତେ ବିଧାୟକ । ତେବେ ପ୍ରଫୁଲ୍ଲ ବର୍ତ୍ତମାନ ଅର୍ଥ ଓ ଅବକାରୀ ମନ୍ତ୍ରୀ ଥିବାବେଳେ କାଳନ୍ଦୀ ମନ୍ତ୍ରୀ ନାହାନ୍ତି । ଏବେ ଆମେ ଯେଉଁ ବାପ-ପୁଅ ପ୍ରସଙ୍ଗକୁ ଆସିବା ସେମାନେ ହେଲେ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଓ ପ୍ରୀତିରଂଜନ ଘଡ଼ାଇ । ରାଜନୀତିରେ ଏହି ବାପ-ପୁଅ ପ୍ରଫୁଲ୍ଲ ଓ ପ୍ରୀତିରଂଜନଙ୍କୁ ଏକାଠି ଯୋଡ଼ିବାରେ କାରଣ ବି କିଛିନାହିଁ । କିନ୍ତୁ ଯେଉଁ କାରଣ ଯୋଗୁ ସେମାନଙ୍କୁ ଏକାଠି ଯୋଡ଼ାଯାଉଛି ତାହା ହେଲା ସେମାନଙ୍କର ଖାଦ୍ୟ ପ୍ରୀତି । ବାପ-ପୁଅ ଦୁଇଜଣ ସକାଳେ ଏକାଧରଣର ଜଳଖିଆ ଖାଆନ୍ତି । ଏହି ଜଳଖିଆ ହେଲା ଚୁଡ଼ା, ମୁଢ଼ି, ଛତୁଆ, ଦହି, କଦଳୀ, କ୍ଷୀର, ନଡ଼ିଆକୁ ଏକାଠି କରି ଚକଟା ହେବ । ଚିନି ବହୁତ କମ୍ ପଡ଼ିବ । ଏହା ହେଲା ଉଭୟ ପ୍ରଫୁଲ୍ଲ ଓ ତାଙ୍କ ପୁଅ ପ୍ରୀତିରଂଜନଙ୍କର ସକାଳ ଜଳଖିଆ । ଜଳଖିଆ ଖାଇବା ପରେ କିଏ କ'ଣ ଖାଆନ୍ତି ତାହା ଅଲଗା କଥା । ଏମିତି ପ୍ରୀତିରଂଜନଙ୍କର ମାଛ, ମାଂସ, ଆମିଷ, ନିରାମିଷ ସବୁ ଚଳେ । ଏହି ଜଳଖିଆ ଗୁମରକୁ ପ୍ରୀତିରଂଜନ ଫିଟାଇ ଦେଇଛନ୍ତି । ଏବେ ଜଣାପଡ଼ିଲା ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ କାହିଁକି ସବୁବେଳେ ସଚିବାଳୟରୁ ଘରକୁ ମଧ୍ୟାହ୍ନ ଭୋଜନ ଖାଇବାକୁ ଆସିବା ସମୟ ସାଢ଼େ ଦୁଇଟାରୁ ତିନିଟା କରିଥା'ନ୍ତି । ମାନେ ସକାଳେ ଫୁଲ୍ ନିଦା ଜଳଖିଆ ସେ ଖାଇଥା'ନ୍ତି । ଆଉ ଜଳଖିଆ ଖାଇ ସଚିବାଳୟ କାର୍ଯ୍ୟାଳୟକୁ ସେ ଚାଲିଗଲେ ପୂରାପୂରି ନିଦା ଢଙ୍ଗରେ ଫାଇଲ କାମ ବି କରନ୍ତି । ■

# ବିଜୟଙ୍କ ଦୁଃଖ



ବିଧାୟକ ହୋଇଥିବ କିନ୍ତୁ ବିଧାୟକ ପାଉଥିବା ବିଭିନ୍ନ ପାଣ୍ଠି ତାଙ୍କ ନିର୍ବାଚନମଣ୍ଡଳୀକୁ ଆସୁ ନଥିବ । ଏହାଠାରୁ ଦୁଃଖ ବିଧାୟକଙ୍କ ପାଇଁ ଆଉ କିଛି ନାହିଁ । ଏହି ଘଟଣାଟି ଦେଖିବାକୁ ଆମକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ସରକାରଙ୍କ ନାକ ନିଶ ତଳ ବୋଲି କୁହାଯାଉଥିବା ମଧ୍ୟ-ଭୁବନେଶ୍ୱରକୁ ଗଲେ ଏହା ବେଶ୍ ବାରି ହୋଇଯିବ । ମଧ୍ୟ-ଭୁବନେଶ୍ୱରରେ ସଚିବାଳୟ ଠାରୁ ଆରମ୍ଭ କରି ସରକାରଙ୍କର ସମସ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ ରହିଛି । ଏଠାରେ ସରକାରୀ କ୍ୱାର୍ଟର ଭରପୂର । ସିଧାସଳଖ କୁହାଗଲେ ମଧ୍ୟ-ଭୁବନେଶ୍ୱରର ଯିଏ ବିଧାୟକ ସେ କେବଳ ନାମକୁ ମାତ୍ର । ମାନେ ଅନ୍ୟ ବିଧାୟକଙ୍କ ପରି ଏହି ମଧ୍ୟ-ଭୁବନେଶ୍ୱରକୁ ବିଭିନ୍ନ ଯୋଜନା ସେ ଆଣିପାରିବେ ନାହିଁ । ଜଳସେଚନ ପାଇଁ ଯୋଜନା ହେଉ କି ଗ୍ରାମ୍ୟ ଉନ୍ନୟନ ପାଇଁ ଯୋଜନା ହେଉ କି କୃଷି ପାଇଁ ଯୋଜନା ହେଉ କିମ୍ବା ଗ୍ରାମାଂଚଳ ପାଇଁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନା ହେଉ କୌଣସିଟି ଏହି ମଧ୍ୟ-ଭୁବନେଶ୍ୱର ପାଇଁ ପ୍ରଯୁଜ୍ୟ ନୁହେଁ । ଏମିତି ତ ମଧ୍ୟ-ଭୁବନେଶ୍ୱରରେ ଯିଏ ବିଧାୟକ ତାଙ୍କୁ ବେଛପରି ବିଧାୟକ ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । ମାନେ ତାଙ୍କରି ନିର୍ବାଚନମଣ୍ଡଳୀରେ ସରକାରଙ୍କର ସବୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ ରହିଛି । କିନ୍ତୁ ତାଙ୍କ ସୁପାରିଶରେ ଏଠାରେ କେହି ନିଯୁକ୍ତି ପାଆନ୍ତି ନାହିଁ । ଯାହାର ହାତ ଲମ୍ବା ସେ ହିଁ ଏଠାରେ ନିଯୁକ୍ତି ପାଆନ୍ତି । ମଧ୍ୟ-ଭୁବନେଶ୍ୱର ହେଉଛି ଭୁବନେଶ୍ୱର ମହାନଗର ନିଗମର ଏକ ପ୍ରମୁଖ ଅଂଶ । ତେଣୁ ଯେତେସବୁ ବିକାଶ କାମ ଏଠାରେ ହୁଏ ତାହାର ପ୍ରମୁଖ ଭାଗ ଥାଏ ମହାନଗର ନିଗମ ହାତରେ । ବିଧାୟକଙ୍କର ମଧ୍ୟ ମହାନଗର ନିଗମ ଉପରେ ସେତେଟା ଦଖଲ ରହିବ ନାହିଁ । ଏଥିପାଇଁ ମହାନଗର ନିଗମର ମେୟର ଅଛନ୍ତି, କର୍ପୋରେଟର ଅଛନ୍ତି ଆଉ କମିଶନର ମଧ୍ୟ ଅଛନ୍ତି । ସେମାନଙ୍କର ବଜେଟ୍ ଅଲଗା । ସେଥିରେ ବିଧାୟକ କିଛି ହସ୍ତକ୍ଷେପ କରିପାରିବେ ନାହିଁ । ଏଭଳି ଏକ ନିର୍ବାଚନମଣ୍ଡଳୀରେ ଯିଏ ବିଧାୟକ ହେବେ ତାହା ତାଙ୍କ ପାଇଁ ଆଦୌ ଯେ ଖୁସି ଆଣିବ ନାହିଁ ତାହା ସ୍ପଷ୍ଟ ହୋଇଯାଇଛି । ପୂର୍ବରୁ ଭୁବନେଶ୍ୱର ନିର୍ବାଚନମଣ୍ଡଳୀ ବିଭକ୍ତ ହୋଇ ନଥିଲା । ୨୦୦୯ରେ ଭୁବନେଶ୍ୱର ନିର୍ବାଚନମଣ୍ଡଳୀ ତିନିଭାଗରେ ବିଭକ୍ତ ହେଲା । ଗୋଟିଏ ହେଲା ଏକାମ୍ର, ଅନ୍ୟଟି ଉତର ଏବଂ ତୃତୀୟଟି ହେଲା ମଧ୍ୟ ଭୁବନେଶ୍ୱର । ଏକାମ୍ର ଏବଂ ଉତରରେ ଅନ୍ୟ ବିଧାୟକମାନେ ଯେପରି ଜଳସେଚନ କି ଗ୍ରାମ୍ୟ ଉନ୍ନୟନ କି କୃଷି କି ଅନ୍ୟ ଯୋଜନାଗୁଡ଼ିକର ସୁବିଧା ପାଉଛନ୍ତି ସେହିପରି ସେଠାରେ ମିଳୁଛି । ମାନେ ସେହି ଦୁଇଟି ନିର୍ବାଚନମଣ୍ଡଳୀରେ ଗ୍ରାମାଂଚଳ ଅଛି ଏବଂ ପଂଚାୟତ ମଧ୍ୟ ଅଛି । ବିଲବାଡ଼ି ବି ଅଛି । କେନାଲ ଓ ଚାଷ କାମ ମଧ୍ୟ ହେଉଛି । କିନ୍ତୁ ମଧ୍ୟ-ଭୁବନେଶ୍ୱରରେ

ସେସବୁ କିଛି ନାହିଁ । ଏହି ଅଂଚଳରେ ସଚିବାଳୟ ରହୁଥିବାରୁ ନାମକୁ ମାତ୍ର କେବଳ ମଧ୍ୟ-ଭୁବନେଶ୍ୱରର ବିଧାୟକ ଅଟନ୍ତି । ଏହାସତ୍ତ୍ୱେ ଏହି ଅଂଚଳର ବିକାଶ କରିବା ପାଇଁ ଏହାର ବିଧାୟକ ବିଜୟ ମହାନ୍ତି ସବୁବେଳେ ଉଦ୍ୟମ ଜାରି ରଖିଛନ୍ତି । ଯେମିତି ହେଲେ ଲୋକଙ୍କ ପାଖରେ ସେ ପହଂଚିବାକୁ ପସନ୍ଦ କରୁଛନ୍ତି । ତେବେ ମଧ୍ୟ-ଭୁବନେଶ୍ୱର ପାଇଁ ସିଧାସଳଖ ସରକାର କାର୍ଯ୍ୟକ୍ରମ ଗ୍ରହଣ କରୁଥିବା ସ୍ଥଳେ କେତେକ କ୍ଷେତ୍ରରେ ମହାନଗର ନିଗମ ମଧ୍ୟ କାର୍ଯ୍ୟକ୍ରମ ହାତକୁ ନେଉଛି । ଏହାସତ୍ତ୍ୱେ ଏହାର ବିଧାୟକ ବିଜୟ ମହାନ୍ତି ଲୋକଙ୍କ ସହିତ ରହିବା ପାଇଁ ସବୁବେଳେ ପସନ୍ଦ କରୁଛନ୍ତି । ଏବେ ବିଜୟଙ୍କର ଗୋଟିଏ ଲକ୍ଷ୍ୟ । ତାହା ହେଲା ସେ ଲୋକଙ୍କ ସହିତ ରହିବେ ଆଉ ଲୋକଙ୍କ ନେତା ହେବେ । ✦

## ରାଗି ତରୁଣକାନ୍ତି

ଯୁବକ ସମୟରେ ସାଧାରଣତଃ ଅନେକ ରାଗ ପ୍ରକୃତିର ଥା'ନ୍ତି । କିନ୍ତୁ ମୁଖ୍ୟ ଶାସନ ସଚିବ ତରୁଣକାନ୍ତି ମିଶ୍ରଙ୍କୁ ଦେଖିଲେ ସେ ଯେ ତାଙ୍କ ଯୁବକ ସମୟରେ ରାଗି ହୋଇଥିବେ ତାହା କେହି ବି ଭାବିପାରିବେ ନାହିଁ । ତରୁଣକାନ୍ତି ମିଶ୍ର ଆଇଏଏସ୍ ପାଇବା ପରେ ଭୁବନେଶ୍ୱରର ବ୍ଲକରେ ବିଡିଓ ଟ୍ରେନିଂ ନେଉଥିଲେ । ଏହି ସମୟରେ ମେଣ୍ଢାଶାଳ ଗ୍ରାମ ପଂଚାୟତର ଇନ୍ସପେକ୍ସନ ହେଲା । ସେତେବେଳେ ସରପଂଚ ଥିଲେ ଭରତ ରାଉତରାୟ । ଭୁବନେଶ୍ୱରର ବିଡିଓ ଥା'ନ୍ତି କିର୍ତନ ବିହାରୀ ମହାନ୍ତି । ଭରତ ରାଉତରାୟ ଏହି ଇନ୍ସପେକ୍ସନ ଚାଲିବା ସମୟରେ ନିକଟସ୍ଥ ଛତାବର ପିଡବ୍ଲ୍ୟୁଡି ଆଇବିରେ ଖାଇବା ପାଇଁ ବ୍ୟବସ୍ଥା କରିଥା'ନ୍ତି । ବିଡିଓ କିର୍ତନ ବିହାରୀଙ୍କ ସହିତ ଇନ୍ସପେକ୍ସନରେ ଯାଇଥିଲେ ତରୁଣକାନ୍ତି ମିଶ୍ର । ଭାତ, ମାଂସ, ସାଧା ତରକାରୀ ଏମିତି ସାଧାରଣରେ ଯେଉଁ ରନ୍ଧା ହୋଇଥାଏ ସେଭଳି ଏକ ଖାଇବା ବ୍ୟବସ୍ଥା ସରପଂଚ ଭାବେ ଭରତ ରାଉତରାୟ ଆଇବିରେ କରିଥିଲେ । ଖିଆପିଆ ଶେଷ ହେଲା । ହଠାତ୍ ତରୁଣକାନ୍ତି ପଚାରିଲେ- ମିଲ୍‌ର ଦାମ୍ କେତେ ? ଏହାକୁ ନେଇ ଘାବରେଇ ଗଲେ ସରପଂଚ ଭରତ ରାଉତରାୟ । ସେ କହିଲେ- ଆଜ୍ଞା, ପଂଚାୟତ ପକ୍ଷରୁ ଏହି ଖାଇବା ବ୍ୟବସ୍ଥା ହୋଇଛି । ସଙ୍ଗେସଙ୍ଗେ ରାଗିଗଲେ ତରୁଣକାନ୍ତି । କହିଲେ- ଇନ୍ସପେକ୍ସନରୁ ସେ ଜାଣିବାକୁ ପାଇଛନ୍ତି ଯେ ପଂଚାୟତର ରୋଜଗାର କିଛି ନାହିଁ । ତେଣୁ ପଂଚାୟତ ପକ୍ଷରୁ ଏଭଳି ଖାଇବା ବ୍ୟବସ୍ଥା ହୋଇପାରିବ ନାହିଁ । କେତେ ଟଙ୍କା ହୋଇଛି କୁହ ଆଉ ସେହି ଟଙ୍କା ମୋ ଠୁ ନିଅ । ସରପଂଚ ଭରତ ରାଉତରାୟ କିନ୍ତୁ ତରୁଣକାନ୍ତିଙ୍କ ଠାରୁ ପଇସା ନେଲେ ନାହିଁ । ସେତେବେଳେ ତରୁଣକାନ୍ତିଙ୍କ ଆଇଏଏସ୍ ପାଇବାର ତାହା ଥିଲା ପ୍ରଥମ ସୋପାନ । ସେ ଥିଲେ ଗଜା ଟୋକା ଆଉ ତାଙ୍କର ଚେହେରା ଥିଲା ଗୋରା ତକ୍‌ତକ୍ । ଖାଇବା ବାବଦରେ ଟଙ୍କା ନନେବାରୁ ତରୁଣକାନ୍ତି ପ୍ରଚଣ୍ଡ

ରାଗିଗଲେ । ତାଙ୍କ ଗୋରା ମୁହଁ ଲାଲ୍ ପଡ଼ିଗଲା । ଏହା ଦେଖି ସେଠାରେ ଉପସ୍ଥିତ ଥିବା ବିଡ଼ିଓ ତରୁଣକାନ୍ତିଙ୍କ ପଛପାଖରେ ରହି ତାଙ୍କଠାରୁ ଟଙ୍କା ନେଇଯିବା ପାଇଁ ସରପଂଚ ଭରତଙ୍କୁ ଇସାରା ଦେଲେ । ଏହାସତ୍ୱେ ସରପଂଚ ଭରତ ରାଉତରାୟ ତାଙ୍କଠାରୁ ଟଙ୍କା ନେଲେନାହିଁ । ଭରତ ସେତେବେଳେ କହିଲେ- ଯାହା ହେଲେ ମଧ୍ୟ ଆପଣ ହେଉଛନ୍ତି ଆମ ପଂଚାୟତର ଅତିଥି । ତେଣୁ ଆପଣଙ୍କ ଠାରୁ ସରପଂଚ ଭାବେ ମୁଁ ଖାଇବାକୁ ଦେଇ ଟଙ୍କା ନେଇପାରିବି ନାହିଁ । ଏହା ଖରାପ କଥା ହେବ । ଲୋକମାନେ ଜାଣିଲେ ମୋତେ ଖରାପ ଭାବିବେ । କିନ୍ତୁ ତରୁଣକାନ୍ତି ନଛୋଡ଼ବନ୍ଧା । ସେ କେତେ ଟଙ୍କା ହୋଇଛି କୁହ ଆଉ ଟଙ୍କା ନିଅ ବୋଲି ଜିଦ୍ ଧରିଲେ । ଏହାପରେ ସରପଂଚ ଭରତ ରାଉତରାୟ କହିଲେ- ଯଦି ଆପଣ ଟଙ୍କା ଦେବାକୁ ଚାହୁଁଛନ୍ତି ତେବେ ୱାଚ୍‌ମ୍ୟାନ୍‌କୁ ଦିଅନ୍ତୁ । ଏହାପରେ ତରୁଣକାନ୍ତି ମିଶ୍ର ତାଙ୍କ ପକେଟ୍‌ରୁ ୨୦ ଟଙ୍କା ବାହାରକରି ମିଲ୍ ବାବଦରେ ତାହାକୁ ୱାଚ୍‌ମ୍ୟାନ୍ ହାତକୁ ବଢ଼ାଇ ଦେଲେ । ତୁରନ୍ତ ସେହି ଟଙ୍କାକୁ ଗ୍ରହଣ କରିନେବା ପାଇଁ ତରୁଣକାନ୍ତିଙ୍କ ପଛରେ ଥାଇ ବିଡିଓ କିର୍ତନ ବିହାରୀ ମହାନ୍ତି ୱାଚ୍‌ମ୍ୟାନ୍‌କୁ ଇସାରା ଦେଲେ । ତରୁଣକାନ୍ତିଙ୍କ ଠାରୁ ୨୦ ଟଙ୍କା ୱାଚ୍‌ମ୍ୟାନ୍ ଗ୍ରହଣ କରିନେଲା । ଏହି ଘଟଣାଟି ୧୯୭୬ ମସିହାର । ଯେତେବେଳେ ମୁଖ୍ୟ ଶାସନ ସଚିବ ଭାବେ ତରୁଣକାନ୍ତି ନିଯୁକ୍ତି ପାଇଲେ ସେତେବେଳେ ମେଣ୍ଢାଶାଳ ଅଂଚଳରେ ମିଲ୍ ବାବଦରେ ସେ ଦେଇଥିବା ୨୦ ଟଙ୍କା ସମ୍ପର୍କରେ ଆଲୋଚନା ହେଲା । ତରୁଣକାନ୍ତିଙ୍କର ସଚ୍ଚୋଟପଣିଆ ସେତେବେଳେ କିପରି ଥିଲା ତାହା ଏଥିରୁ ବେଶ୍ ସ୍ପଷ୍ଟ ହୋଇଯାଉଛି । ■

## ନବୀନ, ପ୍ୟାରୀ ଓ ଜଗନ୍ନାଥ

ସୀମା ପୁନଃନିର୍ଦ୍ଧାରଣରେ ଭୁବନେଶ୍ୱର ନିର୍ବାଚନମଣ୍ଡଳୀ ତିନିଭାଗରେ ବିଭକ୍ତ ହୋଇଯାଇଛି । ଏହି ନିର୍ବାଚନମଣ୍ଡଳୀଗୁଡ଼ିକ ହେଲା ଏକାମ୍ର-ଭୁବନେଶ୍ୱର, ମଧ୍ୟ-ଭୁବନେଶ୍ୱର, ଉତର-ଭୁବନେଶ୍ୱର । ଏମିତି ଅଶୋକ ଚନ୍ଦ୍ର ପଣ୍ଡା ଭାରତୀୟ ସୂଚନା ସେବାର ବରିଷ୍ଠ ଅଫିସର ଥିଲେ । ସେ ଚାକିରି ଛାଡ଼ି ବିଜେଡିରୁ ଟିକେଟ ନେଇ ପ୍ରତିଦ୍ୱନ୍ଦିତା କରି ଏବେ ଏକାମ୍ର-ଭୁବନେଶ୍ୱରର ବିଧାୟକ । ମଧ୍ୟ-ଭୁବନେଶ୍ୱରରେ ପ୍ରଥମେ ବିଜେଡି ଟିକେଟ ପାଇଥିଲେ ଡାକ୍ତର ଶରତ ଚନ୍ଦ୍ର ମିଶ୍ର । କିନ୍ତୁ ଶେଷ ମୁହୂର୍ତରେ ତାଙ୍କ ଟିକେଟ କଟିଯାଇ ଟିକେଟ ପାଇଲେ ବିଜୟ ମହାନ୍ତି ଆଉ ସେ ମଧ୍ୟ ବିଜୟୀ ହୋଇ ଏବେ ବିଧାୟକ । ସେହିପରି ଉତର-ଭୁବନେଶ୍ୱରରେ ପ୍ରଥମେ ଟିକେଟ ପାଇଥିଲେ ସୁରେନ୍ଦ୍ର ନାଥ ନାୟକ । ଶେଷ ମୁହୂର୍ତରେ ମଧ୍ୟ ତାଙ୍କର ଟିକେଟ କଟିଗଲା ଆଉ ଟିକେଟ ମିଳିଲା ଭାଗିରଥୀ ବଡ଼ଜେନାଙ୍କୁ । ସେ ମଧ୍ୟ ପ୍ରତିଦ୍ୱନ୍ଦିତା କରି ବିଜୟୀ ହୋଇ ବିଧାୟକ ହୋଇଛନ୍ତି । ତେବେ ଭାଗିରଥୀଙ୍କ ଅପେକ୍ଷା ଅଶୋକ ଓ ବିଜୟଙ୍କୁ ନେଇ ରାଜନୀତି ମହଲରେ ବିଭିନ୍ନ ସମୟରେ

ଆଲୋଚନା ଅଧିକ ହୁଏ । ଅନେକ କହନ୍ତି ଅଶୋକ ହେଉଛନ୍ତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଲୋକ । ଆଉ କେତେକ କୁହନ୍ତି ବିଜୟ ହେଉଛନ୍ତି ପ୍ୟାରୀମୋହନ ମହାପାତ୍ରଙ୍କ ଖାସ୍‌ଲୋକ । ତେଣୁ ଏଠାରେ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ, ଉତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା କାହା ଲୋକ ବୋଲି । ଯେହେତୁ ବିଜେଡିର ଦୁଇ କ୍ଷମତା କେନ୍ଦ୍ର ନବୀନଙ୍କର ଅଶୋକ ଆଉ ପ୍ୟାରୀଙ୍କର ବିଜୟ ଖୋଦ୍‌ଲୋକ ହୋଇସାରିଲେଣି ତେଣୁ ବିଜେଡିରେ ଆଉ ତୃତୀୟ କ୍ଷମତାକେନ୍ଦ୍ର ନଥିବାରୁ ଭାଗିରଥୀଙ୍କ ଭାଗ କୁଆଡ଼କୁ ଯିବାର ନାହିଁ । ଅବଶ୍ୟ ଭାଗିରଥୀଙ୍କୁ ଏ ସମ୍ପର୍କରେ ପ୍ରଶ୍ନ କରାଗଲେ ସେ ତାଙ୍କ ସ୍ୱଭାବସୁଲଭ ଢଙ୍ଗରେ ହସିହସି ଉତରଟିଏ ଦେଉଛନ୍ତି । ସେ କହୁଛନ୍ତି ଅଶୋକ ଯଦି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଏବଂ ବିଜୟ ଯଦି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କର ତେବେ ମୁଁ ହେଉଛି ପ୍ରଭୁ ଜଗନ୍ନାଥଙ୍କର । ଭାଗିରଥୀଙ୍କର ଏହି ଉତରଟି ଶୁଣିବା ଲୋକଙ୍କୁ ବେଶ୍ କୁତୁକୁତୁ ଲାଗୁଛି । ଯେଉଁଥିପାଇଁ ବକ୍ତା ଭାଗିରଥୀ ନିଜେ ହସନ୍ତି ଆଉ ତାଙ୍କ ଶ୍ରୋତା ମଧ୍ୟ ସେହିଠାରେ ହସିଥା'ନ୍ତି । ରାଜନୀତିରେ ଘଡ଼ିକେ ଘୋଡ଼ା ଛୁଟେ । ତେଣୁ ଆଜି ଯେ ନିଜର ହୋଇଥିବେ କାଲି ସେ ଯେ ପର ନହେବେ ତାହା ବି କହି ହେବନାହିଁ । ପୁଣି ବିଜେଡିର ଚକ ଏମିତି ଘୂରେ ଯେ କେତେବେଳେ କେଉଁ ନେତାଙ୍କ ସ୍ଥିତି କ'ଣ ହୋଇଥିବ ତାହା ମଧ୍ୟ କେହି ଜାଣିପାରନ୍ତି ନାହିଁ । ତେଣୁ ଭୁବନେଶ୍ୱରର ତିନି ବିଧାୟକ କେତେବେଳେ କାହାର ନିକଟତର ହେବେ ତାହା ସମୟ ହିଁ କହିବ । ■

## ଯୋଗ ଓ ପ୍ରଫୁଲ



ଏମିତି ଏକ ସଭାରେ ଅତିଥି ଭାବେ ଯୋଗ ଦେବାକୁ ଯାଇଥା'ନ୍ତି ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ ଚନ୍ଦ୍ର ଘଡ଼ାଇ । ସେଠାକୁ ଅନ୍ୟତମ ଅତିଥି ଭାବେ ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ମଧ୍ୟ ଯାଇଥିଲେ । ଏମିତି ସଭା ଆରମ୍ଭ ହେଉହେଉ ବିଳମ୍ବ ହେଲା । ପ୍ରଫୁଲ ଓ ସୂର୍ଯ୍ୟ ବସିଥିଲେ ଅପେକ୍ଷା ଗୃହରେ । ସେଠାରେ ଗୁଲିଗପ ଚାଲିଥାଏ । ହଠାତ୍ କେହି ଜଣେ ପ୍ରଫୁଲଙ୍କୁ ପଚାରିଲେ- ଆଜ୍ଞା, ଆପଣ ଯୋଗ କରୁଛନ୍ତି ନା ନାହିଁ । ପ୍ରଫୁଲ ସଙ୍ଗେସଙ୍ଗେ ଉତର ଦେଲେ- ଯୋଗ ଚାଲିଛି । ତେବେ ଅନିୟମିତ ଭାବେ । ଆଜି ସକାଳ ୫ଟାରୁ ଉଠି ଯୋଗ କଲି । ଯୋଗ କଲେ ଭାରି ଫ୍ରେସ୍ ଲାଗିଥାଏ । ଏହି ସମୟରେ ସୂର୍ଯ୍ୟ ଆଉ ଦୁଇପଦ ଯୋଡ଼ି ଦେଲେ । ସେ କହିଲେ- ପ୍ରଫୁଲବାବୁ ଯୋଗ କରୁଛନ୍ତି କି ନାହିଁ ସେ କଥା ପଚାରିବାର ଆବଶ୍ୟକତା ନାହିଁ । ତାଙ୍କ ଗାଲରେ ହାତ ମାରିଦେଲେ ଜଣାପଡ଼ିଯିବ ସେ ଯୋଗ କରନ୍ତି କି ନାହିଁ । ସୂର୍ଯ୍ୟଙ୍କର ଏହି ଦୁଇପଦ କଥାରେ ସେଠାରେ ହାସ୍ୟରୋଳ ସୃଷ୍ଟି ହେଲା । ସୂର୍ଯ୍ୟ କହିଲେ-

ସେ କିଛି ଭୁଲ୍ କଥା କହିନାହାନ୍ତି । ଏହି ସମୟରେ ଜଣେ କେହି କହିଲେ- ଆପଣ କ'ଣ ମନ୍ତ୍ରୀ ପ୍ରଫୁଲ ଘଡ଼ାଇଙ୍କୁ ମହିଳା ବୋଲି ଭାବୁଛନ୍ତି କି । ଯେଉଁଥିପାଇଁ ତାଙ୍କ ଗାଲରେ ହାତ ମାରିବା କଥା କହୁଛନ୍ତି । ଗାଲରେ ହାତ ମାରିବା କଥା କୁହାଗଲେ ତାହା ସାଧାରଣତଃ ମହିଳାଙ୍କୁ ବୁଝାଇଥାଏ । ସୂର୍ଯ୍ୟ କହିଲେ- ମୁଁ ଯାହା କହୁଛି ଆପଣମାନେ ତାହା ବୋଧହୁଏ ବୁଝିପାରୁନାହାନ୍ତି । ମୋ କଥାର ଅର୍ଥକୁ କଦର୍ଥ କରନ୍ତୁ ନାହିଁ । ମୁଁ କହିଲି- ପ୍ରଫୁଲ ଘଡ଼ାଇଙ୍କ ଗାଲରେ ହାତ ମାରିଦେଲେ ଜଣାପଡ଼ିଯିବ ସେ ଯୋଗ କରୁଛନ୍ତି କି ନାହିଁ । ଏହି ସମୟରେ ସେଠାରେ ବସିଥିବା କଂଗ୍ରେସ ନେତା ଶିବାନନ୍ଦ ରାୟ କହିଲେ- ସୂର୍ଯ୍ୟବାବୁ ଯାହା କହୁଛନ୍ତି ଠିକ୍ କଥା । ପ୍ରଫୁଲବାବୁଙ୍କର ଗାଲ ଚିକ୍‌ଚିକ୍ କରୁଛି । ଟୋକାଙ୍କର ଗାଲ ମଧ୍ୟ ସେମିତି ହେବନାହିଁ । ବୟସ ତୁଳନାରେ ପ୍ରଫୁଲବାବୁଙ୍କ ଚେହେରା ବେଶ୍ ସତେଜ । ଏଥିରୁ ଜଣାପଡୁଛି ପ୍ରଫୁଲବାବୁ ଯୋଗ କରୁଛନ୍ତି । ଆଉ ସୂର୍ଯ୍ୟବାବୁ ଯେଉଁ କହିଛନ୍ତି ପ୍ରଫୁଲବାବୁଙ୍କ ଗାଲରେ ହାତ ମାରିଦେଲେ ଜଣାପଡ଼ିଯିବ ସେ ଯୋଗ କରୁଛନ୍ତି କି ନାହିଁ ବୋଲି ତାହା ସମ୍ପୂର୍ଣ୍ଣ ଭାବେ ଠିକ୍ । ଏହି ସମୟରେ ସେଠାରେ ଥିବା କେତେକ ବ୍ୟକ୍ତି ହସୁଥିବାର ଦେଖାଯାଇଥିଲା । ଗାଲରେ ହାତ ମାରିଦେଲେ ଯୋଗ କରୁଛନ୍ତି କି ନାହିଁ ଜାଣିବାରେ ଏହା ଏକ ନୂଆ ପଦ୍ଧତି ବୋଲି ସେମାନେ କହିଲେ । ତେବେ ସୂର୍ଯ୍ୟ ତାଙ୍କ କଥାକୁ ଦୋହରାଉଥା'ନ୍ତି । ପ୍ରଫୁଲ କହିଲେ- ଗାଲ ଚିପିବା ଦରକାର ନାହିଁ । ମୁଁ ତ କହିଲି ଯୋଗ କରୁଛି ବୋଲି । ତେଣୁ ତାହା ହିଁ ଯଥେଷ୍ଟ । ଏତିକିରେ ପ୍ରଫୁଲଙ୍କ ଗାଲ ଚିପିବା ଆଲୋଚନାର ସମାପ୍ତି ଘଟିଥିଲା । ■

## ପ୍ରସନ୍ନ, ପ୍ରଫୁଲ, ଦେବୀ, ସୂର୍ଯ୍ୟ

ପ୍ରସନ୍ନ ପାଢ଼ଶାଣୀ ହେଉଛନ୍ତି ଭୁବନେଶ୍ୱର ସାଂସଦ । ପ୍ରଫୁଲ ସାମଲ ହେଉଛନ୍ତି ପଂଚାୟତିରାଜ, ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ । ଦେବୀପ୍ରସାଦ ମିଶ୍ର ହେଉଛନ୍ତି ଉଚ୍ଚଶିକ୍ଷା, ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ । ସୂର୍ଯ୍ୟନାରାୟଣ ପାତ୍ର ହେଉଛନ୍ତି ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ । ଏମାନେ ସମସ୍ତେ ବରିଷ୍ଠ ନେତା । ଏମାନଙ୍କ ମଧ୍ୟରେ ଯେ ସାମଂଜସ୍ୟ ଅଧିକ ରହିଛି ତାହା ନୁହେଁ । ଏମାନଙ୍କର ରାଜନୈତିକ କାର୍ଯ୍ୟକଳାପ ମଧ୍ୟ ଭିନ୍ନଭିନ୍ନ ଅଟେ । କିନ୍ତୁ ଗୋଟିଏ ପ୍ରସଙ୍ଗରେ ଏମାନଙ୍କ ନାମ ଯୋଡ଼ି ହୋଇଯାଉଛି । ତାହା ହେଉଛି ନବୀନ ପଟ୍ଟନାୟକ ସରକାରରେ ସାରାରାଜ୍ୟରେ ବୁଲିବୁଲି ଏମାନେ ହିଁ ଭାଷଣ ଦେବାରେ ଓସ୍ତାଦ ହୋଇଯାଇଛନ୍ତି । ସଭାସମିତିରେ ଯେଉଁଠିକୁ ଡକାଗଲେ ମଧ୍ୟ ସମୟ ଥିଲେ ଏମାନେ ସେହି ସଭାରେ ଯୋଗ ଦେବା ପାଇଁ ଅନିଚ୍ଛା ପ୍ରକାଶ କରି ନଥା'ନ୍ତି । ଏମାନେ ଯେ ଥକିଯା'ନ୍ତି ତାହା ନୁହେଁ । ଏମାନଙ୍କ ପାଇଁ ସଭାସମିତିର ନିମନ୍ତ୍ରଣ ଯେତେ ଅଧିକ ଆସିବ ଏମାନେ ସେତେ ଅଧିକ ଚଳଚଂଚଳ ହୋଇଥା'ନ୍ତି । ଏମିତି ପ୍ରସନ୍ନ ପାଢ଼ଶାଣୀଙ୍କ ନିର୍ବାଚନମଣ୍ଡଳୀ ଭୁବନେଶ୍ୱର । କିନ୍ତୁ ଅନେକ ସମୟରେ ଦେଖାଯାଏ ସେ ଭୁବନେଶ୍ୱର ବାହାରର ବହୁ ସଭାସମିତିରେ ସେ

ଯୋଗ ଦେଉଥିବାର । ସେହିପରି ସୂର୍ଯ୍ୟନାରାୟଣ ପାତ୍ର ଯଦିଓ ଗଂଜାମ ଜିଲାରେ ବହୁ ସଭାସମିତିରେ ଯୋଗ ଦେଉଛନ୍ତି କିନ୍ତୁ ସାରାରାଜ୍ୟରେ ବିଭିନ୍ନ ସ୍ଥାନରେ ହେଉଥିବା ସଭାସମିତିରେ ଯୋଗ ଦେବା ପାଇଁ ସେ କୁଣ୍ଠିତ ବି ହୁଅନ୍ତି ନାହିଁ । ଦେବୀ ମିଶ୍ରଙ୍କୁ ଅସୁସ୍ଥ ମନ୍ତ୍ରୀ ବୋଲି କୁହାଯାଉଥିଲା । କୁଆଡ଼େ ଦୁର୍ଘଟଣାରେ ସେ ଆହତ ହେବାପରେ ଅଧିକ ଚଲାବୁଲା କଲେ ଯନ୍ତ୍ରଣା ଅନୁଭବ କରୁଥିଲେ । କିନ୍ତୁ ସଭାସମିତିରେ ଯୋଗ ଦେବା ସହିତ ବିଦେଶକୁ ମଧ୍ୟ ସେ ସରକାରୀ କାର୍ଯ୍ୟକ୍ରମରେ ଯିବାକୁ ପଛାଉନାହାନ୍ତି । ସାରାରାଜ୍ୟ ସେ ବୁଲିବାରେ ଲାଗିଛନ୍ତି । ସେପଟେ ପ୍ରଫୁଲ ସାମଲ ମଧ୍ୟ କିଛି କମ୍ ନୁହନ୍ତି । ସକାଳେ ଭୁବନେଶ୍ୱରରେ ଥିଲେ ସଂଧ୍ୟାରେ ସେ ମୟୂରଭଂଜରେ ତ କେତେବେଳେ କୋରାପୁଟରେ ଆଉ କେତେବେଳେ ମଧ୍ୟ ସମ୍ବଲପୁରରେ । ସତେ ଯେମିତି ନବୀନ ପଟ୍ଟନାୟକଙ୍କ ସରକାରର ଏହି ଚାରିଜଣ ହେଉଛନ୍ତି ବ୍ରାଣ୍ଡ ଆମ୍ବାସଡ଼ର । ଏମିତି ଯେ ସରକାରରେ କଥାକୁହା ମନ୍ତ୍ରୀ ନାହାନ୍ତି ତାହା ନୁହେଁ । ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ ଚନ୍ଦ୍ର ଘଡ଼ାଇ, କୃଷି ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତଙ୍କୁ ମଧ୍ୟ କଥାକୁହା ମନ୍ତ୍ରୀ ଭାବେ ଧରାଯାଏ । ଏମାନେ ଭାଷଣ ଦେଲେ ଶ୍ରୋତାମାନେ ବେଶ୍ ଆଗ୍ରହର ସହିତ ଶୁଣିଥା'ନ୍ତି । ତେବେ ଏହି ଦୁଇଜଣ ମନ୍ତ୍ରୀ ରାଜ୍ୟସାରା ବୁଲି ଆଉ ଭାଷଣ ଦେବା ସପକ୍ଷରେ ନାହାନ୍ତି । ସେହିପରି ଯୁବମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କର ମଧ୍ୟ ବେଶ୍ ଡିମାଣ୍ଡ ରହିଛି । ତେବେ ନବୀନ ପଟ୍ଟନାୟକ ସରକାରରେ ପୁରୁଣା ତଥା ଅଭିଜ୍ଞ ମନ୍ତ୍ରୀଙ୍କ ଅପେକ୍ଷା ନୂଆ ମନ୍ତ୍ରୀଙ୍କ ସଂଖ୍ୟା ଅଧିକ । ତେଣୁ ନୂଆ ମନ୍ତ୍ରୀଙ୍କୁ ଏବେଠାରୁ ନବୀନ ସରକାରର ବ୍ରାଣ୍ଡ ଆମ୍ବାସଡ଼ର ତାଲିମ ଦେବାର ଆବଶ୍ୟକତା ରହିଛି । ■



## ଚାରୋଟି ପ୍ରେମ

ସୂର୍ଯ୍ୟନାରାୟଣ ପାତ୍ର ଏବେ ରାଜସ୍ୱ ଓ ପ୍ରଶମନ ବିଭାଗର ମନ୍ତ୍ରୀ । ବିଜୁ ପଟ୍ଟନାୟକଙ୍କ ୧୯୯୦ ମନ୍ତ୍ରିମଣ୍ଡଳରେ ସେ ପ୍ରଥମେ ମନ୍ତ୍ରୀ ହୋଇଥିଲେ । ସେତେବେଳେ ତାଙ୍କୁ ମିଳିଥିଲା ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ବିଭାଗ । ୨୦୦୨ରେ ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଯେତେବେଳେ ସେ ସାମିଲ ହେଲେ ସେତେବେଳେ ତାଙ୍କୁ ମିଳିଲା ଶକ୍ତି, ବିଜ୍ଞାନ, ବୈଷୟିକ କୌଶଳ, ପରିବେଶ ବିଭାଗ । ୨୦୦୪ ମନ୍ତ୍ରିମଣ୍ଡଳରେ ତାଙ୍କୁ ମିଳିଲା ଶକ୍ତି, ପର୍ଯ୍ୟଟନ, ସୂଚନା ଓ ପ୍ରଯୁକ୍ତି ବିଭାଗ । ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ସୂର୍ଯ୍ୟ ଥିଲେ ସାଧୀନ ରାଷ୍ଟ୍ରମନ୍ତ୍ରୀ । ଏବେ ସେ କ୍ୟାବିନେଟ ମନ୍ତ୍ରୀ । ମନ୍ତ୍ରୀ ହିସାବରେ ସୂର୍ଯ୍ୟଙ୍କର ପ୍ରାୟ ୧୩ ବର୍ଷ ପାଖାପାଖି ଅଭିଜ୍ଞତା ରହିଲାଣି । ତେବେ ସୂର୍ଯ୍ୟଙ୍କର କେଉଁଥି ପ୍ରତି ଦୁର୍ବଳତା ଅଛି ତାହା ବୋଧହୁଏ ଖୁବ୍ କମ୍ ଜାଣିଥିବେ । ଏମିତି ସୂର୍ଯ୍ୟଙ୍କୁ ପାଖରୁ ଦେଖିଲେ ମଧ୍ୟ ତାଙ୍କର ଦୁର୍ବଳତା ସମ୍ପର୍କରେ ଜାଣି ହୁଏନାହିଁ । ବେଳେବେଳେ ସୂର୍ଯ୍ୟ ତାଙ୍କ ଦୁର୍ବଳତାକୁ

ପ୍ରକାଶ କରିଦିଅନ୍ତି । ଏବେ ଯିବା ସୂର୍ଯ୍ୟଙ୍କ ଦୁର୍ବଳତା ଆଡ଼କୁ । ଏମିତି ସମସ୍ତେ ଜାଣିଛନ୍ତି ସୂର୍ଯ୍ୟଙ୍କର ସିନେମା ଦେଖିବା ଦୁର୍ବଳତା ଅଛି ବୋଲି । ତେଲୁଗୁ ହେଉ, ଇଂରାଜୀ ହେଉ, ହିନ୍ଦୀ ହେଉ କି ଓଡ଼ିଆ ହେଉ ଯେକୌଣସି ସିନେମା ଦେଖିବାକୁ ସୂର୍ଯ୍ୟ ସିନେମା ହଲ୍‌ରେ ପହଂଚି ଯାଆନ୍ତି । ସତେ ଯେମିତି ସିନେମା ନଦେଖିଲେ ତାଙ୍କୁ ନିଦ ଆସେନାହିଁ । ପୁଣି ସେହି ସିନେମାକୁ ସେ ଦେଖିବେ ସିନେମା ହଲ୍‌ରେ । ଆଉ ଏକ ଦୁର୍ବଳତା ସୂର୍ଯ୍ୟଙ୍କର ହେଉଛି ଖାଇବା । ୩୦ ବର୍ଷ ହେଲାଣି ସେ ହୋଟେଲକୁ ଗଲେ ଖାଇବାରେ କମ୍ପ୍ରୋମାଇଜ କରନ୍ତି ନାହିଁ । ହୋଟେଲରେ ଭଲ ଖାଇବା ହେଉଛି ତାଙ୍କର ସଉକ । ପୁଣି ଏକ ଦୁର୍ବଳତା ହେଉଛି ବୁଲିବା । ସେ ମନ୍ତ୍ରୀ ହୁଅନ୍ତୁ ପଛେ ବିଭିନ୍ନ ସମୟରେ ବୁଲିବାକୁ ଯିବେ ହିଁ ଯିବେ । ଆଉ ଭଲ ପିନ୍ଧିବାରେ ମଧ୍ୟ ସେ କମ୍ପ୍ରୋମାଇଜ କରନ୍ତି ନାହିଁ । ଏହି ଚାରୋଟି ଦୁର୍ବଳତା ଏବେବି ସୂର୍ଯ୍ୟଙ୍କର ରହିଛି । ଯଦିଓ ବୟସ ଅଧିକ ହୋଇଗଲେ ଭଲ ହୋଟେଲରେ ଖାଇବା ସଉକ କମି ଆସିଥାଏ କିନ୍ତୁ ସୂର୍ଯ୍ୟ ଏଥିରୁ ବ୍ୟତିକ୍ରମ ଅଟନ୍ତି । ଭଲ ହୋଟେଲକୁ ଗଲେ ସେ ଆଉ ଥୟ ଧରି ରହିପାରନ୍ତି ନାହିଁ । ବହୁ ବର୍ଷ ଧରି ଭଲ ହୋଟେଲରେ ଭଲ ଖାଇ ଆସୁଥିବାରୁ ଏବେବି ସେ ଭଲ ହୋଟେଲକୁ ଗଲେ ଭଲ ଖାଆ'ନ୍ତି । ଏହି ଚାରୋଟି ଦୁର୍ବଳତାକୁ ସାଥିରେ ଧରି ଚାଲିଛନ୍ତି ସୂର୍ଯ୍ୟ ୩୦ ବର୍ଷରୁ ଅଧିକ ସମୟ ଧରି । ଦେଖାଯାଉ ସୂର୍ଯ୍ୟ ତାଙ୍କର ଏହି ଦୁର୍ବଳତାକୁ କେତେଦିନ ବଜାୟ ରଖିପାରୁଛନ୍ତି । ■

## ପୁଷ୍ପେନ୍ଦ୍ରଙ୍କ ଭିତରକନିକା ପ୍ରୀତି



ପୁଷ୍ପେନ୍ଦ୍ର ସିଂହଦେଓ ହେଉଛନ୍ତି କଳାହାଣ୍ଡି ଜିଲାରେ ବିଜେଡି ପାଇଁ ଏକମାତ୍ର ଚାଲା ଦିଶିକେସନ । ମାନେ କଳାହାଣ୍ଡି ଜିଲାରେ ଥିବା ୫ଟି ବିଧାନସଭା ନିର୍ବାଚନମଣ୍ଡଳୀରେ କେବଳ ପୁଷ୍ପେନ୍ଦ୍ର ବିଜେଡିର ବାନା ଧରିଛନ୍ତି ଆଉ ୪ଟି ନିର୍ବାଚନମଣ୍ଡଳୀରେ କଂଗ୍ରେସ ବାନା ଉଡୁଛି । ପୁଷ୍ପେନ୍ଦ୍ରଙ୍କର ଏହି ଯୋଗ୍ୟତା ପାଇଁ ତାଙ୍କୁ ଅବଶ୍ୟ ବିଜେଡି ପୁରସ୍କୃତ କରିଛି । ଅର୍ଥାତ ନବୀନ ପଟ୍ଟନାୟକଙ୍କ ହ୍ୟାଟ୍ରିକ ମୁଖ୍ୟମନ୍ତ୍ରୀ ମନ୍ତ୍ରିମଣ୍ଡଳରେ ପୁଷ୍ପେନ୍ଦ୍ରଙ୍କୁ ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀ ପଦ ଦିଆଯାଇଛି । ଏମିତି ପୁଷ୍ପେନ୍ଦ୍ରଙ୍କୁ ବିଭାଗ ମିଳିଛି ଶ୍ରମ ଓ ନିଯୁକ୍ତି । ନିକଟରେ ପୁଷ୍ପେନ୍ଦ୍ର ଯାଇଥିଲେ ଭିତରକନିକା । ଏମିତି ପାଠ ପଢ଼ିବା ସମୟରେ ଭିତରକନିକାର ନାମ ଶୁଣିଥିଲେ ପୁଷ୍ପେନ୍ଦ୍ର । କିନ୍ତୁ ସୁଯୋଗ ମିଳି ନଥିଲା ଭିତରକନିକାକୁ ଯିବା ପାଇଁ । ଆଳି ବିଧାୟକ ପ୍ରତାପ ଦେବ ଉପାୟ ପାଂଚିଲେ କେମିତି ତାଙ୍କ ନିର୍ବାଚନମଣ୍ଡଳୀକୁ ପୁଷ୍ପେନ୍ଦ୍ରଙ୍କୁ ନେବା ପାଇଁ । ଏମିତି ଉଭୟଙ୍କର ରଜାରାଜୁଡ଼ା ସମ୍ପର୍କ ରହିଛି । କିନ୍ତୁ ରାଜନୀତି ଯେ ସମ୍ପର୍କ ମାନେନାହିଁ ଏହା ଭଲ ଭାବେ ଜାଣିନେଇଛନ୍ତି ଆଳିର ତତ୍କାଳୀନ ରଜା ତଥା ବିଜୁ ପଟ୍ଟନାୟକଙ୍କ ଏକାନ୍ତ ଅନୁଗତ ଶରତ ଦେବଙ୍କ ସାନପୁଅ ତଥା ଆଳିର ତିନିଥର ବିଧାୟକ ପ୍ରତାପ ଦେବ । ଏମିତି ପ୍ରତାପ ରାଜନୀତିକୁ

ନଆସିଥିଲେ ଉଚ୍ଚ ଚାକିରିରେ ଥା'ନ୍ତେ । ବାପାଙ୍କ ଅବର୍ତ୍ତମାନରେ ମା' ସୁଶ୍ରୀ ଦେବୀଙ୍କ ରାଜନୀତି ବୁଝିବା ପାଇଁ କିଛିଦିନ ନିମନ୍ତେ ଆଳି ଆସିଥିବା ପ୍ରତାପ ରାଜନୀତି ପ୍ରେମରେ ପଡ଼ିଗଲେ । ଆଉ ସେ ଦିଲ୍ଲୀ ଯାଇପାରିଲେ ନାହିଁ କି ଚାକିରି କଲେନାହିଁ । ୨୦୦୦ ମସିହାରୁ ସେ କ୍ରମାଗତ ଭାବେ ଆଳିରୁ ବିଜେଡିର ବିଧାୟକ ହୋଇଆସୁଛନ୍ତି । ପ୍ରତାପଙ୍କର କେଜାଣି କାହିଁକି ଇଚ୍ଛା ହେଲା ମନ୍ତ୍ରୀ ପୁଷ୍ପେନ୍ଦ୍ରଙ୍କୁ ତାଙ୍କ ନିର୍ବାଚନମଣ୍ଡଳୀକୁ ନେବା ନିମନ୍ତେ । ଏମିତି ଯେ ଆଳିରେ ବଡ଼ବଡ଼ ଶିଳ୍ପ ଅଛି ଆଉ ସେଠାରେ ଶ୍ରମିକ ସମସ୍ୟା ରହିଛି ଏବଂ ସେଥିପାଇଁ ପୁଷ୍ପେନ୍ଦ୍ରଙ୍କୁ ନେଲେ ଶ୍ରମିକ ସମସ୍ୟାର ସମାଧାନ ହୋଇଯିବ ତାହା ନୁହେଁ । ଜନସାଧାରଣ ଜାଣିବେ ଯେ, ଜଣେ ମନ୍ତ୍ରୀ ତାଙ୍କ ଅଂଚଳକୁ ଆସିଛନ୍ତି ବୋଲି । ଆଳିରେ ଏବେବି ରାଜପରିବାର ପ୍ରତି ଜନସାଧାରଣଙ୍କର ଶ୍ରଦ୍ଧା ଓ ସମ୍ମାନ ରହିଛି । ତେଣୁ ଗୋଟିଏ ମଂଚରେ ରାଜପରିବାରର ପ୍ରତାପ ଓ ପୁଷ୍ପେନ୍ଦ୍ରଙ୍କୁ ଦେଖିଦେଲେ ଆଳିବାସୀଙ୍କର ମନ ଖୁସ୍ ହୋଇଯିବ ବୋଲି ପ୍ରତାପ ଠଉରେଇ ନେଲେ । ଏପଟେ ମଧ ପ୍ରତାପ ବେଶ୍ ଭଲ ଭାବେ ପୁଷ୍ପେନ୍ଦ୍ରଙ୍କର ଦୁର୍ବଳତାକୁ ବି ଜାଣି ନେଇଥିଲେ । ଏମିତି ପୁଷ୍ପେନ୍ଦ୍ରଙ୍କର ଭିତରକନିକା ଦେଖିବା ପାଇଁ ଦୁର୍ବଳତା ଥିଲା । ପ୍ରତାପ ଦୁଇଦିନିଆ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ପ୍ରଥମ ଦିନ ଆଳି ଆଉ ସେହିଦିନ ରାତିରେ ଭିତରକନିକାରେ ରହଣି ଏବଂ ଦ୍ୱିତୀୟ ଦିନ ଭିତରକନିକା ବୁଲି ଦେଖିବା । ବେଶ୍ ଖୁସି ହୋଇଗଲେ ପୁଷ୍ପେନ୍ଦ୍ର । ଭିତରକନିକା ବୁଲି ଆସିବା ପରେ ପୁଷ୍ପେନ୍ଦ୍ରଙ୍କର ମିଜାଜ ବେଶ୍ ଖୁସ୍ ହୋଇଯାଇଥିଲା । ଯାହା ହେଲେ ମାନିବାକୁ ପଡ଼ିବ ପ୍ରତାପଙ୍କୁ । ■

## ପ୍ରଫୁଲ୍ଲଙ୍କ ଜଉମୁଦା ଫାଇଲ



ଫାଇଲ ତ ଫାଇଲ ପୁଣି ଜଉମୁଦା ଫାଇଲ କ'ଣ । ଏହା ଦେଖିବାକୁ ଆମକୁ ଯିବାକୁ ପଡ଼ିବ ରାଜ୍ୟ ସଚିବାଳୟର ଦ୍ୱିତୀୟ ମହଲାରେ ଥିବା ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼ାଇଙ୍କ ପ୍ରକୋଷ୍ଠକୁ । ପୁଣି ଯେତେବେଳେ ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼ାଇ ପ୍ରକୋଷ୍ଠରେ ଉପସ୍ଥିତ ଥାଇ ଫାଇଲ କାମ କରୁଥିବେ ସେତେବେଳେ ଏହି ଦୃଶ୍ୟ ଦେଖିବାକୁ ମିଳିବ । ଏମିତି ତାଙ୍କୁ ମିଳିଥିବା ଅର୍ଥ ଓ ଅବକାରୀ ବିଭାଗ ମଧ୍ୟରୁ ଅର୍ଥ ବିଭାଗର ଫାଇଲ ପ୍ରାୟ ସବୁଦିନ ତାଙ୍କ ପାଖକୁ ଆସେ । କିନ୍ତୁ ଅବକାରୀ ବିଭାଗର ଫାଇଲର ସେତେ ଚଳପ୍ରଚଳ ନଥାଏ । ଆଉ ଯେତେବେଳେ ଫାଇଲ ଆସେ ସେତେବେଳେ ସେହି ଫାଇଲ ପଛରେ କିଛି ବ୍ୟବସାୟୀ କିମ୍ବା ଅଫିସର ଗୋଡ଼ାଇଥା'ନ୍ତି । ଏହା ପ୍ରଫୁଲ୍ଲଙ୍କ ନଜରକୁ ଆସିଲା । ପ୍ରଫୁଲ୍ଲ ଏହି ସମସ୍ୟାର ସମାଧାନ କରିବା ପାଇଁ ଏକ ଉପାୟ ବାହାର କଲେ । ସେ ଉପାୟଟି ହେଲା ଅବକାରୀ ବିଭାଗରୁ ଯେତେବେଳେ ତାଙ୍କ ପାଖକୁ ଫାଇଲ ଆସିବ ତାହା ଖୋଲାଖୋଲି ହୋଇ ନୁହେଁ । ମାନେ ଫାଇଲଟି ଖାମ୍ ଭିତରେ ରହିବ

ଆଉ ଜଉମୁଦା ସିଲ୍ ଲାଗିଥିବ । ଫାଇଲଟି ପୁରାପୁରି ସୁରକ୍ଷିତ ହୋଇ ପ୍ରଫୁଲଙ୍କ ପାଖକୁ ଆସିବ ଆଉ ପ୍ରଫୁଲ ସେହି ଜଉମୁଦା ଖାମ୍‌କୁ ଚିରି ଫାଇଲ ବାହାର କରିବେ । ପୁଣି ତୁରନ୍ତ ସେହି ଫାଇଲ କାମ ସାରିଦେବେ । ସେଦିନ ଏମିତି ଜଣେ ବ୍ୟକ୍ତି ପ୍ରଫୁଲଙ୍କ ଠାରୁ ଜଉମୁଦା ଫାଇଲ ସମ୍ପର୍କରେ ଜାଣିବାକୁ ଚାହିଁଲେ । ପ୍ରଫୁଲ କହିଲେ- ଛୋଟ ସାପର ବିଷ ଅଧିକ । ଅବକାରୀ ବିଭାଗ ଅନ୍ୟ ବିଭାଗ ତୁଳନାରେ ଛୋଟ ଅଟେ । କିନ୍ତୁ ଅନେକ ସମୟରେ ଏହି ବିଭାଗରୁ ବହୁ ମାରାତ୍ମକ ଫାଇଲ ଆସେ । ଆଉ ଅଫିସରଙ୍କ ଠାରୁ ଫାଇଲ ଉପରକୁ ଆସିଲେ ମନ୍ତ୍ରୀ ଜାଣିବା ଆଗରୁ ତାହା ସତେ ଯେମିତି ଖୋଲା ମାର୍କେଟକୁ ଚାଲିଯାଏ । ମାନେ ଫାଇଲ ପଛରେ ବ୍ୟବସାୟୀ ଠାରୁ ଆରମ୍ଭ କରି ଅଫିସର ଗୋଡ଼ାଇଥା'ନ୍ତି । ଆଉ ଫାଇଲରେ କ'ଣ ବିବରଣୀ ଦିଆଗଲା ତାହା ମଧ୍ୟ ସେମାନେ ଟିକିନିଖି ବୁଝିଦିଅନ୍ତି । ଏହି ଦୃଷ୍ଟିରୁ ଫାଇଲର ଗୋପନୀୟତା ପାଇଁ ସେ ଏହି ଜଉମୁଦା ପ୍ୟାକେଟ୍ ବ୍ୟବସ୍ଥା କରିଛନ୍ତି । କିଛି ନହେଲେ ମଧ୍ୟ ସଚିବଙ୍କ ଠାରୁ ଫାଇଲ ତାଙ୍କ ପାଖକୁ ଆସିବା ବେଳକୁ ତାହା ଗୋପନୀୟ ହୋଇରହିବ । ଅବଶ୍ୟ ଫାଇଲକୁ ଖାମ୍ ଭିତରେ ଭର୍ତି କରି ତା' ଉପରେ ଜଉସିଲ୍ ଦେବାକୁ କର୍ମଚାରୀଙ୍କୁ ପସନ୍ଦ ଆସି ନପାରେ । କିନ୍ତୁ ଯାହା ହେଲେ ମଧ୍ୟ ଫାଇଲରେ ଯେଉଁ ବିବରଣୀ ଦିଆଯାଉଚି ତାହାର ଗୋପନୀୟତା ରହିପାରୁଛି । ମାନିବାକୁ ପଡ଼ିବ ପ୍ରଫୁଲ ଘଡ଼ାଇଙ୍କୁ । ନଚେତ୍ ଅର୍ଥ ବିଭାଗ ପରି ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗକୁ ସେ ବର୍ଷବର୍ଷ ଧରି ସଫଳତାର ସହ ଚଳାଇ ନଥା'ନ୍ତେ । ପ୍ରଫୁଲ୍ଲ ବରଂ ସଚିବାଳୟର ସବୁ ଫାଇଲ ଏମିତି ଖାମ୍ ଭିତରେ ସବୁ ମନ୍ତ୍ରୀଙ୍କ ପାଖକୁ ଜଉମୁଦା ହୋଇ ଆସିବା ନିମନ୍ତେ କ୍ୟାବିନେଟ ବୈଠକରେ ପ୍ରସ୍ତାବ ଦେଇ ତାହାକୁ ଗୃହୀତ କରାନ୍ତୁ । ଏହା ହେଲେ ସଚିବାଳୟ ଫାଇଲର ଗୋପନୀୟତା ରହିପାରନ୍ତା । ■

## ସେଂଟ୍ରାଲ ହଲ୍



ଗାଁ ଜସ ଓ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଦିଲ୍ଲୀ ଯାଇଥିଲେ । ଦିଲ୍ଲୀରୁ ଫେରିବା ପରେ ସୂର୍ଯ୍ୟଙ୍କ ମୁହଁରେ ସେଂଟ୍ରାଲ ହଲ୍‌ର ପ୍ରଶଂସା ଜୋର୍‌ଦାର୍ ଚାଲିଲା । ଏହି ପ୍ରଶଂସା ଯେ ଅନ୍ୟକିଛି ପାଇଁ ତାହା ନୁହେଁ । ସେଂଟ୍ରାଲ ହଲ୍ କ୍ୟାଂଟିନ୍‌ରେ ଶସ୍ତାରେ ଖାଇବା ମିଳୁଥିବାରୁ ସେ ଏହାର ପ୍ରଶଂସା କରୁଥିଲେ । ଆମିଷ ଭୋଜନ ପାଂଚଜଣ କଲେ ମଧ୍ୟ ତାହାର ବିଲ୍ ୧୮୦ ଟଙ୍କାରୁ ଟପୁନାହିଁ । ଏହା କହି ସେଂଟ୍ରାଲ ହଲ୍‌ର ଭୂରିଭୂରି ପ୍ରଶଂସା ସୂର୍ଯ୍ୟ କରୁଥିବାର ଦେଖାଯାଇଥିଲା । ତେବେ ଦିଲ୍ଲୀରେ ରହିବା ସମୟରେ ତାଙ୍କର ସମୟ କିପରି କଟୁଥିଲା ବୋଲି ପ୍ରଶ୍ନ ହେବାରୁ ସୂର୍ଯ୍ୟ ତାଙ୍କର ସଭାବ ସୁଲଭ ଢଙ୍ଗରେ କହିଲେ- ସେଂଟ୍ରାଲ ହଲ୍‌ରେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କୁ ସାକ୍ଷାତ

କରିବା, ଓଡ଼ିଶାର ସାଂସଦମାନଙ୍କ ସହିତ ଆଲୋଚନା କରିବା ସହିତ ସରକାରୀ କାର୍ଯ୍ୟରେ କିଛି ସମୟ ସେ ବିତାଇଥା'ନ୍ତି । ଆଉ ଏହାପରେ ତାଙ୍କର ସିନେମା ନିଶା ଘାରିଥାଏ । ଗୋଟିଏ ଗୋଟିଏ ଦିନ ସେ ଏକାଧିକ ସିନେମା ମଧ୍ୟ ଦେଖିଥା'ନ୍ତି । ନୂଆ ହିନ୍ଦୀ ଚଳଚ୍ଚିତ୍ର ମୁକ୍ତିଲାଭ କରିଥିବା ବେଳେ ତାହାକୁ ସେ ଦେଖି ଆତ୍ମସନ୍ତୋଷ ଲାଭ କରନ୍ତି । ସୂର୍ଯ୍ୟ ଯେ କେବଳ ରାଜଧାନୀ ଭୁବନେଶ୍ୱରରେ ରହିଲେ ସିନେମା ପ୍ରିୟ ହୋଇଥା'ନ୍ତି ତାହା ନୁହେଁ । ସେ ପୃଥିବୀର ଯେକୌଣସି ସ୍ଥାନକୁ ଗଲେ ମଧ୍ୟ ସେଠାରେ ସିନେମା ଦେଖିବାକୁ ଆଗ ପସନ୍ଦ କରିଥା'ନ୍ତି । ସୂର୍ଯ୍ୟଙ୍କ ପାଇଁ ଭୁବନେଶ୍ୱର ହେଉ କି ଦିଲ୍ଲୀ ହେଉ ସେଥିରେ କିଛି ତଫାତ୍ ନାହିଁ । ସବୁଠି ସେ ସିନେମା ଦେଖାକୁ ସବୁବେଳେ ଗୁରୁତ୍ୱ ଦେଇଥା'ନ୍ତି । ମାନିବାକୁ ପଡ଼ିବ ସୂର୍ଯ୍ୟଙ୍କ ସିନେମା ଦେଖା ନିଶାକୁ। ■

## ବ୍ଲକ ବନାମ ମ୍ୟୁନିସିପାଲିଟି

ନଗର ଉନ୍ନୟନ ମନ୍ତ୍ରୀ ବଦ୍ରି ପାତ୍ରଙ୍କୁ ବିଭାଗର ଦୁର୍ନୀତି ବେଶ୍ ଚିନ୍ତାରେ ପକାଉଛି । ବିଭିନ୍ନ ପୌରସଂସ୍ଥାରେ ଯେଉଁ ନିୟମ ରହିଛି ସେଥିରେ ଦୁର୍ନୀତିକୁ ରୋକାଯିବା ସହଜ ନୁହେଁ ବୋଲି ବଦ୍ରି ପାତ୍ର ଏବେ ବେଶ୍ ଭଲ ଭାବେ ବୁଝିଗଲେଣି । ଏମିତି ସେ ଅନେକ ସମୟରେ କହୁକହୁ କହିଦେଉଛନ୍ତି ଯେ, ବ୍ଲକରେ ଦୁର୍ନୀତି ରୋକିବାଟା ସହଜ ଅଟେ । କିନ୍ତୁ ପୌରସଂସ୍ଥାରେ ଦୁର୍ନୀତି ରୋକିବା ସେତେ ସହଜ ନୁହେଁ । ପୌରସଂସ୍ଥାରେ ଦୁର୍ନୀତି କରିବା ପାଇଁ ବହୁ ବାଟ ରହିଛି । ଗୋଟିଏ ବାଟକୁ ବନ୍ଦ କରିଦେଲେ ଆଉ ଗୋଟିଏ ବାଟ ଦେଇ ଦୁର୍ନୀତି ହେଉଛି । ଏମିତି ସେ ଅନେକ ପଦକ୍ଷେପ ନେଲେଣି ଦୁର୍ନୀତିକୁ ରୋକିବା ପାଇଁ । ଦୁର୍ନୀତି କରିବା ପାଇଁ ପୌରସଂସ୍ଥାରେ ବାଟ ଏତେ ଅଧିକ ଥିବାର ସେ ମଧ୍ୟ ଜାଣି ନଥିଲେ । ଏବେ ମନ୍ତ୍ରୀ ହେବାପରେ ଏହାକୁ ସେ ଜାଣୁଛନ୍ତି । ଏବେ ଦୁର୍ନୀତିର ସବୁ ବାଟକୁ ସେ ବନ୍ଦ କରିବା ପାଇଁ ଚାହୁଁଛନ୍ତି । କିନ୍ତୁ ପ୍ରତିଦିନ ଦୁର୍ନୀତି ପାଇଁ ଆଉ ଗୋଟିଏ ବାଟ ଖୋଲିଯାଉଛି । ଏବେ ବଦ୍ରି ପୌରସଂସ୍ଥାରେ ଦୁର୍ନୀତିର ବାଟ କେଉଁଠି ଅଛି ତାହାକୁ ଲେନ୍ସ ପକାଇ ଖୋଜୁଛନ୍ତି । ଦେଖାଯାଉ ଦୁର୍ନୀତି ବିରୋଧୀ ଲେନ୍ସ ବଦ୍ରିଙ୍କ ପାଇଁ କେତେଦୂର କାମ ଦେଉଛି । ■

## ମଶା ଓ ପୁଷ୍ପେନ୍ଦ୍ର

ସୁଦୂର ୬୦୦ କିଲୋମିଟର ଦୂରର କଳାହାଣ୍ଡି ଜିଲାର ଧର୍ମଗଡ଼ ନିର୍ବାଚନମଣ୍ଡଳୀରୁ ବିଧାୟକ ହୋଇ ରାଜଧାନୀ ଭୁବନେଶ୍ୱରକୁ ଆସିଥିବା ପୁଷ୍ପେନ୍ଦ୍ର ସିଂହଦେଓ ଏବେ ଜାଣିଗଲେଣି ଯେ, ରାଜଧାନୀ ମଶା ନକ୍ସଲ କିମ୍ବା ମାଓବାଦୀଙ୍କ ଠାରୁ ଆହୁରି ଅଧିକ ଉତ୍ପାତ କରନ୍ତି ବୋଲି । ଏମାନେ ଖାଉଣୁ, ବସୁଣୁ ଏପରିକି ଝାଡ଼ା, ପରିସ୍ରା କରିବା ସମୟରେ ମଧ୍ୟ ପିଛା ଛାଡ଼ି ନଥା'ନ୍ତି । ସବୁବେଳେ ପାଖାପାଖି ରହିଥା'ନ୍ତି । ଏମିତି ଯେ

ପୁଷ୍ପେନ୍ଦ୍ରଙ୍କର ମଶାଙ୍କ ଉପରେ ଧାରଣା ନାହିଁ ତାହା ନୁହେଁ । ରାଜଧାନୀରୁ ତାଙ୍କ ନିର୍ବାଚନମଣ୍ଡଳୀକୁ ଯିବା ବେଳକୁ ବହୁ ଦୁର୍ଗମ ଓ ଜଙ୍ଗଲ ଅଂଚଳ ଦେଇ ଯିବାକୁ ହୁଏ । ଅନେକ ସମୟରେ ମଧ୍ୟ ରାସ୍ତାରେ ଆସୁଥିବା ବେଳେ ପୁଷ୍ପେନ୍ଦ୍ରଙ୍କର ଗାଡ଼ି ଖରାପ ହୋଇଯିବା ବେଳେ ଜଙ୍ଗଲ ମଶାମାନେ ତାଙ୍କ ଉପରେ ଦାଉ ସାଧିଥା'ନ୍ତି । କିନ୍ତୁ ସବୁ ମଶାଙ୍କ ଠାରୁ ରାଜଧାନୀ ମଶା ଯେ ଅତି ପରାକ୍ରମୀ ଓ ଅତି ବୁଦ୍ଧିଆ ତାହା ଏବେ ଜାଣିସାରିଲେଣି ପୁଷ୍ପେନ୍ଦ୍ର । ବିଧାୟକ ହେବାବେଳେ ଯେଉଁ କ୍ୱାର୍ଟରରେ ସେ ରହୁଥିଲେ ମନ୍ତ୍ରୀ ହେବାପରେ ମଧ୍ୟ ସେହି କ୍ୱାର୍ଟରରେ ପୁଷ୍ପେନ୍ଦ୍ର ରହୁଛନ୍ତି । କିନ୍ତୁ ବିଧାୟକ ସମୟରେ ମଶାଙ୍କର ଉତ୍ପାତ ଯେତେ ନଥିଲା ମନ୍ତ୍ରୀ ହେବାପରେ ତାଙ୍କ ପ୍ରତି ମଶାଙ୍କ ଉତ୍ପାତ ଅଧିକ ବଢ଼ିଯାଇଛି । ଏବେ ପୁଷ୍ପେନ୍ଦ୍ର ଅନେକ ସମୟରେ ହାତରେ ବ୍ୟାଡ଼ମିଂଟନ ରାକେଟ ଧରି ଘରେ ବୁଲୁଥିବାର ଦେଖାଯାଉଛି । ତାଙ୍କୁ ଦେଖିଦେଲେ କେହି ବୋଧହୁଏ ଭାବିବେ ଯେ, ସେ ବ୍ୟାଡ଼ମିଂଟନ ଖେଳିବା ପାଇଁ ବାହାରିଛନ୍ତି ବୋଲି । କିନ୍ତୁ କିଛି ସମୟ ପୁଷ୍ପେନ୍ଦ୍ରଙ୍କ ପାଖରେ ବସିପଡ଼ିଲେ ଦେଖାଯିବ ଯେ, ସେ ଘର ଭିତରେ ପବନକୁ ର୍ୟାକେଟରେ ପିଟି ଚାଲିଛନ୍ତି । ବୁଝୁବୁଝୁ ଜଣାପଡୁଛି ଯେ, ଘର ଭିତରେ ଥିବା ମଶାଙ୍କୁ ସେ ଏହି ବ୍ୟାଡ଼ମିଂଟନ ର୍ୟାକେଟ ପରି ଥିବା ମଶାମରା ଯନ୍ତ୍ରରେ ମାରୁଛନ୍ତି । ମାନେ ଏହା ଏକ ବିଦ୍ୟୁତ୍‌ଚାଳିତ ଯନ୍ତ୍ର । ଏଥିରେ ସାମାନ୍ୟ କରେଂଟ ଥାଏ । ବ୍ୟାଡ଼ମିଂଟନ ରାକେଟ ପରି ଏଥିରେ ମଧ୍ୟ ଜାଲିଥାଏ । ଏହି ଜାଲି ଦେହରେ ମାଶା ଲାଗିଗଲେ ସେଥିରେ ସେ ପୋଡ଼ିଯାଇ ପାଉଁଶ ହୋଇଯାଉଛନ୍ତି । ମାନେ ମଶା ନିପାତର ଆଉ ଏକ ଉପାୟ ହେଉଛି ଏହି ବିଦ୍ୟୁତ୍‌ଚାଳିତ ବ୍ୟାଡ଼ମିଂଟନ ରାକେଟ । ତେବେ ରାଜଧାନୀର ମଶା, ମୂଷା, ଉଈଙ୍କୁ ଯେ କେହି ପାରିବେ ନାହିଁ ଏହା ରାଜଧାନୀରେ ବାସ କରୁଥିବା ବାସିନ୍ଦାମାନେ ବହୁଦିନରୁ ବେଶ୍ ଭଲ ଭାବେ ହୃଦୟଙ୍ଗମ କରିଛନ୍ତି । ଏହାର ଅନ୍ୟ ଅର୍ଥ ହେଲା ରାଜଧାନୀର ମଶା, ମୂଷା, ଉଈ ଏଠାରେ ବାସ କରୁଥିବା ମଣିଷଙ୍କ ଠାରୁ ଅତି ବୁଦ୍ଧିଆ ଅଟନ୍ତି । ଥରେ ଦୁଇଥର ସେମାନଙ୍କର ସାଙ୍ଗସାଥୀ ବନ୍ଧୁବାନ୍ଧବଙ୍କର ମୃତ୍ୟୁ ହୋଇଗଲେ ଆଉ ସେମାନେ ସେହି ପଥ ଦେଇ ଯାଆନ୍ତି ନାହିଁ । ଏହା ଏବେ ହୋଇଛି ପୁଷ୍ପେନ୍ଦ୍ରଙ୍କ କ୍ଷେତ୍ରରେ । ପ୍ରଥମେ ପ୍ରଥମେ ପୁଷ୍ପେନ୍ଦ୍ର ମଶାମରା ରାକେଟ ପବନରେ ଦୋହଲାଇ ଦେଲେ ବହୁ ମଶା ସେଥିରେ ଲାଖିଯାଇ ପାଉଁଶ ହୋଇଯାଇଥିଲେ । ଏବେ ପୁଷ୍ପେନ୍ଦ୍ରଙ୍କ ରାକେଟ ଦେଖିଲେ ତାଙ୍କ ପାଖକୁ ମଶା ଆସୁନାହାନ୍ତି । କିନ୍ତୁ ପୁଷ୍ପେନ୍ଦ୍ରଙ୍କ ରାକେଟ ହଲାଇବା ଏକ ଅଭ୍ୟାସ ହୋଇଯାଇଛି । ମଶା ନଥିଲେ ମଧ୍ୟ ସେ ରାକେଟ ହଲାଇ ଚାଲନ୍ତି । ଖାଲି ପବନକୁ ରାକେଟରେ ପିଟନ୍ତି ପୁଷ୍ପେନ୍ଦ୍ର । ତେବେ ପୁଷ୍ପେନ୍ଦ୍ର ମଧ୍ୟ ଜାଣିଯିବେଣି ଯେ ରାଜଧାନୀ ମଶା ସୁପର ଚତୁର ବୋଲି । ■

## ୩୦ ବର୍ଷର ସିନେମା ପ୍ରୀତି

ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର ସେଦିନ ତାଙ୍କର ସଚିବାଳୟ କାର୍ଯ୍ୟାଳୟରେ ଗୁରୁତ୍ୱପୂର୍ଣ୍ଣ ଫାଇଲ କାମ କରୁଥା'ନ୍ତି । କୁଆଡ଼େ ଜମି ହଡ଼ପ କରିଥିବା

ସଂସ୍ଥା ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ସେ ନିର୍ଦ୍ଦେଶ ଦେବା ନିମନ୍ତେ ପ୍ରସ୍ତୁତ ହେଉଥା'ନ୍ତି । ଏହି ସମୟରେ ଟେଲିଫୋନ୍ ଆସିଲା । ସୂର୍ଯ୍ୟ ଟେଲିଫୋନ୍‌ରେ କଥା ହେଲେ ଆଉ କହିଲେ- ଆଜି ସିନେମା ଯାଇ ହେବନାହିଁ । ତା'ପରେ ପୁଣି ସେପଟୁ କ'ଣ କଥା ଆସିଲା କେଜାଣି ସୂର୍ଯ୍ୟ ପୁଣି କହିଲେ- ଓ, ହୋ ସେକେଣ୍ଡ ସୋ' । ତା' ହେଲେ ଯାଇ ହେବ । ଏହି ସମୟରେ ମନ୍ତ୍ରୀଙ୍କ ଅଫିସ କାର୍ଯ୍ୟାଳୟର ଜନୈକ କର୍ମଚାରୀ ସୂର୍ଯ୍ୟଙ୍କୁ ଆସି ଜଣାଇଲେ ଯେ, ସେକେଣ୍ଡ ସୋ' ପାଇଁ ଟିକେଟ ହୋଇଯାଇଛି । ସୂର୍ଯ୍ୟ କହିଲେ- ଆଜ୍ଞା ଠିକ୍ ଅଛି । ସେତେବେଳେ ସେଠାରେ ଉପସ୍ଥିତ କେତେକ ବ୍ୟକ୍ତି ସୂର୍ଯ୍ୟଙ୍କୁ ପଚାରିଲେ - କେଉଁ ସିନେମା ଯିବେ ? ସୂର୍ଯ୍ୟ କହିଲେ- 'ମାଇଁ ନେମ୍ ଇଜ୍ ଖାନ୍' ସିନେମା ଯିବୁ । ଏହା ପରର ପ୍ରଶ୍ନ ଥିଲା- କ'ଣ ଏକା ନା ଅନ୍ୟ କାହାକୁ ସାଙ୍ଗରେ ନେଇ । ସୂର୍ଯ୍ୟଙ୍କର ଉତ୍ତର ଥିଲା- ସେ କେବେ ଏକା ସିନେମା ଯାଆନ୍ତି ନାହିଁ । ସବୁବେଳେ ପତ୍ନୀଙ୍କ ସମେତ ପରିବାରକୁ ନେଇ ସିନେମା ଯାଆନ୍ତି । ୩୦ ବର୍ଷ ହେଲାଣି ସେ ସିନେମା ଦେଖିବାକୁ ସିନେମା ହଲ୍‌କୁ ଯାଉଛନ୍ତି । ହିନ୍ଦୀ ହେଉ ତେଲୁଗୁ ହେଉ କି ଇଂରାଜୀ ସିନେମା ହେଉ ସେ ତାହାକୁ ଦେଖିବେ ହିଁ ଦେଖିବେ । ସୂର୍ଯ୍ୟଙ୍କର ସିନେମା ପ୍ରୀତି ବଡ଼ ଅଜବ । ସେ ମନ୍ତ୍ରୀ କି ବିଧାୟକ ଥା'ନ୍ତୁ କି ନଥା'ନ୍ତୁ ସେଥିରେ କିଛି ତାଙ୍କର ଯାଏଆସେ ନାହିଁ । କିନ୍ତୁ ନୂଆ ସିନେମାଟେ ପଡ଼ିଲେ ସେ ନିଶ୍ଚିତ ଭାବେ ସେହି ସିନେମା ଦେଖିବାକୁ ଯିବେ ହିଁ ଯିବେ । ମାନିବାକୁ ପଡ଼ିବ ସୂର୍ଯ୍ୟଙ୍କର ସିନେମା ପ୍ରୀତିକୁ । ଏମିତି ରାଜନୀତିରେ ଅନେକ ସମୟରେ ଟେନ୍‌ସନ୍ ବି ଥାଏ । ପୁଣି ନବୀନ ପଟ୍ଟନାୟକ ସରକାରରେ ମନ୍ତ୍ରୀ ହେଲେ ସବୁବେଳେ ମୁଣ୍ଡ ଉପରେ ଖଣ୍ଡା ଝୁଲି ରହିଥିବ । ମନ୍ତ୍ରୀ ପଦ କେବେ ଯେ ଚାଲି ନଯିବ ତାହା ମଧ୍ୟ କହି ହେବନାହିଁ । ଏହି ଚିନ୍ତାରେ ମନ୍ତ୍ରୀମାନେ ସବୁବେଳେ ଘାରି ହୁଅନ୍ତି । ମାନେ ନବୀନଙ୍କ ମନ୍ତ୍ରିମଣ୍ଡଳରେ ଯିଏ ମନ୍ତ୍ରୀ ଅଛନ୍ତି ସମସ୍ତେ ସବୁବେଳେ ଟେନ୍‌ସନ୍‌ରେ ଥାଆନ୍ତି । ମନ୍ତ୍ରୀମାନେ ସୂର୍ଯ୍ୟଙ୍କ ଠାରୁ ସିନେମା ପ୍ରୀତିକୁ ଆଦରି ନିଅନ୍ତୁ । କିଛି ନହେଲେ ମଧ୍ୟ ସିନେମା ଦେଖିବା ସମୟତକ ବିନା ଟେନ୍‌ସନ୍‌ରେ କଟିଯିବ । ■

## ଛେନାପୋଡ଼ ଓ ପ୍ରସନ୍ନ ଆଚାର୍ଯ୍ୟ



କାହାକୁ କ'ଣ ଖାଇବାକୁ ଭଲ ଲାଗେ ତାହା କେହିବି କହିପାରିବେ ନାହିଁ । କାହାକୁ ମିଠା ଭଲ ଲାଗିଲାଣି ତ କାହାକୁ ପିଠା ଭଲ ଲାଗିଲାଣି । କାହାକୁ ଭାତ ଭଲ ଲାଗିଲାଣି ତ କାହାକୁ ରୁଟି ଭଲ ଲାଗିଲାଣି । କାହାକୁ କ୍ଷୀର ଚା' ଭଲ ଲାଗିଲାଣି ତ କାହାକୁ ନାଲି ଚା' ଭଲ ଲାଗିଲାଣି । କାହାକୁ ଖାସିମାଂସ ଭଲ ଲାଗିଲାଣି ତ କାହାକୁ କୁକୁଡ଼ାମାଂସ ଭଲ ଲାଗିଲାଣି । ଏବେ ଯିବା ସ୍ୱାସ୍ଥ୍ୟମନ୍ତ୍ରୀ ପ୍ରସନ୍ନ ଆଚାର୍ଯ୍ୟଙ୍କ ପାଖକୁ । ଏମିତି ଊଣାଅଧିକେ ପ୍ରାୟ ସମସ୍ତେ ଜାଣନ୍ତି ଯେ, ପ୍ରସନ୍ନ ବେଶ୍ ସଉକିଆ ଲୋକ ବୋଲି । ମାନେ ଘର ସଜାଇବା ଠାରୁ ଆରମ୍ଭ କରି ପୋଷାକ ପିନ୍ଧିବା ପର୍ଯ୍ୟନ୍ତ । ସବୁଥିରେ

ପ୍ରସନ୍ନଙ୍କର ନିଜସ୍ୱ ପସନ୍ଦ ଥାଏ । ଯେଉଁ ପ୍ରକୋଷ୍ଠରେ ସେ ବସନ୍ତି ସେଠାରେ ଯେପରି ଅଳିଆ ନଥିବ । ପୁଣି ସଜାସଜି ହୋଇଥିବ । ପ୍ରସନ୍ନଙ୍କର ଏହି ସାଜସଜ୍ଜା ଦୁର୍ବଳତା ବହୁଦିନରୁ ରହିଆସିଛି । ସାଂସଦ ଥିବାବେଳେ ଦିଲ୍ଲୀରେ ଯେଉଁ କ୍ୱାର୍ଟରଟି ତାଙ୍କୁ ମିଳିଥିଲା ସେଥିରେ ସେ ଅଧିକାଂଶ ସମୟ ରହୁ ନଥିଲେ । କିନ୍ତୁ ସେହି କ୍ୱାର୍ଟରଟିକୁ ସେ ଏମିତି ସଜାଇ ଦେଇଥିଲେ ଯେ ତାହାକୁ ଦେଖିଲେ ଯେକୌଣସି ବ୍ୟକ୍ତିଙ୍କର ମନ ଲାଖିଯିବ ହିଁ ଯିବ । ଦିଲ୍ଲୀ ଛାଡ଼ି ପ୍ରସନ୍ନ ଭୁବନେଶ୍ୱର ଆସିଲେ । ତାଙ୍କୁ ମିଳିଥିବା ଦିଲ୍ଲୀର ସେହି କ୍ୱାର୍ଟରଟିକୁ ନେବା ପାଇଁ ସତେ ଯେମିତି ସେତେବେଳେ ଏକ ପ୍ରତିଯୋଗିତା ଲାଗିଯାଇଥିଲା । ଭୁବନେଶ୍ୱରରେ ପ୍ରସନ୍ନ ବଡ଼ କ୍ୱାର୍ଟରଟିଏ ପାଇଲେ । କିନ୍ତୁ ପ୍ରସନ୍ନ ତାଙ୍କ ନିଜ ମର୍ଜି ଅନୁଯାୟୀ କ୍ୱାର୍ଟରଟିକୁ ସଜାଡ଼ିଛନ୍ତି । ଯେକୌଣସି ବ୍ୟକ୍ତି କ୍ୱାର୍ଟରକୁ ଗଲେ ନିଶ୍ଚିତ ଭାବେ ପ୍ରସନ୍ନଙ୍କ ପସନ୍ଦକୁ ପ୍ରଶଂସା କରିବେ ହିଁ କରିବେ । ଏଠାରେ ଉଦ୍ଦେଶ୍ୟ ନୁହେଁ ପ୍ରସନ୍ନଙ୍କ କ୍ୱାର୍ଟର ସଜାଡ଼ିବାକୁ ନେଇ ପାଠକଙ୍କୁ ଅବଗତ କରାଇବା । କିନ୍ତୁ ଉଦ୍ଦେଶ୍ୟ ହେଉଛି ପ୍ରସନ୍ନଙ୍କର ଏମିତି ଗୋଟିଏ ଖାଦ୍ୟ ପ୍ରତି ଦୁର୍ବଳତା ରହିଛି ଯାହାର ନାଁ ଶୁଣିଲେ ସେ ତାକୁ ଖାଇବାକୁ ଇଚ୍ଛା ପ୍ରକାଶ କରିଥା'ନ୍ତି । କେବଳ ସେତିକି ନୁହେଁ ଅନ୍ୟମାନଙ୍କୁ ମଧ୍ୟ ତାହା ଖାଇବା ପାଇଁ ବିତରଣ କରିଥା'ନ୍ତି । ଅନେକ ସମୟରେ କେତେକ ମନ୍ତ୍ରୀ ପ୍ରସନ୍ନଙ୍କ ପାଖକୁ ଯାଇ ସେହି ଖାଦ୍ୟ ଖାଇ ଫେରିଛନ୍ତି ଏବଂ ପ୍ରସନ୍ନଙ୍କର ମଧ୍ୟ ବେଶ୍ ପ୍ରଶଂସା କରିଛନ୍ତି । ପ୍ରସନ୍ନ ଯେ ଅତ୍ୟଧିକ ଖାଆନ୍ତି ତାହା ବି ନୁହେଁ । କିନ୍ତୁ ତାଙ୍କର ପିଲାଦିନରୁ ଛେନାପୋଡ଼ ପ୍ରତି ବେଶ୍ ଦୁର୍ବଳତା ରହିଆସିଛି ଆଉ ସେ ଦୁର୍ବଳତାକୁ ସେ ଛାଡ଼ି ପାରୁନାହାନ୍ତି । ଏମିତି କେହି ଯଦି ଟେନ୍‌ସନ୍ ହୋଇ ଫେରିଥା'ନ୍ତି ତେବେ ତାଙ୍କର ମନପସନ୍ଦର ଜିନିଷ ଦେଖିଦେଲେ ଟେନ୍‌ସନ୍ ଦୂର ହୋଇଯାଇଥାଏ । କିଏ ଥଣ୍ଡା ପାଣି ପିଇଦେଲେ ଟେନ୍‌ସନ୍ ଦୂର ହୋଇଯାଏ ତ କିଏ ଚା', କଫି ପିଇଦେଲେ ଟେନ୍‌ସନ୍ ଦୂର ହୋଇଯାଏ । ଆଉ କିଏ ନାତିନାତୁଣୀଙ୍କୁ ଦେଖିଦେଲେ ଟେନ୍‌ସନ୍ ଦୂର ହୋଇଯାଏ ତ ଆଉ କିଏ ପୋଷା କୁକୁରକୁ ଦେଖିଦେଲେ ଟେନ୍‌ସନ୍ ଦୂର ହୋଇଯାଏ । କିନ୍ତୁ ପ୍ରସନ୍ନଙ୍କ କ୍ଷେତ୍ରରେ ଛେନାପୋଡ଼ ଟିକିଏ ଖାଇଦେଲେ ସେ ବେଶ୍ ଖୁସି ହୋଇଯାଆନ୍ତି । ବୟସ ଅଧିକହୋଇଗଲେ ମିଠା ନଖାଇବାକୁ ଡାକ୍ତର ପରାମର୍ଶ ଦେଇଥା'ନ୍ତି । କିନ୍ତୁ ପ୍ରସନ୍ନଙ୍କ କ୍ଷେତ୍ରରେ ଛେନାପୋଡ଼ ସେସବୁ ଠାରୁ ବ୍ୟତିକ୍ରମ ଅଟେ । ଏମିତି ବେଳେବେଳେ ପ୍ରସନ୍ନଙ୍କ ଛେନାପୋଡ଼ ଦୁର୍ବଳତା ଦେଖି ଅନେକ ମଧ୍ୟ ଛେନାପୋଡ଼ ଉପହାର ଦେବା ପାଇଁ ଚାହିଁଥା'ନ୍ତି । କିନ୍ତୁ ପ୍ରସନ୍ନ ସେଥିରୁ ଦୂରେଇ ରହିଥା'ନ୍ତି । ତେବେ ପୂର୍ବରୁ ପ୍ରସନ୍ନଙ୍କର ଛେନାପୋଡ଼ ପ୍ରତି ଦୁର୍ବଳତା ଥିଲା କି ନଥିଲା ତାହା ଲୋକଲୋଚନକୁ ଆସୁ ନଥିଲା । ଏବେ ମନ୍ତ୍ରୀ ହୋଇଯିବା ପରେ ପ୍ରସନ୍ନଙ୍କର ଏହି ଛେନାପୋଡ଼ ଦୁର୍ବଳତା କ୍ରମେ ଲୋକଲୋଚନକୁ ଆସିଲାଣି । କୁଆଡ଼େ ପ୍ରସନ୍ନଙ୍କ ପ୍ରଶଂସକମାନେ କହନ୍ତି ଯେ, ପ୍ରସନ୍ନଙ୍କ ଭାଷଣ ହେଉ କି ବ୍ୟବହାର ହେଉ କି ହସ ହେଉ ସବୁ ମାର୍ଜିତ । ଏହାସବୁ ଛେନାପୋଡ଼ର କମାଲ । ■

## ପଖାଳଭାତ, ରାଜେନ୍ଦ୍ର ଓ ପାଗ



ଏମିତି ଖୋର୍ଦ୍ଧା ବିଧାୟକ ରାଜେନ୍ଦ୍ର ସାହୁଙ୍କ ଖାଇବାକୁ ନେଇ ସାରା ନିର୍ବାଚନମଣ୍ଡଳୀରେ ବିଭିନ୍ନ ସମୟରେ ଚର୍ଚ୍ଚା ହେଉଛି । ସେହି ଚର୍ଚ୍ଚାକୁ ଏଠାରେ ଉପସ୍ଥାପିତ କରାଯାଉଛି । କୁଆଡ଼େ ରାଜେନ୍ଦ୍ର ପଖାଳ ଭାତ ଖାଇବାକୁ ଭଲ ପାଆନ୍ତି । ଖାଲି ଯେ ସେ ପଖାଳଭାତ ଖାଆନ୍ତି ତାହାନୁହେଁ । ପଖାଳ ଭାତର ତୋରାଣୀରେ ଲେମ୍ବୁ ଚିପୁଡ଼ା ହେବ । କମଳା ଯାହାକୁ କାନ୍ଦିଆ ବୋଲି କୁହାଯାଏ ସେହି ଗଛର ପତ୍ରକୁ ଆଣି ତୋରାଣିରେ ଚକଟା ହେବ । ଏତିକି ହେଲେ ପଖାଳ ଭାତର ମଜା ଆସିଯିବ । ତୋରାଣି ବାସିଉଠିବ । ଏହାପରେ ଆଳୁ, ବାଇଗଣ, ଭେଣ୍ଡି, ଟମାଟ ପୋଡ଼ାଯାଇ ଚକଟା ହେବ । ଏହି ଚକଟାରେ କଂଚାଲଙ୍କା ଦଳାଯିବ ଆଉ ପିଆଜ ମଧ ପଡ଼ିବ । ସୋରିଷ ତେଲ ବି ଦୁଇ ଠୋପା ପଡ଼ିଲେ ଭଲ । ଏହା ହୋଇଗଲେ ବେଲା ପରେ ବେଲା ପଖାଳ ଭାତ ଖା'ନ୍ତି ରାଜେନ୍ଦ୍ର । ଅବଶ୍ୟ ରାଜେନ୍ଦ୍ରଙ୍କର ଏହି ପଖାଳ ଭାତ ଆଉ ପୋଡ଼ାପୋଡ଼ି କଥା ଶୁଣିଲେ ଯେକୌଣସି ବ୍ୟକ୍ତିଙ୍କର ପଖାଳ ଖାଇବାକୁ ଆଗ୍ରହ ଆସିବ ନିଶ୍ଚିତ। ଏମିତି ଦେଖିଲେ ରାଜେନ୍ଦ୍ରଙ୍କର ପଖାଳ ଖାଇବାଟାକୁ ସ୍ୱାସ୍ଥ୍ୟପକ୍ଷେ ହିତକାରକ ବୋଲି କୁହାଯିବ । କାରଣ ଲେମ୍ବୁ ସହିତ କଂଚା ପତ୍ର ମଧ ପଖାଳରେ ରହୁଛି । ପୁଣି ପରିବା ପୋଡ଼ା ହେଉଥିବାରୁ ସେଥିରେ ତେଲ ବ୍ୟବହାର ହେଉନାହିଁ । ସତେଯେମିତି ରାଜେନ୍ଦ୍ର ଗାଁ ଗହଳିରୁ ଆସିଛନ୍ତି । ଏବେ ତ ଗାଁ ଗହଳିର ଲୋକମାନେ ମଧ ଆଉ ପଖାଳ ଖାଉନାହାନ୍ତି । ତେବେ ରାଜେନ୍ଦ୍ରଙ୍କର ପଖାଳ ଖାଇବା ନିଶା ତାଙ୍କୁ ନିର୍ବାଚନମଣ୍ଡଳୀରେ ଜଣେ ଆମ୍‌ଆଦମୀ ଭାବେ ପରିଚିତ କରାଇଦେଇଛି । ■



## ଶୁଖୁଆ ପ୍ରିୟ ମହାରଥୀ

ଗାଁ ଗହଳିରେ ପ୍ରାୟ ଅଧିକାଂଶ ଶୁଖୁଆ ପ୍ରିୟ ଅଟନ୍ତି । ସେମାନଙ୍କ ପାଇଁ ଗରମ ଭାତର ଆବଶ୍ୟକତା ନଥାଏ । ପଖାଳ, ଶୁଖୁଆ ପୋଡ଼ା କିମ୍ବା ଅତିବେଶୀରେ ଶୁଖୁଆ ଭଜା ହୋଇଗଲେ ଜାଣ ବେଲାପରେ ବେଲା ଭାତ ଉଠିଯିବ । ସହରୀ ସଭ୍ୟତାରେ ଶୁଖୁଆର ସେତେ ଚାହିଦା ନାହିଁ । ଏମିତି ତ ଇଂରାଜୀ ମିଡ଼ିୟମରେ ପାଠ ପଢୁଥିବା ପିଲାମାନଙ୍କର ଶୁଖୁଆ ଗନ୍ଧ ନାକରେ ବାଜିଲେ ବାନ୍ତି ହୋଇଯାଏ । ତେବେ ଗାଁଗହଳି କିମ୍ବା ପୁରୁଣା କାଳର ଲୋକମାନଙ୍କର ଶୁଖୁଆ ପ୍ରତି ଏବେବି ଦୁର୍ବଳତା ରହିଛି । ଏ ହେଲେ ପ୍ରଦୀପ ମହାରଥୀ । ପିପିଲିରୁ ୫ ଥର ବିଧାୟକ । ପୁଣି ସରକାରୀ ଦଳର ମୁଖ୍ୟ ସଚେତକ ବି ଥିଲେ । ବିଧାନସଭାରେ ଶାସକ ଦଳର ଯଦି କାହାକୁ କଥାକୁହା ବିଧାୟକ ବୋଲି କୁହାଯିବ ତେବେ ସେ ହେଲେ ପ୍ରଦୀପ ମହାରଥୀ । ସେଦିନ ପ୍ରଦୀପଙ୍କ ସରକାରୀ ବାସଭବନରେ ତାଙ୍କର

କେଉଁ ଖାଦ୍ୟ ପ୍ରତି ଅଧିକ ଦୁର୍ବଳତା ଅଛି ବୋଲି ଚାଲିଥିଲା ଆଲୋଚନା । ସମସ୍ତେ ଥିଲେ ପ୍ରଦୀପଙ୍କର ପାଖଲୋକ ଆଉ ସମସ୍ତେ ମଧ ପ୍ରଦୀପ କ'ଣ ଖାଇବାକୁ ଭଲ ପାଆନ୍ତି ଭଲ ଭାବେ ଜାଣିଥିଲେ । କୁଆଡ଼େ ଶୁଖୁଆ ଆଉ ପଖାଳ ହୋଇଗଲେ ପ୍ରଦୀପଙ୍କର ମନ ବେଶ୍ ଖୁସ୍ । ପୁଣି ପଖାଳ ସାଙ୍ଗକୁ ଆଜେବାଜେ ଶୁଖୁଆ ନୁହେଁ । ଖଇଙ୍ଗା ଶୁଖୁଆ ହେଲେ ଜାଣ ଭାତ ଗୁଣ୍ଡା ପରେ ଗୁଣ୍ଡା ପେଟକୁ ଚାଲିଲା ପ୍ରଦୀପଙ୍କର । ଯଦି ଖଇଙ୍ଗା ଶୁଖୁଆ ନାହିଁ ତେବେ ଇଲିଶି ଶୁଖୁଆ ହେଲେ ମଧ ପ୍ରଦୀପଙ୍କର ଭାତ ବି ଭଲ ଭାବେ ପେଟକୁ ଯିବ । ଅବଶ୍ୟ ପ୍ରଦୀପ ଯେ ସବୁବେଳେ ଶୁଖୁଆ ଖାଇବାକୁ ଭଲ ପାଆନ୍ତି ତାହା ବି ନୁହେଁ । କିନ୍ତୁ ଯେଉଁ ଦିନ ମୁଡ୍ ଭଲ ଥିବ ସେଦିନ ପଖାଳ ଆଉ ଶୁଖୁଆ ଖାଇଦେଲେ ପ୍ରଦୀପଙ୍କର ମୁଡ୍ ଆହୁରି ଭଲ ହୋଇଯାଏ । ଜାଣ ସେତେବେଳେ ରାଜ୍ୟ ମାଗି ଦେଲେ ମଧ ପ୍ରଦୀପ ତାହାକୁ ବି ଦେଇଦେବେ । ଆଲୋଚନା ହେଉଛି ଶୁଖୁଆ ମାୟାରେ ବାନ୍ଧା ହୁଅନ୍ତି ବେଳେବେଳେ ପ୍ରଦୀପ । ଏହା ସତକଥା ଯେ, ପ୍ରଦୀପ ୫ ଥର ବିଧାୟକ ହୋଇ ଭୁବନେଶ୍ୱରରେ ରହୁଛନ୍ତି । ତେବେ ତାଙ୍କୁ ଭୁବନେଶ୍ୱରରେ ମିଳିଥିବା ସରକାରୀ କ୍ୱାର୍ଟରରେ ସେ ବିଧାନସଭା ଚାଲି ନଥିବା ବେଳେ କମ୍ ଦିନ ରହନ୍ତି ଆଉ ଅଧିକ ଦିନ ନିର୍ବାଚନମଣ୍ଡଳୀରେ ବିତାଇଥା'ନ୍ତି । ପିପିଲି ନିର୍ବାଚନମଣ୍ଡଳୀଟି ଏକ ସହର ନିର୍ବାଚନମଣ୍ଡଳୀ ନୁହେଁ । ଏହା ଗାଁଭିତିକ ନିର୍ବାଚନମଣ୍ଡଳୀ । ପଖାଳ ଆଉ ଶୁଖୁଆ ଖାଉଥିବା ଯୋଗୁ ପ୍ରଦୀପଙ୍କୁ ମଧ ଅନେକ ଗାଁଲୋକ ବୋଲି କହିବାକୁ ପଛାଉନାହାନ୍ତି । କୁଆଡ଼େ ଏହା ବି ପ୍ରଦୀପଙ୍କ ପାଇଁ ଭୋଟ ପାଇବାର ଆଉ ଏକ ଦିଗ ବୋଲି କୁହାଯାଏ । ମାନେ ଗାଁ ଲୋକଙ୍କ ସହିତ ପ୍ରଦୀପ ଅଛନ୍ତି । ଶୁଖୁଆ ଆଉ ପଖାଳକୁ ଭଲ ପାଉଥିବା ପ୍ରଦୀପ କେତେଦିନ ପର୍ଯ୍ୟନ୍ତ ଏହାକୁ ସାଥିରେ ନେଇ ଚାଲିଥିବେ ତାହାକୁ ମଧ ସମସ୍ତେ ଚାହିଁରହିବା ସ୍ୱାଭାବିକ ଅଟେ । ■

## ଗୁପ୍‌ଚୁପ୍ ଖିଆ ସଂଜୀବ



କଂଗ୍ରେସ ନେତା ତଥା ସମ୍ବାଦ ସଂପାଦକ ସୌମ୍ୟରଂଜନ ପଟ୍ଟନାୟକଙ୍କ ଝିଅ ବାହାଘର ରିସେପ୍‌ସନ୍‌କୁ ମନ୍ତ୍ରୀ ସଂଜୀବ ସାହୁ ଯାଇଥିଲେ ବିଳମ୍ବରେ । ତାଙ୍କ ସାଥିରେ ଥା'ନ୍ତି ବିଜେଡ଼ି ବିଧାୟକ ଅତନୁ ସବ୍ୟସାଚୀ ନାୟକ । ଏମିତି ଉଭୟେ ଭିତରକୁ ଯାଇ ଟିକିଏ ଗପିଦେଲେ ପୂର୍ବତନ କଂଗ୍ରେସ ସାଂସଦ ଜୟନ୍ତୀ ପଟ୍ଟନାୟକଙ୍କ ସହିତ । ଗପ ସାରି ଖାଇବାକୁ ଆସିଲା ବେଳକୁ ସେମାନେ ଦେଖିଲେ ଖାଇବା ପାଇଁ ଲମ୍ବା ଧାଡ଼ି ଲାଗିଛି । ଧାଡ଼ି ଦେଖି ଅତନୁ ନଖାଇ ଚାଲିଯିବା ପାଇଁ ପ୍ରସ୍ତାବ ଦେଲେ । ଅତନୁଙ୍କ ପ୍ରସ୍ତାବ ଶୁଣି ସଂଜୀବଙ୍କ ମୁହଁ ଶୁଖିଗଲା । ଏମିତି ସଂଜୀବ ଜଣେ ଖାଇବା ପ୍ରିୟ ଲୋକ । ସୌମ୍ୟରଂଜନଙ୍କ ଝିଅ ବାହାଘରକୁ ଆସି ଭୁରି ଭୋଜନ କରିବା ତାଙ୍କର ଲକ୍ଷ୍ୟ ଥିଲା ।

କିନ୍ତୁ ଧାଡ଼ି ଦେଖି ତାଙ୍କର ମୁଡ୍ ବିଗିଡ଼ି ଗଲା । ଚାରିଆଡ଼େ ଆଖି ବୁଲାଇଲେ । ହଠାତ୍ ଅତନୁ ପ୍ରସ୍ତାବ ଦେଲେ ଗୁପ୍‌ଚୁପ୍ ପାଖରେ ଭିଡ଼ ନାହିଁ- ଚାଲ, ସେଠାକୁ ଯାଇ ଗୁପ୍‌ଚୁପ୍ ଖାଇବା । ଅତନୁଙ୍କ ପାଟିରୁ କଥା ନସରୁଣୁ ଗୁପ୍‌ଚୁପ୍ ଆଡ଼କୁ ଗୋଡ଼ ବଢ଼ାଇ ଦେଲେ ସଂଜୀବ । ସେଠାରେ ସଂଜୀବ ଗୁପ୍‌ଚୁପ୍ ଦେଉଥିବା ଲୋକକୁ ପଚାରିଲେ- ଗୁପ୍‌ଚୁପ୍ ସହିତ ଆଉ କ'ଣ ମିଳିବ ? କିନ୍ତୁ ଲୋକ ଜଣକ ତାଙ୍କ କଥାକୁ ଶୁଣିଲା ନାହିଁ । ସଂଜୀବଙ୍କ ପୁଣି ସେହି ପ୍ରଶ୍ନ । ଲୋକ ଜଣକ କହିଲା- ହିନ୍ଦୀରେ କୁହ । ଏହାପରେ ସଂଜୀବ ଅଧା ଓଡ଼ିଆ ଆଉ ଅଧା ହିନ୍ଦୀରେ କହିଲେ- ଗୁପ୍‌ଚୁପ୍ ଦିଅ । ଗୁପ୍‌ଚୁପ୍ ଖିଆ ଚାଲିଥିବା ସମୟରେ ସଂଜୀବଙ୍କ ପାଖକୁ ପ୍ଲେଟ୍‌ରେ କିଛି ଖାଦ୍ୟ ଆସିଲା । ସଂଜୀବ ଗୁପ୍‌ଚୁପ୍ ଖିଆ ଛାଡ଼ିଦେଇ ସେହି ଖାଦ୍ୟ ଖାଇଲେ । ଖାଦ୍ୟ ଖିଆ ସରିବା ପରେ ସଂଜୀବ ପୁଣି ଚାଲିଲେ ଗୁପ୍‌ଚୁପ୍ ପାଖକୁ । ସେଠାରେ ମନଭରି ସେ ଗୋଟିକ ପରେ ଗୋଟିଏ ଗୁପ୍‌ଚୁପ୍ ଖାଇବାରେ ଲାଗିଲେ । ମନ୍ତ୍ରୀ ସଂଜୀବଙ୍କ ଗୁପ୍‌ଚୁପ୍ ଖିଆକୁ ସେଠାରେ ଉପସ୍ଥିତ ଥିବା କିଛି ଲୋକ ବେଶ୍ ଉପଭୋଗ କରୁଥିଲେ । ସେମାନଙ୍କ ଆଡ଼କୁ ସଂଜୀବଙ୍କ ହଠାତ୍ ଦୃଷ୍ଟି ପଡ଼ିଗଲା । ଏହାପରେ ସଂଜୀବଙ୍କ ଗୁପ୍‌ଚୁପ୍ ଖିଆ ସେତିକିରେ ଶେଷ ହୋଇଯାଇଥିଲା । ଏମିତି ସଂଜୀବଙ୍କର ମୁଢ଼ି, ଚିନାବାଦାମ ବେଶ୍ ପ୍ରିୟ ଅଟେ । ଗୁପ୍‌ଚୁପ୍ ତାଙ୍କର ପ୍ରିୟ ବୋଲି ସାଧାରଣତଃ କେହି ଜାଣି ନଥିଲେ । କିନ୍ତୁ ସୌମ୍ୟରଂଜନଙ୍କ ଝିଅ ବାହାଘର ରିସେପ୍‌ସନ୍‌ରେ ସଂଜୀବଙ୍କର ଗୁପ୍‌ଚୁପ୍ ପ୍ରତି ଥିବା ଦୁର୍ବଳତାଟି ବେଶ୍ ବାରି ହୋଇଯାଇଥିଲା । ■

## ଟାଇମ୍ ଟେବୁଲ ନେତା



ରାଜନୀତିରେ ଟାଇମ୍ ଟେବୁଲ ବୋଲି କିଛି ନଥାଏ । ମାନେ ଚାକିରି କରିଥିଲେ ଯେମିତି ୧୦ଟାରୁ ୫ଟା ଡିୟୁଟି । ରାଜନୀତିରେ କିନ୍ତୁ ୨୪ ଘଂଟା ଡିୟୁଟି । ନେତାମାନେ ସବୁବେଳେ ଅନିୟମିତତାରେ ରହିଥା'ନ୍ତି । କେଉଁଠି ଠିକ୍ ସମୟରେ ପହଂଚି ପାରନ୍ତି ନାହିଁ ତ କେଉଁଠି ଠିକ୍ ସମୟରେ ଖାଇପାରନ୍ତି ନାହିଁ । ଅନେକ ସମୟରେ ମଧ ଘର କଥା ମୋଟେ ବୁଝିପାରନ୍ତି ନାହିଁ । ଏସବୁଥିରୁ ବ୍ୟତିକ୍ରମ ଅଟନ୍ତି ବିଜେଡ଼ି ନେତା ସରୋଜ କୁମାର ସାମଲ । ଏହି ଘଟଣା ସବୁ ସେ ଗଁଦିଆର ବିଜେଡ଼ି ବିଧାୟକ ଥିବା ସମୟର । ଏମିତି ତ ସେ ଜଣେ ଚାଟାର୍ଡ଼ ଆକାଉଟାଂଟ । ନିଖିଳ ଭାରତ ମ୍ୟାନେଜମେଂଟ ଆସୋସିଏସନ୍‌ର ସେ ମଧ ସଭ୍ୟ ଅଟନ୍ତି । ଯେଉଁଥିପାଇଁ ରାଜନୀତିରେ ସେ ମ୍ୟାନେଜମେଂଟକୁ ପ୍ରୟୋଗ କରିବାକୁ ଚାହିଁଛନ୍ତି । ବିଧାୟକ ଥିବାବେଳେ ସରୋଜ ରାଜନୀତିରେ ତାଙ୍କର ଖାଇବା, ଶୋଇବା ଆଉ ଅଫିସ ଏବଂ ଟାଇମ୍ ଟେବୁଲକୁ ବେଶ୍ ନିୟମିତ କରିପାରିଥିଲେ । ଏମିତି ୪ ନମ୍ବରରେ ସେ ବିଧାୟକ କଲୋନୀରେ କ୍ୱାର୍ଟରଟିଏ ପାଇଥିଲେ । କିନ୍ତୁ ଏହି କ୍ୱାର୍ଟରରେ ସେ ତାଙ୍କର କେବଳ ଅଫିସ କରନ୍ତି ଆଉ ପରିବାରଙ୍କୁ

ନେଇ ସେ ରହନ୍ତି ବରମୁଣ୍ଡା ଜଗନ୍ନାଥ ବିହାରରେ । ପରିବାର ମଧ୍ୟରେ ରାଜନୀତି ପଶିବାର ନାହିଁ । ମାନେ ଘରକୁ କେହି ରାଜନୀତି ସମ୍ପର୍କରେ ଯୋଗାଯୋଗ ରଖିବାକୁ ବି ଯିବେନାହିଁ । ଘରେ ବି କେହି ରାଜନୀତି ସହିତ ସଂପୃକ୍ତ ବି ହେବେନାହିଁ । ବିଧାୟକ କଲୋନୀ କ୍ୱାର୍ଟରକୁ ସେ ଅଫିସ କରିଦେଇଥିଲେ । ପ୍ରତିଦିନ ସାଢ଼େ ଦଶଟା ବେଳକୁ ସେ ସେଠାକୁ ଯାଆନ୍ତି । ଦିନ ଦୁଇଟା ବେଳକୁ ସେଠାରେ ସେ ମଧ୍ୟାହ୍ନ ଭୋଜନ ଖାଆନ୍ତି ଆଉ ବିଶ୍ରାମ ନିଅନ୍ତି । ଏହି ସମୟରେ ତାଙ୍କୁ କେହି ଯେପରି ବିରକ୍ତ ନକରନ୍ତି ସେ କ୍ଷେତ୍ରରେ ସେ ସମସ୍ତ ବ୍ୟବସ୍ଥା କରିଥା'ନ୍ତି । ସଂଧ୍ୟା ପାଂଚଟାରେ ସେ ପୁଣି ତାଙ୍କର ଅଫିସ ଆରମ୍ଭ କରନ୍ତି । ଏହି ଅଫିସ ରାତି ଦଶଟା ପର୍ଯ୍ୟନ୍ତ ଚାଲେ । ଏହାପରେ ଅଫିସରେ ରାଜନୀତି ଟେନ୍‌ସନ୍‌କୁ ଛାଡ଼ିଦେଇ ସରୋଜ ନିଜ ଘର ଜଗନ୍ନାଥ ବିହାରକୁ ଚାଲିଯାଆନ୍ତି । ସେଠାରେ ସେ ହୋଇଯାଆନ୍ତି ସମ୍ପୂର୍ଣ୍ଣ ପାରିବାରିକ । ଭଲ ଛାତ୍ର ଥିବାରୁ ତାଙ୍କର ପୁଅଙ୍କୁ ସେ ନିଜେ ପାଠ ପଢ଼ାନ୍ତି । ରାତିରେ ଖାଇପିଇ ଶୁଅନ୍ତି ଆଉ ସକାଳୁ ଉଠି ପରିବାର ସହିତ କଟାନ୍ତି । କୌଣସି ଲୋକ ଯେପରି ତାଙ୍କ ଘରକୁ ନଆସିବେ ସେ ଦିଗରେ ତାଙ୍କର ମଧ୍ୟ ତାଗିଦ୍ ଥିଲା । ଅବଶ୍ୟ ପ୍ରଥମେ ପ୍ରଥମେ ଏଭଳି ଟାଇମ୍ ଟେବୁଲ ସରୋଜଙ୍କ ପାଇଁ ଅଡୁଆ ପରିସ୍ଥିତି ସୃଷ୍ଟି କରିଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ତାହା ତାଙ୍କ ପାଇଁ ଓ ଲୋକଙ୍କ ନିମନ୍ତେ ଦେହସୁହା ହୋଇଗଲା ଆଉ ସରୋଜ ପାଲଟି ଗଲେ ଜଣେ ସଚ୍ଚା ଟାଇମ୍ ଟେବୁଲ ନେତା । ଯାହା ହେଲେ ମଧ୍ୟ ସରୋଜ ପ୍ରଥମେ ଚାର୍ଟାର୍ଡ଼ ଆକାଉଟାଂଟ ଓ ପରେ ବିଧାୟକ । ତେଣୁ ମ୍ୟାନେଜମେଂଟ ତାଙ୍କୁ ବେଶ୍ ଭଲ ରୂପେ ଜଣା । ରାଜନୀତିରେ ଯେ ମ୍ୟାନେଜମେଂଟ କାମ ଦିଏନାହିଁ ଏହା ସରୋଜ ବେଶ୍ ଭଲ ଭାବେ ଜାଣିଛନ୍ତି । ଦେଖାଯାଉ ସରୋଜଙ୍କର ରାଜନୀତିରେ ମ୍ୟାନେଜମେଂଟ ପରୀକ୍ଷା ତାଙ୍କୁ ସଫଳ ନେତା କରିପାରୁଛି କି ନାହିଁ । ■

## ଅରୁଣ ଓ ତୁଳସୀ



ନୟାଗଡ଼ ବିଧାୟକ ଅରୁଣ ସାହୁ ୨୦୦୯ ନିର୍ବାଚନରେ ଯେପରି ସଙ୍କଟରେ ପଡ଼ିଥିଲେ ସେଥିରୁ ସେ ବେଶ୍ ଭଲ ଭାବେ ଉଦ୍ଧାର ପାଇଲେ । ଏମିତି ତାଙ୍କ ନିର୍ବାଚନମଣ୍ଡଳୀରେ ଭୋଟ ଗ୍ରହଣ ସମୟରେ କିଭଳି ରିଗିଂ ହେଉଥିଲା ତାହାକୁ ଇଲେକ୍‌ଟ୍ରୋନିକ୍ସ ମିଡ଼ିଆ ମୁଖ୍ୟତଃ ପ୍ରସାର କରିଥିଲେ । ଏହାପରେ କେତେକ ବୁଥ୍‌ରେ ପୁନଃ ଭୋଟଗ୍ରହଣ ହୋଇଥିଲା । ନିର୍ବାଚନ ଫଳାଫଳ ବାହାରିବା ପର୍ଯ୍ୟନ୍ତ ଅରୁଣ ଚିନ୍ତାରେ ମଧ୍ୟ ଥିଲେ । କିନ୍ତୁ ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରେ ଅରୁଣଙ୍କର ବିଜୟ ବ୍ୟବଧାନ ଏତେ ଆଗରେ ଥିଲା ଯେ, ସେଥିରେ ସେ ବେଶ୍ ଖୁସ୍ ହୋଇଯାଇଥିଲେ । ଏମିତି ଅରୁଣଙ୍କର ୨୦୦୪ ବିଧାୟକ ତୁଳନାରେ ୨୦୦୯ ବିଧାୟକରେ ପ୍ରମୋସନ ହୋଇଛି ।

୨୦୦୪ରେ ସେ ଥିଲେ କେବଳ ବିଧାୟକ । ୨୦୦୯ରେ ଏମିତି ସେ ମନ୍ତ୍ରୀ ହେବେ ବୋଲି ସମସ୍ତଙ୍କର ଧାରଣା ଥିଲା । ଯଦିଓ ସେ ମନ୍ତ୍ରୀ ହୋଇନାହାନ୍ତି ତେବେ ସରକାରୀ ଦଳ ଉପମୁଖ୍ୟ ସଚେତକ ହୋଇ ନାଲିବତୀ ଗାଡ଼ି ପାଇଛନ୍ତି । ପୁଣି ମନ୍ତ୍ରୀଙ୍କ ପରି ଘରୋଇ ସଚିବ ଓ ଷ୍ଟାଫ୍ ବି ତାଙ୍କୁ ମିଳିଛି । ରାଜନୀତିରେ ଅରୁଣଙ୍କର ଉତ୍‌ଥାନ କିପରି ହୋଇଚାଲିଛି ତାହାର କାରଣ ବି କେହି ଜାଣିପାରୁନାହାନ୍ତି । ଅରୁଣ ଯେ ଠାକୁର ଭକ୍ତ ତାହା ମଧ ଖୁବ୍ କମ୍ ଜାଣନ୍ତି । ପୁଣି ଜଗନ୍ନାଥଙ୍କର ସେ ଜଣେ ସେବକ ଅଟନ୍ତି । ତାଙ୍କ କ୍ୱାର୍ଟରକୁ ଚାଲିଗଲେ ଏହା ସ୍ପଷ୍ଟ ହୋଇଯାଏ । ତୁଳସୀ ପତ୍ର ଓ ଜଟା ସଂଗ୍ରହ କରି ଶିଆଳୀ ପତ୍ରରେ ପ୍ୟାକେଟ୍ କରି ସେ ରଖିଥା'ନ୍ତି ଆଉ ଏହାକୁ ପୁରୀ ଜଗନ୍ନାଥ ମନ୍ଦିରକୁ ପଠାନ୍ତି । ସପ୍ତାହରେ ଥରେ ଏହା ଭୁବନେଶ୍ୱରରୁ ପୁରୀକୁ ବସ୍ ଯୋଗେ ପଠାଯାଏ । ପୁରୀରେ ଥିବା ସନ୍ତୁବାବା ବସ୍‌ଷ୍ଟାଣ୍ଡକୁ ଆସି ବସ୍‌ରୁ ତୁଳସୀ ପତ୍ର ଓ ଜଟା ପ୍ୟାକେଟ୍ ସଂଗ୍ରହ କରନ୍ତି ଓ ତାହାକୁ ନେଇ ଜଗନ୍ନାଥଙ୍କ ମସ୍ତକରେ ଲଗାଇବାର ବ୍ୟବସ୍ଥା କରନ୍ତି । ଅରୁଣ ଖାଇବା ପଢେ ଭୁଲିଯିବେ କିନ୍ତୁ ତୁଳସୀ ପତ୍ର ଓ ଜଟା ସଂଗ୍ରହ ଭୁଲିବେ ନାହିଁ । ଅରୁଣଙ୍କର ପ୍ରଶଂସକମାନେ କହନ୍ତି ଜଗନ୍ନାଥଙ୍କର ସେବକ ହୋଇଥିବାରୁ ଅରୁଣ ରାଜନୀତିରେ ଦିନକୁ ଦିନ ସଫଳ ହୋଇଚାଲିଛନ୍ତି । ଯାହା ହେଲେ ମଧ ଜଗନ୍ନାଥଙ୍କ ଠାରେ ତୁଳସୀ ପତ୍ର ଓ ଜଟା ଲାଗିବାକୁ ପୂଣ୍ୟ ବୋଲି କୁହାଯିବ ହିଁ ଯିବ । ଦେଖାଯାଉ ଅରୁଣ ତାଙ୍କ ପୁଣ୍ୟକର୍ମର ଫଳ ଭାବେ ଆଉ କ'ଣ ପାଉଛନ୍ତି । ■



## ରଘୁଙ୍କ ମୋବାଇଲ

ରଘୁନାଥ ମହାନ୍ତିଙ୍କୁ ସବୁଠାରୁ ଭାଗ୍ୟବାନ ମନ୍ତ୍ରୀ ବୋଲି କୁହାଯାଉଛି । ୧୯୯୦ ମସିହାରେ ସେ ପ୍ରଥମେ ବସ୍ତାରୁ ବିଧାୟକ ହେଲେ । ଏହା ପରଠାରୁ ଆଉ ସେ ପଛକୁ ଫେରି ଚାହିଁନାହାନ୍ତି । ମାନେ କ୍ରମାଗତ ଭାବେ ପାଂଚଥର ସେ ବିଧାୟକ ହେଲେଣି । ପୁଣି ଭାଗ୍ୟ ଯେ ଏଇଠି ରଘୁଙ୍କର ଶେଷ ହୋଇଯାଇଛି ତାହା ନୁହେଁ । ରଘୁ ଗତଥର ପଂଚାୟତିରାଜ ଓ ସଂସଦୀୟ ବ୍ୟାପାର ପରି ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ଥିଲେ । ଏଥର ଖଣି, ଇସ୍ପାତ, ଶିଳ୍ପ ଓ ସଂସଦୀୟ ବ୍ୟାପାର ପରି ଗୁରୁତ୍ୱପୂର୍ଣ୍ଣ ବିଭାଗର ସେ ମନ୍ତ୍ରୀ ବି ହୋଇଛନ୍ତି । ରଘୁଙ୍କୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ମିଳୁଥିବାରୁ ସେ ମଧ ବିଜେଡିର ବହୁନେତାଙ୍କ ଈର୍ଷାର ଦୃଷ୍ଟିରେ ଅଛନ୍ତି । ଏମିତି ଖଣି ଦୁର୍ନୀତିକୁ ନେଇ ବିଧାନସଭା ପଡ଼ିଲା ଉଠିଲା । ରାଜନୀତି ମହଲରେ ଆଶା କରାଯାଉଥିଲା ବୋଧହୁଏ ରଘୁଙ୍କୁ ଏଥିପାଇଁ ନାକେଦମ୍ ହେବାକୁ ପଡ଼ିବ । କିନ୍ତୁ ରଘୁ ଯେଉଁ ମିଜାଜରେ ଥିଲେ ସେହି ମିଜାଜରେ ରହିଲେ । ସେମିତି କିଛି ଟେନ୍‌ସନ୍ ତାଙ୍କର ହେଲାନାହିଁ । ବିରୋଧୀ ଦଳ ଖଣି ଦୁର୍ନୀତିକୁ ନେଇ ବିଧାନସଭାରେ ଯେତେ ହଇଗୋଳ କଲେ ମଧ ସେଥିରେ ରଘୁ ଚିନ୍ତିତ ହେଲେନାହିଁ । ଅନେକ ନେତା ସକାଳ ହେବା ମାତ୍ରେ

ଠାକୁରଙ୍କୁ ଦର୍ଶନ କରିଦେଲେ ତାଙ୍କର ରିଷ୍ଟ ଖଣ୍ଡନ ହୋଇଯାଏ ବୋଲି ଭାବିନିଅନ୍ତି । କିନ୍ତୁ ରଘୁଙ୍କ ଭାବନା ଟିକିଏ ଅଲଗା । ରଘୁଙ୍କ ପାଇଁ ଶୁଭ ହେଉଛନ୍ତି ତାଙ୍କ ନାତୁଣୀ । ଯେଉଁଥିପାଇଁ ସେ ତାଙ୍କ ମୋବାଇଲ ସ୍କ୍ରିନ୍‌ରେ ନାତୁଣୀଙ୍କର ଫଟୋଟି ରଖିଛନ୍ତି । ମୋବାଇଲ ସ୍କ୍ରିନ୍‌କୁ ଚାହିଁବା ମାତ୍ରେ ନାତୁଣୀଙ୍କର ଫଟୋଟିକୁ ସେ ଦେଖନ୍ତି । ଅନେକ ମଧ ପଚାରନ୍ତି ମୋବାଇଲ ସ୍କ୍ରିନ୍‌ରେ କାହାର ଫଟୋ ଅଛି ବୋଲି । କିନ୍ତୁ ରଘୁ କିଛି ନକହି ଚୁପ୍‌ଚାପ୍ ରହନ୍ତି ଆଉ ମୋବାଇଲ ସ୍କ୍ରିନ୍‌ରେ ଥିବା ନାତୁଣୀଙ୍କର ଫଟୋଟିକୁ ଦେଖି ହସି ଦିଅନ୍ତି । ଅବଶ୍ୟ ମୋବାଇଲ ସ୍କ୍ରିନ୍‌ରେ ଥିବା ଫଟୋର ଭିତିରି ରହସ୍ୟ କ୍ରମେ ପଦାକୁ ଆସିଲାଣି । ନାତୁଣୀଙ୍କର ଫଟୋଟିକୁ ସକାଳୁ ଦେଖିଦେଲେ ଦିନଯାକ କୁଆଡ଼େ ରଘୁଙ୍କର ଶୁଭ । ଅବଶ୍ୟ ମାନିବାକୁ ପଡ଼ିବ ରଘୁଙ୍କର ନାତୁଣୀ ଭଲ ପାଇବାକୁ । ■

## ମଇତ୍ର ରାଜନୀତି

ତି ଓଡ଼ିଶା ବିଧାନସଭାରେ ଗୋଟିଏ ନାମରେ ଏକାଧିକ ସଭ୍ୟ ଅଛନ୍ତି । ଯେମିତି ବିଜୟ ନାମରେ ବିଜୟ ରଂଜନ ସିଂ ବରିହା, ବିଜୟ ମହାନ୍ତି, ବିଜୟ କୁମାର ନାୟକ, ବିଜୟ ଶ୍ରୀ ରାଉତରାୟ । ପୁଣି ପ୍ରଫୁଲ ଘଡ଼ାଇ, ପ୍ରଫୁଲ ସାମଲ, ପ୍ରଫୁଲ ମାଝୀ, ପ୍ରଫୁଲ ମଲିକ । ଆଉ ରମେଶ ଚନ୍ଦ୍ର ଜେନା, ରମେଶ ଚନ୍ଦ୍ର ରାଉତ, ରମେଶ ଚନ୍ଦ୍ର ଚାଉପଟ୍ଟନାୟକ । ପୁଣି ପ୍ରଦୀପ ମହାରଥୀ, ପ୍ରଦୀପ ପାଣିଗ୍ରାହୀ, ପ୍ରଦୀପ ଅମାତ୍ । ଆଉ ରଘୁ ସାହୁ, ରଘୁ ମହାନ୍ତି, ରଘୁ ପାଡ଼ାଲ । ଆଉ ପୁଣି ରାଜେନ୍ଦ୍ର କୁମାର ଛତରିଆ, ରାଜେନ୍ଦ୍ର ସାହୁ, ରାଜେନ୍ଦ୍ର ଦାସ । ପୁଣି ରବିନାରାୟଣ ନନ୍ଦ, ରବିନାରାୟଣ ପାଣି, ରବି ମଲିକ, ରବି ଭୋଇ । ଆଉ ଭାଗିରଥୀ ସେଠୀ, ଭାଗିରଥୀ ବଡ଼ଜେନା । ସଂଜୀବ ପ୍ରଧାନ, ସଂଜୀବ ସାହୁ ପୁଣି ଦେବାଶିଷ ନାୟକ, ଦେବାଶିଷ ସାମନ୍ତରାୟ । ଆହୁରି ପୁଣି ସମନାମଧାରୀ ବିଧାୟକ ବି ଅଛନ୍ତି । ସେମାନେ ହେଲେ । ପ୍ରଭାତ ତ୍ରିପାଠୀ, ପ୍ରଭାତ ବିଶ୍ୱାଳ । ପୁଣି ଦେବୀ ପ୍ରସାଦ ମିଶ୍ର, ଦେବୀ ପ୍ରସାଦ ଚାନ୍ଦ ଓ ପ୍ରତାପ ଜେନା, ପ୍ରତାପ କେଶରୀ ଦେବ । ଆଉ ପୂର୍ଣ୍ଣଚନ୍ଦ୍ର ସେଠୀ, ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ । ଏତିକିରେ ଯେ ଏକା ନାମଧାରୀ ବିଧାୟକଙ୍କ ପ୍ରସଙ୍ଗ ଶେଷ ହୋଇଯାଉଛି ତାହା ନୁହେଁ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପ୍ରସଙ୍ଗ ମଧ ଏଠାରେ ଆସିବ । ନବୀନ ନାମଧାରୀ ଦୁଇଜଣ ଅଛନ୍ତି । ଜଣେ ହେଲେ ନବୀନ ପଟ୍ଟନାୟକ ଏବଂ ଅନ୍ୟ ଜଣେ ହେଲେ ନବୀନ ନନ୍ଦ । ସାଧାରଣତଃ ସମନାମଧାରୀ ବ୍ୟକ୍ତି ପରସ୍ପରଙ୍କୁ ଦେଖିଲେ ସେମାନଙ୍କ ମଧରେ ଆତ୍ମୀୟତା ଭାବ ସୃଷ୍ଟି ହୋଇଥାଏ । କିନ୍ତୁ ରାଜନୀତି ଅଭିଧାନରେ ଆତ୍ମୀୟତା ଶବ୍ଦଟି ନଥାଏ । ତେଣୁ ଓଡ଼ିଶା ବିଧାନସଭାରେ ସମନାମଧାରୀ ବ୍ୟକ୍ତିଙ୍କ ମଧରେ ସେମିତି କିଛି ଆତ୍ମୀୟତା ନାହିଁ କହିଲେ ଚଳେ । ତେବେ ଏ କ୍ଷେତ୍ରରେ ବ୍ୟତିକ୍ରମ ହୋଇଯାଇଛନ୍ତି ରାଜେନ୍ଦ୍ର ସାହୁ ଓ ରାଜେନ୍ଦ୍ର ଦାସ । ଖୋର୍ଦ୍ଧାର ସ୍ୱାଧୀନ ବିଧାୟକ ହେଲେ ରାଜେନ୍ଦ୍ର ସାହୁ । ସେ ବିଜେଡ଼ିକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରନ୍ତି । ଆଉ ରାଜେନ୍ଦ୍ର

ଦାସ ହେଲେ ଧାମନଗରର ବିଜେଡି ବିଧାୟକ । ସେଦିନ ହଠାତ୍ ଧାମନଗର ବିଧାୟକ ରାଜେନ୍ଦ୍ର ଦାସ କାହାକୁ ଫୋନ୍ ଲଗାଇଲେ । ଆଉ ଫୋନ୍‌ରେ କଥାବାର୍ତ୍ତା ହେଲା ବେଳକୁ ସେ ବହୁବାର ମଇତ୍ର, ମଇତ୍ର ବୋଲି କହିଲେ । ରାଜେନ୍ଦ୍ର ଦାସଙ୍କର ଫୋନ୍‌ରେ କଥାବାର୍ତ୍ତା ଶେଷ ହେଲା । ସେଠାରେ ଥିବା ଜଣେ ବ୍ୟକ୍ତି ବଡ଼ବଡ଼ ଆଖିରେ ତାଙ୍କୁ ଚାହିଁଥିଲେ । ଫୋନ୍‌ରେ କଥାବାର୍ତ୍ତା ସରିବା ପରେ ସେ ତାଙ୍କୁ ପଚାରିଲେ ଆପଣଙ୍କର ମଇତ୍ର କିଏ । ଆଉ ଏହି ମଇତ୍ର କେବେଠୁ ହେଲେଣି । ରାଜେନ୍ଦ୍ର ଦାସ କହିଲେ- ମୋ ନାମଧାରୀ ବିଧାୟକ ହେଉଛନ୍ତି ରାଜେନ୍ଦ୍ର ସାହୁ । ସେ ଖୋର୍ଦ୍ଧାର ବିଧାୟକ । କେଜାଣି କାହିଁକି ଆମ ସମନାମଧାରୀ ଦୁଇ ବିଧାୟକଙ୍କ ମଧ୍ୟରେ ସମ୍ପର୍କ ଘନିଷ୍ଠ ହୋଇଯାଇଛି ଆଉ ଆମେ ଏବେ ପରସ୍ପରକୁ ମଇତ୍ର ଡାକୁଛୁ । ଆମେ ଜାଣିଛୁ ଆମେ ଉଭୟେ ପରସ୍ପରକୁ ସାହାଯ୍ୟ କରିବୁ । କେବେ ହେଲେ ଶତ୍ରୁ ବି ହେବୁନାହିଁ । ରାଜନୀତିରେ ଆଜି ଯେ ମଇତ୍ର କାଲି ସେ ଶତ୍ରୁ ଯେ ନହେବ ତାହା କହି ହେବନାହିଁ । ତେବେ ସମନାମଧାରୀ ଦୁଇ ରାଜେନ୍ଦ୍ର ମଇତ୍ର ହୋଇଯାଇ ରାଜନୀତିର ଥିବା ପରମ୍ପରାକୁ ଭଙ୍ଗ କରୁଛନ୍ତି କି ନାହିଁ ତାହା ଦେଖିବାକୁ ବାକି ରହିଛି । ■

## ନାରୀ ବନାମ ପାଟ୍ଟଶାଣୀ



ବାବାମାନେ ସବୁବେଳେ ନାରୀଙ୍କୁ ପ୍ରଶଂସା କରିଥା'ନ୍ତି । ବାବାଙ୍କର ପ୍ରେରଣାର ଉତ୍ସ ହେଉଛନ୍ତି ନାରୀ । କିନ୍ତୁ ବାବା ପ୍ରସନ୍ନ ପାଟ୍ଟଶାଣୀ ଟିକିଏ ଭିନ୍ନ । ହୋଇପାରେ ତାଙ୍କର ଦାଢ଼ି, ମୁଣ୍ଡବାଳ, ଗେରୁଆ ବସ୍ତ୍ର ଓ ବାଡ଼ି ଧରିବାକୁ ଦେଖି ତାଙ୍କୁ ବାବା ଡକା ଯାଉଥାଇପାରେ । କିନ୍ତୁ ବାସ୍ତବତା ଠାରୁ ସେ ଦୂରେଇ ଯାଆନ୍ତି ନାହିଁ । ବାବା ପ୍ରସନ୍ନ ମଧ୍ୟ ନାରୀଙ୍କୁ ପ୍ରଶଂସାରେ ପୋତି ଦିଅନ୍ତି । ତେବେ ଯେଉଁଠି ନାରୀଙ୍କୁ ସେ ନିନ୍ଦା କରନ୍ତି ସେଠାରେ ହାଲକା ମନ୍ତବ୍ୟ ଦେଇଥା'ନ୍ତି । ବାବାଙ୍କ କଥାକୁ କେହି ସିରିୟେସ ନିଅନ୍ତି ନାହିଁ । ସେଦିନ ଦୁର୍ନୀତି ନିବାରଣ ସମ୍ପର୍କରେ ସଭା ହେଉଥାଏ । ବାବାଙ୍କ ପାଖରେ ବସିଥା'ନ୍ତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ନବୀନଙ୍କ ସମ୍ପର୍କରେ ଭାଷଣ ଦେଇ ଟେକାଟେକି କରିବାରେ ବାବା ଓସ୍ତାଦ । ସେ ଦିନ ମଧ୍ୟ ସେ ନବୀନଙ୍କୁ ଟେକି ଚାଲିଲେ । ବାବା କହିଲେ- ନାରୀ ନଚାହିଁଲେ ପୁରୁଷ ଦୁର୍ନୀତି କରିବ ନାହିଁ । ରାମଙ୍କୁ ସୀତା ବିବାହ କରି ଯେତେବେଳେ ଅଯୋଧ୍ୟା ଆସିବାକୁ ବାହାରିଲେ ସେତେବେଳେ ତାଙ୍କୁ ଜନକ ଋଷି ଗୋଟିଏ କଥା କହିଥିଲେ । ସ୍ୱାମୀଙ୍କୁ ନିଜ ବଶରେ ରଖିବୁ । ତୁରନ୍ତ ତାଙ୍କୁ କିଛି ମାଗିବୁ ନାହିଁ । କାଳବେଳ ଦେଖି ମାଗିଲେ ସ୍ୱାମୀ ତୋ କଥାରେ ଉଠ୍‌ବସ୍ ହେବ । ଜନକଙ୍କର ଏହି କଥାକୁ ମା' ସୀତା ପାଳନ କରିଥିଲେ । ତୁରନ୍ତ ସେ କିଛି ମାଗି ନଥିଲେ । କାଳବେଳ ଦେଖି ସେ ସୁନା ହରିଣ ମାଗିଥିଲେ ଆଉ ରାମ ମଧ୍ୟ ସୁନା ହରିଣ ଆଣି ଦେବା ପାଇଁ ଉଦ୍ୟମ କରିଥିଲେ । ସ୍ୱାମୀଙ୍କୁ ଯଦି ନାରୀ ଦୁର୍ନୀତି କରିବାରେ ବାରଣ କରିବ ତେବେ ସ୍ୱାମୀ କେବେ ହେଲେ

ଦୁର୍ନୀତିର ଧାର ମାଡ଼ିବ ନାହିଁ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଅବିବାହିତ । ତେଣୁ ତାଙ୍କର ପତ୍ନୀ ନାହାନ୍ତି । ଆଉ ସେ ସ୍ୱାମୀ ବି ନୁହଁନ୍ତି । ଏହି ଦୃଷ୍ଟିରୁ ସେ ମଧ୍ୟ ଦୁର୍ନୀତି କରିବା ପାଇଁ ଆଗଭର ହେବେନାହିଁ । ଏହା କହିବା ବେଳକୁ ନବୀନଙ୍କ ମୁହଁରେ ସାମାନ୍ୟ ହସ ଝଲକି ଉଠିଥିଲା । ସେଇ ହସ ଟିକକ ଦେଖି ପ୍ରସନ୍ନ ଭାବିନେଲେ ତାଙ୍କ ଭାଷଣ ଦେବାର ଉଦ୍ଦେଶ୍ୟ ସଫଳ ହୋଇଯାଇଛି ଆଉ ସେହିଠାରେ ଭାଷଣଟି ସେ ଶେଷ କରିଦେଲେ । ମାନିବାକୁ ପଡ଼ିବ ପ୍ରସନ୍ନ ପାଟ୍ଟଶାଣୀଙ୍କୁ । କଥା କହି ରାମାୟଣ କି ମହାଭାରତ ଉଦାହରଣ ଦେଇ ମନକୁ ମୋହି ନେବାର କୌଶଳ ଶିଖିଛନ୍ତି ବାବା ପ୍ରସନ୍ନ । କିନ୍ତୁ ବାବା ପ୍ରସନ୍ନ ସେଠାରେ ନିଜ କଥା କହିଲେ ନାହିଁ । ନବୀନ ସିନା ଅବିବାହିତ କିନ୍ତୁ ବାବା ପ୍ରସନ୍ନ ବିବାହିତ । ବାବାଙ୍କୁ ଦୁର୍ନୀତି କରିବା ପାଇଁ ପତ୍ନୀ ଚାପ ପକାଉଛନ୍ତି ନା ଦୁର୍ନୀତିରୁ ଦୂରେଇ ରହିବା ପାଇଁ ପରାମର୍ଶ ଦେଉଛନ୍ତି । ଏ କଥା ବାବା ଅନ୍ୟ ଭାଷଣରେ କହିବାର ଆବଶ୍ୟକତା ରହିଛି । ■

## ଦେବୀଙ୍କ କୋଟ୍



ଏମିତି ଉଚ୍ଚଶିକ୍ଷା, ପର୍ଯ୍ୟଟନ, ସଂସ୍କୃତି ମନ୍ତ୍ରୀ ଦେବୀପ୍ରସାଦ ମିଶ୍ରଙ୍କୁ କୋଟ୍, ଟାଇ ପିନ୍ଧିଥିବାର କେହି ଦେଖିଛନ୍ତି ବୋଲି କହିବେ ତେବେ ତାଙ୍କ ମୁହଁକୁ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇବେ ହିଁ ଅନାଇବେ । ଅବଶ୍ୟ ଦେବୀଙ୍କ ପୋଷାକ ଯେ ନେତାଙ୍କ ପରି ତାହା ନୁହେଁ । ସେ ଅନ୍ୟ ନେତାଙ୍କ ପରି ଧୋତି ପଂଜାବୀ, କିମ୍ବା ପାଇଜାମା, କୁର୍ତ୍ତା ବି ପିନ୍ଧନ୍ତି ନାହିଁ କି ଧଳା ପ୍ୟାଂଟକୁ ଧଳା ସାର୍ଟ ପିନ୍ଧି ଧୋବ ଫରଫର ନେତାଙ୍କ ପରି ମଧ୍ୟ ହେବାକୁ ଚାହାନ୍ତି ନାହିଁ । ଦେବୀଙ୍କର ସାଧାରଣ ପୋଷାକ ହେଲା ଫୁଲ୍‌ପ୍ୟାଂଟ ଆଉ ହାଫ୍ ସାର୍ଟ । କେତେବେଳେ କେମିତି ସେ ଫୁଲ୍‌ସାର୍ଟ ମଧ୍ୟ ପିନ୍ଧିଥା'ନ୍ତି । କିନ୍ତୁ ସେ ଦିନର ଦୃଶ୍ୟଟି ବଡ଼ ଅଜବ ଥିଲା । ଦେବୀ ଅତିଥି ହୋଇଯାଇଥିଲେ ରାୟପୁରର ରାଜକୁମାର କଲେଜକୁ । ଗୋଟିଏ ସମୟରେ ଏହି କଲେଜରେ କେବଳ ରଜାଙ୍କ ପୁଅମାନେ ପଢୁଥିଲେ । ଏବେ ଯଦିଓ ଏହି କଲେଜର ସମସ୍ତ ଛାତ୍ର ରଜାଙ୍କ ପୁଅ ନୁହନ୍ତି ତେବେ ପାଠ ପଢୁଥିବା ଛାତ୍ରଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ରାଜକୁମାର । ଏମିତି ରାଜବାଟୀ, ରଜାଙ୍କ ଶାସନ ସବୁ ଆଇମା' କାହାଣୀ ହୋଇଗଲାଣି । ତେବେ ଦେବୀଙ୍କ ପାଇଁ ଏହା ଯେପରି କାହାଣୀ ନୁହେଁ । ଦେବୀ ଭଲ ରୂପେ ଜାଣିଛନ୍ତି ବର୍ତ୍ତମାନ ରଜାଙ୍କର ଆର୍ଥିକ ପରିସ୍ଥିତି କେଉଁ ଆଡ଼କୁ । ଅନେକ ରଜା ଅଛନ୍ତି ସେମାନଙ୍କ ରାଜବାଟୀରେ ରଙ୍ଗ ବି ଲଗାଇ ପାରୁନାହାନ୍ତି । ରକ୍ଷଣାବେକ୍ଷଣ ଅଭାବରୁ ରାଜବାଟୀ ମଧ୍ୟ ଦୁର୍ବଳ ଅବସ୍ଥାକୁ ଆସିଗଲାଣି । ଏହାସତ୍ତ୍ୱେ ରଜାଙ୍କ ପୁଅମାନେ ବେଶପୋଷାକରେ କମ୍ ନଥା'ନ୍ତି । କୌଣସି ଉତ୍ସବରେ ଯଦି ରାଣୀ କିମ୍ବା ରାଜକନ୍ୟା ଦିନ ବେଳେ ଯୋଗ ଦେଉଥିବେ ତେବେ ସେଠାରେ ସେମାନେ ଦାମୀ ଗଗ୍ଲସ୍ ପିନ୍ଧିଥିବାର ଦୃଶ୍ୟ ଦେଖିବାକୁ ମିଳିବ । ସେହିପରି ଉତ୍ସବରେ ଯୋଗ ଦେଲେ

ରଜା ହୁଅନ୍ତୁ କିମ୍ବା ରାଜକୁମାର ହୁଅନ୍ତୁ କୋଟ୍ ପିନ୍ଧି ଆସିଥା'ନ୍ତି । ରାଜକୁମାର କଲେଜରେ ରଜାଙ୍କ ପୁଅମାନେ ପଢୁଥିବାରୁ ସେଠାରେ ଦେବୀଙ୍କୁ ଓଡ଼ିଶାର କେତେକ ରଜା କୋଟ୍, ଟାଏ ପିନ୍ଧି ଯିବା ପାଇଁ ପ୍ରସ୍ତାବ ଦେଇଥିଲେ । ଅବଶ୍ୟ ଦେବୀଙ୍କୁ ପ୍ରଥମେ ପ୍ରଥମେ କୋଟ୍, ଟାଏ ପିନ୍ଧି ଯିବା ପାଇଁ ଅଡୁଆ ଲାଗିଥିଲା । କିନ୍ତୁ ରଜାପୁଅଙ୍କ ଉତ୍ସବରେ ଯୋଗ ଦେବାକୁ ହେଲେ କୋଟ୍, ଟାଏ ପିନ୍ଧି ନଗଲେ ଓଡ଼ିଶା ଗରିବ ବୋଲି ମନ୍ତ୍ରୀଙ୍କ ଚେହେରାରୁ ବାରି ହୋଇଯିବ । ଯେଉଁଥିପାଇଁ ଦେବୀ ଉତ୍ସବରେ କୋଟ୍, ଟାଏ ପିନ୍ଧି ଯୋଗ ଦେଇଥିଲେ । ଅନେକ ମଧ୍ୟ ସେଠାରେ ଦେବୀଙ୍କୁ ରାଜକୁମାର ବୋଲି ଭାବି ନେଇଥିଲେ । ଦେବୀଙ୍କ ଗୋରା ତକତକ ଚେହେରାକୁ କୋଟ୍, ଟାଏ ବେଶ୍ ମାନିଥିଲା । ଏବେ ଦେବୀ ସେହି କୋଟ୍, ଟାଏକୁ ଯତ୍ନର ସହ ସଜାଡ଼ି ରଖିଛନ୍ତି ଆଉ ଖୋଜୁଛନ୍ତି ସେଭଳି ଏକ ଉତ୍ସବକୁ । ■

## ଯୁବତୀ ଓ ପାଟ୍ଟଶାଣୀ



ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କୁ ଅନେକ ଖୋଲା ହୃଦୟର ଲୋକ ବୋଲି କହନ୍ତି । ଯିଏ ଯେଉଁ କାମ ପାଇଁ ଗଲା ତାହାର କାମ ହେବା ପାଇଁ ପ୍ରସନ୍ନ ତୁରନ୍ତ ହାତ କାଟି ଚିଠି ଲେଖି ଦିଅନ୍ତି କିମ୍ବା ଫୋନ୍‌ରେ ତାଙ୍କ ପାଇଁ ସୁପାରିଶ କରନ୍ତି । ପ୍ରସନ୍ନଙ୍କ ଦରବାରର ଅନ୍ୟ ନାମ ହେଲା ଅଫେରନ୍ତ ଦରବାର । ମାନେ ଯିଏ ଯେଉଁ କାମ ନେଇ ଯାଏ ସେଥିରେ ସେ ଆଉ ଫେରେନାହିଁ । ସେଦିନ ପ୍ରସନ୍ନ ଗାମୁଛାଟିଏ ପିନ୍ଧି ଖାଲି ଦେହରେ ବସିଥା'ନ୍ତି । ଦରବାର ପତଳା ହୋଇଆସିଲାଣି । ହଠାତ୍ ଜଣେ ବ୍ୟକ୍ତିଙ୍କ ଉପରେ ପ୍ରସନ୍ନଙ୍କ ନଜର ପଡ଼ିଲା । ପ୍ରସନ୍ନ ତାଙ୍କୁ ଲକ୍ଷ୍ୟ କରି ପଚାରିଲେ- କି କାମ ଅଛି କହ, ସଙ୍ଗେସଙ୍ଗେ କରିଦେବା । ସେ ବ୍ୟକ୍ତି ଜଣଙ୍କ କହିଲେ- ଆଜ୍ଞା, ସେହି ବଦଳି କଥା । ପ୍ରସନ୍ନ କହିଲେ- ଓ ହୋ, ସେହି ବଦଳି । ହଉ କହ, କାହାକୁ କହିବା । ବ୍ୟକ୍ତି ଜଣଙ୍କ କହିଲେ- ଆଗରୁ କହିଥିଲି । ପ୍ରସନ୍ନ କହିଲେ- ଆଗପଛ ମୁଁ କିଛି ଜାଣିନାହିଁ । ମୁଁ ସବୁବେଳେ ବର୍ତ୍ତମାନକୁ ବିଶ୍ୱାସ କରେ । ସିଧାସଳଖ କହ କାମ କ'ଣ । ବ୍ୟକ୍ତି ଜଣଙ୍କ କହିଲେ- ଲତିକାଙ୍କର ବଦଳି ହେବ । ପ୍ରସନ୍ନ କହିଲେ- ଲତିକା କିଏ ଆଉ ବଦଳି କେଉଁଠିକୁ ହେବ । ବ୍ୟକ୍ତି ଜଣଙ୍କ କହିଲେ- ଲତିକା ହେଉଛନ୍ତି ତାଙ୍କର ଜଣେ ସମ୍ପର୍କୀୟା । ସେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଅଛନ୍ତି । ଭୁବନେଶ୍ୱର ଡିଆଇଙ୍କୁ କହିଦେଲେ ସେ ତାଙ୍କୁ ତାଙ୍କର ପସନ୍ଦ ମୁତାବକ ସ୍କୁଲକୁ ବଦଳି କରିଦେବେ । ପ୍ରସନ୍ନ କହିଲେ- ଲଗାଅ ଡିଆଇଙ୍କୁ । ଫୋନ୍ ଲାଗିଲା ଡିଆଇଙ୍କର । ପ୍ରସନ୍ନ ତାଙ୍କୁ କିଛି କହିବା ପୂର୍ବରୁ ସେପଟୁ ନମସ୍କାର ଶବ୍ଦ ଆସିଲା । ପ୍ରସନ୍ନ ତାଙ୍କୁ କହିଲେ- ନମସ୍କାର, ନମସ୍କାର । ସବୁ ଭଲ ଚାଲିଛି ତ । ଆଉ ସାହିତ୍ୟ ଚର୍ଚ୍ଚା ହେଉଛି ତ । ବହୁଦିନ ହେଲା ଦେଖା ହୋଇନାହିଁ । ନିକଟରେ ଦେଖା ହେବ ନିଶ୍ଚିତ । ଗୋଟିଏ କାମ କରିଦିଅ । ମୋର ସେ ନିଜର ଲୋକ । ସେପଟୁ ସ୍ୱର ଶୁଭିଲା ଆଜ୍ଞା କ'ଣ କୁହନ୍ତୁ । ପ୍ରସନ୍ନ କହିଲେ-

ଲତା ନାମଧାରୀ ଜଣେ ଶିକ୍ଷୟିତ୍ରୀ ଅଛନ୍ତି । ତାଙ୍କୁ ବଦଳି କରିବ । ସେପଟୁ ସ୍ୱର ଶୁଭିଲା- ଆଜ୍ଞା ଲତା ହୋଇ ନଥିବ । ଲତିକା ହୋଇଥିବେ । ପ୍ରସନ୍ନ ସଙ୍ଗେସଙ୍ଗେ ପାଖରେ ଥିବା ଉକ୍ତ ବ୍ୟକ୍ତିଙ୍କୁ ପଚାରିଲେ- ସେ ଲତା ନା ଲତିକା । ବ୍ୟକ୍ତି ଜଣଙ୍କ କହିଲେ- ମୂଳରୁ ମୁଁ କହୁଛି ଯେ ଲତିକା ବୋଲି । ମୋ ପାଟିରୁ କେବେ ବି ବାହାରିନି ଲତା । ସଙ୍ଗେସଙ୍ଗେ ପ୍ରସନ୍ନ ତାଙ୍କ କହିବା ଢଙ୍ଗ ବଦଳାଇ ଦେଲେ । ଟେଲିଫୋନ୍‌ରେ ଡିଆଇଙ୍କୁ କହିଲେ- ଆରେ ମୁଁ ତ ବୁଢ଼ା ହୋଇଗଲିଣି । ଟୋକା ହୋଇଥିଲେ ସିନା ଯୁବତୀ କି ମହିଳାଙ୍କ ନାମ ମନେ ରହନ୍ତା । ମୋର ମଧ ପ୍ରେମ କରିବାର ବୟସ ବି ଚାଲିଗଲାଣି । ତେଣୁ ଆଉ ମହିଳାଙ୍କ ନାମ ମନେ ରହୁନାହିଁ । ମହିଳାଙ୍କ ନାଁ ମନେ ରଖିବା ହେଉଛି ଟୋକାଙ୍କର କାମ । ତେଣୁ ମୋର ଭୁଲ୍ ହୋଇଯାଇଛି । ସେ ଲତା ନୁହେଁ, ଲତିକା । ତା' କାମଟି କରିଦିଅ । ଏତିକି କହି ପ୍ରସନ୍ନ ହୋ, ହୋ ହୋଇ ହସି ଉଠିଲେ ଆଉ ଫୋନ୍‌ଟିକୁ ରଖିଦେଲେ । ନିଜ ଦାଢ଼ିକୁ ଆଉଁସିଲା ବେଳକୁ ପାଖରେ ଥିବା ଲୋକଙ୍କୁ ଦାଢ଼ିକୁ ଦେଖାଇ କହିଲେ- ମୋ ଦାଢ଼ି କ'ଣ କଳା ଅଛି । ସବୁ ପାଚି ଗଲାଣି । ମୁଁ ଆଉ ଟୋକା ନାହିଁ ବୁଢ଼ା ହୋଇଗଲିଣି । ପ୍ରେମ କରିବାର ବୟସ ବି ମୋର ଆଉ ନାହିଁ । ଯୁବତୀ ଆଉ ମହିଳାଙ୍କ ନାମ ତେଣୁ ମନେ ରହୁନାହିଁ । ପୁଣି ପ୍ରସନ୍ନ ହୋ, ହୋ ହୋଇ ହସିଲେ । ତାଙ୍କ ସହିତ ସେଠାରେ ଥିବା ସବୁ ବ୍ୟକ୍ତି ମଧ ଜୋର୍‌ରେ ହସିଲେ । ■

## ମୁଞ୍ଛ କରାମତି



ମୁଞ୍ଛ ମାନେ ନିଶ । ନିଶର ପୁଣି କ'ଣ କରାମତି ଥାଏ । ଏହା ଯେକୌଣସି ବ୍ୟକ୍ତି ପ୍ରଶ୍ନ କରିପାରନ୍ତି । କିନ୍ତୁ ଏଠାରେ ଯାହାର ନିଶ କଥା କୁହାଯାଉଛି ତାଙ୍କୁ ଦେଖିଦେଲେ ଏହି ପ୍ରଶ୍ନ ଆଉ ପଚରା ଯିବାର ପ୍ରସଙ୍ଗ ଆସିବ ନାହିଁ । ସେ ହେଲେ ବ୍ରଜରାଜନଗର ବିଧାୟକ ଅନୁପ ସାଏ । ତାଙ୍କ ଚେହେରା ଯେମିତି ନିଶ ବି ସେମିତି । ନିଶକୁ ମୋଡ଼ି ଟାଗଡ଼ା କରି ରଖିବା ତାଙ୍କର ଅଭ୍ୟାସ । ତାଙ୍କର ମତ ହେଲା- ବ୍ରଜରାଜନଗରରେ ଆଗରୁ ଦାଢ଼ିଆବାବା ଥିଲେ । ମାନେ ବ୍ରଜରାଜନଗର ବିଧାୟକ ଥିଲେ ପ୍ରସନ୍ନ ପଣ୍ଡା । ଯାହାଙ୍କର ଦାଢ଼ି ଥିଲା । ସେ ଥରେ କି ଦୁଇଥର କି ତିନିଥର ନୁହେଁ ଅନେକ ଥର ବ୍ରଜରାଜନଗରରୁ ବିଧାୟକ ହୋଇଥିଲେ । ଅନୁପଙ୍କ ମତ ହେଲା- ଦାଢ଼ି ଥିବାରୁ ସେ ବହୁବାର ବ୍ରଜରାଜନଗରରୁ ବିଧାୟକ ହୋଇଛନ୍ତି । ଏବେ ସେ ନିଜକୁ ନିଶୁଆବାବା ବୋଲି କହୁଛନ୍ତି । ଏହା କହିବାର କାରଣ ମଧ ରହିଛି । ତାହା ହେଲା ବ୍ରଜରାଜନଗରରେ ତାଙ୍କୁ ଆଉ ଦାଢ଼ିଆବାବାଙ୍କୁ ଛାଡ଼ିଦେଲେ କ୍ରମାଗତ ଭାବେ ବିଜୟୀ ହେବା ବଡ଼ କାଠିକର । ଯେତେବେଳେ ଦାଢ଼ିଆବାବାଙ୍କର ବିଜୟ ହେଉଥିଲା ଏହା ତାଙ୍କ ଦାଢ଼ି ପାଇଁ ଥିଲା ବୋଲି ପ୍ରଚାର ହେଉଥିଲା । ଏବେ ୨୦୦୦ ମସିହାରୁ କ୍ରମାଗତ ଭାବେ ଅନୁପ ତିନିଥର ବିଜୟୀ ହେଲେଣି । ଏହା ତାଙ୍କ ନିଶ ପାଇଁ ହୋଇଛି ବୋଲି ତାଙ୍କର ଧାରଣା ସୃଷ୍ଟି ହୋଇଛି ।

ଅନୁପ ମଧ୍ୟ ତାଙ୍କର ନିଶକୁ ଯେତେବେଳେ ଟିକିଏ ସମୟ ପାଆନ୍ତି ସେତେବେଳେ ମୋଡ଼ନ୍ତି । ଅନୁପଙ୍କ ମତ ହେଲା- ହାତ ଅଳସେ ନିଶ ବଙ୍କା ହୋଇଥାଏ । କିନ୍ତୁ ସେ ତାଙ୍କ ହାତକୁ ଅଳସରେ ରଖନ୍ତି ନାହିଁ । ଯେଉଁଥିପାଇଁ ନିଶକୁ ସେ ସବୁବେଳେ ମୋଡ଼ିବାରେ ଲାଗିଥା'ନ୍ତି । ନିଶ ଯଦି କଡ଼ା ରହିଲା ତା' ହେଲେ ତାଙ୍କର ଚେହେରା ମଧ୍ୟ କଡ଼ା ହେବ । ଆଉ ଚେହେରା ଯଦି କଡ଼ା ହେଲା ତେବେ ତାଙ୍କୁ ଭୋଟ ମଧ୍ୟ କଡ଼ା ଭାବେ ମିଳିବ । ଏହି ଚିନ୍ତାଧାରାକୁ ନେଇ ଅନୁପ ଆଗେଇ ଚାଲିଛନ୍ତି । ନିର୍ବାଚନ ଯେତେ ପାଖେଇ ଆସୁଛି ଅନୁପ ତାଙ୍କର ନିଶକୁ ସେତିକି ଅଧିକ ମୋଡ଼ିବାରେ ଲାଗନ୍ତି । ନିଶ ମୋଡ଼ିଲେ ତାଙ୍କର ବିଜୟ ସୁନିଶ୍ଚିତ ବୋଲି ସେ ଧରି ନିଅନ୍ତି । ଏମିତି ନିଶ ମୋଡ଼ିମୋଡ଼ି ତଳସରା ଉପନିର୍ବାଚନରେ ପ୍ରଫୁଲ ମାଝୀଙ୍କୁ ସେ ଜିତାଇ ଦେଇଥିଲେ । ଏହି ନିଶ ମୋଡ଼ା ଆଗରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ମଧ୍ୟ ଅସ୍ତ୍ର କାମ ଦେଲାନାହିଁ । ଅନୁପଙ୍କ ପରାମର୍ଶ ହେଉଛି ବିଧାୟକମାନେ ଯାହାର ନିଶ ଅଛି ସେମାନେ ତାକୁ ତେଲ ପାଗ ଦେଇ ମୋଡ଼ନ୍ତୁ । ଆଉ ଥରେ ନିଶ ମୋଡ଼ି ହୋଇ ଟାଗଡ଼ା ହୋଇଗଲେ ସେମାନଙ୍କର ବିଜୟ ସୁନିଶ୍ଚିତ । ଦେଖାଯାଉ ନିଶ ମୋଡ଼ମୋଡ଼ି ଅନୁପ କେତେଥର ନିର୍ବାଚନରେ ବିଜୟୀ ହେଉଛନ୍ତି । ■

## ଅସାହିତ୍ୟିକ ପ୍ୟାରୀ



ଓଏଏସ୍ ପ୍ରଶାସନିକ ଭବନରେ ସମାରୋହ ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ଆଇପିଏସ୍ ଅଫିସର ସ୍ୱର୍ଗତ ଦୁର୍ଗାମାଧବ ମିଶ୍ରଙ୍କର ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ ଏକ ଉତ୍ସବର ଆୟୋଜନ ହୋଇଥିଲା । ଏଥିରେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ମୁଖ୍ୟ ଅତିଥି ଥା'ନ୍ତି । ଏହା ଏକ ସାହିତ୍ୟ ସଭା ଥିଲା । ସାହିତ୍ୟିକମାନେ ଏହି ଉତ୍ସବରେ ଭରପୂର ଥିଲେ । ଅବଶ୍ୟ ପ୍ୟାରୀମୋହନ ମହାପାତ୍ରଙ୍କୁ ଏହି ଉତ୍ସବଟି ଅଡୁଆ ଲାଗୁଥିଲା ବୋଲି ବେଶ୍ ବାରି ହୋଇଯାଉଥିଲା । ପ୍ୟାରୀମୋହନ ଯେତେବେଳେ ଭାଷଣ ଦେଲେ ସେତେବେଳେ ମଧ୍ୟ ତାଙ୍କର ଏହି ଅସ୍ୱସ୍ତି କାହିଁକି ଥିଲା ତାହା ଜଣାପଡ଼ିଲା । କହୁକହୁ ପ୍ୟାରମୋହନ ଓଡ଼ିଆ ସାହିତ୍ୟ ଆଡ଼କୁ ଚାଲିଗଲେ । ନିଜେ କିପରି କବିତା ଲେଖୁଥିଲେ ତାହା ମଧ୍ୟ ବର୍ଣ୍ଣନା କଲେ । ଯେତେ ଚାହିଁଲେ ମଧ୍ୟ ତାଙ୍କର କବିତା ପତ୍ରପତ୍ରିକା କି ସମ୍ବାଦପତ୍ରରେ ପ୍ରକାଶିତ ହେଲାନାହିଁ । ଆଇଏଏସ୍ ପାଇବା ପରେ ସେ ମଧ୍ୟ କବିତା ପ୍ରକାଶ କରିବାକୁ ଚାହିଁଲେ । ତାହା ମଧ୍ୟ ପ୍ରକାଶିତ ହେଲାନାହିଁ । କେହି ଜଣେ ବନ୍ଧୁ ତାଙ୍କୁ କହିଲେ ଯେ, ତାଙ୍କ ନାମ ପାଖରେ ଆଇଏଏସ୍ ଲେଖିଦେଲେ କବିତା ଛପା ହୋଇଯିବ । ସେ ତାଙ୍କ ନାମ ପାଖରେ ଆଇଏଏସ୍ ଲେଖିଦେବା ପରେ କବିତା ଛପା ହୋଇଗଲା । ମାନେ କବିତା ଭଲ କି ମନ୍ଦ ତାହା ଜାଣିବାର ଆବଶ୍ୟକତା ନାହିଁ । ଆଇଏଏସ୍ ହୋଇଗଲେ

ଯତେ ଯେମିତି ରାତାରାତି ସେ ହୋଇଯିବେ ସାହିତ୍ୟିକ । ତେବେ ସେତେବେଳକୁ ଆଉ ତାଙ୍କର କବିତା ପ୍ରୀତି ନଥିଲା । ଯେମିତି ମଂଜିଟିଏ ଗଜା ହେବାପରେ ପାଣିର ଅଭାବରେ ଅକାଳରେ ଗଜା ନଷ୍ଟ ହୋଇଯାଏ ସେହି ପରିସ୍ଥିତି ତାଙ୍କ ପାଇଁ ହୋଇଥିଲା । ଯେତେବେଳେ ସେ କବିତା ଲେଖୁଥିଲେ ସେତେବେଳେ ତାଙ୍କର ସେହି କବିତା ଛପା ହେଲାନାହିଁ । ଯେତେବେଳେ କବିତା ଲେଖିବା ପାଇଁ ସ୍ପୃହା ନାହିଁ ସେତେବେଳେ ତାଙ୍କର କବିତା ଛପା ହେଲା । ତେଣୁ କବିତା ଲେଖିବାରେ ସେ ଆଉ ମନୋନିବେଶ କରିପାରିଲେ ନାହିଁ । ସାହିତ୍ୟ ନଥିଲେ ମାନବ ଜୀବନର ମୂଲ୍ୟ କିଛିନାହିଁ ବୋଲି ଯେଉଁମାନେ କହୁଛନ୍ତି ସେଥିସହିତ ସେ ମଧ୍ୟ ଏକମତ ନୁହନ୍ତି । ହୃଦୟ ସହିତ ଶ୍ରଦ୍ଧା ଥିଲେ ଆଉ କର୍ମଯୋଗୀ ହେବା ସହିତ ସମସ୍ତଙ୍କ ପ୍ରତି ଭଲ ପାଇବା ମନୋବୃତ୍ତି ଥିଲେ ହିଁ ମାନବ ଜୀବନ ହେବ ଶ୍ରେଷ୍ଠ ଜୀବନ । ତାଙ୍କପରି ଜଣେ ଅସାହିତ୍ୟିକକୁ ସାହିତ୍ୟ ଉତ୍ସବରେ କହିବା ପାଇଁ ସୁଯୋଗ ଦିଆଯାଇଥିବାରୁ ସେ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ ଦେଇଥିଲେ । ଏମିତି ପ୍ୟାରୀମୋହନ ହେଉଛନ୍ତି ବିଜେଡିର ରାଜ୍ୟସଭା ସଦସ୍ୟ । ପୁଣି ନବୀନ ପଟ୍ଟନାୟକଙ୍କ ହ୍ୟାଟ୍ରିକ ମୁଖ୍ୟମନ୍ତ୍ରୀ ପାଇଁ ସବୁ ଶ୍ରେୟ ପ୍ୟାରୀମୋହନଙ୍କ ଆଡ଼କୁ ଯାଇଛି । ପ୍ୟାରୀମୋହନ ମଧ୍ୟ ବିଜେଡିର ଦ୍ୱିତୀୟ କ୍ଷମତା କେନ୍ଦ୍ର ଅଟନ୍ତି । ପ୍ୟାରୀମୋହନଙ୍କୁ ସାହିତ୍ୟ ସଭାରେ ଅତିଥି କରି ଆୟୋଜକମାନେ ଭାବି ନେଇଥିଲେ ଯେ, କିଛି ଗୋଟାଏ ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଭାଷା ସମ୍ପର୍କରେ ଘୋଷଣା ପ୍ୟାରୀମୋହନ କରିପାରନ୍ତି । କିନ୍ତୁ କିଏ ଡାଳେଡାଳେ ଗଲେ ପ୍ୟାରୀମୋହନ ଯେ ପତରେପତରେ ଯାଆନ୍ତି ତାହା କେହି ଜାଣନ୍ତି ନାହିଁ । ନିଜକୁ ଅସାହିତ୍ୟିକ କହି ପ୍ୟାରୀମୋହନ ତାଙ୍କର ଭାଷଣଟି ଶେଷ କଲେ ଆଉ ଭାଷଣରେ ପଦପଦବୀରେ ଥିଲେ କିପରି କବିତା ଛପା ହୁଏ ତାହାର ନିଦର୍ଶନ ମଧ୍ୟ ଦେଲେ । ପ୍ୟାରୀମୋହନଙ୍କ ଅସାହିତ୍ୟିକ ଭାଷଣ ସାହିତ୍ୟିକମାନଙ୍କୁ କେଉଁ ଆଡ଼କୁ ନେବ ଜଣାନାହିଁ । ତେବେ ସାହିତ୍ୟ ଉତ୍ସବରେ ପ୍ୟାରୀମୋହନଙ୍କୁ ସାହିତ୍ୟିକମାନେ ଆଉ ଅତିଥି କରୁଛନ୍ତି କି ନାହିଁ ତାହା ଦେଖିବାକୁ ବାକି ରହିଛି । ■

## ବ୍ୟାକରଣ ଓ ସଂଜୀବ...

ସଂଜୀବ ସାହୁ ଜଣେ ଭାଗ୍ୟବାନ ନେତା । ଏମିତି କେବେବି ସେ ଭାବି ନଥିଲେ ବିଜେଡିକୁ ଆସି ଉପନିର୍ବାଚନରେ ବୀରମହାରାଜପୁରରୁ ପ୍ରାର୍ଥୀ ହୋଇ ବିଜୟୀ ହେବେ । ପୁଣି ବହୁ ବରିଷ୍ଠ ବିଧାୟକ ଥିବାବେଳେ ସେ କନିଷ୍ଠ ହୋଇ ମଧ୍ୟ ମନ୍ତ୍ରୀ ହେବେ ବୋଲି । ଆଉ ତାଙ୍କୁ ଗଣଶିକ୍ଷା ଠାରୁ ଆରମ୍ଭ କରି ପରିବହନ ବିଭାଗ ମିଳିବ ବୋଲି । ଏମିତି ସଂଜୀବ ୧୯୮୮ ମସିହାରେ ବୀରମହାରାଜପୁରର ଜନତା ଦଳର ସଭାପତି ଥିଲେ । ଅଙ୍ଗପଡ଼ା ଗ୍ରାମପଂଚାୟତର ସେ ମଧ୍ୟ ସରପଂଚ ଥିଲେ । କିଶୋରନଗର ବ୍ଲକର ସେ ବି ଉପାଧ୍ୟକ୍ଷ ଥିଲେ । ହାଇସ୍କୁଲର ମଧ୍ୟ ସେ ପ୍ରଧାନ ଶିକ୍ଷକ ଥିଲେ । ବହୁ ଏମ୍‌ଇ ସ୍କୁଲ,

ହାଇସ୍କୁଲ ଏବଂ କଲେଜ ପ୍ରତିଷ୍ଠା କରିବାରେ ତାଙ୍କର ବି ପ୍ରମୁଖ ଭୂମିକା ରହିଛି । ବିଭିନ୍ନ ସ୍ତରରେ ଭିନ୍ନଭିନ୍ନ ପଦବୀ ହେଉଛି ତାଙ୍କର ଅଭିଜ୍ଞତାର ଗୋଟିଏ ଗୋଟିଏ ସୋପାନ । କିନ୍ତୁ ଶିକ୍ଷକ ଥିବା ସମୟରେ ତାଙ୍କର ଅଭିଜ୍ଞତାକୁ ସେ ପାଶୋରି ପାରୁନାହାନ୍ତି । ଏମିତି ୨୦୦୦ ମସିହା ପରେ ଅନୁଷ୍ଠିତ ଉପନିର୍ବାଚନରେ ବୀରମହାରାଜପୁରରୁ ସଂଜୀବ ସାହୁ ବିଜେଡିର ବିଧାୟକ ହେବାପରେ ଆଉ ପଛକୁ ଫେରି ଚାହିଁନାହାନ୍ତି । ୨୦୦୪ରେ ସେ ବୀରମହାରାଜପୁରରୁ ପୁଣି ବିଧାୟକ ହେଲେ । ପୁଣି ୨୦୦୯ରେ ଆଠମଲିକରୁ ବିଧାୟକ ହୋଇଛନ୍ତି । ୨୦୦୪ ପରେ ସେ ମନ୍ତ୍ରୀ ହୋଇଛନ୍ତି । ଏମିତି ସୂଚନା, କାରିଗରୀ, ବିଜ୍ଞାନ, ପଂଚାୟତିରାଜ, ଗଣଶିକ୍ଷା ବିଭାଗର ସେ ମନ୍ତ୍ରୀ ହୋଇଥିବା ବେଳେ ଏବେ ସେ ଗୁରୁତ୍ୱପୂର୍ଣ୍ଣ ବାଣିଜ୍ୟ ଓ ପରିବହନ ବିଭାଗର ମନ୍ତ୍ରୀ । ତେବେ ମନ୍ତ୍ରୀ କି ବିଧାୟକ କି ନେତା ଅଭିଜ୍ଞତାକୁ ସେ ଅନ୍ୟମାନଙ୍କ ଆଗରେ ସେମିତି କିଛି ବଖାଣୁ ଥିବାର ଦେଖାଯାଏ ନାହିଁ । ବେଳେବେଳେ ସଂଜୀବଙ୍କର ମନେ ପଡ଼ିଯାଏ ଶିକ୍ଷକତା ଜୀବନ । ମନ୍ତ୍ରୀ ଚୌକିରେ ବସିଥିଲେ ମଧ୍ୟ ସେ ସେହି ସମୟରେ ଆଉ ଥୟ ଧରି ରହିପାରନ୍ତି ନାହିଁ । ହଠାତ୍ ତାଙ୍କ ପାଖରେ ବସିଥିବା ବ୍ୟକ୍ତିମାନଙ୍କ ସହିତ ସେ ଟିକେ ଥଟ୍ଟାମଜା ଆରମ୍ଭ କରିଦିଅନ୍ତି । ଏହି ସମୟରେ ତାଙ୍କ ପାଟିରୁ ବିଭିନ୍ନ ବାକ୍ୟ ବାହାରିଆସେ । ସଂଜୀବ ତାଙ୍କ ପାଖରେ ବସିଥିବା ବିଭିନ୍ନ ବ୍ୟକ୍ତିମାନଙ୍କୁ ପଚାରନ୍ତି- କୁହ ଏଇଟା କେଉଁ ସମାସ । 'ଥ' ହୋଇ ଚାହିଁ ରହିଥା'ନ୍ତି ସେଠାରେ ଥିବା ବ୍ୟକ୍ତିମାନେ ସଂଜୀବଙ୍କ ମୁହଁକୁ । ସଂଜୀବ ତାଙ୍କର ସ୍ୱଭାବ ସୁଲଭ ଢଙ୍ଗରେ କହନ୍ତି- ବ୍ୟାକରଣ ତ ଜାଣିନାହଁ ଆଉ ଅଧିକ କଥା କ'ଣ କହିବି । ଏହା ହେଉଛି ଅମୂକ ସମାସ । ସଂଜୀବ ମନ୍ତ୍ରୀମାନଙ୍କ ମଧ୍ୟରେ ବ୍ୟାକରଣ ଓସ୍ତାଦ ବୋଲି ଏବେ ଆଲୋଚନା ହେଲାଣି । ଅବଶ୍ୟ ରାଜନୀତିରେ ବ୍ୟାକରଣର ଆଦୌ ଆବଶ୍ୟକତା ନଥିଲେ ମଧ୍ୟ ସଂଜୀବ ବ୍ୟାକରଣ ପ୍ରୀତିକୁ ଛାଡ଼ି ପାରୁନାହାନ୍ତି । ଦେଖାଯାଉ ବ୍ୟାକରଣ ପ୍ରୀତି ସଂଜୀବଙ୍କୁ ଭବିଷ୍ୟତ ରାଜନୀତିରେ କେତେ ସଫଳ ଆଡ଼କୁ ନେଉଛି । ■

## ରାସ୍ତାକଡ଼ର ବିଧାୟକ



ଏମିତି ଓଡ଼ିଶାର ସ୍ଲମ୍‌ଡ଼ଗ ବିଧାୟକ ପ୍ରସଙ୍ଗ ଯଦି ଉଠେ ତେବେ ସିଧାସଳଖ ଯିବ ମଧ୍ୟ-ଭୁବନେଶ୍ୱର ବିଜେଡି ବିଧାୟକ ବିଜୟ ମହାନ୍ତିଙ୍କ ଆଡ଼କୁ । ରାଜଧାନୀରେ ଥିବା ବସ୍ତି ସହିତ ବିଜୟଙ୍କର ସମ୍ପର୍କ ନିବିଡ଼ ଥିବାରୁ ତାଙ୍କୁ କୁଆଡ଼େ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଅନ୍ୟ ନେତାଙ୍କ ଆଗରେ ପ୍ରଂଶସା କରି ସ୍ଲମ୍‌ଡ଼ଗ ବିଧାୟକ ବୋଲି ବର୍ଣ୍ଣନା କରନ୍ତି । ଏବେ ସେମିତି ଜଣେ ବିଧାୟକଙ୍କ ପାଖକୁ ଯିବା । ଏହି ବିଧାୟକ ଜଣଙ୍କ ହେଲେ ହୃଷିକେଶ ନାୟକ । କେନ୍ଦୁଝର ଜିଲାର ପାଟଣା ନିର୍ବାଚନମଣ୍ଡଳୀରୁ ସେ ବିଜେଡି ଟିକେଟରେ ନିର୍ବାଚିତ ହୋଇଛନ୍ତି । ତାଙ୍କର ଗାଁ ହେଉଛି କାଶିପାଳ । ଗାଁର ମାତ୍ର ୨ କିଲୋମିଟର ଦୂରରେ ଅଛି ଭଣ୍ଡା ଗ୍ରାମ ।

ଯଦିଓ ସୀମା ପୁନଃନିର୍ଦ୍ଧାରଣରେ ଏହି ଭଣ୍ଡା ଗ୍ରାମଟି ଚମ୍ପୁଆରେ ସାମିଲ ହୋଇଯାଇଛି କିନ୍ତୁ ହୃଷିକେଶ ତାଙ୍କର ପୁରୁଣା ଅଭ୍ୟାସକୁ ବଦଳାଇ ପାରୁନାହାନ୍ତି । ତାଙ୍କ ଗ୍ରାମ କାଶିପାଳରେ ସେ ଥିବାବେଳେ ସକାଳ ହେଲାମାତ୍ରେ ଚାଲିଆସନ୍ତି ଭଣ୍ଡା ଗ୍ରାମକୁ । ସେଠାରେ ସେ ଚା' ପିଅନ୍ତି ଏବଂ ଅନ୍ୟମାନଙ୍କୁ ମଧ୍ୟ ଚା' ପିଆନ୍ତି । ଗୁଲିଖଟି ମଧ୍ୟରେ ସେ ତାଙ୍କର ଦାଢ଼ିକଟା ମଧ୍ୟ ସେଠାରେ ସାରି ଦିଅନ୍ତି । ତା'ମାନେ ନୁହେଁ ଯେ, ନିଜେ ରେଜର ଧରି ହୃଷିକେଶ ସେଠାରେ ଦାଢ଼ି କାଟନ୍ତି । ରାସ୍ତାକଡ଼ରେ ଲୋକମାନଙ୍କର ବାଳ ଓ ଦାଢ଼ି କାଟୁଥିବା ଭଣ୍ଡାରୀ ପାଖରେ ଯାଇ ବସିପଡ଼ନ୍ତି ହୃଷିକେଶ ଆଉ ଭଣ୍ଡାରୀ ମଧ୍ୟ ହୃଷିକେଶଙ୍କର ଦାଢ଼ି କାଟିଦିଏ । ଭଣ୍ଡା ଗ୍ରାମରେ ଗୁଲିଖଟି ହୃଷିକେଶଙ୍କ ପାଇଁ ହୋଇଯାଏ ଯାତ୍ରା ଦେଖା ଓ କଦଳୀ ବିକା ପରି । ହୃଷିକେଶ ଗୁଲିଖଟି କରନ୍ତି, ରାଜନୀତି ଚର୍ଚ୍ଚା କରନ୍ତି, ସମର୍ଥକ ସୃଷ୍ଟି କରନ୍ତି ଆଉ ସେଠାରେ ରାସ୍ତାକଡ଼ରେ ବସି ଭଣ୍ଡାରୀଙ୍କ ପାଖରେ ଦାଢ଼ି କାଟନ୍ତି । ଏହି ଅଭ୍ୟାସ ଏବେବି ହୃଷିକେଶଙ୍କର ଅଛି । ଭଣ୍ଡା ଗ୍ରାମଟି ପୂର୍ବରୁ ଥିଲା ପାଟଣା ନିର୍ବାଚନମଣ୍ଡଳୀରେ । ଏବେ ତାହା ଚମ୍ପୁଆ ନିର୍ବାଚନମଣ୍ଡଳୀରେ ସାମିଲ ହୋଇଯାଇଛି । ଏହି ଦୃଷ୍ଟିରୁ ସେଠାକୁ ଗଲେ ହୃଷିକେଶଙ୍କର ନିର୍ବାଚନ ପ୍ରଚାର ହେବନାହିଁ । ଏହାସତ୍ତ୍ୱେ ହୃଷିକେଶ ତାଙ୍କ ପୁରୁଣା ଅଭ୍ୟାସକୁ ଛାଡ଼ି ପାରୁନାହାନ୍ତି । ରାସ୍ତାକଡ଼ରେ ବସି ଦାଢ଼ିକାଟିବା ମଧ୍ୟ ତାଙ୍କ ପାଇଁ ସତେ ଯେମିତି ନିଶା ହୋଇଯାଇଛି । ଯେଉଁଥିପାଇଁ ହୃଷିକେଶ ଗାଁରେ ଥିଲେ ସକାଳ ହେବାମାତ୍ରେ ଭଣ୍ଡା ଗ୍ରାମକୁ ଯାଇ ରାସ୍ତାକଡ଼ରେ ବସି ଦାଢ଼ି କାଟନ୍ତି ଆଉ ସେହି ସମୟରେ ସେ ରାଜନୀତି ଚର୍ଚ୍ଚା ମଧ୍ୟ କରନ୍ତି । ହୃଷିକେଶ ଏଣିକି ଭଣ୍ଡା ଗ୍ରାମକୁ ନଯାଇ ତାଙ୍କ ନିର୍ବାଚନମଣ୍ଡଳୀର ଏକ ଗ୍ରାମ ବାଛନ୍ତୁ ଆଉ ସେଠାରେ ଥିବା ଭଣ୍ଡାରୀଙ୍କ ପାଖରେ ରାସ୍ତାକଡ଼ରେ ବସି ଦାଢ଼ି କାଟନ୍ତୁ । ଏହା ଫଳରେ ତାଙ୍କର ରାଜନୀତି ଚର୍ଚ୍ଚା ମଧ୍ୟ ତାଙ୍କ ନିର୍ବାଚନମଣ୍ଡଳୀରେ ବ୍ୟାପିବ । ■

## ଧଳାର ପ୍ରତୀକ ବିଜୟ



ଏମିତି ନେତା ହେଲେ ସାଧାରଣତଃ ଧଳା ପୋଷାକ ପିନ୍ଧାଯାଏ ବୋଲି ଏକ ବିଶ୍ୱାସ ରହିଛି । ଏହାକୁ ମଧ୍ୟ ଅନେକ ପରମ୍ପରା ବୋଲି କହନ୍ତି । କିନ୍ତୁ ଏମିତି ଜଣେ ଜଣେ ନେତା ଅଛନ୍ତି ଯେଉଁମାନେ ନେତା ହେବେ ବୋଲି ଭାବିବା ପୂର୍ବରୁ ଧଳା ପୋଷାକ ପ୍ରତି ଦୁର୍ବଳତା ରହିଥାଏ । ଅର୍ଥାତ୍ ପିଲାଦିନୁ ହିଁ ଧଳା ପୋଷାକ ସେମାନେ ପିନ୍ଧିଆସୁଛନ୍ତି । ଏମିତି ଜଣେ ନେତା ହେଲେ ବିଜୟ ମହାନ୍ତି । ମଧ୍ୟ-ଭୁବନେଶ୍ୱରର ବିଜୟ ହେଉଛନ୍ତି ବିଧାୟକ । ପିଲାଦିନରୁ ତାଙ୍କର ଧଳା ରଙ୍ଗ ପ୍ରତି ବେଶ୍ ଦୁର୍ବଳତା ରହିଆସିଛି । ଏମିତି ପାଠପଢ଼ିବା ସମୟରୁ ପ୍ୟାଂଟ ପଛେ ଅନ୍ୟ କେଉଁ ରଙ୍ଗର ହେଉ ସାର୍ଟଟି କିନ୍ତୁ ଧଳା ରଙ୍ଗର ହେଉଥିଲା । ମାନେ

ପ୍ରାୟ ସବୁବେଳେ ସେ ଧଳା ସାର୍ଟ ପିନ୍ଧୁଥିଲେ । ବିଧାୟକ ହେବାପରେ ସେହି ଧଳା ସାର୍ଟ ମଧ୍ୟ ସେ ପିନ୍ଧୁଛନ୍ତି । ତେବେ ଧଳା ରଙ୍ଗର ସାର୍ଟ ପିନ୍ଧିଲେ ଯେଉଁ ଅସୁବିଧା ଅଛି ତାହା କେବଳ ଧଳା ସାର୍ଟ ପିନ୍ଧୁଥିବା ବ୍ୟକ୍ତି ହିଁ ଜାଣିପାରିବେ । ମାନେ ସାର୍ଟ ଶୀଘ୍ର ମଇଳା ହୋଇଯିବ ପୁଣି ସେଥିରେ କଡ଼ା ଇସ୍ତ୍ରୀ ରହିବ ନାହିଁ । ଏହାକୁ ଆଖି ଆଗରେ ରଖି ବିଜୟ ଧଳା ରଙ୍ଗ ସାର୍ଟ ପିନ୍ଧି ଚାଲିଛନ୍ତି । ତାଙ୍କ ସାର୍ଟ କଡ଼ା ଇସ୍ତ୍ରୀ ହୁଏ ଆଉ ସଫା ମଧ୍ୟ ଭଲ ହୋଇଥାଏ । ଏ ହେଲା ବିଜୟଙ୍କର ଧଳା ସାର୍ଟ ପିନ୍ଧିବାର ରହସ୍ୟ । ଆଉ ଏକ ରହସ୍ୟ ମଧ୍ୟ ତାଙ୍କ ପାଖରେ ଅଛି । ତାହା ହେଲା ବିଧାୟକ ହେବା ପର୍ଯ୍ୟନ୍ତ ବ୍ୟାଙ୍କରେ ସେ ଆକାଉଂଟ ଖୋଲି ନଥିଲେ । ବ୍ୟାଙ୍କ ପାଶ୍ ବୁକ୍ ବୋଲି ତାଙ୍କର କିଛି ଧାରଣା ନଥିଲା । ଅର୍ଥାତ୍ ତାଙ୍କର ସେପରି କିଛି ରୋଜଗାର ନଥିଲା । ଆଉ ଯାହାକିଛି ରୋଜଗାର ହୁଏ ସେଥିରୁ ସେ କିଛି ବ୍ୟାଙ୍କରେ ଜମା ବି ରଖୁନଥିଲେ । ଯେଉଁଥିପାଇଁ ବ୍ୟାଙ୍କରେ ଆକାଉଂଟ ଖୋଲିବାର ଆବଶ୍ୟକତା ନଥିଲା । ବିଧାୟକ ହେବା ପରେ ଏବେ ସେ ଆକାଉଂଟ୍‌ଟିଏ ଖୋଲିଛନ୍ତି । କିନ୍ତୁ ତାଙ୍କର ମତ ହେଲା ଏହି ଆକାଂଉଟ ଖୋଲିବା ଯାହା ନ ଖୋଲିବା ବି ସେଇଆ । କେବଳ ବିଧାୟକଙ୍କ ଦରମା ଏହି ଆକାଉଂଟକୁ ଆସେ ଆଉ ତାହାକୁ ପୁଣି ସଙ୍ଗେସଙ୍ଗେ ଉଠାଇ ନିଆଯାଏ । ଆକାଉଂଟ୍ ଯେଉଁ ଶୂନକୁ ସେହି ଶୂନ । ପୁଣି ଏକ ରହସ୍ୟ ମଧ୍ୟ ବିଜୟଙ୍କ ମଧ୍ୟରେ ଅଛି । କେଜାଣି କାହିଁକି ତାଙ୍କର ପିଲାଦିନରୁ ଠାକୁରଙ୍କ ପ୍ରତି ବେଶ୍ ଭକ୍ତି ରହିଛି । ବିଧାୟକ ହେବାପରେ ମଧ୍ୟ ସେହିପରି ଭକ୍ତି ତାଙ୍କ ପାଖରେ ଅଛି । ଖାଇବା କି ପିନ୍ଧିବା ପଛେ ନ ହେଉ କିନ୍ତୁ ଠାକୁର ପୂଜା ସେ କରିବେ ହିଁ କରିବେ । ତାହା ପୁଣି ୧୦ ମିନିଟ୍ କି ଅଧଘଂଟାଏ ନୁହଁ । ଦେଢ଼ ଘଂଟାକାଳ ସେ ଠାକୁର ପୂଜା କରନ୍ତି । ଏହା ପୁଣି ଥରେ ନୁହେଁ ସକାଳେ ଆଉ ସନ୍ଧ୍ୟାରେ ଦୁଇଥର । ଯେଉଁ ଚର୍ଚ୍ଚା ହେଉଛି ତା'ହେଲା ଏହି ଠାକୁର ପୂଜା ହିଁ ତାଙ୍କୁ ବିଧାୟକ କରିଛି । ନଚେତ୍ ଟିକଟ ଦିଆଯାଇସାରିଥିବାବେଳେ ତାହା ପୁଣି ବିଜୟଙ୍କ ପାଖକୁ ଆସିନଥା'ନ୍ତା । ■

## ଦାମ ଯୁଆଡ଼େ ବର୍ଷା ସିଆଡ଼େ



ବର୍ଷା ସହିତ ବୋଧହୁଏ ଡାକ୍ତର ଦାମୋଦର ରାଉତଙ୍କର ନିବିଡ଼ ସମ୍ପର୍କ ରହିଛି । ଦାମୋଦର ହେଉଛନ୍ତି କୃଷି, ସମବାୟ, ମତ୍ସ୍ୟ, ପଶୁସମ୍ପଦ ବିକାଶ ମନ୍ତ୍ରୀ । ଏହି ସବୁ ବିଭାଗର ବର୍ଷା ସହିତ ସମ୍ପର୍କ ରହିଛି । ଏମିତି ବର୍ଷା ହେଉ ନଥାଏ । ଦାମୋଦର ଗସ୍ତରେ ଗଲେ ନୂଆପଡ଼ା ଜିଲା । ସତେ ଯେମିତି ବର୍ଷାକୁ ସାଥିରେ ନେଇ ଦାମୋଦର ଯାଇଥିଲେ । ନୂଆପଡ଼ାରେ ପହଂଚୁ ପହଂଚୁ ସେଠାରେ ବର୍ଷାର ତାଣ୍ଡବଲୀଳା ଆରମ୍ଭ ହୋଇଗଲା । କୃଷିମନ୍ତ୍ରୀ ଭାବେ ଏହି ବର୍ଷାକୁ ଦେଖି ଦାମୋଦର ଯେତିକି ଖୁସି ହୋଇ ନଥିଲେ ତା'ଠାରୁ ଅଧିକ ଖୁସି ହୋଇଥିଲେ ନୂଆପଡ଼ା ଜିଲାର ଚାଷୀମାନେ । ମରୁଡ଼ି

ଆଶଙ୍କାରେ ସେମାନେ ଥିଲେ କିନ୍ତୁ କୃଷିମନ୍ତ୍ରୀ ଦାମୋଦର ଯେ ସାଥିରେ ବର୍ଷାକୁ ନେଇଯାଇଥିଲେ ତାହା ସେମାନେ ବା ଜାଣିବେ କେମିତି । ଦାମୋଦର ପହଂଚିବା କ୍ଷଣି ବର୍ଷା ହେବା ଯୋଗୁ ଚାଷୀମାନେ ଦାମଙ୍କର ବେଶ୍ ପ୍ରଶଂସା କରିଥିଲେ । ଦାମ ନୂଆପଡ଼ାରୁ ରାଜଧାନୀକୁ ଫେରିଆସିଲେ । ଢେଙ୍କାନାଳ ଜିଲାକୁ ଗସ୍ତରେ ଯିବା ପାଇଁ ଦାମୋଦର ବାହାରିଲେ । ଢେଙ୍କାନାଳରେ ପହଂଚିବା କ୍ଷଣି ସେଠାରେ ଆରମ୍ଭ ହେଲା ଜୋରଦାର୍ ବର୍ଷା । ସତେ ଯେମିତି ଦାମୋଦର ବର୍ଷାକୁ ସାଥିରେ ନେଇ ଯାଇଥିଲେ । ଚାଷୀକୂଳ ବେଶ୍ ଆଶ୍ୱସ୍ତି ଅନୁଭବ କଲେ ।  ଦାମ ଢେଙ୍କାନାଳ ଗସ୍ତ ସାରି ରାଜଧାନୀକୁ ଫେରିଆସିଲେ । ଏମିତି ବାଲେଶ୍ୱର ଜିଲା ବିଜୁ ଜନତା ଦଳ ସଭାପତି ତଥା ଭୋଗରାଇ ବିଧାୟକ ଦାମଙ୍କୁ ତାଙ୍କ ନିର୍ବାଚନମଣ୍ଡଳୀକୁ ନେବା ପାଇଁ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ସେତେବେଳକୁ ଭୋଗରାଇ ଅଂଚଳରେ ଦୀର୍ଘଦିନ ହେଲା ବର୍ଷା ନଥାଏ । କାର୍ଯ୍ୟକ୍ରମ ଅନୁଯାୟୀ ଦାମ ପୂର୍ବଦିନ ରାତିରେ ଯାଇ ପହଂଚିଲେ ବାଲେଶ୍ୱରରେ । ରାତ୍ରିଯାପନ କଲେ ସର୍କିଟ୍ ହାଉସ୍‌ରେ । ସକାଳେ କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ବାହାରିବା ପୂର୍ବରୁ ଭୋଗରାଇରୁ ଖବର ଆସିଲା ମନ୍ତ୍ରୀ ବିଳମ୍ବରେ ଆସନ୍ତୁ ବୋଲି । ଭୋଗରାଇରେ ବର୍ଷା ଏତେ ଜୋରରେ ହେଉଛି ଯେ, ସେଥିରେ ଉତ୍ସବ ଆୟୋଜନ କରିବା ମୁସ୍କିଲ୍ ହୋଇଯିବ । ଏ ବର୍ଷା ନାଁ ଶୁଣି ଦାମ ବେଶ୍ ଉତ୍‌ଫୁଲିତ ହେଲେ । ଏତେ ପର୍ଯ୍ୟନ୍ତ ସେ ଜାଣିପାରୁ ନଥିଲେ ଯେ, କୃଷିମନ୍ତ୍ରୀ ଭାବେ ସେ ଯେଉଁ ଅଂଚଳକୁ ଯାଉଛନ୍ତି ସେଠାକୁ ବର୍ଷାକୁ ସାଙ୍ଗରେ ନେଇ ଯାଉଛନ୍ତି ବୋଲି । ପ୍ରଥମେ ନୂଆପଡ଼ା ପରେ ଢେଙ୍କାନାଳ, ଏବେ ଭୋଗରାଇ । ବର୍ଷା ଛାଡ଼ିବା ପରେ ଦାମ ଭୋଗରାଇ ଗସ୍ତରେ ଗଲେ । ସେଠାରୁ ଫେରି ବାଲେଶ୍ୱରରେ ରାତ୍ରିଯାପନ କଲେ । ଏପଟେ ବାଲେଶ୍ୱର ନେତା ଦାମଙ୍କୁ ଅନୁରୋଧ କରୁଥା'ନ୍ତି ଯେ, ଭୋଗରାଇକୁ ତ ବର୍ଷା ନେଲେ ଏବେ ବାଲେଶ୍ୱରକୁ ବର୍ଷା ଆଣନ୍ତୁ । ବାଲେଶ୍ୱରରେ ରହୁଥିବା ଯୋଗୁ ବର୍ଷା ଆସିଯିବ । ପ୍ରକୃତରେ ତାହା ହିଁ ହେଲା । ଦାମ ବାଲେଶ୍ୱରରେ ରାତ୍ରିଯାପନ କରିବା ସମୟରେ କୁଆଡୁ କେଜାଣି ଆକାଶରେ ମେଘ ମାଡିଆସିଲା ଆଉ ବର୍ଷା ବି ହୋଇଗଲା । ଏହା ହୋଇପାରେ କାକତାଳୀୟ କିନ୍ତୁ ସାଧାରଣରେ ଏକ ବିଶ୍ୱାସ ହେଲାଣି ଯେ, କୃଷିମନ୍ତ୍ରୀ ଭାବେ ଦାମ ଯେଉଁ ଜିଲାକୁ ଯିବେ ସେହି ଜିଲାରେ ବର୍ଷା ହେଉଛି । ଦାମଙ୍କୁ ଅନେକ ମଧ୍ୟ କହିଲେଣି ବର୍ଷା ମନ୍ତ୍ରୀ ବୋଲି । ■

## ଭାଲୁ ବନାମ ଭାଲୁ



କୋରାପୁଟ ବିଧାୟକ ତାରାପ୍ରସାଦ ବାହିନୀପତି ଯଦି କାହାକୁ ଟେଲିଫୋନ୍‌ରେ କଥାବାର୍ତା କରନ୍ତି ତେବେ ସେ ତାରା କହୁଛନ୍ତି ବୋଲି କହନ୍ତି ନାହିଁ । ସେ ନିଜର ପରିଚୟ ଭାଲୁବୋଲି ଦିଅନ୍ତି । ମାନେ ତାରାଙ୍କର ଡାକ ନାମ ହେଉଛି ଭାଲୁ । ଏମିତି ଜଣେ ସାମ୍ବାଦିକଙ୍କୁ

ଖୋଜିବାକୁ ଯାଇ ତାରା ତାଙ୍କ ଘରକୁ ଟେଲିଫୋନ୍ କଲେ । ସାମ୍ବାଦିକଙ୍କ ପତ୍ନୀ ମଧ୍ୟ ଜଣେ ସାମ୍ବାଦିକା । ଟେଲିଫୋନ୍ ଉଠାଇଲେ ନିଜେ ସାମ୍ବାଦିକା । ତାରା କହିଲେ- ଭାଉଜ, ନମସ୍କାର । ସେପଟୁ ପ୍ରଶ୍ନ ହେଲା- କିଏ କହୁଛନ୍ତି ? ତାରାଙ୍କ ଉତର ହେଲା- ମୁଁ ଭାଲୁ କହୁଛି । ସାମ୍ବାଦିକା ପଚାରିଲେ- କେଉଁ ଭାଲୁ ? ତାରା କହିଲେ- ମୁଁ ଭାଲୁ ବାହିନୀପତି କହୁଛି । ପୁଣି ପ୍ରଶ୍ନ ହେଲା- କେଉଁ ଭାଲୁ ? ତାରା କିଛି କହିବା ପୂର୍ବରୁ ସେପଟୁ ଟେଲିଫୋନ୍‌ଟି ରଖି ଦିଆଗଲା । ଏମିତି ଯେ ଜଣେ କି ଦୁଇଜଣଙ୍କୁ ସେ ଭାଲୁ କହି ଅପଦସ୍ତ ହେଉଛନ୍ତି ତାହା ନୁହେଁ । ବହୁଲୋକଙ୍କୁ ଟେଲିଫୋନ୍‌ରେ ସେ ନିଜକୁ ଭାଲୁ ବୋଲି ପରିଚୟ ଦେଉଛନ୍ତି । କୋରାପୁଟରୁ କ୍ରମାଗତ ଭାବେ ଦୁଇଥର ବିଧାୟକ ହୋଇଥିବା କଂଗ୍ରେସର ତାରାପ୍ରସାଦ ବାହିନୀପତିଙ୍କୁ ସେଠାକାରର ବାସିନ୍ଦାମାନେ ଭାଲୁ ନଚେତ୍ ଭାଇନା ଡାକନ୍ତି । ଏମିତି ଭାଲୁ ଡାକକୁ ନେଇ ତାରା ବେଶ୍ ଲୋକପ୍ରିୟ । କ'ଣ ପାଇଁ ତାରାଙ୍କ ଡାକ ନାମ ତାଙ୍କ ବାପା, ମା' ଭାଲୁ ଦେଇଥିଲେ ତାହା ସେମାନଙ୍କୁ ଜଣା । ହୋଇପାରେ ତାରା ଜନ୍ମ ନେଇଥିବା ବେଳେ ତାଙ୍କୁ ଭାଲୁଙ୍କ ପରି ଦିନରେ ଜ୍ୱର ହେଉଥିବ ଆଉ ରାତିରେ ଜ୍ୱର ଛାଡ଼ିଯାଇ ସେ ଚେଙ୍ଗା ହୋଇଯାଉଥିବେ କିମ୍ବା ଭାଲୁ ପରି ତାଙ୍କ ଦେହ ଗୋଟାକଯାକ ଲୋମ ଥିବ କିମ୍ବା ଭାଲୁଙ୍କ ପରି ସେ କାହାକୁ ଚାଟିଦେଲେ ତାଙ୍କ ଦେହ ଖଣ୍ଡିଆ ହୋଇଯାଉଥିବ । କିନ୍ତୁ ତାରାଙ୍କ ଠାରେ ଏବେ ଏହି ତିନୋଟି ପ୍ରସଙ୍ଗ ଦେଖିବାକୁ ମିଳୁନାହିଁ । କିନ୍ତୁ ତାରାଙ୍କୁ ଭାଲୁ ଡାକିଲେ ତାଙ୍କୁ ଭାରି କୁତୁକୁତୁ ଲାଗେ । ଯିଏ ତାଙ୍କୁ ଭାଲୁ ଡାକିଦେବ ସେ ତାଙ୍କର ନହେବା କାମକୁ କରିବା ପାଇଁ ଡେଇଁ ପଡ଼ନ୍ତି । ବହୁବର୍ଷ ପୂର୍ବେ ବିହାର ନିର୍ବାଚନରେ ଜଣେ ନେତା ସ୍ୱାଧୀନ ଭାବେ ପ୍ରାର୍ଥୀ ହୋଇଥିଲେ । ତାଙ୍କର ନିର୍ବାଚନ ଚିହ୍ନ ଥିଲା ବାଘ । ସେ ନିଜକୁ ବାଘ ବୋଲି କହୁଥିଲେ ଏବଂ ପ୍ରଚାର ବେଳକୁ ବାଘକୁ ମଧ୍ୟ ସାଥିରେ ନେଇ ଯାଉଥିଲେ । ସମସ୍ତଙ୍କୁ ସେ ନମସ୍କାର କରି ଭୋଟ ଭିକ୍ଷା କରୁଥିଲେ । ଯିଏ ତାଙ୍କୁ ଭୋଟ ନଦେବ ତାଙ୍କ କଥା ନିର୍ବାଚନ ପରେ ବାଘ ବୁଝିବ ବୋଲି କହି ସେ ବାଘକୁ ଦେଖାଇ ଦେଉଥିଲେ । ନିର୍ବାଚନ ଫଳାଫଳ ପ୍ରକାଶ ପାଇଲା ବେଳକୁ ବାଘ ଚିହ୍ନରେ ଲଢୁଥିବା ଉକ୍ତ ସ୍ୱାଧୀନ ପ୍ରାର୍ଥୀ ଜଣଙ୍କ ବହୁ ଭୋଟ ବ୍ୟବଧାନରେ ବିଜୟୀ ହୋଇଥିଲେ । ଭାଲୁ ଏଣିକି ନିର୍ବାଚନରେ ପ୍ରଚାର କରିବା ସମୟରେ ନିଜକୁ ଭାଲୁ ବୋଲି ପରିଚୟ ଦିଅନ୍ତୁ ଆଉ ସାଥିରେ ମଧ୍ୟ ସେ ଭାଲୁଟିଏ ନେଇ ଯାଆନ୍ତୁ । ବିହାର ନିର୍ବାଚନ ପରି ମଧ୍ୟ ସେ କୁହନ୍ତୁ- ଯିଏ ଭୋଟ ନଦେବ ଭାଲୁ ତା' କଥା ବୁଝିବ ବୋଲି । ଦେଖିବେ ଜୟପୁର ବିଧାୟକ ରବିଙ୍କର ଆଉ କିରଣ କାମ ଦେବନାହିଁ । ନିର୍ବାଚନ ସମୟରେ ରବିଙ୍କ ଉପରେ ମେଘ ଢାଙ୍କି ଦେବ ଆଉ ଭାଲୁ ଖାଇଦେବା ଭୟରେ ତାରାଙ୍କୁ ଭୋଟ ମିଳିବ ହିଁ ମିଳିବ । ■

# ନାସ୍ତିକରୁ ଆସ୍ତିକ

ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଦିନେ ନାସ୍ତିକ ଥିଲେ । ମାନେ ତାଙ୍କଠାରେ ଠାକୁରଙ୍କୁ ଭକ୍ତି କରିବାର ଆବେଗ ଆଦୌ ନଥିଲା । ବୋଧହୁଏ ଠାକୁର ପ୍ୟାରୀଙ୍କର ଏଭଳି ଅଭ୍ୟାସକୁ ପରିବର୍ତ୍ତନ କରିବାକୁ ଚାହିଁଥିଲେ ଏବଂ ତାଙ୍କୁ ଜଣେ ଦେବପୁରୁଷଙ୍କ ସହିତ ସାକ୍ଷାତ କରାଇଦେଲେ । ସେହି ଦେବପୁରୁଷଙ୍କ ଯୋଗୁ ପ୍ୟାରୀ ଏବେ ଆସ୍ତିକ ହୋଇଯାଇଛନ୍ତି । ମାନେ ସକାଳୁ ଉଠୁଣୁ ନଉଠୁଣୁ ଠାକୁର ପୂଜା । ପୁଣି ଭୁବନେଶ୍ୱରରେ ନୁହେଁ କି ପୁରୀରେ ନୁହେଁ ସୁଦୂର କୋରାପୁଟରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା । ରଥଯାତ୍ରାରେ କୋରାପୁଟକୁ ନଗଲେ ତାଙ୍କର ମନ ଥୟ ହୁଏନାହିଁ । କୋରାପୁଟ ଜଗନ୍ନାଥ ମନ୍ଦିରର ସେ ହେଉଛନ୍ତି ପ୍ରମୁଖ ବିଦ୍ଧାଣୀ । ପ୍ୟାରୀ ଏବେ ଏହି ଗୁମର କଥାକୁ ନିଜେ ଫିଟାଇ ଦେଇଛନ୍ତି । ଯେଉଁ ଦେବପୁରୁଷଙ୍କ କଥା କୁହାଯାଉଛି ସେ ଥିଲେ ହରିଶ୍ଚନ୍ଦ୍ର ବକ୍ସିପାତ୍ର । ତାଙ୍କୁ ହରିଶ୍ଚନ୍ଦ୍ର କୋରାପୁଟରେ ଏକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିବା ନିମନ୍ତେ ପ୍ରସ୍ତାବ ଦେଇଥିଲେ । କାହାଠାରୁ ଚାନ୍ଦା ନଅଣାଯାଇ ଏହି ମନ୍ଦିର ପ୍ରତିଷ୍ଠା ହୋଇଥିଲା । ଏଥିରେ କୋରାପୁଟ ଅଂଚଳର ଉଣାଅଧିକେ ପ୍ରାୟ ସବୁ ବାସିନ୍ଦାଙ୍କର ଅବଦାନ ରହିଛି । ନାସ୍ତିକ ପ୍ୟାରୀଙ୍କୁ ହରିଶ୍ଚନ୍ଦ୍ର ଭଗବାନଙ୍କ ନିକଟରେ ପହଂଚାଇ ଦେଇଥିଲେ । ଏବେ ହରିଶ୍ଚନ୍ଦ୍ରଙ୍କ ସ୍ମୃତିଚାରଣ କରିବା ସମୟରେ ପ୍ୟାରୀ ତାଙ୍କର ଏହି ମହନୀୟତା ସମ୍ପର୍କରେ ବଖାଣିଥିଲେ । ଅବଶ୍ୟ ଭଗବାନଙ୍କର ଯୋଗ ନଥିଲେ ନାସ୍ତିକ ପ୍ୟାରୀ ଯେ ଆସ୍ତିକ ପ୍ୟାରୀ ହୋଇଥା'ନ୍ତେ ତାହା କହି ହୋଇ ନଥା'ନ୍ତା ଆଉ ନାସ୍ତିକରୁ ଆସ୍ତିକ ହୋଇଥିବା ପ୍ୟାରୀ ଯେ ଆଇଏଏସ୍ ଚାକିରିରୁ ଅବସର ଗ୍ରହଣ କରିବା ପରେ ବିଜୁ ଜନତା ଦଳର ମଙ୍ଗ ଧରିଥା'ନ୍ତେ ତାହା ମଧ୍ୟ ଆଶା କରାଯାଇ ନଥା'ନ୍ତା । ସବୁ କେବଳ ଯୋଗସୂତ୍ର ଯୋଗୁ । ହରିଶ୍ଚନ୍ଦ୍ର ନଥିଲେ ପ୍ୟାରୀ ଆସ୍ତିକ ହୋଇ ନଥା'ନ୍ତେ । ପ୍ୟାରୀ ଆସ୍ତିକ ନହୋଇଥିଲେ କୋରାପୁଟରେ ଜଗନ୍ନାଥ ମନ୍ଦିର ହୋଇ ନଥା'ନ୍ତା ପୁଣି ଚାକିରିରୁ ଅବସର ଗ୍ରହଣ କରିବା ପରେ ସେ ରାଜ୍ୟସଭା ସଭ୍ୟ ବି ହୋଇ ନଥା'ନ୍ତେ କି ବିଜୁ ଜନତା ଦଳର ଷ୍ଟିଅରିଂ ମଧ୍ୟ ଧରି ନଥା'ନ୍ତେ । ଏହା ଜଣେଜଣେ ଯୋଗପୁରୁଷଙ୍କ କ୍ଷେତ୍ରରେ ଦେଖା ଦେଇଥାଏ । ପ୍ୟାରୀ ଭାବନ୍ତୁ କି ନଭାବନ୍ତୁ ତାଙ୍କୁ କିନ୍ତୁ ଯୋଗପୁରୁଷ ବୋଲି ଅନେକ ଭାବିଲେଣି । କୋରାପୁଟବାସୀ ତ ଆଉ ଦୁଇପାଦ ଆଗକୁ ଯାଇ ତାଙ୍କୁ ମହାଯୋଗପୁରୁଷ ବୋଲି ଆଖ୍ୟା ବି ଦେଲେଣି । ହରିଶ୍ଚନ୍ଦ୍ରଙ୍କ ପରି ପ୍ୟାରୀ କାହାକୁ ନାସ୍ତିକରୁ ଆସ୍ତିକ କରିପାରୁଛନ୍ତି କି ନାହିଁ ତାହା ଦେଖିବାକୁ ବାକି ରହିଛି । ■

# ଭାଲୁଙ୍କ ବୁଲେଟ୍ ନିଶା



ଏ ଭାଲୁ ଜଙ୍ଗଲରେ ରହନ୍ତି ନାହିଁ । ସହରରେ ରହନ୍ତି । ୟାଙ୍କର ପ୍ରକୃତ ନାମ ହେଲା ତାରାପ୍ରସାଦ ବାହିନୀପତି । ସେ କୋରାପୁଟରୁ ୨ ଥର ବିଧାୟକ । କେଜାଣି କାହିଁକି

ପିଲାଦିନରୁ ତାଙ୍କର ଡାକ ନାମ ଭାଲୁ ଦିଆଯାଇଛି । ତେବେ ଭାଲୁଙ୍କର ବୁଲେଟ୍ ନିଶା କଥା ଶୁଣିଲେ ତାହା ଯେକୌଣସି ବ୍ୟକ୍ତି ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିବେ । ଭାଲୁ ଏବେ ଫୋର୍ଡ଼ ଚାରିଚକିଆ ଗାଡ଼ି ଚଢୁଛନ୍ତି । କିନ୍ତୁ ନିର୍ବାଚନ ପାଖେଇ ଆସିବା ବେଳକୁ ତାଙ୍କୁ ବୁଲେଟ୍ ନିଶା ଘାରେ । ବିଧାୟକ ହେବାପରେ କ୍ରମେ ସେ ବୁଲେଟ୍ ମୋଟରସାଇକେଲ ଆଉ ଚଢୁନାହାନ୍ତି । ତାଙ୍କର ବୁଲେଟ୍ ମୋଟରସାଇକେଲ ନମ୍ବର ହେଲା ଓଆର୍ଏକ୍ସ-୫୩୭୯ । ନମ୍ବର ତଳେ ଲେଖା ହୋଇଛି ଭାଲୁ । କାଳେ ତାରାପ୍ରସାଦ ବାହିନୀପତି ମୋଟରସାଇକେଲ ଚଳାଉଛନ୍ତି ବୋଲି ଯଦି କେହି ଭାବିନିଏ ତା' ହେଲେ ତାରାଙ୍କ ପାଇଁ ତାହା ଗ୍ରହଣୀୟ ନୁହେଁ । ଯେଉଁଥିପାଇଁ ପଛରୁ ନମ୍ବର ପ୍ଲେଟ୍‌କୁ ଦେଖିଦେଲେ ଭାଲୁ ମୋଟରସାଇକେଲ ଚଳାଉଛନ୍ତି ବୋଲି ଜାଣିହେବ । ଫୋର୍ଡ଼ ଚାରିଚକିଆକୁ ଛାଡ଼ି ସେ ନିଜେ ଏହି ମୋଟରସାଇକେଲ ଚଳାଇ ରାଜଧାନୀରେ ବେଳେବେଳେ ବୁଲନ୍ତି । ତାଙ୍କ ନିର୍ବାଚନମଣ୍ଡଳୀ କୋରାପୁଟ ସଂରକ୍ଷିତ ହୋଇଯିବାରୁ ୨୦୦୯ ନିର୍ବାଚନରେ ସେ ଜୟପୁରରୁ ପ୍ରାର୍ଥୀ ହୋଇ ହାରିଛନ୍ତି । ଏମିତି କୋରାପୁଟରେ ତାଙ୍କ ବୁଲେଟକୁ ସମସ୍ତେ ଜାଣିଛନ୍ତି । ତେବେ ଜୟପୁରରେ ସେହି ବୁଲେଟକୁ ଯେପରି ଲୋକ ଚିହ୍ନିବେ ସେଥିପାଇଁ ତାହାକୁ ତାରା ଜୟପୁରକୁ ନେଇଛନ୍ତି । ଜୟପୁର ସହରର ଗଳିକନ୍ଦିରେ ସେ ବୁଲେଟ୍ ମୋଟରସାଇକେଲ ଚଳାଇ ଏବେଠାରୁ ନିର୍ବାଚନ ପ୍ରଚାର କରିବେ । ଭାଲୁଙ୍କର ବୁଲେଟ୍ ମୋଟରସାଇକେଲଟି ତାଙ୍କୁ ବିଜୟୀ ହେବାରେ ସହାୟକ ହେବ କି ନାହିଁ ତାହା ଏବେଠାରୁ କହି ହେବନାହିଁ । କିନ୍ତୁ ମଣିଷକୁ ଯେପରି ଭାଲୁ ଧରିଲେ ଛାଡ଼େନାହିଁ ଏବେ ବୁଲେଟ୍ ମୋଟରସାଇକେଲଟିକୁ ଭାଲୁ ଆଉ ଛାଡୁନାହାନ୍ତି । ■

## ଅରବିନ୍ଦଙ୍କ ଚେହେରା



ଅରବିନ୍ଦ ଢାଲି ଚାରିଥର ବିଧାୟକ । ତିନିଥର ମାଲକାନାଗିରିରୁ ବିଜେପି ଟିକେଟରେ ନିର୍ବାଚିତ ହୋଇଥିବା ବେଳେ ୨୦୦୯ ନିର୍ବାଚନରେ ସେ ଜୟଦେବ ନିର୍ବାଚନମଣ୍ଡଳୀରୁ ବିଜେଡି ଟିକେଟରେ ନିର୍ବାଚିତ ହୋଇଛନ୍ତି । ଏମିତି ସାଧାରଣତଃ ଅତୀତର ସ୍ମୃତିକୁ ମନେ ପକାଇବାକୁ ଭଲ ଲାଗିଥାଏ ଆଉ ଯଦି ଅତୀତରେ ଡଉଲଡାଉଲ ଚେହେରା ଥାଏ ତେବେ ସେହି ଫଟୋକୁ ଦେଖିବାକୁ ଆଉ ଦେଖେଇବାକୁ ଭାରି ଇଚ୍ଛା ହୁଏ । ଏବେ ସେମିତି ଇଚ୍ଛା ହୋଇଛି ଅରବିନ୍ଦଙ୍କର । ସେ ତାଙ୍କର ପୁରୁଣା ଡ୍ରାଇଭିଂ ଲାଇସେନ୍ସଟିକୁ ଅନେକ ସମୟରେ ଦେଖୁଛନ୍ତି । ଏମିତି ଯେ ଡ୍ରାଇଭିଂ କରିବା ପାଇଁ ଏହି

ଲାଇସେନ୍ସକୁ ସେ ଦେଖୁଛନ୍ତି ଯେ ତାହା ନୁହେଁ । କିନ୍ତୁ ଏହି ଲାଇସେନ୍ସରେ ଥିବା ଫଟୋଟିକୁ ସେ ବାରମ୍ବାର ଦେଖୁଛନ୍ତି । ଏହି ଫଟୋଟିକୁ ଦେଖିଦେଲେ ହଠାତ୍ ଜାଣି ହେବନାହିଁ ଯେ ସେ ଅରବିନ୍ଦ ଢାଲି ବୋଲି । କିନ୍ତୁ ତାଙ୍କର ଆଖି, ନିଶ ଓ ବାଳକୁ ନିରିଖେଇ ଦେଖିଲେ ଠଉରେଇ ହେବ ସେ ଅରବିନ୍ଦ ଢାଲି ବୋଲି । ଅରବିନ୍ଦଙ୍କର ବର୍ତ୍ତମାନର ଚେହେରା ସେମିତି କିଛି ଖରାପ ନୁହେଁ । କିନ୍ତୁ ଡ୍ରାଇଭିଂ ଲାଇସେନ୍ସରେ ଥିବା ଫଟୋଟିକୁ ଦେଖିଦେଲେ ଆଖି ଲାଖି ରହିବ । ଅରବିନ୍ଦ ତାଙ୍କର ଡ୍ରାଇଭିଂ ଲାଇସେନ୍ସରେ ଥିବା ଫଟୋଟିକୁ ତାଙ୍କ ପାଖକୁ ଆସୁଥିବା ବିଭିନ୍ନ ଲୋକଙ୍କୁ ଦେଖାଉଛନ୍ତି । ସେତେବେଳେ ତାଙ୍କର ଚେହେରା କିପରି ଥିଲା ତାହା ମଧ୍ୟ ସେ ବଖାଣୁଛନ୍ତି । ଏବେ ଅରବିନ୍ଦ ଡ୍ରାଇଭିଂ ଲାଇସେନ୍ସରେ ଥିବା ଫଟୋର ନକଲ ମଧ୍ୟ ବାହାର କରିଦେଲେଣି । ଅବଶ୍ୟ ଡ୍ରାଇଭିଂ ଲାଇସେନ୍ସଟି ବହୁତ ପୁରୁଣା । ସେତେବେଳେ ମୋଟରସାଇକେଲ ଚଳାଇବା ପାଇଁ ଅରବିନ୍ଦ ଏହି ଡ୍ରାଇଭିଂ ଲାଇସେନ୍ସ କରିଥିଲେ । ଏବେ ତ ଅରବିନ୍ଦ ଚାରିଚକିଆ ଚଢୁଛନ୍ତି । ଏହି ଡ୍ରାଇଭିଂ ଲାଇସେନ୍ସରେ ଯେଉଁ ଫଟୋଟି ଅଛି ତାହା କଳାଧଳା । ତେଣୁ ଅରବିନ୍ଦ ଡ୍ରାଇଭିଂ ଲାଇସେନ୍ସର ଥିବା ଫଟୋର ନକଲ ମଧ୍ୟ କଳାଧଳାରେ କରିଛନ୍ତି । ଫଟୋଟିକୁ ଦେଖିଦେଲେ ଯେକୌଣସି ବ୍ୟକ୍ତିଙ୍କର ଆଖି ଲାଖି ରହିଯିବ ହିଁ ଯିବ । ଅରବିନ୍ଦ ଫଟୋଟିକୁ ଦେଖାଇ କିଏ ବୋଲି ଅନ୍ୟଙ୍କୁ ପଚାରୁଛନ୍ତି । ଅରବିନ୍ଦ ମଧ୍ୟ ପଚାରୁଛନ୍ତି ଫଟୋର ଚେହେରା ସୁନ୍ଦର କି ଅସୁନ୍ଦର । ଅନେକ କହୁଛନ୍ତି- ଫଟୋଟି କେଉଁ ଡଉଲଡାଉଲ ସୁନ୍ଦର ଚେହେରା ଥିବା ଯୁବକର । ଅରବିନ୍ଦ ପୁଣି ପଚାରନ୍ତି ଚିନ୍ତା କରି କୁହ- ସେହି ଯୁବକ ଜଣଙ୍କ କିଏ ? ଅନେକ ମଧ୍ୟ କହିପାରନ୍ତି ନାହିଁ ଆଉ ଅନେକ ଫଟୋଟିକୁ ବହୁ ସମୟ ଦେଖିବା ପରେ ଅରବିନ୍ଦଙ୍କ ମୁହଁକୁ ଚାହିଁ ରହନ୍ତି ଆଉ ଥ ଥ ହୋଇ କହନ୍ତି- ଫଟୋଟି ବୋଧହୁଏ ଦାଦା । ଏତିକିରେ ଅରବିନ୍ଦଙ୍କ ହସ ଜୋର୍‌ଦାର୍ ହୋଇଯାଏ ଆଉ ଅରବିନ୍ଦ କହନ୍ତି- ସେତେବେଳେ ମୋର ଚେହେରା କେମିତି ଥିଲା ଦେଖୁଛ ତ । ଅନ୍ୟମାନେ ଅରବିନ୍ଦଙ୍କ ହସ ସହ ତାଳ ଦେଇ ହସିଥା'ନ୍ତି । ■



# ସରସ୍ୱତୀ ଓ ଅରୁଣ

ଅରୁଣ ସାହୁ ନୟାଗଡ଼ରୁ ଦୁଇଥର ବିଜେଡି ବିଧାୟକ । ଏବେ ସରକାରୀ ଦଳ ଉପମୁଖ୍ୟ ସଚେତକ । ବାଙ୍କୀ ମହାବିଦ୍ୟାଳୟ ଛାତ୍ର ସଂସଦର ସଭାପତି ସେ ଥିଲେ । ପୁଣି ବାଣୀବିହାର ଛାତ୍ର ସଂସଦର ମଧ୍ୟ ସେ ସଭାପତି ଥିଲେ । ବିଜୁ ଛାତ୍ର ଜନତା ଦଳର ବି ସେ ସଭାପତି ଭାବେ କାର୍ଯ୍ୟ କରିଥିଲେ । ଏମିତି ସରସ୍ୱତୀ ଓ ଅରୁଣଙ୍କ ପ୍ରସଙ୍ଗ ଆସିଲେ କାହା ମନରେ କେମିତି ପ୍ରଶ୍ନ ଉଙ୍କି ମାରିପାରେ । ତେବେ ସରସ୍ୱତୀ ପ୍ରସଙ୍ଗ ଆସିଲେ ତାହା ହେବ ଦେବୀ ସରସ୍ୱତୀ । ଅରୁଣ ତାଙ୍କ ସରକାରୀ ବାସଭବନରେ ଜାକଜକମରେ ସରସ୍ୱତୀ ପୂଜା ପାଳନ କରନ୍ତି । ଅରୁଣଙ୍କର ସରସ୍ୱତୀ

ପୂଜା ଦେଖିବା ପରେ ଅନେକ ମଧ୍ୟ ପ୍ରଶ୍ନ କରନ୍ତି । ଛାତ୍ର ଜୀବନ ବହୁବର୍ଷ ତଳେ ଅରୁଣ କଟାଉଥିଲେ । ଏବେ ଆଉ ସେ ଛାତ୍ର ନାହାନ୍ତି । ସାଧାରଣତଃ ଛାତ୍ରମାନେ ସରସ୍ୱତୀ, ଗଣେଶ ପୂଜା କରିଥା'ନ୍ତି । କିନ୍ତୁ ଅରୁଣ କହନ୍ତି- ସେ ଏବେବି ଛାତ୍ର । ବହି ପଢ଼ିବା ତାଙ୍କର ଏକ ଅଭ୍ୟାସ । ପାଠ ଏବେବି ସେ ପଢୁଛନ୍ତି । ନପଢ଼ିଲେ ତାଙ୍କୁ ନିଦ ହୁଏନାହିଁ ଆଉ ଯିଏ ପାଠ ପଢ଼େ ସେ ସବୁଦିନ ଛାତ୍ର ହୋଇ ରହିଥାଏ । ଏହି ଦୃଷ୍ଟିରୁ ସେ ସରସ୍ୱତୀ କିମ୍ବା ଗଣେଶ ପୂଜାକୁ ଭୁଲି ପାରୁନାହାନ୍ତି । ସବୁବର୍ଷ ସେ ସରସ୍ୱତୀ, ଗଣେଶ ପୂଜା କରନ୍ତି । ଛାତ୍ର ସମୟରେ ଯେମିତି ସେ ସରସ୍ୱତୀ, ଗଣେଶ ପୂଜା ପାଳନ କରୁଥିଲେ ସେହିପରି ପାଳନ ଏବେବି କରୁଛନ୍ତି । ମାନିବାକୁ ପଡ଼ିବ ଅରୁଣଙ୍କୁ । ଛାତ୍ରଜୀବନ ବହୁବର୍ଷ ହେଲାଣି ତାଙ୍କର ଆଉ ନାହିଁ । କିନ୍ତୁ ଛାତ୍ରଜୀବନର ଅଭିଜ୍ଞତାକୁ ସେ ଛାଡ଼ି ପାରୁନାହାନ୍ତି । ଏମିତି ଅରୁଣ ଅନେକ ପୁସ୍ତକ ପଢ଼ନ୍ତି । ଭାଷଣରେ ମଧ୍ୟ ସେ ଅନେକ ପୁସ୍ତକର ଉଦାହରଣ ବି ଦିଅନ୍ତି । ବହି ପଢ଼ିବା ତାଙ୍କର ଏକ ସଉକ ବୋଲି ସେ କହନ୍ତି । କିନ୍ତୁ ଛାତ୍ରଜୀବନ ଚାଲିଗଲେ ସରସ୍ୱତୀ, ଗଣେଶ ପୂଜାକୁ କେହି ସେତେ ଜାକଜକମରେ ପାଳନ କରନ୍ତି ନାହିଁ । ଅରୁଣଙ୍କର ମତ ହେଲା- ସେ ଯେଉଁ ପାଠପଢ଼ି ଆସିଛନ୍ତି ଆଉ ଯେଉଁ ସ୍ଥାନରେ ଆସି ଆଜି ପହଂଚିଛନ୍ତି ତାହା ସବୁ ସରସ୍ୱତୀଙ୍କର ଆଶୀର୍ବାଦ । ତେଣୁ ଛାତ୍ର ନଥିଲେ ବି ସେ ସରସ୍ୱତୀ ପୂଜା କରିଚାଲିଥିବେ । ■

## କାନକୁହାଙ୍କ ଠାରୁ ଦୂରରେ



ସାଧାରଣତଃ ନେତାମାନେ କାନକୁହାଙ୍କୁ ବେଶ୍ ଭଲ ପାଇଥା'ନ୍ତି । ଅନେକ ସଭାସମିତିରେ ଦେଖାଯାଏ ନେତା ମଂଚ ଉପରେ ବସିଥିଲେ ମଧ୍ୟ ତାଙ୍କର ପାଖଲୋକ ଭାବେ କେହି ଜଣେ ଯାଇ ତାଙ୍କ କାନରେ କିଛି କହିଦିଏ । ପୁଣି ନେତା ଯଦି ବହୁ ଲୋକଙ୍କ ପାଖରେ ବସିଥା'ନ୍ତି ତେବେ ଅନେକ ତାଙ୍କୁ ସିଧାସଳଖ ନକହି ତାଙ୍କ କାନରେ କହନ୍ତି । ଏହି କାନ କୁହା ପ୍ରଥା ଯେ ଆଜିର ତାହା ନୁହେଁ । ସୃଷ୍ଟି ଆରମ୍ଭ ହେବା ଦିନଠାରୁ କୁଆଡ଼େ କାନ କୁହା ପ୍ରଥା ଚାଲିଆସୁଛି ଆଉ ନେତାମାନେ କାନ କୁହାକୁ ବେଶ୍ ଗୁରୁତ୍ୱ ଦେଇଥା'ନ୍ତି । ତେବେ କାନକୁହା ପ୍ରତି କେତେକ ନେତା ମଧ୍ୟ ବୀତସ୍ପୃହ । ଅବଶ୍ୟ ଏଭଳି ନେତା କ୍ୱଚିତ ଦେଖାଯାଆନ୍ତି । ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ସଂଜୀବ ସାହୁ ତାଙ୍କ କାନରେ ଯଦି କେହି କହିବାକୁ ଯାଆନ୍ତି ତେବେ ସେ ଭୀଷଣ ବିରକ୍ତ ହୁଅନ୍ତି ଏବଂ କାନରେ କହିବାକୁ ଯାଇଥିବା ସେହି ବ୍ୟକ୍ତିଙ୍କୁ ସେଠାରୁ ଘଉଡ଼ାଇ ଥା'ନ୍ତି । ନେତାମାନେ କାନକୁହାଙ୍କୁ ଗୁରୁତ୍ୱ ଦେଉଥିବା ବେଳେ ସଂଜୀବ ସାହୁ କାହିଁକି କାନକୁହାଙ୍କ ପ୍ରତି ଏତେ ବୀତସ୍ପୃହ ତାହା ଭିତରେଇ ନଦେଖିଲେ କେହି ଜାଣପାରିବେ ନାହିଁ । କୁଆଡ଼େ ସଂଜୀବଙ୍କର କାନର

ପରଦା ନଷ୍ଟ ହୋଇଯାଇଥିଲା । ସଂଜୀବ ଚିକିତ୍ସା କରି ଭଲ ହୋଇଥିଲେ । କାନ ପାଖରେ ଜୋରଦାର୍ ଶବ୍ଦ ହେଲେ ତାହା ତାଙ୍କ ପାଇଁ ବିପଦ । ତେଣୁ ସଂଜୀବ ନେତା ହେଲେ ମଧ୍ୟ କାନକୁହାଙ୍କ ଠାରୁ ଦୂରରେ ରହୁଛନ୍ତି । ନହେଲେ ନେତା ହୋଇ କାନକୁହା କଥା ଶୁଣୁଶୁଣୁ ତାଙ୍କର କାନ ଖରାପ ହୋଇଯାଇଥିବ । ଏହା କିନ୍ତୁ ଅନେକ ଜାଣନ୍ତି ନାହିଁ । କାନରେ କହିଲେ ହିଁ ନେତାଙ୍କ ପାଖ ହୋଇପାରିବ ଏହା ଅନେକ ଭାବନ୍ତି । କିନ୍ତୁ ସଂଜୀବଙ୍କ କ୍ଷେତ୍ରରେ ତାହା ବ୍ୟତିକ୍ରମ । ଯିଏ ତାଙ୍କ ପାଖରେ ଯାଇ କାନରେ କହିଲା ଜାଣ ତା' ଉପରେ ବିପଦ ପଡ଼ିଗଲା ବୋଲି । ସଂଜୀବଙ୍କର ଏହି କାନକୁହାଙ୍କ ପ୍ରତି ବୀତସ୍ପୃହତା ସମ୍ପର୍କରେ ଅଧିକାଂଶ ଜାଣନ୍ତି ନାହିଁ । ସଂଜୀବଙ୍କୁ ଆମର ପରାମର୍ଶ ତାଙ୍କର ଅଫିସ ହେଉ କି ଆବାସିକ କାର୍ଯ୍ୟାଳୟ ହେଉ ସବୁଠାରେ ସେ ଲେଖି ଦିଅନ୍ତୁ କାନରେ କହିବା ପାଇଁ କେହି ଆସନ୍ତୁ ନାହିଁ ବୋଲି । ଏହା ହେଲେ ଯାଇ କାନକୁହାଙ୍କ ଠାରୁ ସେ ରକ୍ଷା ପାଇପାରିବେ । ■

## ଅନଙ୍ଗଙ୍କ ଧୈର୍ଯ୍ୟ

ଏମିତି କୁହାଯାଏ ଯାହାର ଧୈର୍ଯ୍ୟ ଅଛି ସେ ସବୁ ଅସମ୍ଭବକୁ ସମ୍ଭବ କରିଦେବ । ତେବେ ଅନେକ କ୍ଷେତ୍ରରେ ଧୈର୍ଯ୍ୟ ରଖି କାମ କରିବାଟା ସମ୍ଭବ ହୁଏନାହିଁ । ପୁଣି ରାଜନୀତିରେ ଧୈର୍ଯ୍ୟ ଶବ୍ଦ ଶୁଣିଲେ ବହୁ ନେତା ନାକ ଟେକନ୍ତି । ବର୍ତ୍ତମାନ ରାଜନୀତି ହେଉଛି ତୁରନ୍ତ ଦାନ ମହାପୁଣ୍ୟ ପରି । ମାନେ ଯାହା ମିଳୁ ତାହା ସଙ୍ଗେସଙ୍ଗେ ମିଳୁ । ଏବେ ଯିବା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ହ୍ୟାଟ୍ରିକ ମୁଖ୍ୟମନ୍ତ୍ରୀ ସରକାରକୁ । ଏହି ସରକାରରେ ବହୁ ନୂତନ ମନ୍ତ୍ରୀ ଅଛନ୍ତି ପୁଣି ବହୁ ଅଭିଜ୍ଞ ମନ୍ତ୍ରୀ ବି ଅଛନ୍ତି । ଆଉ କେତେକ ଅଭିଜ୍ଞ ମନ୍ତ୍ରୀମାନେ ସେମାନଙ୍କୁ ମିଳିଥିବା ବିଭାଗକୁ ନେଇ ପ୍ରଥମେ ସନ୍ତୁଷ୍ଟ ନଥିଲେ । ଅବଶ୍ୟ ଇତିମଧ୍ୟରେ ଅନେକ ମଧ୍ୟ ଢାଂଚାରେ ପଡ଼ିଗଲେଣି ଏବଂ ପସନ୍ଦ ହେଉ ନଥିବା ବିଭାଗ ମଧ୍ୟ ସେମାନଙ୍କର ପସନ୍ଦ ହୋଇଗଲାଣି । କିନ୍ତୁ ଅନଙ୍ଗ ଉଦୟ ସିଂହଦେଓ ଯେମିତି ବିଭାଗକୁ ନେଇ ପ୍ରଥମରୁ ଅସନ୍ତୁଷ୍ଟ ଥିଲେ ଏବେବି ସେହିପରି ଅଛନ୍ତି । ଅନଙ୍ଗ ଯେ ଆଜିର ମନ୍ତ୍ରୀ ତାହା ନୁହେଁ । ସେ ୧୯୭୬ ମସିହାରେ ବିନାୟକ ଆଚାର୍ଯ୍ୟଙ୍କ ମୁଖ୍ୟମନ୍ତ୍ରୀରେ ଗଠିତ କଂଗ୍ରେସ ମନ୍ତ୍ରିମଣ୍ଡଳରେ ସେ ରାଷ୍ଟ୍ରମନ୍ତ୍ରୀ ଥିଲେ । ସେତେବେଳେ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ମିଶାଇ ମନ୍ତ୍ରିମଣ୍ଡଳର ସଂଖ୍ୟା ଥିଲା ୧୪ । ଅନଙ୍ଗଙ୍କୁ ମିଳିଥିଲା ଜଙ୍ଗଲ, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ବିଭାଗ । ସେତେବେଳେ ଲୋଇସିଂହାରୁ ଅନଙ୍ଗ ବିଧାୟକ ହୋଇଥିଲେ । ୧୯୯୦ ମସିହାରେ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀରେ ଗଠିତ ମନ୍ତ୍ରିମଣ୍ଡଳରେ ମଧ୍ୟ ଅନଙ୍ଗ ଉଦୟ ସିଂହଦେଓ ୧୯୯୧ ଜାନୁୟାରୀ

ପହିଲାରେ କ୍ୟାବିନେଟ ମନ୍ତ୍ରୀ ହୋଇଥିଲେ । ତାଙ୍କୁ ମିଳିଥିଲା ପର୍ଯ୍ୟଟନ ବିଭାଗ । ୨୦୦୦ ମସିହାରେ ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଅନଙ୍ଗ ଉଦୟ ସିଂହଦେଓ ହୋଇଥିଲେ ଇସ୍ପାତ, ଖଣି ଓ ଶକ୍ତି ବିଭାଗର କ୍ୟାବିନେଟ ମନ୍ତ୍ରୀ । ୨୦୦୪ରେ ନବୀନଙ୍କ ଦ୍ୱିତୀୟ ମନ୍ତ୍ରିମଣ୍ଡଳରେ ଅନଙ୍ଗଙ୍କୁ ମିଳିଥିଲା ପୂର୍ତ୍ତ ଓ ଗୃହ ନିର୍ମାଣ ବିଭାଗ । ୨୦୦୯ରେ ନବୀନଙ୍କ ତୃତୀୟ ମନ୍ତ୍ରିମଣ୍ଡଳରେ ଅନଙ୍ଗ ହୋଇଛନ୍ତି ଯୋଜନା, ସମନ୍ୱୟ ଓ ସରକାରୀ ଉଦ୍ୟୋଗ ମନ୍ତ୍ରୀ । ତେବେ ମୂଳରୁ ଏହି ବିଭାଗକୁ ନେଇ ଅନଙ୍ଗ ଅସନ୍ତୁଷ୍ଟ ଥିଲେ ଆଉ ଏବେବି ଅଛନ୍ତି । ଅନଙ୍ଗଙ୍କ ମତ ହେଉଛି ତାଙ୍କ ପରି ଜଣେ ବରିଷ୍ଠ ମନ୍ତ୍ରୀଙ୍କୁ ଏଭଳି କମ୍ ଗୁରୁତ୍ୱପୂର୍ଣ୍ଣ ବିଭାଗ ଦିଆଯିବା ଉଚିତ ନୁହେଁ । ତେବେ ରାଜନୀତିରେ ଧୈର୍ଯ୍ୟ କିପରି କାମ ଦିଏ ତାହା ସେ ତାଙ୍କର ଅଭିଜ୍ଞତାରୁ ଜାଣିଛନ୍ତି । ଅନଙ୍ଗଙ୍କ ମନ୍ତ୍ରୀ ଅଭିଜ୍ଞତା ଆଜିର ନୁହେଁ । ୩୪ ବର୍ଷ ତଳେ ସେ ମନ୍ତ୍ରୀ ହୋଇଥିଲେ । ଧୈର୍ଯ୍ୟ ଥିଲେ କିପରି ରାଜନୀତିରେ ସଫଳତା ଆସେ ତାହା ସେ ଜାଣିଛନ୍ତି । ଏମିତି ଯୋଜନା, ସମନ୍ୱୟ ଓ ସରକାରୀ ଉଦ୍ୟୋଗ ବିଭାଗରେ ତାଙ୍କ ପାଇଁ କାମ ନାହିଁ ବୋଲି ସେ ମଧ୍ୟ କହନ୍ତି । ଏହି ବିଭାଗରେ କମ୍ ଫାଇଲ ଆସେ । ଏହାସତ୍ତ୍ୱେ ଅନଙ୍ଗ ଭୁବନେଶ୍ୱରରେ ଥିବାବେଳେ ପୂର୍ବାହ୍ନ ୧୧ଟା ବେଳେ ଓ ଅପରାହ୍ନ ୫ଟା ବେଳେ ସଚିବାଳୟ କାର୍ଯ୍ୟାଳୟକୁ ନିୟମିତ ଭାବେ ଆସନ୍ତି । ଘରେ ବସି ଅଫିସ କାମ କରିବାକୁ ତାଙ୍କୁ ଭଲ ଲାଗେନାହିଁ । ତେବେ କାମ ନଥିବାରୁ ସେ ଅଧିକାଂଶ ଦିନ ଦିଲ୍ଲୀରେ ରହୁଥିବାର ଦେଖାଯାଏ । ଅନଙ୍ଗ ଏବେ ଚାହିଁ ରହିଛନ୍ତି କେବେ ତାଙ୍କୁ ତାଙ୍କ ପସନ୍ଦର ବିଭାଗ ମିଳିବ । ଆଉ ସେ ପୂର୍ଣ୍ଣ ସମୟ ସେହି ବିଭାଗରେ ମନ ଦେବେ । ମନ ପସନ୍ଦ ବିଭାଗ କେବେ ମିଳିବ ବୋଲି ଅନଙ୍ଗଙ୍କୁ ଯଦି କେହି ପ୍ରଶ୍ନ କରନ୍ତି ତେବେ ଚଟାପଟ ତାଙ୍କ ଠାରୁ ଉତ୍ତର ବି ମିଳିଯାଉଛି । ତାହା ହେଲା- ରାଜନୀତିରେ ଧୈର୍ଯ୍ୟର ଆବଶ୍ୟକତା ରହିଛି । ଧୈର୍ଯ୍ୟ ରଖିଲେ ହିଁ ରାଜନୀତିରେ ଯେତେ ବିଳମ୍ବ ହେଲେ ମଧ୍ୟ ସ୍ୱାଦ ମିଳିବ ହିଁ ମିଳିବ । ଏ କ୍ଷେତ୍ରରେ ସେ ମଧ୍ୟ ରାମକୃଷ୍ଣ ପଟ୍ଟନାୟକଙ୍କର ଉଦାହରଣ ଦେଉଛନ୍ତି । ରାମକୃଷ୍ଣଙ୍କ ଠାରୁ ଅର୍ଥ ବିଭାଗ କାଢ଼ି ନିଆଯାଇ କୃଷି ବିଭାଗ ଦିଆଯାଇଥିଲା । ଏହା ବି ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ଥିଲା । କିନ୍ତୁ ରାମକୃଷ୍ଣଙ୍କର ଧୈର୍ଯ୍ୟ କମ୍ ଥିଲା । ସେ ଯଦି ଧୈର୍ଯ୍ୟ ଧରି କିଛି ସମୟ ରହିଯାଇଥା'ନ୍ତେ ତେବେ ରାଜନୀତିରେ ତାଙ୍କର ବର୍ତ୍ତମାନ ପରି ଅବସ୍ଥା ହୋଇ ନଥା'ନ୍ତା । ଏମିତି ଅନେକଙ୍କର ଉଦାହରଣ ମଧ୍ୟ ଅନଙ୍ଗ ଦେଉଛନ୍ତି । ଦେଖାଯାଉ ଅନଙ୍ଗଙ୍କର ଧୈର୍ଯ୍ୟ ତାଙ୍କୁ ତାଙ୍କର ମନପସନ୍ଦ ବିଭାଗ ଦେଉଛି କି ନାହିଁ । ■

# ପ୍ରସନ୍ନଙ୍କ ପ୍ରସନ୍ନ





ମିତି ପ୍ରସନ୍ନ ପାଟ୍ଟଶାଣୀଙ୍କ ନାମକରଣ ସାର୍ଥକ ହୋଇଛି ଯେଉଁଦିନ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କୁ ନମସ୍କାର କଲେ । ଅବଶ୍ୟ ଏ କ୍ଷେତ୍ରରେ ପ୍ରସନ୍ନ ପାଟ୍ଟଶାଣୀ ଅତ୍ୟନ୍ତ ପ୍ରସନ୍ନ ହୋଇଯାଇଥିଲେ ମଧ୍ୟ ସେହି ମନୋଭାବକୁ ବାହାରେ ପ୍ରକାଶ କରି ନଥିଲେ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଦିଲ୍ଲୀ ଗସ୍ତରେ ଯାଇଥିବା ବେଳେ ସଂସଦ ଅଧିବେଶନ ଚାଲିଥାଏ । ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କୁ ସାକ୍ଷାତ କରିବା ପାଇଁ ନବୀନ ପହଂଚିଥିଲେ ପାର୍ଲାମେଂଟ ଭବନରେ । ପାର୍ଲାମେଂଟ ବାହାରେ ସେତେବେଳେ ଉପସ୍ଥିତ ଥିଲେ ଭୁବନେଶ୍ୱର ଲୋକସଭା ସାଂସଦ ଡକ୍ଟର ପ୍ରସନ୍ନ କୁମାର ପାଟ୍ଟଶାଣୀ । ଏମିତି ଦେଖିଲେ ନବୀନ ପଟ୍ଟନାୟକ ହେଉଛନ୍ତି ବିଜୁ ଜନତା ଦଳର ସଭାପତି । ପୁଣି ଓଡ଼ିଶାର ହ୍ୟାଟ୍ରିକ୍ ମୁଖ୍ୟମନ୍ତ୍ରୀ । ଏହି ଦୃଷ୍ଟିରୁ ଯିଏ ଯେତେ ବୟସ୍କ ହେଉଥା'ନ୍ତୁ ନା କାହିଁକି ଦଳର ସଭାପତି ଭାବେ ନବୀନ ପଟ୍ଟନାୟକଙ୍କୁ ଦଳର ସଭ୍ୟମାନେ ନମସ୍କାର କରିବା କଥା । ପୁଣି ମୁଖ୍ୟମନ୍ତ୍ରୀ ହୋଇଥିବାରୁ ତାଙ୍କୁ ମଧ୍ୟ ଦଳର କର୍ମୀଙ୍କ ଠାରୁ ଆରମ୍ଭ କରି ସାଧାରଣ ଲୋକ ବି ନମସ୍କାର କରିବା କଥା । କିନ୍ତୁ ପାର୍ଲାମେଂଟ ଭବନ ସମ୍ମୁଖରେ ସବୁକିଛି ଓଲଟପାଲଟ ହୋଇଗଲା । ଏମିତି ତ ପ୍ରସନ୍ନ ପାଟ୍ଟଶାଣୀଙ୍କ ଗେରୁଆବସ୍ତ୍ର, ଦାଢ଼ି, ବାଳ, ବାଡ଼ି ଆଉ ବେକରେ ମାଳି ତାଙ୍କୁ ବାବା କରିଦେଇଛି । ପ୍ରସନ୍ନ ନାମ ବଦଳରେ ଏବେ ତାଙ୍କୁ ଲୋକେ ବାବା ଡାକିଲେଣି । ବାବା ନାମରେ ସେ ବେଶ୍ ଖ୍ୟାତ ହୋଇଗଲେଣି । ଏହି ଦୃଷ୍ଟିରୁ ତାଙ୍କୁ ଆବାଳ, ବୃଦ୍ଧବନିତା ପ୍ରଣାମ ବି କରୁଛନ୍ତି । ସତେ ଯେମିତି ପ୍ରସନ୍ନ ପାଟ୍ଟଶାଣୀ ସମସ୍ତଙ୍କ ଠାରୁ ଉର୍ଦ୍ଧ୍ୱକୁ ଚାଲିଯାଇଛନ୍ତି । ତେବେ ରାଜନୀତି କରୁଥିବା ଯୋଗୁ ଆଉ ବିଜେଡି ଦଳର ସଭ୍ୟ ଥିବାରୁ ଏହି ଦଳର ସଭାପତି ଓ ମୁଖ୍ୟମନ୍ତ୍ରୀଙ୍କୁ ପ୍ରସନ୍ନ ନମସ୍କାର କରିବା କଥା । କିନ୍ତୁ ପରିସ୍ଥିତି ଓଲଟ ଗଙ୍ଗା ହୋଇଯାଇଥିଲା । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପାର୍ଲାମେଂଟ ଭବନରେ ପହଂଚିବା ବେଳକୁ ଯେତେବେଳେ ସେଠାରେ ପ୍ରସନ୍ନ ପାଟ୍ଟଶାଣୀଙ୍କୁ ଦେଖିଲେ ସେତେବେଳେ ସେ ସଙ୍ଗେସଙ୍ଗେ ତାଙ୍କୁ ନମସ୍କାର କରିଦେଲେ । ଅବଶ୍ୟ ପ୍ରସନ୍ନଙ୍କୁ ମୁଖ୍ୟମନ୍ତ୍ରୀ ନବୀନଙ୍କ ଏହି ନମସ୍କାର ବେଶ୍ କୁତୁକୁତୁ ଲାଗିଥିଲା । ଯେତେବେଳେ ଦଳର ସୁପ୍ରିମୋ ତାଙ୍କୁ ନମସ୍କାର କରୁଛନ୍ତି ସେତେବେଳେ ତାଙ୍କ ସ୍ଥାନ କେଉଁଠି ବୋଲି ତାହା ସେ ପାର୍ଲାମେଂଟ ଭବନ ଆଗରେ ଥିବା ଲୋକଙ୍କୁ ଜଣାଇ ଦେବା ପାଇଁ ଚାହୁଁଥିଲେ । ନବୀନ ତାଙ୍କର ଚିରାଚରିତ ପ୍ରଥାରେ ପ୍ରସନ୍ନଙ୍କୁ ନମସ୍କାର କରି ପ୍ରଧାନମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ଚାଲିଗଲେ । କିନ୍ତୁ ସେଠାକାରର ପରିସ୍ଥିତିକୁ ନେଇ ଚର୍ଚ୍ଚା ପରେ ଚର୍ଚ୍ଚାହେଲା । ବିଜେଡିରେ ପ୍ରସନ୍ନ ଜଣେ ଗୁରୁତ୍ୱପୂର୍ଣ୍ଣ ନେତା ବୋଲି ସେଠାରେ ଉପସ୍ଥିତ

ଥିବା ଲୋକମାନଙ୍କ ମଧ୍ୟରେ ଚର୍ଚ୍ଚା ହେଲା । ପ୍ରସନ୍ନଙ୍କୁ ଯେ ନବୀନଙ୍କର ଏହି ନମସ୍କାର ପ୍ରଥମ ତାହା ନୁହେଁ । କିନ୍ତୁ ପାର୍ଲାମେଂଟ ଭବନରେ ଏଭଳି ନମସ୍କାର ପ୍ରଥମ ଅଟେ । ଯେଉଁଥିପାଇଁ ପ୍ରସନ୍ନ ଅତି ପ୍ରସନ୍ନ ହୋଇଯାଇଥିଲେ । ରାଜନୀତି ମହଲରେ ଯେଉଁ ଚର୍ଚ୍ଚା ହେଉଛି  ଯେ, ପ୍ରସନ୍ନଙ୍କ ବାପା କୃତିବାସ ଯେଉଁ ପ୍ରସନ୍ନ ନାମକରଣ କରିଥିଲେ ତାହା ଏତେଦିନ ପରେ ସାର୍ଥକ ହୋଇଛି । ■

# ଜୋତାର କରାମତି



ଏମିତି ଦେଖିଲେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ବୟସ ୭୦ ଟପିଗଲାଣି। କିନ୍ତୁ ରାଜନୀତିରେ ସେ କଂଚା ଯୁବକ । ଯଦି ପଦଯାତ୍ରା ହୁଏ ତେବେ ଚାଲିରେ ତାଙ୍କୁ କେହି ଟପିପାରିବେ ନାହିଁ । ସତେ ଯେମିତି ସେ ପବନର ପୁତ୍ର । ମାନେ ସାଏଁ ସାଏଁ ଚାଲିବେ । ଏମିତି ତ ଅନେକବାର ତାଙ୍କ ଚାଲିକୁ ନେଇ ରାଜନୀତିରେ ଚର୍ଚ୍ଚା ବି ହୋଇଛି । ଅର୍ଥାତ୍ ଆଗରେ ସେ ଏତେ ଜୋର୍‌ରେ ଚାଲନ୍ତି ଯେ ତାଙ୍କ ପଛରେ ଥିବା ଲୋକମାନେ ଚାଲିବା ପରିବର୍ତ୍ତେ ଦୌଡ଼ନ୍ତି । ଦେଖଣାହାରି ତାଙ୍କ ପଦଯାତ୍ରାକୁ ପଦଯାତ୍ରା ନକହି ଦୌଡ଼ଯାତ୍ରା ବୋଲି କହନ୍ତି। ପ୍ୟାରୀ ଏତେ ଜୋର୍‌ରେ ଚାଲନ୍ତି ଯେ, ତାଙ୍କ ପାଖ ଲୋକମାନେ ମଧ୍ୟ ପଛକୁ ପଛକୁ ରହିଯାଆ'ନ୍ତି । ଭୁବନେଶ୍ୱର ପୌରନିଗମ ନିର୍ବାଚନରେ ବିଜେଡ଼ି ପ୍ରାର୍ଥୀଙ୍କ ପାଇଁ ନିର୍ବାଚନ ପ୍ରଚାରରେ ଯାଇଥିବା ବେଳେ ପ୍ୟାରୀଙ୍କୁ ପଦଯାତ୍ରାରେ ଯିବାକୁ ପଡ଼ିଲା । କିନ୍ତୁ ପ୍ୟାରୀ ପଦଯାତ୍ରା ସମୟରେ ଯେତେ ଜୋର୍‌ରେ ଚାଲୁଥିଲେ ସେହି ସମୟରେ ସେପରି ଚାଲିପାରିଲେ ନାହିଁ । ସେଠାରେ ଥିବା ବିଜେଡ଼ି ନେତାମାନେ ପ୍ୟାରୀ କାହିଁକି ଜୋର୍‌ରେ ଚାଲିପାରୁନାହାନ୍ତି ବୋଲି ପରସ୍ପର ମୁହଁକୁ ଚାହୁଁଥା'ନ୍ତି । ହଠାତ୍ ଦେଖାଗଲା ପଦଯାତ୍ରା ସମୟରେ ପ୍ୟାରୀ ଯେଉଁ ଦାମୀ ଜୋତା ପିନ୍ଧିଥା'ନ୍ତି ତାହା ତାଙ୍କ ଗୋଡ଼ରେ ନାହିଁ । ଭିଟାମିନ୍ ଖାଇଲେ ଯେପରି ଦେହରେ ଶକ୍ତି ବୃଦ୍ଧି ହୋଇଯାଏ ସେହିପରି ପ୍ୟାରୀ ଏହି ଦାମୀ ଜୋତା ପିନ୍ଧିଲେ ତାଙ୍କର ଦୁଇଗୋଡ଼ ଚଳଚଂଚଳ ହୋଇଯାଏ । ପ୍ୟାରୀ ଆଦୌ ଭାବି ନଥିଲେ ସେଦିନ ତାଙ୍କୁ ପଦଯାତ୍ରାରେ ଯିବାକୁ ପଡ଼ିବ ବୋଲି । ତେଣୁ ତାଙ୍କର ଚିରାଚରିତ କୁର୍ତ୍ତା, ପାଇଜାମା ଓ ଚପଲ ପିନ୍ଧି ସେ ନିର୍ବାଚନ ପ୍ରଚାରକୁ ଚାଲି ଯାଇଥିଲେ । ପଦଯାତ୍ରାରେ ପ୍ୟାରୀଙ୍କୁ ଜୋର୍‌ରେ ଚାଲିବାକୁ ବିଜେଡ଼ି ନେତା ଓ କର୍ମୀମାନେ ଯେତେ କହିଲେ ମଧ୍ୟ ପ୍ୟାରୀଙ୍କର ପାଦ ଜୋର୍‌ରେ ଯାଉ ନଥିଲା । ତେବେ ନେତାମାନେ ବହୁ ଲୋକଙ୍କୁ ଦେଖିଦେବା ମାତ୍ରେ ଅତ୍ୟଧିକ ଉତ୍ସାହ ହୋଇଯାଆନ୍ତି । ତାହା ହିଁ ଘଟିଥିଲା ପ୍ୟାରୀଙ୍କ କ୍ଷେତ୍ରରେ । ଶୋଭାଯାତ୍ରା ସମୟରେ ଲୋକ ଭିଡ଼ ଯେତେବେଳେ ଜୋର୍‌ଦାର୍ ହୋଇଗଲା ସେତେବେଳେ ପ୍ୟାରୀଙ୍କୁ ଶୀଘ୍ର

ଚାଲନ୍ତୁ ବୋଲି ନେତା ଓ କର୍ମୀଙ୍କୁ କହିବାକୁ ପଡ଼ି ନଥିଲା । ବିନା ଜୋତାରେ ପ୍ୟାରୀଙ୍କର ଚାଲି ହୋଇଗଲା ହରିଣ ଦୌଡ଼ିବା ପରି । ସେଦିନ ପ୍ୟାରୀଙ୍କ ପ୍ରଶଂସକମାନେ ଯେଉଁ ମନ୍ତବ୍ୟ ଦେଉଥିଲେ ତାହା ହେଲା- ଯଦି ପ୍ୟାରୀଙ୍କ ଗୋଡ଼ରେ ଦାମୀ ଜୋତା ଥା'ନ୍ତା ତେବେ ପ୍ୟାରୀଙ୍କ ଚାଲି ଏରୋପ୍ଲେନ୍ ଉଡ଼ିବା ପରି ହୋଇଯାଇଥା'ନ୍ତା । ମାନିବାକୁ ପଡ଼ିବ ପ୍ୟାରୀଙ୍କ ଜୋତାକୁ । ■

## ଚିହ୍ନୁଚିହ୍ନୁ ନଅ ବରଷ

ଜଣେ ଲୋକଙ୍କୁ ଚିହ୍ନିବାକୁ କେତେ ସମୟ ଲାଗିବ । ବର୍ଷେ, ଦୁଇ ବରଷ, ତିନି ବରଷ, ଚାରି ବରଷ... କିନ୍ତୁ ନଅ ବରଷ ଲାଗିବ ଚିହ୍ନିବାକୁ ଏହା ଭାବିଲେ ଯେକୌଣସି ବ୍ୟକ୍ତିଙ୍କୁ ଆଶ୍ଚର୍ଯ୍ୟ ଲାଗିବ ହିଁ ଲାଗିବ । ଏଭଳି ଏକ ଘୋଷଣା କରି ପିପିଲି ବିଧାୟକ ପ୍ରଦୀପ ମହାରଥୀ ଚର୍ଚ୍ଚାକୁ ଚାଲିଆସିଥିଲେ । ବିଜୁ ଯୁବ ଛାତ୍ର ଜନତା ଦଳ ପକ୍ଷରୁ ଆୟୋଜିତ ହୋଇଥିବା ବିକାଶ ସମାବେଶରେ ଭାଷଣ ଦେବାକୁ ଡକାଗଲା ପ୍ରଦୀପଙ୍କୁ । ଭରିଭୁସି ମିଜାଜରେ ପ୍ରଦୀପ ଭାଷଣ ଦେଲେ । କହୁକହୁ ମଣ୍ଡିକଥା କହିଦେଲେ । ବିଜୁ ଜନତା ଦଳରେ ପ୍ୟାରୀମୋହନ ମହାପାତ୍ରଙ୍କୁ କ୍ଷମତାଶାଳୀ ବୋଲି ଜାଣି ନଥିଲେ ପ୍ରଦୀପ । ଏବେ ଜାଣିଲେ ଦଳର ଯଦି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବୁଢ଼ା ଆଙ୍ଗୁଠି ହୁଅନ୍ତି ତେବେ ପ୍ୟାରୀମୋହନ ମହାପାତ୍ର ବିଶି ଆଙ୍ଗୁଠି । ଏହି କଥା ପଦକରେ ସଭାସ୍ଥଳ ହସରେ ଉଚ୍ଛୁଳି ପଡ଼ିଥିଲା । କିଏ କହିଲାଣି ତ ପ୍ୟାରୀଙ୍କୁ ତେଲ ମାରିବାକୁ ପ୍ରଦୀପ ଏଭଳି କଥା କହିଛନ୍ତି ତ ଆଉ କିଏ କହିଲାଣି ପ୍ରଦୀପ ଯାହା କହିଛନ୍ତି ଖୀ [illegible]ସତ । ଯଦି ସେ ଆଗରୁ ଜାଣିଥା'ନ୍ତେ ପ୍ୟାରୀ ବିଜୁ ଜନତା ଦଳରେ କ୍ଷମତାଶାଳୀ ବୋଲି ତା'ହେଲେ ତାଙ୍କର ଅବସ୍ଥା ଆଜି ପରି ହୋଇ ନଥା'ନ୍ତା । ୨୦୦୦ ବିଧାନସଭା ନିର୍ବାଚନରେ ସେ ବିଧାନସଭାରେ ସରକାରୀ ଦଳ ମୁଖ୍ୟ ସଚେତକ ପଦରେ ଥିବାବେଳେ ୨୦୦୪ରେ ହୋ[illegible]'ନ୍ତେ ମନ୍ତ୍ରୀ । ଖାଲି ସେତିକି ନୁହେଁ ପୁରୀ ଜିଲ୍ଲା ବିଜେଡ଼ି ସଭାପତି ମଧ୍ୟ ସେ ହୋଇପାରିଥା'ନ୍ତେ । ସଭାରେ ମହାରଥୀଙ୍କ ଭାଷଣ ଶୁଣିଥିବା ଲୋକମାନେ ମଧ୍ୟ ତାଙ୍କ ସହିତ ଆଉ ପଦେ କଥା ଯୋଡ଼ିଦେଇଥିଲେ । ତାହା ହେଲା ପଗଡ଼ିବାନ୍ଧୁବାନ୍ଧୁ କଟେଗା ବରଷୋଟି । ଆଉ କାହା ପାଇଁ ହେଉ କି ନହେଉ ମହାରଥୀଙ୍କ ପାଇଁ ଏହି ପଦଟି ପ୍ରଯୁଜ୍ୟ । ପଗଡ଼ି ବାନ୍ଧିବା ପାଇଁ ମହାରଥୀଙ୍କୁ ନଅ ବରଷ ସମୟ ଲାଗିଗଲା । ତେବେ ପ୍ୟାରୀଙ୍କୁ ଚିହ୍ନିବା ପରେ ମହା[illegible]ଥୀ କେବେ ମନ୍ତ୍ରୀ ହେଉଛନ୍ତି ତାହା ଦେଖିବାକୁ ବାକି ରହିଛି । ■



## ମହେଶଙ୍କ ପଖାଳ ନିଶା

ତାଲଚେରର ପୂର୍ବତନ ବିଧାୟକ ହେଉଛନ୍ତି ମହେଶ ସାହୁ । ୧୯୯୫ରୁ ୨୦୦୯ ପର୍ଯ୍ୟନ୍ତ ସେ ବିଧାୟକ ଥିଲେ । ୨୦୦୯ରେ ସେ ପ୍ରାର୍ଥୀ ହୋଇ ହାରିଗଲେ । କିନ୍ତୁ ତାଙ୍କର ରାଜନୀତି ନିଶା ପୂର୍ବରୁ ଯେତିକି ଥିଲା ଏବେ ତାଠାରୁ ଅଧିକ ହେବାରେ ଲାଗିଛି । ତେବେ ଦେଖିବା

ଶୁଣିବା ଲୋକଙ୍କର ମତ ହେଉଛି ରାଜନୀତି ନିଶାଠାରୁ ମହେଶଙ୍କର ଆଉ ଏକ ବଡ଼ ନିଶା ରହିଛି । ଏହା ନଦେଖିଲା ଲୋକ ଜାଣିପାରିବ ନାହିଁ । ଯଦି ମହେଶ ସାହୁ କାହା ଘରକୁ ଯାଇଛନ୍ତି ଆଉ ଯଦି ସେଠାରେ କିଏ ପଖାଳ ଖାଉଛନ୍ତି ତେବେ ମହେଶଙ୍କ ମନ ଭାରି ଅସ୍ଥିର ହୋଇଯାଏ । ପଖାଳ ଖାଉଥିବା ଲୋକଟିକୁ ଦେଖି ସେ ନିଜେ ଭାବି ଦିଅନ୍ତି ଯେ ପଖାଳ ଖାଉଛନ୍ତି ବୋଲି । ମାନେ ପଖାଳକୁ ଦେଖିଲେ ତାଙ୍କ ପାଟିରୁ ଲାଳ ଗଡ଼ି ଆସେ । ସେ ପଖାଳକୁ ଏତେ ଅଧିକ ଭଲ ପାଆନ୍ତି ଯେ, ତାହାକୁ ସେ ଭାଷାରେ ବର୍ଣ୍ଣନା କରିପାରନ୍ତି ନାହିଁ । ଜଳଖିଆ ଖାଇବା ସମୟରେ ଯଦି ପଖାଳ ମିଳିଗଲା ତେବେ ଜାଣ ତାଙ୍କର କଟେପୁଅ ବାଆର । ତାଳଚେରରୁ ଯେତେବେଳେ ସେ ସକାଳେ ରାଜଧାନୀ ଭୁବନେଶ୍ୱରକୁ ଆସନ୍ତି ସେତେବେଳେ ସାଥିରେ ସେ ପଖାଳ ଧରି ଆସିଥା'ନ୍ତି । ବିଧାୟକ ଥିବାବେଳେ ତାଙ୍କ ଏମ୍‌ଏଲ୍‌ଏ କଲୋନୀ କ୍ୱାର୍ଟରରେ ପଖାଳ ରଖାଯିବ ଆଉ ତା' ପାଇଁ ପାଗଯୋଗ ମଧ ଖୋଜାଯିବ । ପଖାଳ ସାଙ୍ଗକୁ ଯେକୌଣସି ଭଜା ହେଲେ ତାଙ୍କର ଚଳିବ । କିନ୍ତୁ ଲେମ୍ବୁ ଆଉ ଟମାଟ ନହେଲେ ପଖାଳର ମଜା ସେ ପାଆନ୍ତି ନାହିଁ । ପଖାଳ ଖାଇବା ଆଗରୁ ମହେଶ ଖୋଜିଥା'ନ୍ତି ଲେମ୍ବୁ ଆଉ ଟମାଟ । ମହେଶଙ୍କ ପଖାଳ ଖିଆ ଦେଖିଲେ ପାଟିରୁ ଯେତିକି ଲାଳ ଗଡ଼ିବ ନାହିଁ କିନ୍ତୁ ତାଙ୍କର ପାଗ ଯୋଗକୁ ଦେଖିଲେ ପାଟି ପାକୁପାକୁ ହେବ । ■

## ମିହିରଙ୍କ ଚାବି କମାଲ



ଏ ହେଲେ ମିହିର କୁମାର ମହାନ୍ତି । ଭୁବନେଶ୍ୱର ମହାନଗର ନିଗମର ମିହିର ହେଉଛନ୍ତି ପ୍ରଥମ ମେୟର । ମେୟର ଥିବାବେଳେ ତାଙ୍କୁ ଆମେରିକାର ସିଟିଜେନ୍‌ସିପ୍ ମିଳିଥିଲା । ସେତେବେଳେ ଚର୍ଚ୍ଚା ହେଉଥିଲା ଯେ ମିହିର ରାଜଧାନୀ ଭୁବନେଶ୍ୱରରେ ରହିବେ ନା ଆମେରିକାରେ ରହିବେ ବୋଲି । ମିହିର ଆମେରିକା ଯାଇଥିବାବେଳେ ଆମେରିକାର ନ୍ୟୁଓରଲିନ୍ସର ମେୟର ସି. ରାୟ ନାଗିନ ତାଙ୍କୁ ସମ୍ମାନ ଜଣାଇ ନଗରର ଚାବି ଓ ସିଟିଜେନ୍‌ସିପ୍ ପ୍ରଦାନ କରିଥିଲେ । ଏହି ଚାବିକୁ ମିହିର ସେତେବେଳେ ସବୁଆଡ଼େ ଦେଖାଉଥିଲେ । ସେତେବେଳେ ଏକ ଧାରଣା ହୋଇଥିଲା ଯେ ସତେ ଯେମିତି ତାଲା ପକାଇ ଆସିଛନ୍ତି ମିହିର ନ୍ୟୁଓରଲିନ୍ସ ନଗରରେ ଆଉ ଚାବିଟି ତାଙ୍କ ହାତରେ ରହିଛି ବୋଲି । ଆଉ ସେ ସେଠାକୁ ନ ଗଲେ ସେଠାକାର ନାଗରିକମାନେ ସତେ ଯେମିତି ସେଠାରୁଆଉ ବାହାରକୁ ବାହାରିପାରିବେ ନାହିଁ । ସେଠାକାର ନାଗରିକମାନେ ମିହିରଙ୍କ ହାତରେ ଥିବା ଚାବିର ଅପେକ୍ଷାରେ ସତେଯେମିତି ଅଛନ୍ତି । ଏ ଚାବିର ମହତ୍ୱ କ'ଣ ତାହା କେହି ଜାଣି ପାରୁନାଥିଲେ । କିନ୍ତୁ ମିହିର ଜାଣିସାରିବେଣି ଏହି ଚାବିଟିକୁ ପାଖରେ ରଖି ରାଜନୀତିରେ ତାଙ୍କର ସଫଳତା କେତେ ହୋଇଛି ବୋଲି । ■

# ହେଲେହେଲା ନହେଲେ ନାହିଁ



ଟି ନୋଟି କିପରି ଚଉଦ ବର୍ଷର ମୁଖ୍ୟମନ୍ତ୍ରୀ ହେଉଛନ୍ତି ଜାନକୀ ବଲ୍ଲଭ ପଟ୍ଟନାୟକ । କିଏ ତାଙ୍କୁ ଓଡ଼ିଶା ରାଜନୀତିର ଭୀଷ୍ମପିତାମହ କହିଲେଣି ତ ଆଉ କିଏ ତନ୍ତ୍ରଗୁରୁ ବୋଲି କହିଲେଣି । ବିରୋଧୀ ଦଳ ନେତା ପଦବୀରେ ଥିଲାବେଳେ ଜାନକୀଙ୍କୁ ମିଳିଥିଲା ତିରୁପତି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳାଧିପତି ପଦ । ଏହି ଖବରଟି ଯେତେବେଳେ ପ୍ରଚାର ହୋଇଗଲା ସେତେବେଳେ ଜାନକୀଙ୍କ ନିନ୍ଦୁକ ମହଲରେ ଆନନ୍ଦର ଲହରି ଖେଳିଯାଇଥିଲା । ଥୋଡ଼ାଏ କହିଲେ ଏଥର ଜାନକୀ ଖତମ । କିନ୍ତୁ ଜୟଦେବ ଭବନରେ ଜାନକୀଙ୍କୁ ଲେଖକ ସାମୁଖ୍ୟ ସମର୍ଦ୍ଧନା ଦେବା ସମୟରେ ସେ ଦୁଇପଦ କହିବା ପାଇଁ କୁରୁଳି ଉଠିଥିଲେ । ସତେ ଯେମିତି ଜାନକୀ ସେହି ଦୁଇପଦ କଥା ପେଟ ଭିତରେ ବହୁଦିନରୁ ଚାପି ରଖିଥିଲେ । କହୁକହୁ ଜାନକୀ କଂଗ୍ରେସ ରାଜନୀତିର ଭାନୁମତୀ ପେଡ଼ି ଖୋଲିଦେଲେ । କୁଳାଧିପତି ପଦଟି ତାଙ୍କ ପାଇଁ ବିଶେଷଣ । ଓଡ଼ିଶା ରାଜନୀତିକୁ ଛାଡ଼ି ତାଙ୍କର ତିରୁପତିରେ ରହିବାର କିଛି କାରଣ ବି ନାହିଁ । ୩୬୩ ଦିନ ସେ ଓଡ଼ିଶାରେ ରାଜନୀତି କରିବେ । ବର୍ଷକୁ ମାତ୍ର ଦୁଇଦିନ ସେ ସେଠାକୁ ଯିବେ । ତେଣିକି ହେଲେ ହେଲା ନହେଲେ ନାହିଁ । ଜାନକୀଙ୍କ ଏହି କଥାଟି ନିନ୍ଦୁକଙ୍କୁ ବେଶ୍ ବାଧିଥିଲା । ତିନିଥର ମୁଖ୍ୟମନ୍ତ୍ରୀ ହୋଇଥିବା ଜାନକୀଙ୍କ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ରହିଛି । ରାଜନୀତିର ଗୋଟିଚାଳନାକୁ ସେ ଏଥିରୁ ବେଶ୍ ଭଲ ଭାବେ ଗ୍ରହଣ କରିନେଇଛନ୍ତି । ଜାନକୀ ଯେ ପୁଣିଥରେ ମୁଖ୍ୟମନ୍ତ୍ରୀ ହେବାକୁ ଆଶାୟୀ ଅଛନ୍ତି ତାହା ତାଙ୍କର ନିନ୍ଦୁକମାନେ ଏବେ ବି ଭାବୁଛନ୍ତି । ଯେତେଯାହା ହେଲେ ବି ଜାନକୀ ହେଉଛନ୍ତି ହରେକୃଷ୍ଣ ମହତବାଙ୍କ ଚେଲା । ତେଣୁ ତାଙ୍କ ନିନ୍ଦୁକମାନେ ସତର୍କ ହୋଇଯିବା ଉଚିତ୍ ଯେ ଜାନକୀ ଯେଉଁ ଛୁରୀ ଧରିଛନ୍ତି ତାର ଦୁଇପଟେ ଧାରବୋଲି । ■

# ଲଭ୍‌ଲି ହାଉସ



ବା ବୁ ପ୍ରଦୀପ ମହାରଥୀ ଛାତ୍ର ଅବସ୍ଥାରେ ରାଜନୀତି ଯେମିତି ଜୋରଦାର୍ କରୁଥିଲେ ଏବେବି ରାଜନୀତି ତାଙ୍କର ସେମିତି ଜୋରଦାର୍ । ଥରେ କି ଦୁଇଥର ନୁହଁ ପାଂଚଥର ବିଧାୟକ । ବାବୁ ମହାରଥୀ ଯେ କେବଳ ରାଜନୀତି କରନ୍ତି ତାହା ନୁହେଁ । ଯାତ୍ରାପାର୍ଟିର ବି ମାଲିକ ସେ । ଆଉ ବଡ଼ ଚାଷୀମଧ । ପିପିଲି-ଡେଲାଙ୍ଗ ରାସ୍ତାର ଦାନଗଦି ଠାରେ ରହିଛି ତାଙ୍କର ଫାର୍ମହାଉସ । ଏଠାରେ ତାଙ୍କର ଚାଷ ହେଉଛି ଫୋର୍ ଟାୟାର । ମାନେ ପୋଖରୀରେ ମାଛ, ପୋଖରୀ ଉପରେ କୁକୁଡ଼ା, ପୋଖରୀ କୂଳରେ କଦଳୀ ଗଛ ଆଉ ଧାନ, ଫଳ ଓ ପନିପରିବା ଚାଷ । ଏଭଳି ଫୋର୍ ଟାୟାର ଚାଷ କରିବାରେ ଓଡ଼ିଶାରେ ମହାରଥୀ ହେଉଛନ୍ତି ପ୍ରଥମ । ମହାରଥୀଙ୍କର ଏହି ଫାର୍ମହାଉସକୁ

ବହୁନେତା ଯାଇଛନ୍ତି । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ମଧ୍ୟ ଫାର୍ମହାଉସକୁ ବୁଲାଇ ନେଇଛନ୍ତି ମହାରଥୀ । ଆଉ ଫାର୍ମହାଉସରେ ନବୀନଙ୍କ ପାଇଁ ସେ ମଧ୍ୟ ଘରଟିଏ ତୋଳିଛନ୍ତି । ନାଁ ଦେଇଛନ୍ତି ଲଭଲି ହାଉସ । ଫାର୍ମହାଉସରେ ଭୋଜି ହେଲେ ମଜା ସମସ୍ତେ ଉଠାନ୍ତି । ତଟକା ପନିପରିବା, ମାଛ, ମାଂସ ସବୁମିଳେ ଫାର୍ମରେ । ଚାଷୀପୁଅ ମହାରଥୀଙ୍କ ରାଜନୀତି ଗୋଟିଚାଳନା ହୁଏ ସେହି ଫାର୍ମହାଉସରୁ । ମହାରଥୀଙ୍କ ଠାରୁ ଯଦି କିଏ ଫାର୍ମହାଉସ ଭାଷଣ ଶୁଣିବ ତେବେ ସେହିଠାରେ ସେ 'ଥ' ହୋଇ ବସିଥିବ । ଆଉ ଉଠିବ ନାହିଁ । ଫାର୍ମରେ ସବୁକିଛି । ମ୍ୟାଗନେଟ୍ ପଥର ଠାରୁ ଆରମ୍ଭ କରି ସବୁକିଛି ଫାର୍ମରେ ଦେଖିବାକୁ ମିଳିବ । ଏବେ ମହାରଥୀ ରାଜନୀତି ସହିତ ଯାତ୍ରାପାର୍ଟି ଓ କୃଷିରେ ଓସ୍ତାଦ ହୋଇଗଲେଣି । ଖାଲି ଦେଖିବାକୁ ବାକି ରହିଛି କେବେ ସେ ମନ୍ତ୍ରୀପଦରେ ଓସ୍ତାଦ ହେବେ । ■

## ନବୀନଙ୍କ କଳାଗଂଜି



ଯଦି କେହି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ସାକ୍ଷାତ କରିବାକୁ ନବୀନ ନିବାସ ବହୁ ପୂର୍ବରୁ ଯାଇଥା'ନ୍ତି ତେବେ ସେ ଜାଣିଥିବେ କଳାଗଂଜି ସମ୍ପର୍କରେ । ଏମିତି ନବୀନ ପଟ୍ଟନାୟକ ନବୀନ ନିବାସକୁ ସଂଧ୍ୟାରେ ଫେରିବା ପରେ ସେ ତାଙ୍କର ପୋଷାକ ବଦଳାଇ ଥା'ନ୍ତି । ଟ୍ରାଉଜର ଆଉ ଗଂଜିଟିଏ ସେ ପିନ୍ଧନ୍ତି । ନବୀନ ସବୁଦିନ ଯେ ଗଂଜି ବଦଳାନ୍ତି ତାହା ନୁହେଁ । ବହୁଦିନରୁ ପିନ୍ଧି ଆସୁଥିବା କଳାଗଂଜିକୁ କିନ୍ତୁ ନବୀନ ଛାଡ଼ି ପାରୁନଥିଲେ । ଅବଶ୍ୟ ସେତେବେଳେ ଗଂଜିର ରଙ୍ଗ ଛାଡ଼ି ଯାଇଥିଲା । କେତେକ ମଧ୍ୟ ନବୀନଙ୍କୁ କହୁଥିଲେ ସେହି ରଙ୍ଗଛଡ଼ା କଳା ଗଂଜିକୁ ନ ପିନ୍ଧିବା ପାଇଁ । କିନ୍ତୁ ନବୀନ ନିବାସକୁ ଫେରିଲେ କେଜାଣି କାହିଁକି ନବୀନଙ୍କର ସେହି କଳାଗଂଜି ପିନ୍ଧିବାକୁ ବେଶ୍ ଆଗ୍ରହ ଆସିଯାଉଥିଲା । ରଙ୍ଗ ଛାଡ଼ି ଯାଇଥିବା କଳାଗଂଜିକୁ ନବୀନଙ୍କର ପିନ୍ଧିବା ସତେଯେମିତି ଏକ ସଉକରେ ପରିଣତ ହୋଇଯାଇଥିଲା । ନବୀନଙ୍କର ଏହି କଳାଗଂଜି ପିନ୍ଧା ପ୍ରସଙ୍ଗ ଯେ କେବଳ ନବୀନ ନିବାସରେ ସୀମାବଦ୍ଧ ଥିଲା ତାହା ନୁହେଁ । ତାହା କ୍ରମେ ରାଜନୀତି ମହଲରେ ମଧ୍ୟ ଚର୍ଚ୍ଚା ହେଲା । ରାଇଜପତି ନବୀନଙ୍କୁ ଯେ ଅଭାବ ଘାରଥିଲା ବୋଲି ସେ ରଙ୍ଗ ଛଡ଼ା କଳାଗଂଜି ପିନ୍ଧୁଥିଲେ ତାହା ନୁହେଁ । ହୋଇଥାଇ ପାରେ ଜ୍ୟୋତିଷ ନବୀନଙ୍କୁ ସେତେବେଳେ ବାଣୀ ଦେଇ ଥାଇପାରନ୍ତି- ରଙ୍ଗ ଛଡ଼ା କଳାଗଂଜିଟି ପିନ୍ଧିଲେ ତାଙ୍କ ପାଇଁ ଶୁଭ । ଓଡ଼ିଶାକୁ ଯେତେ ପ୍ରକାରର ଦୁର୍ବିପାକ ଆସିଲେ ମଧ୍ୟ ଏହି ରଙ୍ଗ ଛଡ଼ା କଳାଗଂଜି ପିନ୍ଧି ନବୀନ ତାହାକୁ ପାର ହୋଇଯିବେ । ଅବଶ୍ୟ ଏହାକୁ ଏଡ଼ାଇ ଦିଆଯାଇପାରିବ ନାହିଁ । ନଚେତ କନ୍ଧମାଳ ଦଙ୍ଗା, ମାଓବାଦୀଙ୍କ ଆତଙ୍କ, ବନ୍ୟା ପରି ବହୁ ଘାତ ଓଡ଼ିଶାକୁ ଆସିଥିବା ବେଳେ ନବୀନ କିନ୍ତୁ ତାହାକୁ ପାର ହୋଇଯାଇ ହ୍ୟାଟ୍ରିକ୍ ମୁଖ୍ୟମନ୍ତ୍ରୀ ହୋଇନଥାନ୍ତେ । ଆଉ ବିଜେଡ଼ିକୁ ଏକନମ୍ବର ଦଳରେ ପରିଣତ କରିନଥା'ନ୍ତେ । ସବୁ ସେହି କଳାଗଂଜିର କରାମତି । ■



# ଗଣେଶ ନିଶା



ଏମିତି କଟକ ସଦର ବିଧାୟକ କାଳନ୍ଦି ବେହେରାଙ୍କର ରାସ୍ତାକଡ଼ରେ ବିକ୍ରି ହେଉଥିବା ପ୍ଲାଷ୍ଟରପ୍ୟାରିସ ମୂର୍ତ୍ତି କିଣିବାକୁ ଜୋରଦାର୍ ସଉକ ରହିଛି । ଯେତେବେଳେ ଭୁବନେଶ୍ୱର-କଟକ ରାସ୍ତାରେ ସେ ଯିବାଆସିବା କରନ୍ତି ସେତେବେଳେ ଗାଡ଼ି ଭିତରୁ ସେ ରାସ୍ତାକଡ଼କୁ ଗୋଟିଏ ଲକ୍ଷ୍ୟରେ ଚାହିଁ ରହିଥା'ନ୍ତି କେଉଁଠି ପ୍ଲାଷ୍ଟରପ୍ୟାରିସ ମୂର୍ତ୍ତି ବିକ୍ରି ହେଉଛି ଜାଣିବାକୁ । ଯେତେ ପ୍ରକାରର ପ୍ଲାଷ୍ଟରପ୍ୟାରିସ ମୂର୍ତ୍ତିଥିଲେ ମଧ୍ୟ ସେ ସବୁଗୁଡ଼ିକୁ କିଣିବା ପାଇଁ ଆଗ୍ରହ ପ୍ରକାଶ କରିଥା'ନ୍ତି । ଏମିତି ଦିନେ ପୂର୍ବତନ ନିର୍ବାଚନମଣ୍ଡଳୀ ସାଲେପୁର ଯିବାବେଳେ କଟକ-ଭୁବନେଶ୍ୱର ରାସ୍ତାରେ ପ୍ଲାଷ୍ଟରପ୍ୟାରିସରେ ତିଆରି ହୋଇଥିବା ଏକ ବଡ଼ ଗଣେଶ ମୂର୍ତ୍ତି ସେ ଦେଖିଲେ । ଡ୍ରାଇଭରକୁ କହିଲେ- ଗାଡ଼ି ରଖ । ଗାଡ଼ିରୁ ଓହ୍ଲାଇ ସେ ଗଲେ ମୂର୍ତ୍ତି ପାଖକୁ । ମୂଲଚାଲ କଲେ କିନ୍ତୁ ଦର ଛିଡ଼ିଲା ନାହିଁ । ପରେ ଘରକୁ ଫେରିଆସି ଅନ୍ୟ ଜଣଙ୍କ ହାତରେ ଟଙ୍କା ଦେଇ ଶସ୍ତାରେ ସେହି ବଡ଼ ଗଣେଶ ମୂର୍ତ୍ତିକୁ ସେ କିଣିଲେ । ଏହି ଗଣେଶ ମୂର୍ତ୍ତିଟି ଏବେ କାଳନ୍ଦିଙ୍କ ରାଜଭବନ ସମ୍ମୁଖରେ ଥିବା ସରକାରୀ କ୍ୱାର୍ଟରରେ ରଖାଯାଇଛି । କାଳନ୍ଦି ଯେଉଁଠି ଚୌକି, ଟେବୁଲ ପକାଇ ବସୁଛନ୍ତି ସେଠାରେ ତାଙ୍କ ପାଖରେ ଏହି ଗଣେଶ ମୂର୍ତ୍ତିଟି ରହିଛି । ଏମିତି ଗଣେଶ ମୂର୍ତ୍ତିଟି ଦେଖିବାକୁ ବେଶ୍ ଡଉଲଡାଉଲ ହୋଇଛି । ଥରେ ଦେଖିଲେ ଆଖି ଲାଖିରହିବ । କିନ୍ତୁ ହଠାତ୍ କାଳନ୍ଦିଙ୍କ ମୁଡ୍ ଗଣେଶଙ୍କ ପାଇଁ ଖରାପ ହୋଇଗଲା । ଜଣେ ବ୍ରାହ୍ମଣ ଗଣେଶଙ୍କୁ ଦେଖି କାଳନ୍ଦିଙ୍କୁ ପରାମର୍ଶ ଦେଲେ- ଗଣେଶଙ୍କ ପାଇଁ ସବୁଦିନ ଅନ୍ନଭୋଗ କରାଯିବ । ୬ ଇଂଚରୁ ଅଧିକ ଉଚ୍ଚତା ଗଣେଶଙ୍କୁ ଅନ୍ନଭୋଗ କରା ନଗଲେ ସେ ସବୁ ଖାଇଯିବେ । କାଳନ୍ଦିଙ୍କ ପାଇଁ ଏହା ଚିନ୍ତାର କାରଣ ହୋଇଗଲା । ପ୍ଲାଷ୍ଟରପ୍ୟାରିସରେ ନିର୍ମିତ ଗଣେଶ ମୂର୍ତ୍ତି ଯେ ପୂଜା ହେବେ ଏହା କାଳନ୍ଦୀଙ୍କର ଧାରଣା ବାହାରେ ଥିଲା । ତେବେ ଦେଖାଯାଉ କାଳନ୍ଦୀଙ୍କ ମନରୁ ପ୍ଲାଷ୍ଟର ପ୍ୟାରିସ ମୂର୍ତ୍ତି ନିଶା କେବେ ଦୂରଉଛି ।

# ପଟେ ରୁଟି



ଜଳଖିଆରେ ପଟେ ରୁଟି, ମଧ୍ୟାହ୍ନ ଭୋଜନରେ ପଟେ ରୁଟି ପୁଣି ରାତ୍ରିଭୋଜନରେ ପଟେ ରୁଟି ଖାଇ ବଂଚିବାଟା ଭାରି କଷ୍ଟକର ହେବ । ଏହା ଯେକୌଣସି ବ୍ୟକ୍ତି ହିଁ କହିବେ । କିନ୍ତୁ କଟକ-ଚୌଦ୍ୱାର ବିଧାୟକ ପ୍ରଭାତ ବିଶ୍ୱାଳଙ୍କ ପାଇଁ ଏହା କଷ୍ଟକର ନୁହେଁ । ପ୍ରଭାତ ବିଧାୟକ ହେବାପରେ ଲୋକଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଦେଇଛନ୍ତି । ସେ ଯେ ପଟେ ରୁଟି ଖାଉଛନ୍ତି ତାହା ନଦେଖିଲା ଲୋକ ବିଶ୍ୱାସ କରିବ



ନାହିଁ । ଥାଳିରେ ପଟେ ଗୁଟି ଆଉ ସନ୍ତୁଳା । ଏହା ହେଉଛି ପ୍ରଭାତଙ୍କର ଭୋଜନ । ସେ ଆମିଷ ୧୧ ବର୍ଷ ହେଲା ଛାଡ଼ି ସାରିଲେଣି । ତେବେ ପ୍ରଭାତଙ୍କ ବପୁ କିନ୍ତୁ କମୁନାହିଁ । ସେ ଯେମିତି ୧୧ ବର୍ଷ ତଳେ ଡଉଲଡାଉଲ ଥିଲେ ଆଉ ତାଙ୍କର ଚେହେରା ଯେମିତି ଫୁଲକା ଥିଲା ଏବେବି ସେମିତି ରହିଛି । ଏହା କୁଆଡ଼େ ପଟେ ଗୁଟିର କରାମତି ବୋଲି କୁହାଯାଉଛି । ଅବଶ୍ୟ ରାଜନେତାମାନେ ପ୍ରଭାତଙ୍କଠୁ ଏହି ପଟେ ଗୁଟିର କୌଶଳ ଶିଖିବା ଉଚିତ । ■

## ମୁଦିର କରାମତି



ବିଧାୟକଙ୍କ ନାମ ହେଲା ପ୍ରଦୀପ ମହାରଥୀ । ତାଙ୍କ ନିର୍ବାଚନମଣ୍ଡଳୀ ହେଲା ପିପିଲି । ସେ ପାଂଚଥର ବିଧାୟକ ହେଲେଣି । ଚେହେରାକୁ ଦେଖିଲେ ପ୍ରଦୀପ ମହାରଥୀଙ୍କର ଯେ କିଛି ସମସ୍ୟା ରହିଥିବ ତାହା କେହି ବି ଭାବିପାରିବେ ନାହିଁ । କିନ୍ତୁ ଭିତରେ ଭିତରେ ପ୍ରଦୀପ ମହାରଥୀ ସମସ୍ୟାରେ ଜର୍ଜରିତ । ସମସ୍ୟାରୁ ମୁକୁଳିବା ପାଇଁ ପ୍ରଦୀପ ବିଭିନ୍ନ ଆଙ୍ଗୁଠିରେ ମୁଦି ଲଗାଇଛନ୍ତି । ସବୁ କୁଆଡ଼େ ଗ୍ରହକୁ ଶାନ୍ତି କରିବା ପାଇଁ । ଏମିତି ମୁଦି ଲଗାଇବା ପରେ ପ୍ରଦୀପଙ୍କ ସମସ୍ୟା ଟଳିବାରେ ଲାଗିଛି । ଏବେ ପ୍ରଦୀପ କହୁଛନ୍ତି ଯାହା ହେଉ ସୁଖରେ ସୁଖରେ ଦିନଟା ବିତିଯାଉଛି । ତାଙ୍କ ପାଇଁ ସବୁଠାରୁ ବଡ଼ ସୁଖ ହୋଇଛି ବିଜେଡ଼ିର ଦ୍ୱିତୀୟ କ୍ଷମତା କେନ୍ଦ୍ର ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ସହିତ ସମ୍ପର୍କ ମଧୁର ହେବା । କୁଆଡ଼େ ପ୍ୟାରୀଙ୍କ ସହିତ ତାଙ୍କର ସମ୍ପର୍କ ତିକ୍ତ ହୋଇଥିଲା । କ୍ରମେ ଏହି ସମ୍ପର୍କ ମଧୁର ହେବାରେ ଲାଗିଛି । ଯିଏ ମହାରଥୀଙ୍କୁ ହାତରେ ଲାଗିଥିବା ମୁଦିର ପ୍ରଭାବ ସମ୍ପର୍କରେ ପଚାରୁଛନ୍ତି ମହାରଥୀ ତାଙ୍କୁ ଓଲଟି ଜବାବ୍ ଦେଉଛନ୍ତି- ମୁଦିର ପ୍ରଭାବ ନାହିଁ ତ ପ୍ୟାରୀ ମହାପାତ୍ରଙ୍କ ସହିତ ସମ୍ପର୍କ ମଧୁର ହେଲା କେମିତି । ତେବେ ମୁଦି ଦେଖଣାହାରି ମହାରଥୀଙ୍କ ଅନୁପସ୍ଥିତିରେ ଯେଉଁ ଫୁସ୍‌ଫୁସ୍ କଥା ହୁଅନ୍ତି ତାହା ହେଲା- ମନ୍ତ୍ରୀ ପଦ ମିଳିଲେ ଜାଣିବାକୁ ହେବ ଯେ, ମୁଦିର କରାମତି ଅଛି ବୋଲି । ■



## ବ୍ୟାଡ଼ମିଂଟନ ଓ ରୋହିତ

ଓଡ଼ିଶା ଯୁବ କଂଗ୍ରେସର ସଭାପତି ହେବା ପୂର୍ବରୁ ରୋହିତଙ୍କ ପରିଚୟ ଓଡ଼ିଶାବାସୀଙ୍କୁ ବେଶ୍ ଭଲ ଭାବେ ଜଣା ନଥିଲା । ରୋହିତ ଜଣେ ଭଲ ବ୍ୟାଡ଼ମିଂଟନ ଖେଳାଳୀ । ୧୯୮୬ ମସିହାରେ ରୋହିତ ବ୍ୟାଡ଼ମିଂଟନରେ ଓଡ଼ିଶାରେ ଡବଲସ୍ ପ୍ରତିଯୋଗିତାରେ ରନର୍ସ ଅପ୍ ହେବା ପରେ ରାଜ୍ୟକୁ ପ୍ରତିନିଧିତ୍ୱ କରି ନାଗପୁରରେ ଜାତୀୟ ଜୁନିୟର ବ୍ୟାଡ଼ମିଂଟନରେ ଅଂଶଗ୍ରହଣ କରିଥିଲେ । ୧୯୯୦-୯୧ରେ

ଓଡ଼ିଶାର ଜୁନିୟର ବ୍ୟାଡ଼ମିଂଟନ ପ୍ରତିଯୋଗିତାରେ ସେ ଚମ୍ପିୟାନ ମଧ ହୋଇଥିଲେ । ରାଂଚିରେ ଇଂଜିନିୟରିଂ ପଢୁଥିବା ବେଳେ ଖଡ଼ଗପୁରରେ ୧୯୯୩ ମସିହାରେ ଅନୁଷ୍ଠିତ ହୋଇଥିବା ସର୍ବଭାରତୀୟ ବୈଷୟିକ ବିଶ୍ୱବିଦ୍ୟାଳୟର ବ୍ୟାଡ଼ମିଂଟନ ପ୍ରତିଯୋଗିତାରେ ସେ ଚମ୍ପିୟାନ ହୋଇଥିଲେ । ୧୯୮୮ ମସିହାରେ ଗୋପୀଚାନ୍ଦଙ୍କୁ ମଧ ସେ ହରାଇଥିଲେ । ପରେ ଗୋପୀଚାନ୍ଦ ବ୍ୟାଡ଼ମିଂଟନରେ ବିଶ୍ୱ ଚମ୍ପିୟାନ ହୋଇଥିଲେ । କଲେଜ ଛାଡ଼ିଦେବା ପରେ ରୋହିତ ଟାଟାଷ୍ଟିଲରେ ଇଂଜିନିୟର ଚାକିରି କଲେ । ଏହାପରେ ତାଙ୍କୁ ବ୍ୟାଡ଼ମିଂଟନ ଖେଳିବାକୁ ଆଉ ସମୟ ମିଳିଲା ନାହିଁ । ଘଟଣାକ୍ରମେ ରୋହିତ ଏବେ ରାଜନୀତିରେ । କଂଗ୍ରେସରୁ ଆସି ଏବେ ବିଜେଡ଼ିରେ । ବେଳେବେଳେ ତାଙ୍କର ୧୯୮୮ ମସିହାର ବ୍ୟାଡ଼ମିଂଟନ ପ୍ରତିଯୋଗିତା ମନେ ପଡ଼ିଯାଉଛି । ତାଙ୍କଠାରୁ ହାରିଥିବା ଗୋପୀଚାନ୍ଦ ପରବର୍ତୀ ସମୟରେ ବିଶ୍ୱ ଚମ୍ପିୟାନ ହୋଇଛନ୍ତି । ଯଦି ସେ ବ୍ୟାଡ଼ମିଂଟନରେ ମନଧାନ ଦେଇଥା'ନ୍ତେ ତେବେ ସେ ମଧ ବିଶ୍ୱ ଚମ୍ପିୟାନ ହୋଇପାରିଥା'ନ୍ତେ । ■

## ପଖାଳର ମଜା

ଏମିତି ଆମ ଓଡ଼ିଆ ଲୋକମାନେ ପଖାଳ ଖାଇବାକୁ ବେଶ୍ ଭଲ ପାଆନ୍ତି । କିନ୍ତୁ ପାଠପଢ଼ା ସରିଯିବା ପରେ ଯେତେବେଳେ ଯିଏ ଯାହା ବୃତିରେ ଲାଗିଯାଆନ୍ତି ସେତେବେଳଠାରୁ ପଖାଳ ପ୍ରତି ଦୁର୍ବଳତା ଥିଲେ ମଧ ଅନେକ ପଖାଳ ମଧ ଖାଇପାରନ୍ତି ନାହିଁ । ଅନେକଙ୍କର ଧାରଣା ଥାଏ ଯେ, ବିଧାୟକମାନେ ବଡ଼ବଡ଼ ହୋଟେଲରେ ଖାଉଥିବେ ବୋଲି । ପୁଣି ବିଭିନ୍ନ ସମୟରେ ବହୁ ଉତ୍ସବରେ ଯୋଗ ଦେଉଥିବାରରୁ ସେମାନେ ମାଛ, ମାଂସ ସହିତ ଦାମିକିଆ ଖାଦ୍ୟ ଖାଉଥିବେ । ଆଉ ଅନେକ ଭାବନ୍ତି ଯେ, ନେତା ହୋଇଗଲେ ଭାତ, ଡାଲମା ତାଙ୍କର ପ୍ରିୟ ହୋଇଯାଇଥାଏ ବୋଲି । ଏହାର କାରଣ ମଧ ରହିଛି । ଯଜ୍ଞ ହେଉ କି ଅଷ୍ଟପ୍ରହରୀ ହେଉ କି କର୍ମୀ ବୈଠକ ହେଉ ସବୁଠି ଭାତ, ଡାଲମାର ଆୟୋଜନ ହୋଇଥାଏ । ଆଉ ତାହା ପୁଣି ନେତାଙ୍କ ସୌଜନ୍ୟରୁ । ଯେତେବେଳେ ବିଧାୟକ ସେଠାରେ ଯୋଗ ଦିଅନ୍ତି ଭାତ, ଡାଲମା ଖାଆନ୍ତି । କିନ୍ତୁ ବିଧାୟକମାନେ ଯେ, ପଖାଳକୁ ଭୁଲିଯାଆନ୍ତି ନାହିଁ ଏହା ଅନେକ ସମୟରେ ସ୍ପଷ୍ଟ ହୋଇଯାଇଛି । ଦୁଇଜଣ ବିଧାୟକ । ଜଣେ ହେଲେ ଚିଲିକା ବିଧାୟକ ରଘୁନାଥ ସାହୁ ଏବଂ ଅନ୍ୟ ଜଣେ ହେଲେ ଆଠଗଡ଼ ବିଧାୟକ ରମେଶ ରାଉତ । ଏମିତି ରଘୁନାଥ ଡାଇବେଟିସ୍ ରୋଗୀ । ଡାକ୍ତର ତାଙ୍କୁ ଭାତ ଖାଇବାକୁ ସମ୍ପୂର୍ଣ୍ଣ ମନା କରିଦେଇଛନ୍ତି । ରଘୁନାଥଙ୍କର ଭାତକୁ ଦେଖିଲେ ଯେତିକି ଖାଇବାକୁ ଇଚ୍ଛା ହେଉନାହିଁ କିନ୍ତୁ ପଖାଳକୁ ଦେଖିଲେ ପାଟିରୁ ସେତିକି ଲାଳ ବାହାରେ । ଏମିତି ପରିସ୍ଥିତି ବେଳେବେଳେ ହୁଏ

ଯେ, ଡାକ୍ତରଙ୍କ କଥାକୁ ବି ରଘୁନାଥ ମାନନ୍ତି ନାହିଁ ଆଉ ପଖାଳ ଖାଆନ୍ତି । ଅବଶ୍ୟ ଡାକ୍ତର ତାଙ୍କର ଏହି ଦୁର୍ବଳତାକୁ ଦେଖି ଏବେ ପ୍ରେସ୍‌କ୍ରାଇବ୍ କରିଛନ୍ତି ଯେ, ସପ୍ତାହରେ ଥରେ ପଖାଳ ଖାଆନ୍ତୁ ବୋଲି । ଆଳୁ ଖାଇବାକୁ ମଧ୍ୟ ତାଙ୍କୁ ମନା । ଏହାସତ୍ତ୍ୱେ ପଖାଳ ଖାଇଲା ବେଳକୁ ତାଙ୍କର ଆଳୁ ସିଝା କିମ୍ବା ଆଳୁ ପୋଡ଼ା ନହେଲେ ନଚଳେ । ବାଇଗଣ ପୋଡା ଭର୍ତା ହେଲେ ଆହୁରି ଭଲ । ସେହିପରି ଅବସ୍ଥା ଆଠଗଡ଼ ବିଧାୟକ ରମେଶ ରାଉତଙ୍କର । ଏମିତି ତ ରମେଶ ତଳସ୍ତରରୁ ଆସି ବିଧାୟକ ହୋଇଛନ୍ତି । ପଖାଳ ତାଙ୍କର ଦୈନନ୍ଦିନ ଖାଦ୍ୟ ଥିଲା । ପଖାଳ ସହିତ ଆଳୁ, ବାଇଗଣ ପୋଡ଼ା ଆଉ ଯଦି ବଡ଼ିଚୁରା ଟିକିଏ ହୋଇଗଲା ଜାଣ ରମେଶଙ୍କର ପଖାଳ ଭାତ ବେଲା ପରେ ବେଲା ଉଠିଯାଏ । ବିଧାୟକ ହେବାପରେ ମଧ୍ୟ ରମେଶଙ୍କର ସେହି ପଖାଳ ପ୍ରୀତି ରହିଛି । ସେ ଯେମିତି ହେଲେ ଦିନକରେ ଦୁଇଥର ପଖାଳ ଭାତ ଖାଇବେ ହିଁ ଖାଇବେ । ଏମିତି ପଖାଳ ଭାତର ଦୁର୍ବଳତା ବହୁ ବିଧାୟକଙ୍କର ରହିଛି । ତେବେ ଗାଁଗହଳିରେ ଓଡ଼ିଆ ପଖାଳ ଖାଇ ଶୋଇପଡ଼ନ୍ତି ବୋଲି ଯେଉଁ ପ୍ରବାଦ ଅଛି ସେହି ପ୍ରବାଦକୁ ପଖାଳ ଖାଉଥିବା ବିଧାୟକମାନେ ସତ ବୋଲି ପ୍ରମାଣିତ କରନ୍ତୁ ନାହିଁ । ସେମାନେ ପଖାଳ ଖାଇ ଟେଙ୍ଗା ହୋଇ କାମ କଲେ ପ୍ରବାଦଟି ପରିବର୍ତ୍ତନ ହୋଇଯିବ । ଦେଖାଯାଉ ପଖାଳ ଖାଇ ବିଧାୟକମାନେ ପ୍ରବାଦରେ ପରିବର୍ତ୍ତନ ଆଣିପାରୁଛନ୍ତି କି ନାହିଁ । ■

## ପାନିଆଁ ଠାରୁ ଦୂରରେ



କେତେବେଳେ କାହାର ଅଭ୍ୟାସ ତାଙ୍କୁ ଗିନିସ୍ ବୁକ୍ ଅଫ୍ ୱାଲର୍ଡ଼ ରେକର୍ଡ଼କୁ ଟାଣି ନେଇଯାଇଥାଏ । ଏହାକୁ ଏଠାରେ ବଖାଣିବାର ଏକ କାରଣ ରହିଛି । ଏମିତି ସେଦିନ ସରକାରୀ ଦଳ ଉପମୁଖ୍ୟ ସଚେତକ ତଥା ନୟାଗଡ଼ ବିଧାୟକ କହୁକହୁ ତାଙ୍କର ଅଭ୍ୟାସ ସମ୍ପର୍କରେ ଗୁମର କଥାଟିଏ ଫିଟାଇଦେଲେ । ଅରୁଣ ଦେଖିବାକୁ ବେଶ୍ ଡଉଲଡାଉଲ । ମୁଣ୍ଡରେ ତାଙ୍କର ବାଳ ମଧ୍ୟ ଘଂଚ । କିନ୍ତୁ ଅରୁଣ ଯାହା କହିଲେ ତାହା ଅନ୍ୟମାନଙ୍କୁ ଅବିଶ୍ୱାସ ହେଲା । ସେ କହିଲେ- ୧୮ ବର୍ଷ ହେଲାଣି ମୁଣ୍ଡରେ ତାଙ୍କ ପାନିଆ ବାଜିନାହିଁ । ପୁଣି ଆଉ ଗୋଟିଏ କଥା ମଧ୍ୟ କହିଲେ । ତାହା ହେଲା ଏହି ୧୮ ବର୍ଷ ମଧ୍ୟରେ ମଧ୍ୟ ସେ କୁଆଡ଼େ ଦେହରେ ସାବୁନ୍ ଲଗାଇନାହାନ୍ତି । ଏସବୁ ବିଂଶ ଶତାବ୍ଦୀରେ ସପ୍ନ ପରି ମନେ ହେଉଛି । ମାନେ ମୁଣ୍ଡରେ ବାଳ ଅଛି ପୁଣି ଜଣେ କହିବ ଯେ, ସେଥିରେ ସେ ପାନିଆଁ ଲଗାଇ ନାହାନ୍ତି ବୋଲି । ଜଣେ କେହି ପ୍ରଶ୍ନ କଲେ- ମୁଣ୍ଡ ବାଳ ତା' ହେଲେ କୁଣ୍ଡାଉଛନ୍ତି କେମିତି । ସଭାବସୁଲଭ ଢଙ୍ଗରେ ଅରୁଣ କହିଲେ- ମୁଣ୍ଡ ବାଳ ତାଙ୍କର ଲମ୍ବା ନୁହେଁ । ଛୋଟଛୋଟ ବାଳ ସେ

ରଖନ୍ତି । ତେଣୁ ପାନିଆଁର ଆବଶ୍ୟକତା ନାହିଁ । ଗାଧୋଇ ସାରିବା ପରେ ସେ ମୁଣ୍ଡରେ ହାତ ମାରିଦେଲେ ଜାଣ ତାଙ୍କର ମୁଣ୍ଡ ବାଳ କୁଣ୍ଡାଇ ହୋଇଗଲା ବୋଲି । ଏଥିରେ ମଧ୍ୟ ସେ କିଛି ଅସୁବିଧା ଅନୁଭବ କରୁନାହାନ୍ତି । ୧୮ ବର୍ଷ ହେଲାଣି ଏହିପରି ଭାବେ ହାତରେ ସେ ମୁଣ୍ଡକୁ କୁଣ୍ଡାଉଛନ୍ତି । ଅଭ୍ୟାସ ହୋଇଯିବା ପରେ ଆଉ ପାନିଆର ଆବଶ୍ୟକତା ରହୁନାହିଁ । ସାବୁନ କାହିଁକି ଲଗାଉନାହାନ୍ତି ବୋଲି ପ୍ରଶ୍ନ କରାଯିବାରୁ ତା'ର ମଧ୍ୟ ଉତର ସେ ବେଶ୍ ଭଲ ଭାବେ ଦେଲେ । ଗାଧୋଇବା ବେଳେ ସେ ଶରୀର ପ୍ରତି ବେଶ୍ ଯତ୍ନ ଦେଇଥା'ନ୍ତି । ଭଲ ରୂପେ ସେ ଗାଧାନ୍ତି । ଏମିତି ଯେ ସାବୁନ ଲାଗିଲେ ଦେହରୁ ମଳି ଛାଡ଼ିଯାଏ ତାହା ନୁହେଁ । କିନ୍ତୁ ଦେହକୁ ଭଲ ରୂପେ ଘସିଲେ ହିଁ ଦେହରୁ ମଳି ଛାଡ଼େ । ସେ ଗାଧୋଇବା ବେଳେ ଦେହକୁ ଭଲ ରୂପେ ଘସନ୍ତି ଆଉ ମଳି ଛଡ଼ାନ୍ତି । ତେଣୁ ସାବୁନର ଆବଶ୍ୟକତା ନଥାଏ । ଯେତେବେଳେ ବିନା ସାବୁନରେ ଗାଧୋଇବା ଅଭ୍ୟାସ ହୋଇଗଲାଣି ସେତେବେଳେ ସାବୁନ ଆଉ ତାଙ୍କ ପାଇଁ ଆବଶ୍ୟକତା ଭିତରେ ନାହିଁ । ମାନିବାକୁ ପଡ଼ିବ ଅରୁଣଙ୍କୁ । ୧୮ ବର୍ଷ ହେଲା ମୁଣ୍ଡରେ ପାନିଆ ବାଜିନାହିଁ କିମ୍ବା ଦେହରେ ସାବୁନ ଲାଗିନାହିଁ । ଏହାସତ୍ତ୍ୱେ ସେ ବେଶ୍ ଡଉଲଡାଉଲ ଅଛନ୍ତି ଏବଂ ଚେହେରାଟି ମଧ୍ୟ ବେଶ୍ ଚିକଣଚାକଣ ରହିଛି । ଏମିତି ସାଧାରଣ କ୍ଷେତ୍ରରେ ତାଙ୍କର ଏହି ଅଭ୍ୟାସ ତାଙ୍କୁ ଗିନିସ୍ ବୁକ୍ ଅଫ୍ ଓ୍ୱାଲର୍ଡ଼ ରେକର୍ଡ଼ରେ ସ୍ଥାନ ଦେବ କି ନାହିଁ ଜଣାନାହିଁ । କିନ୍ତୁ ବିଧାୟକ ଭାବେ ତାଙ୍କର ଏହି ଅଭ୍ୟାସ ତାଙ୍କୁ ଗିନିସ୍ ବୁକ୍ ଅଫ୍ ଓ୍ୱାଲର୍ଡ଼ ରେକର୍ଡ଼ରେ ସ୍ଥାନ ଦେବାର ସମ୍ଭାବନାକୁ ଏଡ଼ାଇ ଦେଇ ହେବନାହିଁ । ■

## ଆଶ୍ଚର୍ଯ୍ୟ ତଥାପି ଏମିତି ବି ହୁଏ



ଏ ହେଲେ ଖରିଆର ବିଧାୟକ ହିତେଶ କୁମାର ବଗର୍ତି । ଏମିତି ଖରିଆର ନିର୍ବାଚନମଣ୍ଡଳୀର ସ୍ଥିତି ସବୁ ନାହିଁନାହିଁ । ଡାକ୍ତର ନାହାନ୍ତି, ଶିକ୍ଷକ ନାହାନ୍ତି, ସବୁକିଛି ନାହିଁନାହିଁରେ ଚଳେ । ଡାକ୍ତର ଅଭାବରୁ ଏହି ଅଂଚଳରେ ସ୍ୱାସ୍ଥ୍ୟଗତ ସମସ୍ୟା ଗୁରୁତର ହୋଇଯାଇଛି । ଅନେକ ସାଂଘାତିକ ରୋଗରେ ପୀଡ଼ିତ ହୋଇ ଚାଲିଆସନ୍ତି ଚିକିତ୍ସା ପାଇଁ ଭୁବନେଶ୍ୱରକୁ । ଆଉ ବିଧାୟକ ହିତେଶ କୁମାର ନିଜେ ପଛେ ଉପବାସ ରହିବେ କିନ୍ତୁ ତାଙ୍କ ଅଂଚଳର ଯେପରି କେହି ଚିକିତ୍ସା ବିନା ହଇରାଣ ହରକତ ନହୁଅନ୍ତି ଏ ଦିଗରେ ସେ ସବୁବେଳେ ଧ୍ୟାନ ଦିଅନ୍ତି । ଏମିତି ସେଦିନ ଜଣେ ବ୍ୟକ୍ତି ଆସି ହିତେଶଙ୍କୁ ଦେଖାକଲେ । ତାଙ୍କର ମୁହଁର ରୂପ ଦେଖିଲେ ଯେକେହି ଚମକି ଯିବେ । କୁଆଡ଼େ ନାକରୁ ଲାଳ ବାହାରି ନାକ ତଳକୁ ଆସି ଇନ୍‌ଫେକ୍‌ସନ୍ ହେଲା । ଏହାପରେ ନାକ ତଳ ଅତ୍ୟନ୍ତ ଫୁଲିଗଲା । କ୍ରମେ ଏହି ଫୁଲା ଯୋଗୁ ନାକପୁଡ଼ା ବି ବନ୍ଦ ହୋଇଗଲା । ବ୍ୟକ୍ତି ଜଣକ

ନାକ ପଟେ ଆଉ ନିଶ୍ୱାସପ୍ରଶ୍ୱାସ ନେଇପାରିଲେ ନାହିଁ । ସବୁବେଳେ ପାଟି ମେଲାକରି ନିଶ୍ୱାସପ୍ରଶ୍ୱାସ ନେଲେ । ନାକ ବନ୍ଦ ହୋଇଯିବାରୁ ସେହି ବାଟ ଦେଇ ଯେଉଁ ଲାଳ ବାହାରୁଥିଲା ତାହା ନାକ ମଧ୍ୟରେ ରହିଲା । ଏମିତି ଓଠ ତଳ ଜୋର୍‌ରେ ଫୁଲିଥିବା ବେଳେ ନାକ ମଧ୍ୟ ଫୁଲିଗଲା । ଏହି ବ୍ୟକ୍ତିଙ୍କ ଅବସ୍ଥା ସାଂଘାତିକ ହୋଇଗଲା । ହିତେଶ ଏହି ବ୍ୟକ୍ତିଙ୍କୁ ଦେଖି ଚିକିତ୍ସା ପାଇଁ କେଉଁ ଡାକ୍ତରଖାନାକୁ ପଠାଇବେ ବୋଲି ଭାବିପାରୁ ନଥିଲେ । ସେ ଭାବିଲେ ଭୁବନେଶ୍ୱର ୬ ନମ୍ବର ହସ୍‌ପିଟାଲକୁ ଏହି ବ୍ୟକ୍ତି ଜଣଙ୍କୁ ପଠାଇଦେଲେ ସେଠାରେ ତାଙ୍କର ଚିକିତ୍ସା ଭଲରେ ହୋଇଯିବ । ଆଉ ଯେହେତୁ ସେ ନିଜେ ଜଣେ ବିଧାୟକ ଏବଂ ୬ ନମ୍ବର ହସ୍‌ପିଟାଲଟି ସରକାରଙ୍କ ଅଧିନରେ ଥିବାରୁ ତାଙ୍କର ଜାଟ୍‌ତି ମଧ୍ୟ ସେଠାରେ ରହିବ । ହିତେଶ ତାଙ୍କର ବିଧାୟକ ପ୍ୟାଡ୍ ବାହାରକଲେ ଏବଂ ଏହି ରୋଗୀର ଚିକିତ୍ସା ପାଇଁ ସେ ବିଧାୟକ ପ୍ୟାଡ୍‌ରେ ଲେଖିଦେଲେ । ପ୍ୟାଡ୍‌ଟିକୁ ରୋଗୀ ହାତକୁ ବଢ଼ାଇଦେଲେ ଆଉ କହିଲେ- ଡାକ୍ତରଖାନାକୁ ଯିବାକୁ । ରୋଗୀଟି ପ୍ୟାଡ୍‌ଟିକୁ ନେଇ ଡାକ୍ତରଖାନାକୁ ଗଲା । ହଠାତ୍ କଳିଙ୍ଗ ହସ୍‌ପିଟାଲରୁ ତାଙ୍କ ପାଖକୁ ଫୋନ୍ ଆସିଲା । ହିତେଶ କିଛି ବୁଝିପାରିଲେ ନାହିଁ । ଫୋନ୍‌ରେ କଥା ହେଲେ ଡାକ୍ତର ମନୋଜ ଲାଠ୍ । ତାଙ୍କ ଘର କୁଆଡ଼େ ବରଗଡ଼ ଅଂଚଳରେ ଆଉ ସେ କଳିଙ୍ଗ ହସ୍‌ପିଟାଲରେ ଡାକ୍ତର ଅଛନ୍ତି । ସେ ବୁଝାଇ ଦେଲେ ଯେ, ଯେଉଁ ରୋଗୀଟିକୁ ସେ କଳିଙ୍ଗ ହସ୍‌ପିଟାଲକୁ ପଠାଇଛନ୍ତି ସେହି ରୋଗୀର ଚିକିତ୍ସା ବ୍ୟୟବହୁଳ ଅଟେ । ତେବେ ଏ କ୍ଷେତ୍ରରେ ସେ ନିଜେ ଡାକ୍ତର ଭାବେ କିଛିଟା ସହଯୋଗ କରିବେ । ଏହାପରେ ହିତେଶଙ୍କର ଚିଠିଟିକୁ ଡାକ୍ତର ମନୋଜ ଲାଠ୍ ପଠାଇଦେଲେ କଳିଙ୍ଗ ହସ୍‌ପିଟାଲ ପରିଚାଳନା କର୍ତ୍ତୃପକ୍ଷଙ୍କ ନିକଟକୁ । ପରିଚାଳନା କର୍ତ୍ତୃପକ୍ଷ ଫୋନ୍ କଲେ ହିତେଶଙ୍କ ପାଖକୁ ଆଉ କହିଲେ- ଡାକ୍ତର ମନୋଜ ଲାଠ୍ ରୋଗୀଙ୍କ ପାଇଁ ଚିକିତ୍ସା ଫି' ନେବେନାହିଁ । ହସ୍‌ପିଟାଲ ମଧ୍ୟ ଏହି ରୋଗୀଙ୍କ ପାଇଁ ଯେଉଁ ଔଷଧ ଲାଗିବ ତାହା ଯେପରି ମାଗଣାରେ ଆସିପାରିବ ସେ କ୍ଷେତ୍ରରେ କମ୍ପାନୀଗୁଡ଼ିକୁ ଅନୁରୋଧ କରିବ । ସବୁକିଛି ଆଶ୍ଚର୍ଯ୍ୟ ମନେ ହେଉଥିଲା ହିତେଶଙ୍କୁ । ସେ କିଛି ବୁଝିପାରୁ ନଥିଲେ । ଔଷଧ ମଧ୍ୟ କମ୍ପାନୀଗୁଡ଼ିକ ମାଗଣାରେ ଯୋଗାଇ ଦେଲେ । ଏହାପରେ ରୋଗୀର ଅସ୍ତ୍ରୋପଚାର ହେଲା । କଳିଙ୍ଗ ହସ୍‌ପିଟାଲରୁ ହିତେଶଙ୍କୁ ଖବର ଦିଆଗଲା ଯେ, ଅପରେସନ୍ ସମୟରେ ଉପସ୍ଥିତ ରହିବାକୁ । ଆଉ ଅପରେସନ୍ ପାଇଁ କିଛି ଟଙ୍କା ମଧ୍ୟ ପୈଠ କରିବା ପାଇଁ କୁହାଗଲା । ହିତେଶ ଅପରେସନ୍ ସମୟରେ ପହଂଚି ପାରିଲେନାହିଁ କି ଅପରେସନ୍ ପୂର୍ବରୁ ଟଙ୍କା ବି ପୈଠ କରିପାରିଲେ ନାହିଁ । ଏହାସତ୍ତ୍ୱେ ଅପରେସନ୍ ହୋଇଗଲା । ଏହାପରେ ରୋଗୀ ସୁସ୍ଥ ହୋଇଗଲେ । ହିତେଶଙ୍କୁ ଖବର ଆସିଲା ହସ୍‌ପିଟାଲରେ ଟଙ୍କା ପୈଠ କରି ରୋଗୀଙ୍କୁ ନେଇଯାଆନ୍ତୁ ବୋଲି । ହିତେଶ ହସ୍‌ପିଟାଲକୁ ଗଲେ । ସେଠାରେ ବିଲ୍ ହୋଇଥିବା ୯,୦୪୫ ଟଙ୍କା ଦାଖଲ କରି ସେ ସମ୍ପର୍କରେ ଡାକ୍ତର ମନୋଜ ଲାଠ୍‌ଙ୍କୁ ଜଣାଇ ଦେଲେ । ମନୋ[illegible] କହିଲେ- ଆପଣ

ଟଙ୍କା ପୈଠ କରିସାରିଲେଣି କି । ହିତେଶ କହିଲେ- ଟଙ୍କା ପୈଠ କରି ରସିଦ୍ ଆଣିସାରିଲିଣି । ଡାକ୍ତର ମନୋଜ ଲାଠ୍ କହିଲେ- ଟିକିଏ ଅପେକ୍ଷା କରନ୍ତୁ । ଏହାପରେ ହିତେଶଙ୍କ ଠାରୁ ରସିଦ୍ ମଗାଗଲା । ରସିଦ୍ ଉପରେ ଲେଖାଗଲା ୫ ହଜାର ଟଙ୍କା ଫେରସ୍ତ ଦିଆଗଲା ବୋଲି । ଆଉ ହିତେଶଙ୍କୁ ମାତ୍ର ୪,୦୪୫ ଟଙ୍କା ଦେବାକୁ ହେଲା । ହିତେଶ ସବୁକିଛିରେ ଆଶ୍ଚର୍ଯ୍ୟ ହେଉଥିଲେ । ହିତେଶଙ୍କୁ ଡାକ୍ତର ମନୋଜ ଲାଠ୍ କହିଲେ ଯେ, ଯାହାର କେହି ନାହାନ୍ତି ତାହାର ଭଗବାନ ଅଛନ୍ତି ବୋଲି ସେ ଡାକ୍ତରୀ ପାଠ ପଢ଼ିବା ବେଳୁ ଜାଣିଛନ୍ତି । ଏମିତି ଖରିଆର ନିର୍ବାଚନମଣ୍ଡଳୀରେ ଅନେକ ରୋଗୀ ଆସୁଛନ୍ତି ଭୁବନେଶ୍ୱରକୁ ଚିକିତ୍ସା ହେବା ପାଇଁ । ଲୋକପ୍ରତିନିଧି ଭାବେ ହିତେଶ ତାଙ୍କର ଦାୟିତ୍ୱ ନିର୍ବାହ କରୁଛନ୍ତି । ତେବେ ଡାକ୍ତର ଭାବେ ତାଙ୍କର ମଧ ଗରିବ ଲୋକଙ୍କ ପାଇଁ କିଛିଟା ଦାୟିତ୍ୱ ରହିଛି । ତେଣୁ ଗରିବ ଲୋକ ଆସିଲେ ସେ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି । ଏମିତି ତାଙ୍କ ନିର୍ବାଚନମଣ୍ଡଳୀରୁ ଯେତେ ଗରିବ ଲୋକ ଚିକିତ୍ସା ପାଇଁ ଆସିବେ ଡାକ୍ତର ମନୋଜ ଲାଠ୍ ସହଯୋଗର ହାତ ବଢ଼ାଇ ଦେବେ ବୋଲି ମଧ ପ୍ରତିଶ୍ରୁତି ଦେଇଥିଲେ । ସବୁକିଛିରେ ହିତେଶ ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ସତେ ଯେମିତି ଭଗବାନ ଏସବୁ କାମ ଅଦୃଶ୍ୟରେ କରୁଥିଲେ । ହିତେଶ ଜାଣି ନଥିଲେ ଯେ, ବିଧାୟକ ପ୍ୟାଡ୍‌ରେ ଯେଉଁ ଚିଠିଟି ସେ ଲେଖିଥିଲେ ତାହା କଳିଙ୍ଗ ହସ୍‌ପିଟାଲକୁ ବୋଲି । ସେ ୬ ନମ୍ବରର କ୍ୟାପିଟାଲ ହସ୍‌ପିଟାଲକୁ ଚିଠି ଲେଖିଥିଲେ ବୋଲି ଭାବି ନେଇଥିଲେ । କିନ୍ତୁ କେଜାଣି କେମିତି କ୍ୟାପିଟାଲ ହସ୍‌ପିଟାଲ ପରିବର୍ତ୍ତେ ପ୍ୟାଡ୍‌ରେ ସେ ଲେଖି ଦେଇଥିଲେ କଳିଙ୍ଗ ହସ୍‌ପିଟାଲ ବୋଲି । ପୁଣି ଡାକ୍ତର ମନୋଜ ଲାଠ୍ ଏହି ରୋଗୀର ଚିକିତ୍ସା ପାଇଁ ଚିକିତ୍ସା ଖର୍ଚ୍ଚ ତ ନେଲେନାହିଁ ପୁଣି ଏହା ସହିତ ଅପରେସନ୍ ଖର୍ଚ୍ଚର ୫ ହଜାର ଟଙ୍କା ବି ସେ ନିଜ ହାତରୁ ଦେଲେ । ପୁଣି କଳିଙ୍ଗ ହସ୍‌ପିଟାଲ ବି ରୋଗୀ ଯେପରି ମାଗଣାରେ ଔଷଧ ପାଇବ ତାହାର ବ୍ୟବସ୍ଥା କରିଦେଲେ । ଏହି ଘଟଣାଟି ବେଳେବେଳେ ହିତେଶ ବର୍ଣ୍ଣନା କଲାବେଳେ ତାଙ୍କ ଆଖି ଛଳଛଳ ହୋଇଯାଏ । ଭଗବାନ କିପରି ଅଦୃଶ୍ୟରେ ରହି ଗରିବ ଲୋକଙ୍କୁ ସାହାଯ୍ୟ କରନ୍ତି ତାହାର ଏକ ଜ୍ୱଳନ୍ତ ଉଦାହରଣ ବୋଲି ସେ ଏହାକୁ ଦର୍ଶାଉଛନ୍ତି । ଯାହା କୁହାଯାଏ ଭଗବାନ ବଡ଼ଲୋକ ବୋଲି ପ୍ରକୃତରେ ଏହି ଘଟଣା ସ୍ପଷ୍ଟ କରିଦେଇଛି ଭଗବାନ ହିଁ ବଡ଼ଲୋକ ଆଉ ହିତେଶ ନାମକୁ ମାତ୍ର । ■

## ଅନୁପଙ୍କ ହେଲ୍‌ମେଟ୍



ଅନୁପ ସାଏ ହେଉଛନ୍ତି ଏବେ କଂଗ୍ରେସର ତାରକା ବିଧାୟକ । ଟ୍ରେଡ୍ ୟୁନିୟନ ମନୋବୃତ୍ତି ଥିବା ଅନୁପ ତାଙ୍କ ନିର୍ବାଚନମଣ୍ଡଳୀ ବ୍ରଜରାଜନଗର ବାସିନ୍ଦାଙ୍କଠୁ ସେବା କରିବା ମନୋବୃତ୍ତି ରଖି ଚାଲିଛନ୍ତି । ୨୦୦୦ ମସିହାରେ ଅନୁପ ବ୍ରଜରାଜନଗରରୁ ବିଧାୟକ ହେବାପରେ ଆଉ

ପଛକୁ ଫେରି ଚାହିଁନାହାନ୍ତି । ଏହାପରେ ୨୦୦୪ ଓ ୨୦୦୯ ମସିହାରେ ସେ ବିଧାୟକ ହୋଇଛନ୍ତି । ଏମିତି ନିଶ ପ୍ରତି ସଉକ ଥିବା ଅନୁପଙ୍କର ଆହୁରି କେତେକ ସଉକ ମଧ୍ୟ ଅଛି । ବୁଲେଟ୍ ମୋଟରସାଇକେଲ ଚଢ଼ିବା ତାଙ୍କର ଅନ୍ୟତମ ସଉକ । ତେବେ ମୋଟରସାଇକେଲ ଚଢ଼ିବା ବେଳେ ଯଦିଓ ହେଲ୍‌ମେଟ୍ ପିନ୍ଧିବା ପାଇଁ ରାଜଧାନୀ ଭୁବନେଶ୍ୱରରେ ବାଧ୍ୟତାମୂଳକ କରାଯାଇଛି ତାହା କିନ୍ତୁ ଅନୁପଙ୍କ ପାଇଁ ସତେ ଯେମିତି ପ୍ରଯୁଜ୍ୟ ନୁହେଁ । ଅନୁପ ଯେ ଭୁବନେଶ୍ୱରରେ ମୋଟରସାଇକେଲ ଚଳାଇବା ବେଳେ ହେଲ୍‌ମେଟ୍ ପିନ୍ଧୁନାହାନ୍ତି ତାହା ନୁହେଁ । କିନ୍ତୁ ଯେଉଁ ହେଲ୍‌ମେଟ୍‌ଟି ସେ ପିନ୍ଧନ୍ତି ପୁଲିସ ଭାଷାରେ ତାହା ହେଲ୍‌ମେଟ୍ ନୁହେଁ । ଏହା କୋଇଲା ଖଣିକୁ ପିନ୍ଧି ଯାଉଥିବା ଶ୍ରମିକମାନଙ୍କର ଟୋପି ପରି । ମାନେ ତାହା ହେଲ୍‌ମେଟ୍ ପରି ନୁହେଁ କିନ୍ତୁ ମୁଣ୍ଡ ଉପରେ ତାହା ଲାଗିରହିବ । ଦୂରରୁ ଦେଖିଲେ ତାହା ହେଲ୍‌ମେଟ୍ ପରି ଦେଖାଯିବ । ଏମିତି ଅନୁପଙ୍କ ନିଶ ତାଙ୍କୁ ବେଳେବେଳେ ପୁଲିସ କରିଦିଏ । ଅନୁପ ମୋଟରସାଇକେଲରେ ଯିବାବେଳେ ଟ୍ରାଫିକ୍‌ରେ ତାଙ୍କୁ ମଧ୍ୟ ସେଠାରେ ମୁତୟନ କେତେକ ପୁଲିସ କର୍ମଚାରୀ ସାଲ୍ୟୁଟ୍ ମାରନ୍ତି । ଅନୁପ ଭାବିନିଅନ୍ତି ଯେ, ସେ ବିଧାୟକ ହୋଇଥିବାରୁ ଟ୍ରାଫିକ୍ ପୁଲିସ ତାଙ୍କୁ ସାଲ୍ୟୁଟ୍ ମାରୁଛନ୍ତି ବୋଲି । କିନ୍ତୁ ଘଟଣା ତାହା ନୁହେଁ । ତାଙ୍କ ନିଶକୁ ଦେଖି ଟ୍ରାଫିକ୍ ପୁଲିସ ଭାବିନିଅନ୍ତି ଯେ, ସେ ଜଣେ ପୁଲିସ ଅଫିସର ବୋଲି । ଯେଉଁଥିପାଇଁ ଟ୍ରାଫିକ୍ ପୁଲିସ ସାଲ୍ୟୁଟ୍ ତାଙ୍କ ପାଖକୁ ଆପେଆପେ ଚାଲିଆସେ । ଏଥିପାଇଁ ଅନୁପଙ୍କର ପୁଲିସ ନିଶକୁ ମାନିବାକୁ ପଡ଼ିବ । ତେବେ ଅନୁପ ଯେଉଁ କୋଇଲା ଖଣି ଟୋପି ପିନ୍ଧି ମୋଟରସାଇକେଲ ଚଳାଉଛନ୍ତି ତାହା ହେଲ୍‌ମେଟ୍ ହୋଇ ନଥିବାରୁ ଆଇନ ଅନୁଯାୟୀ ତାଙ୍କ ପ୍ରତି ପୁଲିସ ଦଣ୍ଡବିଧାନ କରିବା କଥା । କିନ୍ତୁ ତାହା ନକରି ପୁଲିସ ସାଲ୍ୟୁଟ୍ ମାରି ତାଙ୍କୁ ଛାଡ଼ି ଦେଉଛି । ଏମିତି ଅନୁପ ବେଳେବେଳେ କହୁକହୁ କହିଦେଉଛନ୍ତି ଯେ, ପୁଲିସ ତାଙ୍କୁ ଚିହ୍ନିଗଲାଣି । ଏକରେ ତ ପୁଲିସ ନିଶ, ଦୁଇରେ ଚେହେରା ମଧ୍ୟ ତାଙ୍କର ପୁଲିସ ଭଳି । ତେଣୁ ପୁଲିସର ସେ ଜଣେ ଭାଇ ଆଉ କୋଇଲା ଖଣି ଟୋପି ତାଙ୍କ ପାଇଁ ସମସ୍ୟା ହେଉନାହିଁ । ସବୁ ଚଳିଯାଉଛି । ତେଣୁ ହେଲ୍‌ମେଟ୍‌ର ଆବଶ୍ୟକତା ପଡୁନାହିଁ । ନହେଲେ ବିଧାୟକ ହୋଇଥିବାରୁ ଏମିତି ସବୁବେଳେ ମୁଣ୍ଡ ଭାରି । ପୁଣି ଭାରି ହେଲ୍‌ମେଟ୍‌କୁ ପିନ୍ଧିଦେଲେ ଆହୁରି ମୁଣ୍ଡ ଭାରି ହୋଇଯିବ । ଯାହା ହେଉ ପୁଲିସ ଭାଇମାନେ ଅନୁପଙ୍କର ସମସ୍ୟାକୁ ଭଲ ରୂପେ ବୁଝି ପାରୁଥିବାରୁ ସେଥିପାଇଁ ସେମାନଙ୍କୁ ଧନ୍ୟବାଦ ଦେବାକୁ ହିଁ ପଡ଼ିବ । ■

## ଆଳୁଦମ୍ ଜିନ୍ଦାବାଦ୍

ଏବେ ଆମକୁ ଯିବାକୁ ପଡ଼ିବ ଗାଁଗହଳିକୁ । ସେଠାରେ ପ୍ରାଥମିକ ବିଦ୍ୟାଳୟରେ ଯେତେବେଳେ ଗଣେଶ କିମ୍ବା ସରସ୍ୱତୀ ପୂଜାରେ ଭୋଜି ହୁଏ ସେଥିରେ ଆଳୁଦମ୍ ଆଇଟମ୍‌ଟିଏ ରହିଥାଏ । ଏମିତି ଯେ ଆଳୁଦମ୍‌ରେ ପାଣି ସରସର ଝୋଳ ରହିଥାଏ ତାହା

ନୁହେଁ । ଟିକିଏ ବହଳା ଝୋଳ ଥାଏ । ପିଲାମାନଙ୍କୁ ଅନ୍ୟ ତରକାରି ଅପେକ୍ଷା ଆଳୁଦମ୍ ଖାଇବାକୁ ଭଲ ଲାଗିଥାଏ । ଅବଶ୍ୟ ସହର ଜୀବନରେ ଏହି ଆଳୁଦମ୍ ପ୍ରୀତି ବହୁତ କମ୍ ଥାଏ । କିନ୍ତୁ ଆଳୁଦମ୍ ମାୟାରେ କିପରି ଜଣେ ବିଧାୟକ ବାୟା ହୋଇଯାଉଛନ୍ତି ତାହାକୁ ଏଠାରେ ଅବଗତ କରାଯିବାର ଆବଶ୍ୟକତା ରହିଛି । ଏହି ବିଧାୟକ ଜଣଙ୍କ ହେଉଛନ୍ତି ରଣପୁର ବିଧାନସଭା ନିର୍ବାଚନମଣ୍ଡଳୀରୁ ବିଜେଡିରୁ ପ୍ରାର୍ଥୀ ହୋଇ ନିର୍ବାଚିତ ହୋଇଥିବା ସତ୍ୟନାରାୟଣ ପ୍ରଧାନ । ଏମିତି ତାଙ୍କର ଡାକନାମ ହେଉଛି ବାଦଲ । ରଣପୁର ନିର୍ବାଚନମଣ୍ଡଳୀର ମଗରବନ୍ଧ ଗ୍ରାମରେ ତାଙ୍କର ଘର । ତାଙ୍କ ଜେଜେବାପା ଜମିଦାର ଥିଲେ । ବାପା ସରକାରୀ ଚାକିରିଆ ଥିଲେ । ବହୁ ଦିନରୁ ସତ୍ୟନାରାୟଣ ଆମିଷ ଛାଡ଼ି ସାରିଲେଣି । ତେବେ ପିଲାଦିନରୁ ତାଙ୍କର ଆଳୁଦମ୍ ପ୍ରତି ଯେଉଁ ପ୍ରୀତି ରହିଛି ତାହାକୁ ସେ ଛାଡ଼ି ପାରୁନାହାନ୍ତି । ଆଳୁଦମ୍ ଦେଖିଲେ ତାଙ୍କ ପାଟିରୁ ଲାଳ ବାହାରିଆସେ । ଯଦି ବେଳାଏ ଆଳୁଦମ୍ କିଏ ଦେଇଦେବ ଆଉ ତାହା ସ୍ୱାଦିଷ୍ଟ ହୋଇଥିବ ତେବେ ମୁହୂର୍ତ୍ତ ମଧ୍ୟରେ ସେସବୁକୁ ସେ ପେଟ ଭିତରକୁ ନେଇଯାଇଥିବେ । ମିଲ୍ ପଛେ ନଖାଆନ୍ତୁ ଆଳୁଦମ୍ ଖାଇ କିନ୍ତୁ ସେ ଦିନ ପରେ ଦିନ କାଟିଦେବେ । ଏମିତି ବେଳେବେଳେ ମଧ୍ୟ ଅତ୍ୟଧିକ ଆଳୁ ନଖାଇବାକୁ ଡାକ୍ତର ତାଙ୍କୁ ପରାମର୍ଶ ଦିଅନ୍ତି । କିନ୍ତୁ ଆଳୁକୁ ଦେଖିଲେ ସେ ପଛେ ନାକ ଟେକିବେ କିନ୍ତୁ ଆଳୁଦମ୍‌କୁ ଦେଖିଲେ ପାଟି ଭିତରୁ ଜିଭ ତାଙ୍କର ବାହାରକୁ ଚାଲିଆସି ଲହଲହ ହେବ ଆଳୁଦମ୍‌କୁ କିପରି ପେଟ ଭିତରକୁ ନେଇଯିବା ପାଇଁ । ସତ୍ୟନାରାୟଣଙ୍କ ଏହି ଆଳୁଦମ୍ ପ୍ରୀତିକୁ ପ୍ରାୟ କେହି ଜାଣି ନଥିଲେ । କିନ୍ତୁ ବିଧାୟକ ହେବାପରେ ବେଳେବେଳେ ଭୋଜିଭାତରେ ଆଳୁଦମ୍ କରାଯିବା ଉପରେ ସତ୍ୟନାରାୟଣ ଗୁରୁତ୍ୱ ଦିଅନ୍ତି । ଏହା ହିଁ ତାଙ୍କର ଆଳୁଦମ୍ ପ୍ରୀତିକୁ ବାହାରକୁ ଫିଟାଇ ଦେଇଛି । ଏବେ ସତ୍ୟନାରାୟଣ ଯୁଆଡ଼କୁ ଗଲେ ଯଦି ତାଙ୍କର ସେଠାରେ ଖାଇବାର ବନ୍ଦୋବସ୍ତ ହୋଇଥାଏ ତେବେ ଆଳୁଦମ୍ ଆଇଟମ୍‌ଟିଏ ରହୁଛି । ଅନେକ ମଧ୍ୟ ସତ୍ୟନାରାୟଣଙ୍କ ଠାରୁ କାମ ହାସଲ କରିବା ପାଇଁ ତାଙ୍କ ନିମନ୍ତେ ଆଳୁଦମ୍ ପ୍ୟାକେଟ୍ ପାର୍ସଲ କରି ନେଉଛନ୍ତି । ଆଉ କେତେକ ମଧ୍ୟ ତାଙ୍କ ସାଥିରେ ଯାଇ ତାଙ୍କୁ ଆଳୁଦମ୍ ଖୁଆଉଛନ୍ତି । ତେବେ ସତ୍ୟନାରାୟଣ ଥଣ୍ଡା ମସ୍ତିଷ୍କର ବ୍ୟକ୍ତି ହୋଇଥିବାରୁ ତାଙ୍କୁ ଆଳୁଦମ୍ ଖୁଆଇ ତାଙ୍କ ଠାରୁ କେହି କାମ ହାସଲ କରିପାରୁନାହାନ୍ତି । ସେ ଯାହା ହେଉନା କାହିଁକି ସତ୍ୟନାରାୟଣଙ୍କର ଆଳୁଦମ୍ ପ୍ରୀତି ରହିଛି ବୋଲି ଜଣାପଡ଼ିଯିବା ପରେ ତାଙ୍କ ନିର୍ବାଚନମଣ୍ଡଳୀ ରଣପୁରରେ ଏବେ ଆଳୁଦମ୍ ଆଇଟମ୍ ଭୋଜିରେ ଯୋଡ଼ି ହୋଇଗଲାଣି । ମାନିବାକୁ ପଡ଼ିବ ସତ୍ୟନାରାୟଣଙ୍କୁ । ଆଉ କିଛି ହେଉ କି ନହେଉ କିନ୍ତୁ ଆଳୁଦମ୍ ଜିନ୍ଦାବାଦ୍ ହୋଇଗଲାଣି । ■

# କୁକୁର ପ୍ରିୟ ଲଲାଟେନ୍ଦୁ




ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର ହେଉଛନ୍ତି କଂଗ୍ରେସର ଜଣେ ଆଗଧାଡ଼ିର ନେତା । ଏମିତି କଂଗ୍ରେସର ସଂଗଠନ ରାଜ୍ୟରେ ଦୁର୍ବଳ ଥିବାବେଳେ କିନ୍ତୁ ଲଲାଟେନ୍ଦୁଙ୍କ ସଂଗଠନ ବେଶ୍ ସବଳ ଅଛି । ଯଦିଓ ନିର୍ବାଚନରେ ଲଲାଟେନ୍ଦୁ ହାରିଯାଇଛନ୍ତି କିନ୍ତୁ ରାଜ୍ୟରେ ଯେତେବେଳେ ଯେଉଁ ଛାତ୍ର କିମ୍ବା ଯୁବ ଆନ୍ଦୋଳନ ହେଉଛି ତାହା ହିଁ ଲଲାଟେନ୍ଦୁଙ୍କ ଦ୍ୱାରା ଚାଲିଛି । ମାନେ କଂଗ୍ରେସର ଆନ୍ଦୋଳନକୁ ବଜାୟ ରଖିଛନ୍ତି କେବଳ ଲଲାଟେନ୍ଦୁ ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । ସେଦିନ ଲଲାଟେନ୍ଦୁଙ୍କ ଦରବାର ଚାଲିଥାଏ । ତାଙ୍କ ପାଖରେ ଯେ କଂଗ୍ରେସର କୌଣସି ବିଧାୟକ ସେତେବେଳେ ଥା'ନ୍ତି ତାହା ନୁହେଁ କି କଂଗ୍ରେସର ନାମୀଦାମୀ ନେତା ଥା'ନ୍ତି ତାହା ବି ନୁହେଁ । ସେଠାରେ ପ୍ରାୟ ଯୁବ ଓ ଛାତ୍ର କଂଗ୍ରେସର ପ୍ରମୁଖ ନେତାମାନେ ବସିଥା'ନ୍ତି । ଆଲୋଚନା ଚାଲିଥାଏ । ହଠାତ୍ ଲଲାଟେନ୍ଦୁଙ୍କ ପାଖକୁ ଏକ ବିଶାଳକାୟ କୁକୁର ଆସିଲା । ସେ କୁକୁରକୁ ଦେଖି ସମସ୍ତେ ଭୟଭୀତ ହୋଇଗଲେ । କୁକୁରଟି ଯାଇ ଲଲାଟେନ୍ଦୁଙ୍କ ପାଖରେ ଶୋଇଲା । କେହି ଜଣେ କହିଲେ- କୁକୁରକୁ ଦେଖିଦେଲେ ଝାଡ଼ା ହୋଇଯିବ । ଲଲାଟେନ୍ଦୁ କହିଲେ- କୁକୁରଟି କାହାର କିଛି କ୍ଷତି କରିବ ନାହିଁ । ଭୟ କରନାହିଁ । ଏହାପରେ ସେଠାରୁ କୁକୁରଟିକୁ ନେଇଯିବା ପାଇଁ ସେ କହିଲେ । କୁକୁରଟି ଚାଲିଯିବା ପରେ ସେହି କୁକୁର ଉପରେ କିଛି ସମୟ ପାଇଁ ଆଲୋଚନା ହେଲା । ଲଲାଟେନ୍ଦୁ କହିଲେ- ରାଜ୍ୟ ବାହାରେ ଥିବା ତାଙ୍କ ଭଉଣୀ ଏହି କୁକୁରଟିକୁ ତାଙ୍କ ପାଖକୁ ପଠାଇଛନ୍ତି । ମାତ୍ର ୬ ମାସ ବୟସ ଏହି କୁକୁରକୁ । ଏହି ସମୟରେ ସେଠାରେ ଥିବା ଜଣେ ବ୍ୟକ୍ତି କହିଲେ- ୬ ମାସ ବୟସରେ ଯଦି ଏତେବଡ଼ କୁକୁର ତା' ହେଲେ ବୟସ ହୋଇଗଲେ ସେ କେତେବଡ଼ ହେବ । ଲଲାଟେନ୍ଦୁ କହିଲେ- ୯୦ କେଜି ଓଜନର ହେବ । ସେଠାରେ ଥିବା ସମସ୍ତେ ଏହା ଶୁଣି ଆଖି ତରାଟି ଦେଲେ । ଲଲାଟେନ୍ଦୁ କହିଲେ- ଏହି କୁକୁର ନାମ ହେଉଛି ଇଂଲିଶ ୱାଚ୍‌ଡଗ୍ । ମେଣ୍ଢା ଜଗିବାକୁ ଏହି କୁକୁରଙ୍କୁ ନିୟୋଜିତ କରାଯାଇଥାଏ । ୧୦ ହଜାର ମେଣ୍ଢାଙ୍କୁ ୧୦ଟି କୁକୁର ଜଗନ୍ତି । ପୁଣି ପୋଖରୀ ହେଉ କି ନଈ ହେଉ ଏହି କୁକୁରଙ୍କୁ ମଧ୍ୟ ମାଛ ଧରିବାରେ ନିୟୋଜିତ କରାଯାଏ । କେହି ଜଣେ କହିଲେ- ଏଠାରେ ତ ମେଣ୍ଢା ନାହାନ୍ତି କି ମାଛ ଧରିବାର ନାହିଁ । ତେବେ ଏହି କୁକୁରକୁ ଆପଣ କାହିଁକି ରଖିଛନ୍ତି । କ'ଣ ନେତାଙ୍କୁ ଜଗିବା ପାଇଁ । ଏଥିରେ ଲଲାଟେନ୍ଦୁ ଜୋରଦାର୍ ହସିଲେ ଆଉ କହିଲେ- ଭାରତବର୍ଷରେ ଏଭଳି ୧୧ଟି କୁକୁର ଅଛନ୍ତି । ସେଥିମଧ୍ୟରୁ ଏହା ଗୋଟିଏ । ମାନେ ତାଙ୍କର ଏହି କୁକୁରକୁ ଛାଡ଼ିଦେଲେ ଭାରତରେ ମାତ୍ର ଆଉ ୧୦ଟି ଏହି କୁକୁର ଅଛନ୍ତି । ଯେତେବେଳେ ଭଉଣୀ ଶ୍ରଦ୍ଧାରେ ଏହାକୁ ପଠାଇଛି ସେତେବେଳେ ସେହି କୁକୁରକୁ ସେ

ରଖିବେ ହିଁ ରଖିବେ । ମାନେ ଏହି କୁକୁରକୁ ଦେଖିଦେଲେ ଭଉଣୀର ଶ୍ରଦ୍ଧା ଆପେଆପେ ମନେ ପଡ଼ିଯାଉଛି । କୁକୁର ସଉକ କେବେଠାରୁ ବୋଲି ମଧ୍ୟ ସେଠାରେ ଥିବା ଜଣେ ବ୍ୟକ୍ତି ଜାଣିବାକୁ ଚାହିଁଲେ । ଲଲାଟେନ୍ଦୁ କହିଲେ- ପିଲାଦିନରୁ ତାଙ୍କର କୁକୁର ସଉକ ରହିଛି । ସେ ଗୋଟିଏ କି ଦୁଇଟି କୁକୁର ରଖିନାହାନ୍ତି । ବହୁ କୁକୁର ସେ ରଖିଛନ୍ତି । ଲଲାଟେନ୍ଦୁଙ୍କ ଏହି କଥାରୁ ଜଣାପଡ଼ିଯାଏ ଯେ, କୁକୁରକୁ ସେ କେତେ ଭଲ ପାଆନ୍ତି । ତେବେ ଅନେକ କ୍ଷେତ୍ରରେ ଦେଖାଯାଏ ନେତାମାନେ ପ୍ରାୟ କୁକୁର ପୋଷିଥା'ନ୍ତି । କୁଆଡ଼େ ବିଭିନ୍ନ ସମୟରେ ନେତାମାନଙ୍କ ପାଖରେ କିମ୍ବା ତାଙ୍କ ଗ୍ରୁପରେ ଯେଉଁ ନେତା ଥା'ନ୍ତି ସେମାନେ ତାଙ୍କୁ ଦଗା ଦେଇଥା'ନ୍ତି । ବେଳେବେଳେ ଏହି ଦଗା ହିଁ ସେମାନଙ୍କୁ ନିଗ୍ରହୀତ କରିଦେଇଥାଏ । କିନ୍ତୁ କୁକୁର କେବେ ବେଇମାନି ହୋଇ ନଥାଏ । ନେତା ଯେତେ ଦଗା ପାଇଲେ ମଧ୍ୟ ପୋଷା କୁକୁରକୁ ଦେଖିଦେଲେ ସେହି ବେଇମାନି କଥା ଭୁଲିଯାଆନ୍ତି । ଅବଶ୍ୟ ଲଲାଟେନ୍ଦୁଙ୍କ କ୍ଷେତ୍ରରେ ଏଭଳି ବେଇମାନି ନେତା କେହି ଜୁଟିଥିବେ କି ନାହିଁ ଜଣାନାହିଁ । ଭବିଷ୍ୟତରେ ଯେ ବେଇମାନି ନେତା ନଜୁଟିବେ ତାହା ମଧ୍ୟ କହି ହେବନାହିଁ । କିନ୍ତୁ ଲଲାଟେନ୍ଦୁଙ୍କୁ ଏହି ବେଇମାନି ଅନ୍ୟମାନଙ୍କ ପରି ବେଶି ବାଧିବ ନାହିଁ । ଯେହେତୁ ବହୁ କୁକୁର ସେ ପୋଷୁଛନ୍ତି ଆଉ ସେମାନଙ୍କୁ ଦେଖିଦେଲେ ଲଲାଟେନ୍ଦୁ ବେଶ୍ ଖୁସି ହୋଇଯାଉଛନ୍ତି । ଦେଖାଯାଉ ଲଲାଟେନ୍ଦୁଙ୍କ ଏହି କୁକୁର ପୋଷା ଅଭ୍ୟାସ କେତେଦିନ ଜାରି ରହୁଛି । ■



## ପ୍ରଶାନ୍ତଙ୍କ ବଗଡ଼ା ଭାତ

ପିଲାଦିନେ ଗାଁଗହଳିରେ ଚଳୁଥିବା ଲୋକମାନେ ସାଧାରଣତଃ ବଗଡ଼ା ଚାଉଳର ପ୍ରେମରେ ପଡ଼ିଯାଇଥା'ନ୍ତି । ଏମିତି ଗାଁଗହଳିରେ ଯେଉଁମାନେ ନାଲି ବଗଡ଼ା ଚାଉଳର ଭାତ ଖାଆନ୍ତି ସେମାନଙ୍କ ପାଖକୁ ରୋଗ ଆସି ନଥାଏ । ସେମାନଙ୍କୁ ଡାଏବେଟିସ୍ ତ ଆଦୌ ହେବନାହିଁ । ପୁଣି ହୃଦ୍‌ରୋଗର ଆଶଙ୍କା ମଧ୍ୟ ନଥାଏ । ଚଳଚ୍ଚିତ୍ର ଅଭିନେତାରୁ ରାତାରାତି ନେତା ହୋଇଥିବା ପ୍ରଶାନ୍ତ ନନ୍ଦଙ୍କର କୁଆଡ଼େ ନାଲି ବଗଡ଼ା ଚାଉଳର ଭାତ ପ୍ରତି ବେଶ୍ ଦୁର୍ବଳତା ରହିଛି । ଅବଶ୍ୟ ପିଲାଦିନେ ପ୍ରଶାନ୍ତ ଯେ ଗାଁଗହଳିରେ ରହୁଥିଲେ ତାହା ନୁହେଁ । ସେ କଟକରେ ରହୁଥିଲେ । ଏହାସତ୍ତ୍ୱେ ନାଲି ବଗଡ଼ା ଚାଉଳର ଭାତ ପ୍ରତି ତାଙ୍କର ଦୁର୍ବଳତା ରହିଛି । କଟକ ଛାଡ଼ି ଭୁବନେଶ୍ୱରକୁ ଚାଲିଆସିବା ପରେ ସତେ ଯେମିତି ପ୍ରଶାନ୍ତ ଆଉ ନାଲି ବଗଡ଼ା ଚାଉଳର ଭାତ ଖାଇବାରୁ ଦୂରେଇ ଯାଇଛନ୍ତି । ଏମିତି ବି ହୁଏ । ବାହାସାହା ନହୋଇଥିବା ଲୋକ ନାଲି ବଗଡ଼ା ଚାଉଳର ଭାତ ଖାଇପାରିବ । ବାହାସାହା ହେବାପରେ ପତ୍ନୀ ସେହି ନାଲି ବଗଡ଼ା ଚାଉଳର ଭାତକୁ ନଖାଇବି ପାରନ୍ତି । ପୁଣି ଛୁଆପିଲା ହେବାପରେ ସହରରେ ଥିଲେ ସେମାନେ ଆଦୌ ନାଲି ବଗଡ଼ା ଚାଉଳର ଭାତ ଖାଇବେ ନାହିଁ । ଏଭଳି ପରିସ୍ଥିତିରେ ନାଲି ବଗଡ଼ା ଚାଉଳର ଭାତ ଜଣଙ୍କ ପାଇଁ ସପ୍ନ ହୋଇଯିବ ହିଁ ଯିବ । ଏହି ପରିସ୍ଥିତି

ପ୍ରଶାନ୍ତଙ୍କ କ୍ଷେତ୍ରରେ ଘଟିଛି । ତେଣୁ ପ୍ରଶାନ୍ତ ଏକ ଉପାୟ ସ୍ଥିର କରିଛନ୍ତି । ତାହା ହେଲା ତାଙ୍କ ନିର୍ବାଚନମଣ୍ଡଳୀ ବେଗୁନିଆକୁ ସେ ବାରମ୍ବାର ଗସ୍ତ କରିବା । ଏମିତି ଯେ ଏନ୍‌ସିପିର ସଂଗଠନକୁ ଦୃଢ଼ କରିବା ପାଇଁ ସେ ବେଗୁନିଆ ଯାଉଛନ୍ତି ତାହା ନୁହେଁ । କିନ୍ତୁ ତାଙ୍କର ଉଦ୍ଦେଶ୍ୟ ହେଉଛି ନାଲି ବଗଡ଼ା ଚାଉଳର ଭାତ ଖାଇବା ପାଇଁ । ବେଗୁନିଆ ଗସ୍ତରେ ଗଲେ ପ୍ରଶାନ୍ତ ପୂର୍ବଦିନରୁ କାର୍ଯ୍ୟକ୍ରମ ଚୂଡ଼ାନ୍ତ କରିସାରିଥା'ନ୍ତି । କର୍ମୀମାନଙ୍କ ପାଇଁ ଭାତ, ଡାଲମାର ବନ୍ଦୋବସ୍ତ ହୋଇଥାଏ । କିନ୍ତୁ ନାଲି ବଗଡ଼ା ଚାଉଳର ଭାତ ବ୍ୟତୀତ ଅନ୍ୟ କେଉଁ ଚାଉଳରେ ଭାତ ହୋଇପାରିବ ନାହିଁ ବୋଲି ପ୍ରଶାନ୍ତଙ୍କ ନିର୍ଦ୍ଦେଶ ଥାଏ । ଅବଶ୍ୟ ନାଲି ବଗଡ଼ା ଚାଉଳର ଭାତକୁ ଯିଏ ଚାଖିଛି ସେ ହିଁ କେବଳ ତାହାର ସ୍ୱାଦ ଜାଣିଛି । ଆଉ ଯିଏ ଥରେ ନାଲି ବଗଡ଼ା ଚାଉଳ ଭାତର ପ୍ରେମରେ ପଡ଼ିଗଲା ସେ ଆଉ ସେଥିରୁ ଫିଟି ବାହାରିପାରିବ ନାହିଁ । ଯାହା ହୋଇଛି ପ୍ରଶାନ୍ତଙ୍କ କ୍ଷେତ୍ରରେ । ନାଲି ବଗଡ଼ା ଚାଉଳର ଭାତ ଆଉ ପ୍ରଶାନ୍ତଙ୍କୁ ନେଇ ରାଜନୀତି ମହଲରେ ବି ଚର୍ଚ୍ଚା ହେଉଛି । କୁଆଡ଼େ ନାଲି ବଗଡ଼ା ଚାଉଳର ଭାତ ଖାଇବା ପାଇଁ ପ୍ରଶାନ୍ତ ବେଗୁନିଆ ଗସ୍ତର ବାହାନା କରୁଛନ୍ତି । ପ୍ରଶାନ୍ତ ଭଲ ରୂପେ ଜାଣିଛନ୍ତି ସ୍ୱାସ୍ଥ୍ୟ ରକ୍ଷା କିପରି କରାଯାଏ ବୋଲି । ଏବେବି ପ୍ରଶାନ୍ତ ସିନେମା ମାୟାରେ ବାନ୍ଧି ବି ଅଛନ୍ତି । ଏହି ଦୃଷ୍ଟିରୁ ନିଜର ସ୍ୱାସ୍ଥ୍ୟ ଜଗିବାର ଆବଶ୍ୟକତା ରହିଛି । କେହି ଜଣେ ଚିକିତ୍ସକ ପ୍ରଶାନ୍ତଙ୍କୁ କହି ଦେଇଛନ୍ତି ଯେ, ସବୁଦିନ ନହେଉ ପଛେ ମାସକରେ ଚାରିଦିନ ଯଦି ନାଲି ବଗଡ଼ା ଚାଉଳର ଭାତ ସେ ଖାଇବେ ତେବେ ତାଙ୍କ ସ୍ୱାସ୍ଥ୍ୟ ଅତୁଟ ରହିବ । ଏବେ ଜଣାପଡ଼ିଛି ପ୍ରଶାନ୍ତ କିପରି ତାଙ୍କର ସ୍ୱାସ୍ଥ୍ୟକୁ ଅତୁଟ ରଖିଛନ୍ତି । ଦେଖାଯାଉ ନାଲି ବଗଡ଼ା ଚାଉଳର ଭାତ ପ୍ରୀତିରେ ପ୍ରଶାନ୍ତ କେତେଦିନ ରହୁଛନ୍ତି । ■

## ସିଝା ମଜା ଓ ହିତେଶ



କେହି ଯଦି ଖରିଆର ନିର୍ବାଚନମଣ୍ଡଳୀକୁ ଚାଲିଯିବେ ତେବେ ସେଠାରେ ନିଶ୍ଚିତ ଭାବେ ଦେଖିବାକୁ ପାଇବେ ଯେ, ସେଠାର ବିଜେପି ବିଧାୟକ ହିତେଶ ବଗର୍ତି ହେଉଛନ୍ତି ହିରୋ ନମ୍ବର ୱାନ୍ । ହିତେଶଙ୍କର ଦଳ ପୂର୍ବରୁ ବିଜେପି ନଥିଲା । ସେ ବିଜେଡିର ଖାଂଟି ନେତା ଥିଲେ । କିନ୍ତୁ ପରିସ୍ଥିତିରେ ପଡ଼ି ସେ ବିଜେପି ଟିକେଟରେ ଲଢ଼ି ବିଜୟୀ ହେଲେ । ବିଧାୟକ ହେବା ପୂର୍ବରୁ ହିତେଶଙ୍କର ବ୍ଲକ ଅଧ୍ୟକ୍ଷ, ଜିଲା ପରିଷଦ ସଭ୍ୟ ପ୍ରଭୃତି ଅଭିଜ୍ଞତା ମଧ୍ୟ ଥିଲା । ଖରିଆର ନିର୍ବାଚନମଣ୍ଡଳୀ ଏକ ସମସ୍ୟାବହୁଳ ନିର୍ବାଚନମଣ୍ଡଳୀ ଅଟେ । ଏହି ନିର୍ବାଚନମଣ୍ଡଳୀରେ ଯୁଆଡ଼କୁ ଚାହିଁବ ସିଆଡ଼େ ସମସ୍ୟା । ପୁଣି ବିଭିନ୍ନ ରୋଗରେ ବହୁ ଲୋକ ଆକ୍ରାନ୍ତ ହୁଅନ୍ତି । ଏମିତି ହିତେଶ ତୃଣମୂଳ ସ୍ତରର ନେତା ଥିଲେ । ଲୋକଙ୍କର ଅସୁବିଧା ସମୟରେ ସେ ପାଖରେ ଠିଆ ହୁଅନ୍ତି । ସେମାନଙ୍କ ସୁଖଦୁଃଖରେ ସେ ସାମିଲ ହୁଅନ୍ତି । ବିଧାୟକ ହେବାପରେ ହିତେଶ କିନ୍ତୁ ଅନ୍ୟ କିଛି କାମ

ହେଉ କି ନହେଉ କିନ୍ତୁ ଲୋକଙ୍କୁ ଚିକିତ୍ସା କରାଇବା ପାଇଁ ବେଶ୍ ଆଗଭର ହୋଇଛନ୍ତି । ଚିକିତ୍ସା ଯେ କେଉଁଠି ମାଗଣାରେ ହୋଇଯାଏ ତାହା ନୁହେଁ । ହିତେଶ ମଧ୍ୟ ସେ କ୍ଷେତ୍ରରେ ଟଙ୍କା ବି ଖର୍ଚ୍ଚ କରନ୍ତି । ବହୁ ସମସ୍ୟା ମଧ୍ୟରେ ଥିଲେ ମଧ୍ୟ ହିତେଶଙ୍କୁ ଦେଖିଲେ କେହି କହିବେ ନାହିଁ ଯେ, ସେ ଟେନ୍‌ସନ୍‌ରେ ଅଛନ୍ତି ବୋଲି । ସବୁବେଳେ ତାଙ୍କ ମୁହଁରେ ହସ ଲାଗିରହିଥାଏ । ଏହାର କାରଣ କ'ଣ ବୋଲି କେହି ଜାଣିପାରନ୍ତି ନାହିଁ । ଏବେ କାରଣ ଜଣାପଡ଼ିଗଲାଣି । ହିତେଶ କୁଆଡ଼େ ଆମିଷ ଛୁଅନ୍ତି ନାହିଁ । ମାନେ କେବଳ ସାଧା ଆଉ ସାଧା । ବିଭିନ୍ନ ଋତୁରେ ଫଳୁଥିବା ଫଳ ଓ ପନିପରିବା ଖାଇବାକୁ ସେ ଭଲ ପାଆନ୍ତି । ତାଙ୍କର ମକା ପ୍ରତି ବେଶ୍ ଦୁର୍ବଳତା ରହିଛି । ମକାକୁ ପୋଡ଼ି ସେ କେବେବି ଖାଆନ୍ତି ନାହିଁ । ସବୁବେଳେ ସିଝାମକା ସେ ଖାଆନ୍ତି । ଏମିତି ଦିନେ କେହିଜଣେ ତାଙ୍କୁ ପୋଡ଼ା ମକା ନଖାଇ ସିଝା ମକା କାହିଁକି ଖାଉଛନ୍ତି ବୋଲି ପଚାରିଲେ । ବ୍ୟକ୍ତି ଜଣଙ୍କ ମଧ୍ୟ କହିଲେ ପୋଡ଼ା ମକାର ସ୍ୱାଦ ସିଝା ମକାରେ ମିଳେନାହିଁ ବୋଲି । ହିତେଶ କହିଲେ- ପୋଡ଼ା ମକା ଖାଇଲେ ତାଙ୍କର ମୁଣ୍ଡ ଗରମ ହୋଇଯିବ । ସେ ସବୁବେଳେ ତାଙ୍କ ମଥାକୁ ଥଣ୍ଡା ରଖିବାକୁ ଚାହୁଁଛନ୍ତି । ସିଝା ମକା ଖାଇଲେ ମଥା ଥଣ୍ଡା ରହିବ । ଆଉ ସେ ମଧ୍ୟ ଏହାକୁ ପରୀକ୍ଷା କରି ଜାଣିପାରିଛନ୍ତି । ଦେଖାଯାଉ ସମସ୍ୟା ଭିତରେ ଥାଇ ସମସ୍ୟାକୁ ସମାଧାନ କରୁଥିବା ହିତେଶଙ୍କ ମଥାକୁ ସିଝାମକା କେତେଦୂର ଥଣ୍ଡା ରଖିପାରୁଛି । ■

## ପୁଅ ହେବ ତ ଏମିତି



ଏହା କୌଣସି ନାଟକ କିମ୍ବା ସିନେମାର ନାମକରଣ ନୁହେଁ । ଏହା ଏକ ଘଟଣାର ସ୍ପଷ୍ଟ ଚିତ୍ର । ଅନୁଗୁଳ ଜିଲାର ଅଙ୍ଗପଡ଼ା ଗ୍ରାମ ସେ ଦିନ ବେଶ୍ ଜନଗହଳି ଥିଲା । କାରଣ ଆଉ କିଛି ନୁହେଁ । ଦଶରଥ ସାହୁଙ୍କର ସେଦିନ ଏକାଦଶାହ ଥିଲା । ଶହଶହ ଯାନବାହନ ପୁଣି ହଜାର ହଜାର ଲୋକ । ସତେ ଯେମିତି ଦଶରଥଙ୍କ ପାଇଁ ସେହି ଗ୍ରାମଟି ଧନ୍ୟ ହୋଇଯାଇଥିଲା । ଅବଶ୍ୟ ଏହି ଦୃଶ୍ୟକୁ ଦଶରଥ ସ୍ୱର୍ଗରେ ଥାଇ ଦେଖିଥିବେ । ଦଶରଥଙ୍କର ଦୁଇ ପୁଅ । ବଡ଼ ହେଲେ ସଂସାର ସାହୁ ଏବଂ ସାନ ହେଲେ ସଂଜୀବ ସାହୁ । ସଂସାର ଓ ସଂଜୀବ ଯେ ଏମିତି ସେହି ଅଂଚଳରେ ବିଶେଷ ଖ୍ୟାତିଅର୍ଜନ କରିଥିଲେ ତାହା ନୁହେଁ । ସାନପୁଅ ସଂଜୀବ ବି.ଏ. ପାଶ୍ କରିବା ପରେ ବି.ଇଡି.ରେ କୃତକାର୍ଯ୍ୟ ହାସଲ କରିଥିଲେ । କଳାହାଣ୍ଡି ଜିଲାରେ ସଂଜୀବ କିଛିଦିନ ଶିକ୍ଷକତା ମଧ୍ୟ କରିଥିଲେ । କିନ୍ତୁ ସଂଜୀବଙ୍କର ପିଲାଦିନୁ ସମାଜସେବା ପ୍ରତି ଦୁର୍ବଳତା ରହିଥିଲା । ୧୯୮୬ ମସିହାରେ ସଂଜୀବ ଶିକ୍ଷକତା ଛାଡ଼ି ସମାଜସେବା କରିବା ପାଇଁ ଆଗେଇ ଆସିଲେ ଏବଂ ନିଜ ଗ୍ରାମ ଅଙ୍ଗପଡ଼ା ପଂଚାୟତର ସେ ସରପଂଚ ହେଲେ । ଏମିତି କ୍ରମେ ସେ ଲୋକଙ୍କ ସହିତ ମିଶିଗଲେ । ତାଙ୍କର ଲୋକପ୍ରିୟତାକୁ ଦେଖି ବିଜୁ ପଟ୍ଟନାୟକ ୧୯୯୫ ମସିହାରେ ବୀରମହାରାଜପୁରରେ ଜନତା ଦଳରୁ ତାଙ୍କୁ ପ୍ରାର୍ଥୀ

କଲେ । କିନ୍ତୁ ଅଳ୍ପ ଭୋଟ ବ୍ୟବଧାନରେ ସେ ପରାଜିତ ହେଲେ । ୨୦୦୦ରେ ସଂଜୀବ ସାଧୀନ ପ୍ରାର୍ଥୀ ହେଲେ ଏବଂ ପାଖାପାଖି ଦୁଇ ହଜାର ଭୋଟ ବ୍ୟବଧାନରେ ପରାଜିତ ହେଲେ । ସାଧୀନ ପ୍ରାର୍ଥୀ ହୋଇ ଏତେ ସଂଖ୍ୟକ ଭୋଟ ପାଇଥିବାରୁ ସେତେବେଳେ ସଂଜୀବ ଓଡ଼ିଶା ରାଜନୀତିରେ ବେଶ୍ ଚର୍ଚ୍ଚାକୁ ଆସିଥିଲେ । ୨୦୦୩ ଉପନିର୍ବାଚନରେ ସଂଜୀବ ବିଜୁ ଜନତା ଦଳର ପ୍ରାର୍ଥୀ ହୋଇ ବହୁ ଭୋଟ ବ୍ୟବଧାନରେ ବିଜୟୀ ହେଲେ । ଏହା ପରଠାରୁ ସଂଜୀବ ନିର୍ବାଚନ ରାଜନୀତିରେ ଆଉ ପଛକୁ ଫେରି ଚାହିଁନାହାନ୍ତି । ୨୦୦୬ରେ ସେ ନବୀନ ପଟ୍ଟନାୟକଙ୍କ ସରକାରରେ ବିଜ୍ଞାନ, କାରିଗରୀ ଓ ପଂଚାୟତିରାଜ ବିଭାଗର ରାଷ୍ଟ୍ରମନ୍ତ୍ରୀ ହେଲେ । ୨୦୦୮ରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ମନ୍ତ୍ରୀ ହେଲେ । ୨୦୦୯ ନିର୍ବାଚନରେ ବିଜେଡିରୁ ସେ ଆଠମଲିକରୁ ପ୍ରାର୍ଥୀ ହୋଇ ବିଜୟୀ ହେବାପରେ ବାଣିଜ୍ୟ ଓ ପରିବହନ ବିଭାଗର ସାଧୀନ ରାଷ୍ଟ୍ରମନ୍ତ୍ରୀ ହେଲେ । ସଂଜୀବଙ୍କ ବାପା ଦଶରଥ ଭୁବନେଶ୍ୱରରେ ଚିକିତ୍ସିତ ହେଉଥିବା ବେଳେ ଜୁଲାଇ ୩୧ ତାରିଖରେ ତାଙ୍କର ମୃତ୍ୟୁ ଘଟିଥିଲା । ଏହି ସମୟରେ ବିଧାନସଭା ଅଧିବେଶନ ଚାଲିଥିଲା । ଦଶରଥଙ୍କ ଶେଷ ଦର୍ଶନ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଠାରୁ ଆରମ୍ଭ କରି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଏବଂ ବହୁ ମନ୍ତ୍ରୀ, ବିଧାୟକ ଓ ଅଫିସର କରିଥିଲେ । ତେବେ ଏହା ଭୁବନେଶ୍ୱର ମଧ୍ୟରେ ସୀମିତ ଥିଲା । କିନ୍ତୁ ଦଶରଥଙ୍କ ଏକାଦଶାହ ସଂଜୀବ ତାଙ୍କର ଅଙ୍ଗପଡ଼ା ଗ୍ରାମରେ କରିଥିଲେ । ଉଭୟ ଦଶାହ ଓ ଏକାଦଶାହରେ ମନ୍ତ୍ରୀ, ବିଧାୟକ ଏବଂ ନିଜନିଜ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ବହୁ ବ୍ୟକ୍ତିବିଶେଷ ଅଙ୍ଗପଡ଼ାରେ ପହଂଚିଥିଲେ । ଏମିତି ବାଚସ୍ପତି ପ୍ରଦୀପ ଅମାତ୍, ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼ାଇ, ଉଚ୍ଚଶିକ୍ଷା ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଦେବୀପ୍ରସାଦ ମିଶ୍ର, ପଂଚାୟତିରାଜ, ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ପ୍ରଫୁଲ୍ଲ ସାମଲ, ହରିଜନ, ଆଦିବାସୀ ଉନ୍ନୟନ ମନ୍ତ୍ରୀ ବିଜୟ ରଂଜନ ସିଂ ବରିହା, ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ, ଖାଦ୍ୟ, ଯୋଗାଣ ଓ ଖାଉଟୀ କଲ୍ୟାଣ ମନ୍ତ୍ରୀ ସାରଦା ପ୍ରସାଦ ନାୟକ, ବିଜ୍ଞାନ, ସୂଚନା ଓ କାରିଗରୀ କୌଶଳ ମନ୍ତ୍ରୀ ରମେଶ ମାଝୀ ପ୍ରଭୃତି ଅଙ୍ଗପଡ଼ାରେ ପାଦ ପକାଇଥିଲେ । ପୁଣି ବହୁ ବିଧାୟକଙ୍କୁ ମଧ୍ୟ ସେ ଦିନ ଅଙ୍ଗପଡ଼ାରେ ଦେଖିବାକୁ ମିଳିଥିଲା । ଆଇଏଏସ୍ ଅଫିସରଙ୍କ ଠାରୁ ଆରମ୍ଭ କରି ସାମ୍ବାଦିକ ଏବଂ ବହୁ ନେତା ମଧ୍ୟ ଅଙ୍ଗପଡ଼ାକୁ ଯାଇଥିଲେ । ଅଙ୍ଗପଡ଼ା ଏମିତି ଏକ ଛୋଟିଆ ଗ୍ରାମଟିଏ । ସେଦିନ ଯେଉଁମାନେ ଅଙ୍ଗପଡ଼ାକୁ ଯାଇଥିଲେ ସେମାନେ ଭଲ ରୂପେ ଅବଗତ ହୋଇଥିଲେ ଯେ, ସଂଜୀବଙ୍କ ଅବଦାନ ସେହି ଗ୍ରାମ ପ୍ରତି ଯଥେଷ୍ଟ ଅଛି ବୋଲି । ଗ୍ରାମ ଦାଣ୍ଡଟି ପୂରା କଂକ୍ରିଟ । ପୁଣି ଗୋଟିଏ ସମୟରେ ସେହି ଗ୍ରାମକୁ ଯାତାୟତ ପାଇଁ ରାସ୍ତା ନଥିବା ବେଳେ ଏବେ ସେଠାକୁ ଯେଉଁ ରାସ୍ତା ଯାଇଛି ତାହା ସହର ଠାରୁ ଆହୁରି ଭଲ । ଗାଁରେ ସଂଜୀବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କଲେଜଟି ବ୍ଲକ ଅନୁଦାନ ପାଇଛି । ଗାଁରେ ଥିବା ପଂଚାୟତ ଅଫିସ ଦେଖନ୍ତୁ କି ସ୍କୁଲକୁ ଦେଖନ୍ତୁ କି

କଲେଜକୁ ଦେଖନ୍ତୁ କି ଚମତ୍କାର ଓସାରିଆ କଂକ୍ରିଟ, ପିଚୁରାସ୍ତାକୁ ଦେଖନ୍ତୁ ସବୁଠି ଯେକୌଣସି ବ୍ୟକ୍ତିଙ୍କର ମନଲାଖି ଯିବ ହିଁ ଯିବ । ସଂଜୀବଙ୍କର ଅବଦାନ ସେହି ଅଂଚଳ ପାଇଁ କ'ଣ ତାହା ସେଠାରେ ଥିବା ଲୋକମାନେ ସେଦିନ ବେଶ୍ ବଖାଣୁଥିଲେ । ସଂଜୀବଙ୍କର ଉଦ୍ୟମ କେବଳ ଅଙ୍ଗପଡ଼ା ଗ୍ରାମରେ ସୀମିତ ହୋଇରହିନାହିଁ । ତାଙ୍କ ବ୍ଲକ କିଶୋରନଗରକୁ ଏହା ମଧ୍ୟ ବ୍ୟାପିଯାଇଛି । ଗୋଟିଏ ସମୟରେ ଏହି ବ୍ଲକଟିକୁ ନାହିଁ ନାହିଁର ବ୍ଲକ ବୋଲି କୁହାଯାଉଥିଲା । ଏବେ ସେଠାରେ ସବ୍‌ରେଜିଷ୍ଟ୍ରାର ଅଫିସ ଠାରୁ ଆରମ୍ଭ କରି ତହସିଲ, ସବ୍‌ଟ୍ରେଜରୀ, ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ର ସବୁକିଛି ଅଛି । ଏହା କୁଆଡ଼େ ସଂଜୀବଙ୍କର ଉଦ୍ୟମ ଯୋଗୁ ହୋଇଛି । ଗାଁରେ ସେଦିନ ହଜାର ହଜାର ଲୋକ । ସତେ ଯେମିତି ଏକ ମିନି ରଥଯାତ୍ରା । ସଂଜୀବଙ୍କ ପରି ପୁଅ ଜନମ କରି ଦଶରଥ ଧନ୍ୟ ହୋଇଛନ୍ତି । ନହେଲେ ଦଶରଥଙ୍କ ଏକଦଶାହରେ ବହୁ ମନ୍ତ୍ରୀ, ବିଧାୟକ, ନେତା, ଅଫିସର, ସାମ୍ବାଦିକଙ୍କ ସମେତ ହଜାର ହଜାର ଲୋକ ଯୋଗ ଦେଇ ନଥା'ନ୍ତେ । ଏମିତି ତ ସଂଜୀବଙ୍କ ପାଇଁ ସତେ ଯେମିତି ସେଦିନ ଅଙ୍ଗପଡ଼ା ଗ୍ରାମ ଧନ୍ୟ ହୋଇଯାଇଥିଲା । ଏହା କିନ୍ତୁ କେହି କହୁ ନଥିଲେ । ସମସ୍ତେ କହୁଥିଲେ ସଂଜୀବଙ୍କ ପାଇଁ ତାଙ୍କ ବାପା ଦଶରଥ ହିଁ ଧନ୍ୟ ହୋଇଯାଇଛନ୍ତି । ପୁଅ ହେବ ତ ଏମିତି । ■

## ମାଣ୍ଡିଆଜାଉ ପ୍ରେମରେ ବିଭୂତି



ଏମିତି ପ୍ରେମ ପ୍ରତି ମଣିଷଙ୍କ ପାଖରେ ଥାଏ । କାହାର ମହିଳା ପ୍ରେମ ତ କାହାର ପୁରୁଷ ପ୍ରେମ, ପୁଣି କାହାର ପୋଷାକ ପ୍ରେମ ତ କାହାର ଖାଦ୍ୟ ପ୍ରେମ । ଏଠାରେ ଯାହାଙ୍କ କଥା ଉଲ୍ଲେଖ କରାଯାଉଛି ତାଙ୍କର ପ୍ରେମ ଖାଇବାକୁ ନେଇ । ମାନେ ସବୁକିଛିକୁ ସେ ଛାଡ଼ିଦେବେ କିନ୍ତୁ ସେହି ଖାଇବା ପଦାର୍ଥକୁ ସେ ଛାଡ଼ିପାରିବେ ନାହିଁ । ତାହାହେଲା ମାଣ୍ଡିଆ ଜାଉ । ଏହି ମାଣ୍ଡିଆ ଜାଉ ପ୍ରେମରେ କିଏ ପଡ଼ିଛନ୍ତି ତାହା ଖୋଜିବାକୁ ଅଧିକ ବାଟ ବି ଯିବାକୁ ପଡ଼ିବ ନାହିଁ । ଜଟଣୀ ବିଧାୟକ ବିଭୂତି ବଳବନ୍ତ ରାୟଙ୍କ ପାଖକୁ ଚାଲିଗଲେ ଏହି ମାଣ୍ଡିଆ ଜାଉ ପ୍ରେମ ସମ୍ପର୍କରେ ଯେକୌଣସି ବ୍ୟକ୍ତି ବେଶ୍ ଅବଗତ ହୋଇଯିବେ । ବିଭୂତିଙ୍କ ଚେହେରାକୁ ଦେଖିଲେ ଜାଣିହେବ ଯେ ସେ ପ୍ରତିଦିନ ବ୍ୟାୟାମ କରନ୍ତି ବୋଲି । ଏବେ ଯିବା ବିଭୂତିଙ୍କ ପାଖକୁ । ସକାଳ ୫ ଟାରେ ସେ ଶେଯତ୍ୟାଗ କରନ୍ତି । ବ୍ୟାୟାମ କରିବାକୁ ସେ ବାହାରକୁ ଯା'ନ୍ତି ନାହିଁ । ନିଜ ଘରେ ଏକ ଛୋଟ ବ୍ୟାୟାମଶାଳା ସେ କରିଛନ୍ତି। ସେଠାରେ ବ୍ୟାୟାମ କରିସାରିବା ପରେ ସ୍ନାନାଦିକାର୍ଯ୍ୟ ସେ ସମାପନ କରନ୍ତି । ଆଉ ସକାଳେ ଜଳଖିଆ କହିଲେ ତାଙ୍କ ପାଇଁ ବୁଝାଏ ମାଣ୍ଡିଆ ଜାଉ । ଏହି ମାଣ୍ଡିଆ ଜାଉରେ ସେ ଅଳ୍ପ ଲୁଣ ପକାଇ ଗୋଳାନ୍ତି ଆଉ ତାକୁ ପିଅନ୍ତି । ଏହାକୁ ଦେଖିବା ଲୋକ ଭାବନ୍ତି ଯେ ବିଭୂତି ମାଣ୍ଡିଆ ଜାଉ ଖାଉଥିବାରୁ ବୋଧହୁଏ ସାଧା ଖାଉଥିବେ । କିନ୍ତୁ ମାଣ୍ଡିଆ ଜାଉ ପ୍ରେମରେ ପଡ଼ିଥିବା ବିଭୂତି ଆଦୌ

ସାଧାରଣ ଭକ୍ତ ନୁହଁନ୍ତି । ଅବଶ୍ୟ ଏହା ତାଙ୍କ ନିର୍ବାଚନମଣ୍ଡଳୀ ଜଟଣୀର ଅଧିବାସୀମାନେ କ୍ରମେ ଜାଣିଗଲେଣି । ବିଭୂତି ମଧ୍ୟ ଆମିଷ ପ୍ରିୟ ଅଟନ୍ତି । ଚୂନାମାଛ କିମ୍ବା ଦେଶୀ କୁକୁଡ଼ା ତରକାରୀ ହେଲେ ବିଭୂତିଙ୍କର ଜାଣ ଗୁଣ୍ଡା ପରେ ଗୁଣ୍ଡା ଭାତ ଉଠିଯିବ । ଅବଶ୍ୟ ବିଭୂତିଙ୍କର ଏହି ଦୁର୍ବଳତାକୁ ଜାଣିବା ପରେ ଅନେକ ସ୍ଥାନରେ ତାଙ୍କ ପାଇଁ ଚୂନା ମାଛ ଆଉ ଦେଶୀକୁକୁଡ଼ା ତରକାରୀ ଭୋଜି କରାଯାଉଛି । ବିଭୂତି ଅବଶ୍ୟ ଭୋଜିରେ ଏକା ଖାଇବାକୁ ଯା'ନ୍ତି ନାହିଁ । ସାଥିରେ ଥା'ନ୍ତି ତାଙ୍କର ସମର୍ଥକ । ବୁଢ଼ାଠାରୁ ଆରମ୍ଭ କରି ଛୁଆ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ନନା ଡାକନ୍ତି । ଯେମିତି ମାଣ୍ଡିଆ ଜାଉ ଖାଇଦେଲେ ବିଭୂତି ଆତ୍ମସନ୍ତୋଷ ଲାଭ କରନ୍ତି ସେମିତି ନନା ଡାକ ଶୁଣିଦେଲେ ମଧ୍ୟ ସେହିପରି ଆତ୍ମସନ୍ତୋଷ ତାଙ୍କୁ ମିଳେ । ■

## ଦାମଙ୍କ ତୁଣ୍ଡ



ଡାକ୍ତର ଦାମୋଦର ରାଉତ ୧୯୭୪ ମସିହାରେ ସରକାରୀ ଚାକିରି ଛାଡ଼ି ଏରସମାରୁ ପ୍ରାର୍ଥୀ ହୋଇ ହାରିଲେ । ୧୯୭୭ ମସିହାରେ ସେ ଜିତିବା ପରେ ନୀଳମଣି ରାଉତରାୟଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହେଲେ । ତେବେ ଦାମ ରାଉତଙ୍କର ମୁଣ୍ଡ ଅପେକ୍ଷା ତୁଣ୍ଡ ଯେ ବହୁ ମୂଲ୍ୟବାନ ତାହା ସେବେଠାରୁ ଜଣାପଡ଼ିଥିଲା । ବିଜୁ ପଟ୍ଟନାୟକ ଦାମୋଦର ରାଉତଙ୍କର ତୁଣ୍ଡକୁ ସବୁବେଳେ ଦଳ ପାଇଁ ବ୍ୟବହାର କରୁଥିଲେ । କିନ୍ତୁ ତୁଣ୍ଡ ଦାମୋଦରଙ୍କ ପାଇଁ ବେଳେବେଳେ ବିପଦ ଟାଣିଆଣେ । ଯେଉଁଥିପାଇଁ ସେ ଅନେକ ସମୟରେ ବିଭିନ୍ନ ନେତାଙ୍କର ଶତ୍ରୁ ହୋଇଯାଇଥା'ନ୍ତି । ଦାମୋଦର ମନ୍ତ୍ରୀ ଥିଲେ ମଧ୍ୟ ତାଙ୍କ ତୁଣ୍ଡରେ ଲଗାମ ଦେବାକୁ କେବେବି ଉଚିତ ମଣି ନଥା'ନ୍ତି । ଏମିତି ଦିନେ ବିଜୁ ପଟ୍ଟନାୟକ ଦାମଙ୍କୁ ତାଙ୍କ ତୁଣ୍ଡରେ ଲଗାମ ଦେବା ପାଇଁ ମଧ୍ୟ କହିଥିଲେ । କିନ୍ତୁ ଦାମଙ୍କ ଉତର ଥିଲା- ତୁଣ୍ଡ ହେଉଛି ତାଙ୍କର ଏକମାତ୍ର ଆସେଟ୍ । ଦାମୋଦର ଏଥର କୃଷି, ସମବାୟ, ମତ୍ସ୍ୟ ଓ ପଶୁସମ୍ପଦ ବିଭାଗର ମନ୍ତ୍ରୀ । ପୁଣି ମନ୍ତ୍ରିମଣ୍ଡଳରେ ସେ ଏକାକୀ ଚଲୋରେ ଅଛନ୍ତି । ଏଭଳି ପରିସ୍ଥିତିରେ ଦାମୋଦର ଆଉ ତାଙ୍କ ତୁଣ୍ଡକୁ ବ୍ୟବହାର କରିବାକୁ ଚାହୁଁନାହାନ୍ତି । ତୁଣ୍ଡରୁ କିଛିବି କଥା ବାହାରିଗଲେ ତାହା ହାଇକମାଣ୍ଡଙ୍କ ପାଖରେ ପହଂଚି ଯାଇପାରେ । ଆଉ ପରବର୍ତୀ ଅବସ୍ଥା କ'ଣ ହେବ ଦାମୋଦର ତାଙ୍କ ଅତୀତର ଅଭିଜ୍ଞତାରୁ ବେଶ୍ ଭଲ ଭାବେ ଜାଣିସାରିଛନ୍ତି । ଏମିତି ମନ୍ତ୍ରୀ ହେଲେ ମଧ୍ୟ ଦାମୋଦର ଯେତେବେଳେ ବିଧାନସଭା ଅଧିବେଶନ ଚାଲିଥାଏ ଗୃହ ଭିତରେ ମନ୍ତ୍ରୀ ଭୂମିକା ନିର୍ବାହ କରୁଥିବା ବେଳେ ଲବିକୁ ଚାଲିଆସିଲେ ସତେ ଯେମିତି ସେ ନିଜକୁ ମନ୍ତ୍ରୀ ବୋଲି ଭାବିପାରନ୍ତି ନାହିଁ । ଯେଉଁଥିପାଇଁ ମନ୍ତ୍ରୀ ହୋଇ ମଧ୍ୟ ସେ ସରକାର ବିରୋଧରେ କହିବାକୁ ଲବିରେ ପଛାନ୍ତି ନାହିଁ । ଅବଶ୍ୟ ସେ ଯାହା କହନ୍ତି ତାହା ଯେ ମିଛ ତାହା

ନୁହେଁ । ତାହାସବୁ ଅକାଟ୍ୟ ସତ୍ୟ । କିନ୍ତୁ ସରକାରରେ ଥାଇ ପୁଣି ମନ୍ତ୍ରୀ ହୋଇ ଏହି ଅକାଟ୍ୟ ସତ୍ୟ ଅନ୍ୟ କାହା ଆଗରେ ନୁହେଁ, ପୁଣି ବିଧାୟକ, ମନ୍ତ୍ରୀଙ୍କ ଆଗରେ କହିବା ରାଜନୈତିକ ଦୃଷ୍ଟିକୋଣରୁ ଆଦୌ ପ୍ରାସଙ୍ଗିକ ନୁହେଁ ବୋଲି କୁହାଯାଇପାରିବ । ଏବେ ଦାମ କିନ୍ତୁ ଏହାକୁ ଠିକ୍ ଭାବେ ବୁଝିପାରିଛନ୍ତି । ଏବେ ନିଜ ପରିସ୍ଥିତିକୁ ଦେଖି ଦାମ ତୁଣ୍ଡରେ ଲଗାମ ଦେବା ଆରମ୍ଭ କରିଛନ୍ତି । ଲବିରେ ଯେତେ ତାଙ୍କୁ ଚିହାଇଲେ ବି ଦାମ ଆଉ ପୂର୍ବପରି ପାଟି ଫିଟାଉ ନାହାନ୍ତି । ଦାମ ବୁଝିସାରିଲେଣି ଯେ, ରାଜନୀତିରେ ସବୁଠି କାନ୍ଥବାଡ଼ର କାନ ଅଛି । ଦେଖାଯାଉ ଦାମ କେତେଦିନ ତାଙ୍କ ତୁଣ୍ଡ ଉପରେ ଲଗାମ ଦେଇପାରୁଛନ୍ତି । ■

## ପ୍ୟାରୀ ଓ ଶୁଆ ରଙ୍ଗ



ସବୁ ମଣିଷଙ୍କର କୌଣସି ରଙ୍ଗ ପ୍ରତି ଦୁର୍ବଳତା ଥାଏ । ଏଥିରୁ କେହି ବାଦ୍ ପଡ଼ନ୍ତି ନାହିଁ । ଏହି ଦୃଷ୍ଟିରୁ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର ଏହି ଦୁର୍ବଳତାରୁ ବାଦ୍ ପଡ଼ିବେ ବୋଲି ଭାବିବା ଉଚିତ ନୁହେଁ । ଏବେ ଦେଖାଯାଉ ପ୍ୟାରୀଙ୍କର କେଉଁ ରଙ୍ଗ ପ୍ରତି ଦୁର୍ବଳତା ରହିଛି । ଏହା ଯଦି ପ୍ୟାରୀଙ୍କୁ ପଚରାଯାଏ ତେବେ ତାହାର ଉତର ମିଳିବା କାଠିକର ହୋଇଯିବ । କାରଣ ପ୍ୟାରୀଙ୍କ କଥାଗୁଡ଼ିକ ଛୁଂଚି ଫୋଡ଼ିଲା ପରି । ତାହାପୁଣି ଭାରି ସିଧାସଳଖ ଆଉ ପାଟିରୁ ସାଏଁସାଏଁ ବାହାରିବ । ପ୍ରଶ୍ନକର୍ତା ଉତର ପାଇବା ବେଳକୁ ଓଲଟି ପ୍ୟାରୀଙ୍କ କଡ଼ା ପ୍ରଶ୍ନର ସେ ସମ୍ମୁଖୀନ ହୋଇସାରିଥିବ । ତେବେ ପ୍ୟାରୀଙ୍କ ପ୍ରିୟ ରଙ୍ଗ କ'ଣ ତାହା ଦେଖିବାକୁ ବେଶି ବାଟ ଯିବାକୁ ପଡ଼ିବ ନାହିଁ । ଏମିତି ପ୍ୟାରୀ ଯେଉଁ ଗାଡ଼ି ଚଢୁଛନ୍ତି ତାହାର ରଙ୍ଗ ଦେଖିଦେଲେ ଜଣାପଡ଼ିଯିବ ପ୍ୟାରୀଙ୍କ କେଉଁ ରଙ୍ଗ ପ୍ରତି ଦୁର୍ବଳତା ରହିଛି ବୋଲି । ପ୍ୟାରୀ ଚଢୁଛନ୍ତି ମାରୁତି ଜେନ୍ ଗାଡ଼ି ଆଉ ତାହାର ରଙ୍ଗ ହେଉଛି ଶୁଆ ରଙ୍ଗ । ଏମିତି ତ ପ୍ୟାରୀଙ୍କ ଗାଡ଼ିର ରଙ୍ଗଟି ରାଜଧାନୀ ଭୁବନେଶ୍ୱରରେ ନିଆରା ଅଟେ । ଅର୍ଥାତ୍ କାଁ ଭାଁ ହାତଗଣତି ମାତ୍ର କେତେଜଣ ବ୍ୟକ୍ତି ଏହି ରଙ୍ଗର ଗାଡ଼ି ଚଢ଼ିଥା'ନ୍ତି । କିନ୍ତୁ ସେଥିପ୍ରତି ପ୍ୟାରୀଙ୍କର ଆଦୌ ଖାତିର ନାହିଁ । ନିଜ ମନପସନ୍ଦ ମୁତାବକ ରଙ୍ଗର ଗାଡ଼ି ପ୍ୟାରୀ ଚଢୁଛନ୍ତି । କେବଳ ଗାଡ଼ି ପାଖରେ ପ୍ୟାରୀଙ୍କ ପ୍ରିୟ ରଙ୍ଗ ଚୟନଟି ଅଟକି ଯାଇଛି ତାହା ନୁହେଁ । ଏବେ ଯିବା ପ୍ୟାରୀଙ୍କ ପୋଷାକ ଉପରକୁ । ଏମିତି ଆଇଏଏସ୍ ଅଫିସର ଭାବେ ପ୍ରଶାସନ ଦାୟିତ୍ୱ ନିଭାଉଥିବା ବେଳେ ସେ ପ୍ୟାଂଟସାର୍ଟ, କୋର୍ଟ ପିନ୍ଧୁଥିଲେ ଆଉ ବିଜେଡ଼ିର ମଙ୍ଗୁଆଳ ଦାୟିତ୍ୱ ସମ୍ଭାଳିବା ପରେ ତାଙ୍କର ଚିରାଚରିତ ପୋଷାକ ହୋଇଗଲା କୁର୍ତା, ପାଇଜାମା । ଏମିତି ତ ପାଇଜାମା ସାଧାରଣତଃ ଧଳା ରଙ୍ଗର ପିନ୍ଧାଯାଏ । କିନ୍ତୁ କୁର୍ତାର ରଙ୍ଗକୁ ନିଜ ପସନ୍ଦ ମୁତାବକ ସମସ୍ତେ ଚୟନ କରିଥା'ନ୍ତି । ପ୍ୟାରୀଙ୍କର ଅଧିକାଂଶ କୁର୍ତା ହେଉଛି ଶୁଆ ରଙ୍ଗର । ମାନେ କୁର୍ତାରେ ଗାର ପଡୁ କି ଫୁଲ

ରହୁ ସେଥିରେ କିଛି ଯାଏଆସେ ନାହିଁ । କିନ୍ତୁ କୁର୍ତାଟି ଶୁଆ ରଙ୍ଗର ହୋଇଥିବ । ରାଜନୀତି ମହଲରେ ପ୍ୟାରୀଙ୍କ ଏହି ରଙ୍ଗ ପ୍ରତି କାହିଁକି ଦୁର୍ବଳତା ରହିଛି ସେ ନେଇ ଚର୍ଚ୍ଚା ପରେ ଚର୍ଚ୍ଚା ହେଉଛି । ଏମିତି ତ ଜ୍ୟୋତିଷଙ୍କ ପ୍ରତି ରାଜନେତାଙ୍କର ସବୁବେଳେ ଦୁର୍ବଳତା ଥାଏ । ପ୍ୟାରୀ ଆଇଏଏସ୍‌ରୁ ରାଜନେତା ହେବାପରେ କୁଆଡ଼େ ଜ୍ୟୋତିଷଙ୍କ ପ୍ରତି ଦୁର୍ବଳତା ବଢ଼ିଯାଇଛି । କେଉଁ ଜଣେ ଜ୍ୟୋତିଷ କୁଆଡ଼େ ପ୍ୟାରୀଙ୍କୁ କହି ଦେଇଛନ୍ତି ଗାଡ଼ି ଚଢ଼ କି କୁର୍ତା ପିନ୍ଧ ତାହା ଶୁଆ ରଙ୍ଗର ହେବା ଦରକାର । ଏହା ହେଲେ ହିଁ ତାଙ୍କର ରାଜନୀତିରେ ଚୌକିଟି ଦୃଢ଼ ରହିବ । ବୋଧହୁଏ ଜ୍ୟୋତିଷଙ୍କ ଏହି ବାଣୀଟି ପ୍ୟାରୀଙ୍କ ପାଇଁ ଶତ ପ୍ରତିଶତ ସତ ହୋଇଛି । ପ୍ୟାରୀ ଶୁଆ ରଙ୍ଗର ଗାଡ଼ି ଚଢ଼ୁଛନ୍ତି ଆଉ ଅଧିକାଂଶ ସମୟରେ ଶୁଆ ରଙ୍ଗର କୁର୍ତା ବି ପିନ୍ଧୁଛନ୍ତି । ଯେଉଁଥିପାଇଁ ବିଜେଡ଼ିରେ ରଥୀ ମହାରଥୀ ନେତା ଥିବାବେଳେ ପ୍ୟାରୀ ହୋଇଯାଇଛନ୍ତି ସମସ୍ତଙ୍କର ହର୍ତାକର୍ତା ଦଇବ ବିଧାତା । ■

## ଘଡ଼ାଇଙ୍କ ଆତ୍ମସନ୍ତୋଷ



ଏମିତି ନିର୍ବାଚନରେ ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କୁ ବେଶ୍ ନିରାଶ ହେବାକୁ ପଡ଼ିଥିଲା । କୁଆଡ଼େ ଏଥରର ନିର୍ବାଚନଟି ପ୍ରଫୁଲଙ୍କ ପାଇଁ ବହୁ କଷ୍ଟ ଆଣି ଦେଇଥିଲା । ବିଜୟୀ ହେବା ପାଇଁ ତାଙ୍କୁ ଦିନରାତି ପରିଶ୍ରମ କରିବାକୁ ପଡ଼ିଥିଲା । କିଛିରାତି ମଧ୍ୟ ସେ ଉଜାଗର ହୋଇଥିଲେ । ତେବେ ନିର୍ବାଚନରେ ବିଜୟର ସମ୍ବାଦ ଯୋ ଜିତା ଓହି ସିକନ୍ଦର ପରି ତାଙ୍କୁ ଲାଗିଥିଲା । କମ୍ ଭୋଟ ବ୍ୟବଧାନରେ ବିଜୟ ହୋଇଥିବାରୁ ପ୍ରଫୁଲଙ୍କ ମନ ସେତେ ଖୁସି ନଥିଲା । ନିର୍ବାଚନ ପରେ ତାଙ୍କ ନିର୍ବାଚନମଣ୍ଡଳୀ ସୁକିନ୍ଦାର ବାସିନ୍ଦାମାନେ ଯେତେବେଳେ ତାଙ୍କପାଖକୁ ଆସନ୍ତି ସେ ସବୁବେଳେ କହନ୍ତି- ଏତେ କାମ କଲି, ଜନସାଧାରଣଙ୍କ ସୁଖଦୁଃଖ ସବୁବେଳେ ବୁଝିଲି କିନ୍ତୁ ଭୋଟ ବେଳକୁ ଦୂରେଇ ଗଲେ । ଆଉ କାହା କଥା ବୁଝିବି ନାହିଁ । ପ୍ରଫୁଲ ମନ ଦୁଃଖରେ ଏଭଳି ଅନେକ କଥା କହନ୍ତି । ତେବେ ବିଜେଡିର ଜନସମ୍ପର୍କ ଯାତ୍ରା ତାଙ୍କ ପାଇଁ ଆଶିର୍ବାଦ ହୋଇଯାଇଥିଲା । ସତେ ଯେମିତି ସେ ଚାହିଁ ରହିଲେ ଏହି ଜନସମ୍ପର୍କ ଯାତ୍ରାକୁ । ନିର୍ବାଚନ ସମୟର ତିକ୍ତ ଅନୁଭୂତିକୁ ସେ ଭୁଲି ପାରୁ ନଥା'ନ୍ତି । ତାଙ୍କର ଚିରାଚରିତ ପ୍ରତିଦ୍ୱନ୍ଦି କଂଗ୍ରେସର ଶରତ ରାଉତଙ୍କୁ ପାନେ ଦେବା ପାଇଁ ସେ ସୁଯୋଗ ଖୋଜୁଥିଲେ । ଏହି ସୁଯୋଗ ମିଳିଗଲା ପ୍ରଫୁଲଙ୍କୁ ଲୋକସମ୍ପର୍କ ଯାତ୍ରା ସମୟରେ । କେତେକ କଂଗ୍ରେସ ନେତା ଆସି ମିଶିଲେ ବିଜେଡ଼ିରେ । ଏହା ହିଁ ପ୍ରଫୁଲଙ୍କ ପାଇଁ ଗଡ଼ ଜିଣିବା ପରି ହୋଇଥିଲା । ଏହା କୁଆଡ଼େ ତାଙ୍କ ପ୍ରତିଦ୍ୱନ୍ଦି ଶରତଙ୍କ ଗାଲରେ ଚାପୁଡ଼ା ବୋଲି ପ୍ରଫୁଲ କହିଥିଲେ । ତେବେ ଯାହା ହେଉନା କାହିଁକି ଲୋକସମ୍ପର୍କ ଯାତ୍ରା ହିଁ ପ୍ରଫୁଲଙ୍କ ମନରେ ବେଶ୍ ଆନନ୍ଦ

ଆଣିଦେଇଥିଲା । ପ୍ରଫୁଲ ଆଉ ପୂର୍ବପରି ସୁକିନ୍ଦାବାସୀଙ୍କୁ ଦେଖିଲେ ବିରକ୍ତ ହେଉନାହାନ୍ତି । ସମସ୍ତଙ୍କୁ ପାଖକୁ ନେଉଛନ୍ତି ଏବଂ ତାଙ୍କର ଚିରାଚରିତ ଢଙ୍ଗ, କଅଁଳିଆ କଥା କହି ମନ ମୋହୁଛନ୍ତି । ଦେଖିବାକୁ ରହିଛି ସୁକିନ୍ଦାରେ କଂଗ୍ରେସକୁ କିଭଳି ଖିନ୍‌ଭିନ୍ କରୁଛନ୍ତି ପ୍ରଫୁଲ । ■



## ଖୁସ୍ ପ୍ରଦୀପ

ଗୋପାଳପୁରର ବିଜେଡି ବିଧାୟକ ହେବା ପୂର୍ବରୁ ପ୍ରଦୀପ ପାଣିଗ୍ରାହୀଙ୍କର ପରିଚୟ ଥିଲା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ନିର୍ବାଚନମଣ୍ଡଳୀ ହିଂଜିଳିର ସେ ପ୍ରତିନିଧି । ମାନେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସାରାରାଜ୍ୟ କଥା ବୁଝିବେ ଆଉ ତାଙ୍କ ନିର୍ବାଚନମଣ୍ଡଳୀ କଥା ବୁଝିବେ ପ୍ରଦୀପ । ଏଭଳି ମୁଖ୍ୟମନ୍ତ୍ରୀଙ୍କ ନିର୍ବାଚନମଣ୍ଡଳୀ କଥା ବୁଝୁବୁଝୁ ପ୍ରଦୀପଙ୍କୁ ମିଳିଗଲା ୨୦୦୯ ନିର୍ବାଚନରେ ଗୋପାଳପୁର ବିଧାନସଭା ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦିତା କରିବା ପାଇଁ ବିଜେଡି ଟିକେଟ । ପ୍ରଦୀପ ନିର୍ବାଚନରେ ବିଜୟୀ ହେଲେ । ଏବେ ବେଳେବେଳେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ତାଙ୍କୁ ଗାଳି ମଧ୍ୟ ଶୁଣିବାକୁ ପଡୁଛି । ଗୋପାଳପୁର ବିଧାୟକ ହୋଇଯିବା ପରେ ହିଂଜିଳି ବିଧାନସଭା ଅଂଚଳର କଥା ସେ ପୂର୍ବପରି ବୁଝୁନାହାନ୍ତି ବୋଲି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଅଭିଯୋଗ କରି ଏହି ଗାଳି ଦେଉଛନ୍ତି । ବାଣୀବିହାରରେ କଂଗ୍ରେସ ନେତା ଲଳାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କର ପ୍ରଭାବ ଥିବାବେଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଜ୍ୟୋତିବିହାର ନିର୍ବାଚନରେ କଂଗ୍ରେସ ବାଜିମାତ୍ ନେଇଥିଲା । ଏହି ଦୃଷ୍ଟିରୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଯଦି କଂଗ୍ରେସ ବାଜିମାତ୍ ନେବ ତେବେ ସବୁବେଳେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଠାରୁ ପ୍ରଦୀପ ଗାଳି ଶୁଣିବେ ବୋଲି ଭାବିନେଲେ । ଏମିତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଥିବା ଭଂଜବିହାରରେ ଯେଉଁ ଛାତ୍ର ସଂସଦ ନିର୍ବାଚନ ହେଲା ସେଥିରେ ବିଜେଡି ସମର୍ଥିତ ପ୍ରାର୍ଥୀ ଯେପରି ବିଜୟୀ ହେବେ ସେ ଦିଗରେ ପ୍ରଦୀପ ମୂଳରୁ ଯତ୍ନବାନ ହେଲେ । ଭଂଜବିହାର ପ୍ରଦୀପଙ୍କ ନିର୍ବାଚନମଣ୍ଡଳୀ ଗୋପାଳପୁରରେ ଯାଉଛି । ପ୍ରଦୀପ ଏଥିପାଇଁ ଅହରହ ପରିଶ୍ରମ କଲେ । ଏମିତି ତ ପ୍ରଦୀପ ଯେଉଁ କାମ ପଛରେ ଲାଗିଥା'ନ୍ତି ତାହାକୁ ଶେଷ ନକଲା ପର୍ଯ୍ୟନ୍ତ ସେ ବିଶ୍ରାମ ନିଅନ୍ତି ନାହିଁ । ଶେଷରେ ପ୍ରଦୀପଙ୍କର ପରିଶ୍ରମର ଫଳ ମିଳିଲା । ଭଂଜବିହାର ଛାତ୍ର ସଂସଦ ନିର୍ବାଚନରେ ବିଜେଡି ସମର୍ଥିତ ପ୍ରାର୍ଥୀ ସଭାପତି, ସଂପାଦକ ଭାବେ ବିଜୟୀ ହେଲେ । ଏହାପରେ ପ୍ରଦୀପଙ୍କର ଆନନ୍ଦ କହିଲେ ନସରେ । କେହି ଯଦି ତାଙ୍କ ସହିତ କଥା ହେଉଥିଲେ ସେତେବେଳେ ସେ କହୁଥିଲେ ଯେ , ଭଂଜବିହାର ନିର୍ବାଚନରେ ବିଜେଡି ସମର୍ଥିତ ପ୍ରାର୍ଥୀଙ୍କୁ ଜିତାଇ ସେ ବେଶ୍ ଖୁସି ହୋଇଯାଇଛନ୍ତି ବୋଲି । ଯାହା ହେଲେ ମଧ୍ୟ ତାଙ୍କର ଚାକିରିଟି ବଂଚିଗଲା । ଏବେ ଦେଖାଯାଉ ପ୍ରଦୀପ ତାଙ୍କର ଚାକିରି କେତେଦିନ ବଂଚେଇ ରଖୁଛନ୍ତି । ■

# ଦରବାରରେ ଆଗୁଆ ବିଭୂତି



କେତେ ଲୋକଙ୍କର ଦରବାର ରହିବ ହିଁ ରହିବ । କାହା ଦରବାରରେ ଅଳ୍ପ ଲୋକଙ୍କର ଭିଡ଼ ତ କାହା ଦରବାରରେ ବହୁଲୋକଙ୍କ ସମାଗମ । ବିଭିନ୍ନ ନେତାଙ୍କର ଦରବାର ଭିନ୍ନଭିନ୍ନ ଢାଂଚାରେ ଚାଲେ । ଜଟଣୀ ବିଧାୟକ ବିଭୂତି ବଳବନ୍ତରାୟଙ୍କ ଦରବାରକୁ ଯିବାକୁ ହେବ । କେଜାଣି କାହିଁକି ବିଭୂତିଙ୍କ ଦ୍ୱାରା କାମ ହାସଲ ହୋଇଯିବ ବୋଲି କେବଳ ଯେ ତାଙ୍କ ଜଟଣୀ ନିର୍ବାଚନମଣ୍ଡଳୀ ବାସିନ୍ଦା ଭାବୁଛନ୍ତି ତାହା ନୁହେଁ । ଜଟଣୀ ପାଖାପାଖି ଭୁବନେଶ୍ୱର, ଖୋର୍ଦ୍ଧା, ବେଗୁନିଆ ଏପରିକି ଚିଲିକା ନିର୍ବାଚନମଣ୍ଡଳୀର ଲୋକ ମଧ୍ୟ ତାଙ୍କ ଦରବାରକୁ ଆସୁଛନ୍ତି । ସତେ ଯେମିତି ତାଙ୍କ ଦରବାର ଏକ ମିନି ସରକାର । ବିଭିନ୍ନ ଲୋକ ଭିନ୍ନଭିନ୍ନ କାମ ନେଇ ବିଭୂତିଙ୍କ ଦରବାରକୁ ଆସିଥା'ନ୍ତି । ବିଭୂତି ସମସ୍ତଙ୍କ କଥା ଭଲ ଭାବେ ଶୁଣିଥା'ନ୍ତି । ଅନେକଙ୍କ ସମସ୍ୟା ମଧ୍ୟ ଟିପିଥା'ନ୍ତି । ଅନେକ କ୍ଷେତ୍ରରେ ସେ ମନ୍ତ୍ରୀଙ୍କୁ କହି କାମ କରାଇବାକୁ ଉଚିତ ମଣି ନଥା'ନ୍ତି । ସଚିବାଳୟ ଯାଇ ସଂପୃକ୍ତ ବିଭାଗର ଅଧିକାରୀଙ୍କୁ ସାକ୍ଷାତ କରି ତାଙ୍କ ଦରବାରକୁ ଆସିଥିବା ବ୍ୟକ୍ତିର ସମସ୍ୟା ସମ୍ପର୍କରେ ସେ ବଖାଣି ଥା'ନ୍ତି ଏବଂ ସେହି କାମ ଯେପରି ହେବ ସେ ଦିଗରେ ସେ ଉଦ୍ୟମ କରିଥା'ନ୍ତି । ବିଭୂତିଙ୍କର ଅନେକ କାମ ଏହିପରି ସଫଳ ହୋଇଯାଉଛି । ଏହା ମଧ୍ୟ ସାରା ଖୋର୍ଦ୍ଧା ଜିଲାରେ ପ୍ରଚାର ହୋଇଗଲାଣି । ଯେଉଁଥିପାଇଁ ବିଭୂତିଙ୍କ ଦରବାରକୁ ବହୁ ବ୍ୟକ୍ତି ଆସିବାକୁ ଲାଗିଛନ୍ତି । ସମସ୍ତଙ୍କର ଏକ ଧାରଣା ହେଉଛି ଯେ, ବିଭୂତିଙ୍କ ଦରବାରକୁ ଚାଲିଗଲେ ସେମାନଙ୍କ ସମସ୍ୟା ସମାଧାନ ହୋଇଯିବ । ଅବଶ୍ୟ ଏ କ୍ଷେତ୍ରରେ ବିଭୂତିଙ୍କର ଷ୍ଟାଇଲକୁ ମାନିବାକୁ ପଡ଼ିବ । ଲୋକଙ୍କ ସମସ୍ୟାକୁ ନେଇ ସେ ନେତାଙ୍କୁ ବିରକ୍ତ କରିବାକୁ ଚାହୁଁନାହାନ୍ତି । ସିଧାସଳଖ ସରକାରୀ ଅଫିସରଙ୍କ ପାଖକୁ ଯାଇ ତାହାର ସମାଧାନ କରୁଛନ୍ତି । ମାନିବାକୁ ପଡ଼ିବ ବିଭୂତିଙ୍କ ବୁଦ୍ଧିକୁ । ■

# ଅତନୁ, ପାହାଚ ଓ ମୁଖ୍ୟମନ୍ତ୍ରୀ



ସେ ଦିନ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ ସଚିବାଳୟର ପ୍ରଥମ ମହଲାରେ ତାଙ୍କ ପାଇଁ ଉର୍ଦ୍ଦିଷ୍ଟ ଥିବା ମନ୍ତ୍ରୀ ପ୍ରକୋଷ୍ଠରେ ବସିଥା'ନ୍ତି । ଅଧିକାଂଶ ମନ୍ତ୍ରୀ ସଚିବାଳୟକୁ ଆସି ନଥିବାରୁ ଅତନୁଙ୍କ ପାଖରେ ଭିଡ଼ ଲାଗିରହିଥାଏ । ଏପରିକି ପ୍ରିଂଟ ଓ ଇଲେକ୍‌ଟ୍ରୋନିକ୍ସ ମିଡ଼ିଆ ସାମ୍ବାଦିକମାନେ ମଧ୍ୟ ଅତନୁଙ୍କ ପ୍ରକୋଷ୍ଠରେ ଆସର ଜମାଇଥା'ନ୍ତି । ତେବେ ଅତନୁ ଯାହା କହୁଥା'ନ୍ତି ତାହା ଭଲ ଭାବେ ଅନ୍ୟମାନଙ୍କୁ ଶୁଣାଯାଉ ନଥାଏ । ଅତନୁଙ୍କ ବାମପାଖରେ ଥିବା କାନ୍ଥରୁ ଜୋର୍‌ରେ ଠକ୍‌ଠକ୍ ଶବ୍ଦ ଆସୁଥାଏ ।

ଅତନୁ ସଙ୍ଗେସଙ୍ଗେ ଡକାଇଲେ କର୍ମଚାରୀଙ୍କୁ ଏବଂ ନିର୍ଦ୍ଦେଶ ଦେଲେ- କିଏ ଏଭଳି ଠକ୍‌ଠକ୍ କରୁଛି ଦେଖ । କିନ୍ତୁ ସେହି ଠକ୍‌ଠକ୍ ଆୱାଜ୍ ବନ୍ଦ ହେବା ପରିବର୍ତ୍ତେ ବରଂ ଅଧିକ ହେବାରେ ଲାଗିଲା । ଅତନୁ ଏଥିରେ ବିରକ୍ତ ଭାବ ପ୍ରକାଶ କଲେ । ଯେଉଁ କର୍ମଚାରୀଙ୍କୁ ସେ ଠକ୍‌ଠକ୍ ଶବ୍ଦ ବନ୍ଦ କରାଯିବା ପାଇଁ ପଠାଇଥିଲେ ସେ କର୍ମଚାରୀ ଆଉ ତାଙ୍କ ପାଖକୁ ଆସିଲେ ନାହିଁ । କିଛି ସମୟ ବ୍ୟବଧାନ ପରେ ସେ କର୍ମଚାରୀ ଜଣଙ୍କ ଅତନୁଙ୍କ ପାଖକୁ ଆସିଲେ । ତାଙ୍କୁ ଦେଖି ଅତନୁ କହିଲେ- କାହିଁକି ଏପରି ଠକ୍‌ଠକ୍ ଶବ୍ଦ ଆସୁଛି । ଯିଏ ଏହି ଠକ୍‌ଠକ୍ ଶବ୍ଦ କରୁଛନ୍ତି ତାଙ୍କୁ ଯାଇ କହିଦିଅ- ଦୁଇ ଘଂଟା ତାହା ବନ୍ଦ କରନ୍ତୁ । ମୁଁ ଏଠାରୁ ଚାଲିଯିବା ପରେ ସେ ଯେତେ ଠକ୍‌ଠକ୍ କରିବା କଥା କରନ୍ତୁ । କର୍ମଚାରୀ ଜଣଙ୍କ କହିଲେ- ଆଜ୍ଞା, ପାହାଚ କାମ ହେଉଛି । ତେଣୁ ଠକ୍‌ଠକ୍ ଶବ୍ଦ ଆସୁଛି । ଅତନୁ କହିଲେ- ସେ ପାହାଚ କାମ ହେଉ କି ଯାହା ହେଉ ବର୍ତ୍ତମାନ ପାଇଁ ବନ୍ଦ କରନ୍ତୁ । ମୁଁ ଚାଲିଗଲା ପରେ କରିବେ । କର୍ମଚାରୀ ଜଣଙ୍କ କହିଲେ- ଆପଣଙ୍କ ନିର୍ଦ୍ଦେଶ ଆମେ ତାଙ୍କୁ ଶୁଣାଇ ଦେଲୁ କିନ୍ତୁ ସେମାନେ ତାହା ମାନୁନାହାନ୍ତି । ହଠାତ୍ ଅତନୁ ଉତେଜିତ ହୋଇଗଲେ । କହିଲେ- ମାନୁନାହାନ୍ତି କାହିଁକି । ଆମକୁ ମନ୍ତ୍ରୀ ଭାବେ କାମ କରିବାକୁ ପଡୁଛି । ଅଫିସର, ଲୋକଙ୍କ ସହିତ କଥାବାର୍ତ୍ତା ହେଲାବେଳେ ଏହି ଠକ୍‌ଠକ୍ ଶବ୍ଦ ବିରକ୍ତ ଭାବ ଆଣୁଛି । କର୍ମଚାରୀ ଜଣଙ୍କ କହିଲେ- ଆମେ ଯେତେ କହିଲେ ମଧ୍ୟ ସେ ଶୁଣୁନାହାନ୍ତି । ଯେମିତି ହେଲେ ପାହାଚ କାମ ତାଙ୍କୁ ସାରିବାକୁ ହେବ ଆଉ କାମ ସରିଲେ ତାକୁ କୁଆଡ଼େ ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିବେ । ହଠାତ୍ ଅତନୁଙ୍କ ଆଖି ତରାଟି ହୋଇଗଲା । ସଚିବାଳୟର ପାହାଚକୁ ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିବେ ଏହାକୁ ସହଜରେ ଅତନୁ ସବ୍ୟସାଚୀ ନାୟକ ବିଶ୍ୱାସକୁ ନେଇପାରିଲେ ନାହିଁ । ଅବଶ୍ୟ କର୍ମଚାରୀଙ୍କ ଠାରୁ ଏହା ଶୁଣିବା ପରେ ଅତନୁ ଆଉ ଠକ୍‌ଠକ୍ ଶବ୍ଦ ପ୍ରତି ପୂର୍ବପରି ବିରକ୍ତ ଭାବ ପ୍ରକାଶ କଲେନାହିଁ । ବରଂ ଓଲଟି କହିଲେ- ସେମାନେ ତାଙ୍କ କାମ କରିଚାଲନ୍ତୁ । ତାଙ୍କୁ କିଛି କୁହନାହିଁ । ମୁଖ୍ୟମନ୍ତ୍ରୀ ଯେତେବେଳେ ଉଦ୍‌ଘାଟନ କରିବାକୁ ଆସୁଛନ୍ତି ସେତେବେଳେ ଆମେ କିଏ । ସେହିପରି ଠକ୍‌ଠକ୍ ଚାଲିଥାଉ ଆଉ ଆମର ଅଫିସ କାମ ମଧ୍ୟ ତାହା ଭିତରେ ଚାଲୁ । ଅତନୁ ଏହା କହିବା ପରେ ସେଠାରେ ଥିବା ସାମ୍ବାଦିକ, ଅଫିସର ଓ ନେତାମାନେ ହୋ ହୋ ହୋଇ ହସି ଉଠିଥିଲେ । ଅବଶ୍ୟ ଅତନୁ ସେଥିପ୍ରତି ଆଉ ଦୃଷ୍ଟି ନଦେଇ ତାଙ୍କ କାମ କରିଚାଲିଥିଲେ । ■

## ତଥାପି ବି ହିରୋନମ୍ବର ୱାନ୍



ଡକ୍ଟର ଗିରିଧର ଗମାଙ୍ଗ ୧୯୮୨ ମସିହାରୁ ୧୯୯୬ ମସିହା ମଧ୍ୟରେ କେବଳ ୧୯୮୪ ଓ ୧୯୯୦କୁ ଛାଡ଼ିଦେଲେ କେନ୍ଦ୍ରମନ୍ତ୍ରୀ ଥିଲେ । ମାନେ ସେ ୧୪ ବର୍ଷର କେନ୍ଦ୍ରମନ୍ତ୍ରୀ । ୧୯୯୯ ମସିହାରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ଏକାଦିକ୍ରମେ ସେ ୮ ଥର

ଲୋକସଭାକୁ ନିର୍ବାଚିତ ହେବାପରେ ୧୯୯୯ ମସିହାରେ ସେ ଲୋକସଭା ପ୍ରାର୍ଥୀ ହୋଇ ନଥିଲେ । ୨୦୦୪ରେ ସେ ପୁଣି ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୨୦୦୯ରେ କିନ୍ତୁ ସେ ଲୋକସଭା ପ୍ରାର୍ଥୀ ହୋଇ ପରାଜିତ ହୋଇଥିଲେ । ଅପରାଜିତ ନେତା ଭାବେ ଖ୍ୟାତ ହୋଇଥିବା ଗିରିଧର ୨୦୦୯ ନିର୍ବାଚନରେ ପ୍ରଥମ ପରାଜୟର ସ୍ୱାଦ ଚାଖିଥିଲେ । ତେବେ ଗିରିଧର ତାଙ୍କର ଅତୀତର ସ୍ମୃତିକୁ ଅନେକ ସମୟରେ ବର୍ଣ୍ଣନା କରିଥା'ନ୍ତି । କଂଗ୍ରେସ ରାଜନୀତିରେ ଏବେବି ସେ ହିରୋନମ୍ବର ଓ୍ୱାନ୍ ବୋଲି ମଧ୍ୟ କହନ୍ତି । ଏହାର କାରଣ ମଧ୍ୟ ସେ ଦର୍ଶାନ୍ତି । ଯେତେବେଳେ ବାଜପାୟୀ ସରକାର ବିରୋଧରେ ଭୋଟ ଗ୍ରହଣ ହେଲା ସେତେବେଳେ ଗିରିଧର ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସେ କିନ୍ତୁ ଲୋକସଭାରୁ ଇସ୍ତଫା ଦେଇ ନଥିଲେ । ଭୋଟ ଗ୍ରହଣ ସମୟରେ ଲୋକସଭାରେ ଗିରିଧର ଉପସ୍ଥିତ ଥିବାରୁ ତାହାକୁ ନେଇ ଗୃହରେ ମଧ୍ୟ ବାଦାନୁବାଦ ଲାଗିରହିଥିଲା । ଭୋଟ ଗ୍ରହଣରେ ଯେତେବେଳେ ବାଜପାୟୀ ସରକାର ଗୋଟିଏ ଭୋଟରେ ହାରିଗଲା ସେତେବେଳେ ଗିରିଧର ହୋଇଯାଇଥିଲେ ହିରୋନମ୍ବର ଓ୍ୱାନ୍ । କେବଳ ଭାରତବର୍ଷ ନୁହେଁ, ସାରାବିଶ୍ୱରେ ମଧ୍ୟ ଗିରିଧରଙ୍କୁ ନେଇ ଚାଲିଥିଲା ଚର୍ଚ୍ଚା । ତାଙ୍କ ଉପରେ ମଧ୍ୟ ପୁସ୍ତକ ବି ରଚନା ହୋଇଥିଲା । ଗିରିଧର ଏବେବି ବାଜପାୟୀ ସରକାର କିପରି ଗୋଟିଏ ଭୋଟରେ ହାରିଥିଲା ତାହାକୁ ବର୍ଣ୍ଣନା କରନ୍ତି । ଗିରିଧରଙ୍କ ମତ ହେଲା- ନେତାଙ୍କ ପାଇଁ ଜିତିବା, ହାରିବା ଭିତରେ ତଫାତ୍ ନାହିଁ । ଭୋଟ ହେଉଛି ଏକ ପ୍ରୋସେସ୍ । ତେବେ ଯିଏ ଲୋକଙ୍କ ସହିତ ରହିବ ସିଏ ହେବ ନେତା । ଆଉ ଯେଉଁ ନେତା ସଭାକୁ ଗଲେ ସେଠାରେ ଶହଶହ ଲୋକ ଜମା ହୋଇଯାଆନ୍ତି ତାଙ୍କୁ ହିଁ କୁହାଯିବ ନେତା । ଏ କ୍ଷେତ୍ରରେ ଗିରିଧର ହେଉଛନ୍ତି ଜଣେ ପ୍ରକୃତ ନେତା । ଏମିତି ରାଜନୀତିରେ ସେ ଗୋଟିଏ ଦଳର ନେତା । କିନ୍ତୁ ଯେଉଁ ସଙ୍ଗୀତ ସାଧନା ସେ କରିଛନ୍ତି ତାହା ପ୍ରଦର୍ଶନ କରିବା ବେଳକୁ ହଜାର ହଜାର ଲୋକ ଜମା ହୋଇଥା'ନ୍ତି । ଏହାର ଅନ୍ୟ ଅର୍ଥ ହେଲା ଗିରିଧର ଜଣେ ଲୋକଦେଖାଣିଆ ନେତା ନୁହନ୍ତି । ସେ ଲୋକଙ୍କ ହୃଦୟର ନେତା ଅଟନ୍ତି । ହୋଇପାରେ ନିର୍ବାଚନ ରାଜନୀତିରେ ସେ ହାରିଯାଇଛନ୍ତି କିନ୍ତୁ ଲୋକଙ୍କ ମନକୁ ସେ ପୂର୍ବ ଅପେକ୍ଷା ଆହୁରି ଅଧିକ ଜିଣିଛନ୍ତି । ସଙ୍ଗୀତ ଚର୍ଚ୍ଚା କରି ଲୋକଙ୍କ ସହିତ ସେ ରହିବା ପାଇଁ ସବୁବେଳେ ଆଗ୍ରହ ପ୍ରକାଶ କରୁଛନ୍ତି । ଗିରିଧରଙ୍କ ଆଉ ଏକ ମତ ହେଲା- ବର୍ତ୍ତମାନକୁ ନେଇ ଯିଏ ବଂଚେ ତା'ଠୁ ମୂର୍ଖ କେହିନାହାନ୍ତି । ବର୍ତ୍ତମାନ କେବେ ସ୍ଥାୟୀ ନୁହେଁ । ଅତୀତ ହିଁ ସବୁବେଳେ ସ୍ଥାୟୀ । ଯେମିତି ତାଙ୍କ ପାଇଁ ପୂର୍ବତନ କେନ୍ଦ୍ରମନ୍ତ୍ରୀ, ପୂର୍ବତନ ମୁଖ୍ୟମନ୍ତ୍ରୀ ପରିଚୟ ସ୍ଥାୟୀ ହୋଇଛି । ଗିରିଧର ଜଣେ ହ୍ୱାଟ୍ ନଟ୍ ମାନେ ଯେତେବେଳେ ଯେଉଁ ସମୟରେ ମଧ୍ୟ ସେ ଯେକୌଣସି ପ୍ରସଙ୍ଗରେ ଆଲୋଚନା କରିପାରିବେ । ଏଥିପାଇଁ ତାଙ୍କୁ ବହୁ ପଢ଼ିବାକୁ ପଡୁଛି । ଘରେ ଏକ ସ୍ୱତନ୍ତ୍ର ଲାଇବ୍ରେରୀ ମଧ୍ୟ ସେ କରିଛନ୍ତି । ଏମିତି ଲାଇବ୍ରେରୀ, ସଙ୍ଗୀତ କି ରାଜନୀତି ଭିତରେ ସେ ହଜିଯାଇ ଅତିଥି ସେବାରୁ ଯେ ଦୂରେଇ ଯାଇଛନ୍ତି ତାହା

ନୁହେଁ । ଘରକୁ ଲୋକ ଆସିଲେ ସେ ବିଭିନ୍ନ ସ୍ୱାଦିଷ୍ଟ ଖାଦ୍ୟ ଖାଇବାକୁ ଦିଅନ୍ତି । ଏପରିକି ଦିଲ୍ଲୀ ଯାଇଥିଲେ ସେଠାରୁ ମଧ୍ୟ ସ୍ୱାଦିଷ୍ଟ ଖାଦ୍ୟ ସଙ୍ଗରେ ଧରି ଆସିଥା'ନ୍ତି । ପୁଣି କେଉଁ ଖାଦ୍ୟ କିପରି ରୋଷେଇ ହୁଏ ତାହା ମଧ୍ୟ ସେ ବୁଝିଥା'ନ୍ତି । ଦିଲ୍ଲୀରେ ମିଳୁଥିବା ଚିନାବାଦାମ ମଂଜି ଆଣି ତାକୁ ସିଝାଇ ବେଶ୍ ସ୍ୱାଦିଷ୍ଟ କରନ୍ତି ଗିରିଧର । ସତେ ଯେମିତି ଗିରିଧର ହ୍ୱାଟ୍ ନଟ୍ । ମାନେ ରୋଷେଇ ଠାରୁ ଆରମ୍ଭ କରି ସଙ୍ଗୀତ ପର୍ଯ୍ୟନ୍ତ ସବୁଥିରେ ସେ ପାରଙ୍ଗମ । ଅତିଥି ଘରକୁ ଗଲେ ସେ ବେଶ୍ ଗପନ୍ତି । ଅନ୍ୟ କାହାକୁ କହିବାକୁ ସୁଯୋଗ ବି ସେ ଦିଅନ୍ତି ନାହିଁ । ଅତିଥିଙ୍କୁ ଗୋଟିଏ କପ୍ ଚା'ରେ ସେ ସନ୍ତୁଷ୍ଟ କରାନ୍ତି ନାହିଁ । ଗପ ଚାଲିଥିଲା ବେଳେ ଚା' ପରେ ଚା' ସେ ଦିଅନ୍ତି । ତେବେ ନେତାମାନେ ଲୋକଙ୍କୁ ନଦେଖିଲେ ମନରେ ବିଷାଦ ଆସିବା ସ୍ୱାଭାବିକ । କିନ୍ତୁ ସଙ୍ଗୀତ ଆଣିଦେଇଛି ଗିରିଧରଙ୍କ ପାଇଁ ଆତ୍ମସନ୍ତୋଷ । ରାଜନୀତି ଅପେକ୍ଷା ସଙ୍ଗୀତରେ ଦର୍ଶକ, ଶ୍ରୋତା ଅଧିକ ବୋଲି ଗିରିଧର ଜାଣିସାରିଲେଣି । ତେବେ ସଙ୍ଗୀତ ଓ ରାଜନୀତିକୁ ନେଇ ଗିରିଧର ତାଙ୍କର ଏକ ନୂଆ ଫର୍ମୁଲା ପ୍ରସ୍ତୁତ କରିବାରେ ଲାଗିଛନ୍ତି । ଦେଖାଯାଉ ଏହି ଫର୍ମୁଲା ଗିରିଧରଙ୍କୁ ଭବିଷ୍ୟତରେ କେଉଁ ଆଡ଼କୁ ନେଉଛି । ■

## ଗରିବ ବ୍ରାହ୍ମଣ



ଗରିବ ବ୍ରାହ୍ମଣ ଶବ୍ଦଟି ଏବେର ନୁହେଁ । ଏହା କେଉଁ ପୁରାତନ ଯୁଗରୁ ପ୍ରଚଳିତ ହୋଇଆସୁଛି । ଏବେ କିନ୍ତୁ ବ୍ରାହ୍ମଣଟିଏ ଯେତେ ଧନୀ ଆଉ ଯେତେ କ୍ଷମତାଶାଳୀ ହେଲେ ମଧ୍ୟ ସେ ବେଳେବେଳେ ନିଜକୁ ଗରିବ ବ୍ରାହ୍ମଣ ବୋଲି କହିବାକୁ ପଛାଏ ନାହିଁ । ଏହାକୁ ଦେଖିବାକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ଏବେ ଯିବା ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ, ପେନସନ ଓ ଅଭିଯୋଗ ମନ୍ତ୍ରୀ ପ୍ରସନ୍ନ ଆଚାର୍ଯ୍ୟଙ୍କ ପାଖକୁ । ଏମିତି ହଠାତ୍ ସେଦିନ ଦେଖାଗଲା ସଚିବାଳୟ କାର୍ଯ୍ୟାଳୟରେ ପ୍ରସନ୍ନ ପୂର୍ବରୁ ଯେପରି ବସୁଥିଲେ ସେପରି ବସି ନଥିଲେ । ମାନେ ତାଙ୍କର ଚୌକି, ଟେବୁଲର ସ୍ଥାନକୁ ପରିବର୍ତ୍ତନ କରାଯାଇଥିଲା । ପ୍ରସନ୍ନଙ୍କୁ କେହି ଜଣେ ପଚାରିଲେ ଏହା କ'ଣ ବାସ୍ତୁଶାସ୍ତ୍ର ପାଇଁ କରାଗଲା କି । ପ୍ରସନ୍ନ ତାଙ୍କର ଚିରାଚରିତ ଢଙ୍ଗରେ ହସିହସି କହିଲେ- ପୂର୍ବରୁ ଯେମିତି ବସୁଥିଲି ସେଥିରେ କେତେବେଳେ କେଉଁ ଲୋକ ଆସନ୍ତି ତାହା ଜାଣି ହେଉ ନଥିଲା । ଏବେ ଲୋକ ତାଙ୍କ ପ୍ରକୋଷ୍ଠରେ ପଶିବା ମାତ୍ରେ ଜାଣି ହେବ । ସେଠାରେ ଥିବା ଜଣେ ସାମ୍ବାଦିକ ହଠାତ୍ ପ୍ରଶ୍ନ କଲେ- ସ୍ୱାସ୍ଥ୍ୟ ବିଭାଗ ଆପଣଙ୍କ ପାଇଁ ଟେନ୍‌ସନ୍ ହୋଇଗଲାଣି । ଯେଉଁଥିପାଇଁ ଆପଣଙ୍କ ବସିବା ସ୍ଥାନକୁ ପରିବର୍ତ୍ତନ କରାଗଲେ ଏହି ଟେନ୍‌ସନ୍ କମିଯିବ ବୋଲି ଧାରଣା ହେଉଛି । ଆପଣ ଏହାକୁ ଲୁଚାନ୍ତୁ ନାହିଁ । ଖାଂଟି ସତ କୁହନ୍ତୁ । ପ୍ରସନ୍ନ କହିଲେ- ତାଙ୍କର ନାମ ହେଉଛି ପ୍ରସନ୍ନ । ତେଣୁ ସେ ଟେନ୍‌ସନ୍‌ରେ ଥା'ନ୍ତୁ କିମ୍ବା ନଥା'ନ୍ତୁ ତାଙ୍କ ନାମକରଣର

ଯଥାର୍ଥତା ସବୁବେଳେ ପ୍ରତିପାଦନ କରିଥା'ନ୍ତି । ଯେଉଁଥିପାଇଁ ତାଙ୍କ ମୁହଁରେ ସବୁବେଳେ ହସ ଲାଗିରହିଥାଏ । ସେଠାରେ ଥିବା ଆଉ ଜଣେ ସାମ୍ବାଦିକ ବାସ୍ତୁଶାସ୍ତ୍ରକୁ ନେଇ ପ୍ରଶ୍ନ ପଚାରିବା ଆରମ୍ଭ କରିଦେବାରୁ ପ୍ରସନ୍ନ କହିଲେ- ସେ ଜଣେ ଗରିବ ବ୍ରାହ୍ମଣ । ଆଉ ଅଧିକ କିଛି ପଚାରନ୍ତୁ ନାହିଁ । ପ୍ରସନ୍ନଙ୍କ ମୁହଁରୁ ଗରିବ ବ୍ରାହ୍ମଣ ଶବ୍ଦ ବାହାରିବା ପରେ ସେଠାରେ ଥିବା ବ୍ୟକ୍ତିମାନେ ହୋ ହୋ ହୋଇ ହସି ଉଠିଥିଲେ । ■

## ଅରୁଣ ଓ ହର୍ଲିକ୍ସ



ହର୍ଲିକ୍ସ କେଉଁମାନେ ପିଅନ୍ତି । ଏହି ପ୍ରଶ୍ନ ଯଦି ପଚରାଯିବ ତେବେ ସାଧାରଣରେ ଉତର ମିଳିବ ଛୋଟଛୁଆ କିମ୍ବା ରୋଗୀମାନେ । ଏଠାରେ କିନ୍ତୁ ଏକ ବ୍ୟତିକ୍ରମ ଦେଖିବାକୁ ମିଳିଛି । ନୟାଗଡ଼ ବିଧାୟକ ଅରୁଣ ସାହୁଙ୍କର ଯଦି ସବୁଠାରୁ କେଉଁ ଖାଦ୍ୟ ଓ ପାନୀୟ ପ୍ରତି ଦୁର୍ବଳତା ଥାଏ ତେବେ ତାହା ହେଲା ହର୍ଲିକ୍ସ । ଅରୁଣ ଦୁଇଥର ବିଧାୟକ ହେଲେଣି । ପୁଣି ସରକାରୀ ଦଳର ଉପମୁଖ୍ୟ ସଚେତକ । ବିଧାୟକ ହେବା ପୂର୍ବରୁ ତାଙ୍କର ବିଭିନ୍ନ ସ୍ଥାନରେ ଖଟି ବି ଥିଲା । ପୁଣି ଅନେକ ବ୍ୟକ୍ତିଙ୍କ ସହିତ ତାଙ୍କର ସମ୍ପର୍କ ବି ରହିଥିଲା । ବିଧାୟକ ହୋଇଯିବା ପରେ ଅରୁଣ ପୂର୍ବପରି ଆଉ ସେହି ଖଟିକୁ ଯାଇପାରୁନାହାନ୍ତି କି ସମ୍ପର୍କ ଥିବା ବ୍ୟକ୍ତିଙ୍କ ପାଖକୁ ଯାଇ ଘଂଟାଘଂଟା ଗପି ବି ପାରୁନାହାନ୍ତି । ରାଜନୀତି ଏ ଦିଗରେ କୁଆଡ଼େ ତାଙ୍କର ପ୍ରତିବନ୍ଧକ ସାଜିଛି । ସେଦିନ ଦଶପଲାରେ ବୃତଙ୍ଗ ଜଳସେଚନ ଯୋଜନା ପାଇଁ ଯେଉଁ ସମ୍ବର୍ଦ୍ଧନା ସଭାର ଆୟୋଜନ ହୋଇଥିଲା ସେଥିରେ ଅରୁଣ ଥିଲେ ଜଣେ ଆଗଧାଡ଼ିର ପ୍ରବକ୍ତା । ସଭା ଶେଷ ହେଲା । ଏହାପରେ ଅରୁଣ ନୟାଗଡ଼ ଫେରିଯିବାର କାର୍ଯ୍ୟକ୍ରମ ଥିଲା । କିନ୍ତୁ ଭୁବନେଶ୍ୱରରୁ ଯାଇଥିବା ଜଣେ ସାମ୍ବାଦିକ ତାଙ୍କର ଜଣେ ବନ୍ଧୁଙ୍କ ଘରେ ଅଛନ୍ତି ବୋଲି ଖବର ପାଇବା ପରେ ଅରୁଣ ସେଠାରେ ଯାଇ ପହଂଚିଥିଲେ । ସେଠାରେ ଚା' ଜଳଖିଆ ପର୍ବ ଶେଷ ହେଲା । ହଠାତ୍ ଦେଖାଗଲା ଅରୁଣ ଚା' ଜଳଖିଆ ଖାଇ ସନ୍ତୁଷ୍ଟ ନୁହନ୍ତି । ଘଟଣା ସମ୍ପର୍କରେ ଅରୁଣଙ୍କୁ ପଚରାଗଲା । ଅରୁଣ ତତ୍‌କ୍ଷଣାତ କହିଲେ- ଚା' ଜଳଖିଆ ଖାଇଲେ ତାଙ୍କର ଆତ୍ମସନ୍ତୋଷ ଆସେନାହିଁ । ଅରୁଣଙ୍କ ପାଟିରୁ ଏହି କଥା ବାହାରିଯିବା ପରେ ସଙ୍ଗେସଙ୍ଗେ ତାଙ୍କ ପାଖକୁ ଗୋଟିଏ ଗ୍ଲାସ୍‌ରେ ପାଣିରେ ଗୋଳାଯାଇ ହର୍ଲିକ୍ସ ଆସିଲା । ଅରୁଣଙ୍କ ଖୁସି ଦେଖେ କିଏ । ସେ ତାହାକୁ ଗୋଟିଏ ନିଶ୍ୱାସରେ ପିଇ ଦେଲେ ଆଉ କହିଲେ- ଏବେ ସେ ସନ୍ତୁଷ୍ଟ । ଅରୁଣଙ୍କର ହର୍ଲିକ୍ସ ନିଶା ଯେ ଏତେ ଅଧିକ ତାହା କେହି ପ୍ରାୟ ଜାଣନ୍ତି ନାହିଁ । ଅରୁଣ ଯେ ଛୋଟଛୁଆ ତାହା ନୁହେଁ । କି ସେ ଜଣେ ରୋଗୀ ତାହା ବି ନୁହେଁ । ତାଙ୍କର ଶକ୍ତି ଯେ କମିଗଲାଣି ତାହା ବି ନୁହେଁ ।

କିନ୍ତୁ କେଜାଣି କାହିଁକି ସେ ହର୍ଲିକ୍ସ ପ୍ରେମରେ ପଡ଼ିଯାଇଛନ୍ତି । ହୋଇପାରେ ହର୍ଲିକ୍ସ ପ୍ରସ୍ତୁତକାରୀ ସଂସ୍ଥା ଅରୁଣଙ୍କୁ ତାଙ୍କର ବ୍ରାଣ୍ଡଆମ୍ବାସଡ଼ର କରିଥାଇପାରନ୍ତି । ମାନେ ଅରୁଣ ଯେଉଁଠିକୁ ଯିବେ ହର୍ଲିକ୍ସ ପିଇବାକୁ କହିବେ । ଏହା ହେଲେ ଛୋଟଛୁଆ ଆଉ ରୋଗୀଙ୍କ ପାଖରେ ହର୍ଲିକ୍ସ ଅଟକିଯିବ ନାହିଁ । ଏମିତି ତ ଅରୁଣ ବେଶ୍ ଭଲ ଭାଷଣ ଦିଅନ୍ତି । ତେଣୁ ହର୍ଲିକ୍ସ ପିଇଲେ ଅରୁଣଙ୍କ ପରି ଭଲ ଭାଷଣ ଦେଇପାରିବେ ବୋଲି ଏକ ବାର୍ତା ମଧ୍ୟ ସାଧାରଣ ଲୋକଙ୍କ ପାଖକୁ ଯିବ । ଅବଶ୍ୟ ଅରୁଣଙ୍କ ଘରକୁ ଚାଲିଗଲେ ଦେଖାଯାଏ ଯେ, ତାଙ୍କ ଘରେ ଅନେକ ସମୟରେ ତାଙ୍କ ଝିଅଙ୍କ ପାଇଁ ଆସିଥିବା ବୋତଲରୁ ହର୍ଲିକ୍ସ କମିଯାଉଛି । ସମସ୍ତେ ଭାବନ୍ତି ବୋଧହୁଏ କେହି ହର୍ଲିକ୍ସ ଲୁଚାଇ ନେଇଯାଉଛି । କିନ୍ତୁ ଏହି ହର୍ଲିକ୍ସ ଯେ ବାହାରର କେଉଁ ବ୍ୟକ୍ତି ନେଇଯାଆନ୍ତି ତାହା ନୁହେଁ । ନିଜେ ଅରୁଣ ହିଁ ଝିଅ ପାଇଁ ଆସିଥିବା ହର୍ଲିକ୍ସକୁ ଲୁଚାଇ ପିଅନ୍ତି । ଅରୁଣଙ୍କର ଏ ଦିଗରେ ମଧ୍ୟ ସଫେଇ ରହିଛି । ସେ ଚା' ପିଅନ୍ତି ନାହିଁ କି ମାଦକଦ୍ରବ୍ୟ ଛୁଅନ୍ତି ନାହିଁ । ତେଣୁ ଏହାର ବିକଳ୍ପ ତାଙ୍କ ପାଇଁ ହର୍ଲିକ୍ସ ହୋଇଯାଇଛି । ଦେଖାଯାଉ ହର୍ଲିକ୍ସ ପ୍ରେମରେ ଅରୁଣ କେତେଦିନ ରହୁଛନ୍ତି । ■

## ବୋଲବମ୍ ପ୍ରିୟ ନବୀନ



ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ପ୍ରିୟ କ'ଣ ବୋଲି ଯଦି ପ୍ରଶ୍ନ କରାଯାଏ ତେବେ ଅଧିକାଂଶ ସେମାନଙ୍କ ଉତରରେ କହିପାରନ୍ତି- ସିଗାରେଟ୍ ବୋଲି । ଅବଶ୍ୟ ନବୀନଙ୍କ ପ୍ରିୟ ସିଗାରେଟ୍ ଅଟେ । ଏହାସତ୍ତ୍ୱେ ତାଙ୍କର ଆଉ ଏକ ପ୍ରିୟ ଅଛି । ତାହା ହେଲା ବୋଲବମ୍ । ମାନେ ଶ୍ରାବଣ ମାସରେ ନଈରୁ ପାଣି ନେଇ ମହାଦେବଙ୍କ ଠାରେ ଢାଳିବାକୁ ଆସୁଥିବା ଭକ୍ତଙ୍କୁ କୁହାଯାଏ ବୋଲବମ୍ । ସେମାନେ ରାସ୍ତାରେ ଯେତେବେଳେ ଆସୁଥା'ନ୍ତି ସେତେବେଳେ ବୋଲବମ୍, ବୋଲବମ୍ ଉଚ୍ଚାରଣ କରୁଥା'ନ୍ତି । ସେଦିନ ନବୀନ କଳିଙ୍ଗ ଷ୍ଟାଡ଼ିୟମ ପାଚେରୀ ନିକଟରେ ନିର୍ମିତ ପଥର ମୂର୍ତୀ ଭରା ପାର୍କକୁ ଉଦ୍‌ଘାଟନ କଲେ । ପାର୍କକୁ ଦେଖି ନବୀନ ବେଶ୍ ଖୁସି ହୋଇଯାଇଥିଲେ । ଦେଖାଗଲା ସେଠାରେ ନବୀନ କିଛି ଖୋଜୁଛନ୍ତି । ହଠାତ୍ ତାଙ୍କ ପାଟିରୁ ବାହାରିଗଲା ବୋଲବମ୍ । ନବୀନ କହିଲେ- ପାଚେରୀରେ ଯେଉଁ ଚିତ୍ର ହୋଇଛି ସେଥିରେ ବୋଲବମ୍‌ଙ୍କ ଚିତ୍ର ନାହିଁ । ରାଜଧାନୀରେ କେଉଁଠି ବୋଲବମ୍ ଚିତ୍ର ମଧ୍ୟ ସେ ଦେଖିବାକୁ ପାଉନାହାନ୍ତି । ନବୀନ ଭୁବନେଶ୍ୱରର ସ୍ଥାୟୀ ବାସିନ୍ଦା ହେବାର ୧୩ ବର୍ଷରୁ ଅଧିକ ସମୟ ହୋଇଗଲାଣି । ପୁଣି ମୁଖ୍ୟମନ୍ତ୍ରୀ ହେବାର ୧୦ ବର୍ଷରୁ ଅଧିକ ସମୟ ବି ହୋଇଗଲାଣି । କିନ୍ତୁ କେବେ ବି ନବୀନ ବୋଲବମ୍‌ଙ୍କୁ ନେଇ ତାଙ୍କର ଏଭଳି

ଦୁର୍ବଳତା ପ୍ରକାଶ କରିନଥିଲେ । ମହାପ୍ରଭୁ ଲିଙ୍ଗରାଜଙ୍କ ପାଖରେ ତାଙ୍କର ଘର ନବୀନ ନିବାସ ଥିବାରୁ ବୋଧହୁଏ ନବୀନ ମହାଦେବଙ୍କ ଭକ୍ତ ପାଲଟି ଯାଇଛନ୍ତି । ଅବଶ୍ୟ ମହାଦେବ ସହଜରେ ଭକ୍ତଙ୍କ ପାଖକୁ ଆସନ୍ତି ନାହିଁ । ଏହି ଦୃଷ୍ଟିରୁ ନବୀନଙ୍କୁ ମହାଦେବଙ୍କ ଭକ୍ତ ହେବା ପାଇଁ ୧୦ ବର୍ଷ ସମୟ ଲାଗିଗଲା । ତେବେ ନବୀନ କେବେ ବୋଲବମ୍ ଭକ୍ତ ହୋଇ ଖାଲିପାଦରେ ଚାଲି ମହାଦେବଙ୍କ ଠାରେ ପାଣି ଲଗାଉଛନ୍ତି ତାହା ଦେଖିବାକୁ ବାକି ରହିଛି । ■

## ଢାଲିଙ୍କ ପାଠଶାଳା



ଅରବିନ୍ଦ ଢାଲି କୌଣସି ପଣ୍ଡିତଙ୍କ ପୁଅ ନୁହନ୍ତି । ଏମିତି ତ ପଣ୍ଡିତଙ୍କ ପୁଅମାନେ ଶ୍ରେଣୀକୁ ନଯାଇ ଘରେ ପାଠପଢ଼ି ପଣ୍ଡିତ ହୋଇଥା'ନ୍ତି । ଏହା କିନ୍ତୁ ଢାଲିଙ୍କ ପାଇଁ ବରାବର ଲାଗୁ ହୋଇଛି । ମ୍ୟାଟ୍ରିକ ପାଶ୍ କରିବା ପରେ ଢାଲି ଘରୋଇ ପରୀକ୍ଷା ଦେଇ ସବୁ ପରୀକ୍ଷା ପାଶ୍ କରିଛନ୍ତି । ଆଇ.ଏ., ବି.ଏ., ଏମ୍.ଏ., ଆଇନ ସବୁ ଘରୋଇରେ । ଢାଲିଙ୍କର ଯୋଜନା ରହିଛି ତାଙ୍କ ନାମ ପୂର୍ବରୁ ଯେପରି ଡକ୍ଟର ଲାଗିବ । ମାନେ ସେ ପି.ଏଚ୍.ଡି. ପାଇବେ । ଏ ଦିଗରେ ସବୁପ୍ରକାର କାର୍ଯ୍ୟକ୍ରମ ମଧ୍ୟ ଢ଼ାଲି ଶେଷ କରିଦେଇଛନ୍ତି । ଢ଼ାଲିଙ୍କ କହିବାର ନିର୍ଯାସ ହେଲା ଘରୋଇ ଭାବେ ପରୀକ୍ଷା ଦେଲେ ଯେଉଁ ମଜା ଅଛି ତାହା ନିୟମିତ ପରୀକ୍ଷାରେ ନାହିଁ । ତେବେ ଢାଲିଙ୍କର ପରୀକ୍ଷା ଯେ ଶେଷ ହେବନାହିଁ ତାହା ଜଳଜଳ ହୋଇ ଦେଖାଯାଉଛି । ସବୁ ପ୍ରସଙ୍ଗକୁ ସେ ପରୀକ୍ଷା ଭାବେ ଗ୍ରହଣ କରୁଛନ୍ତି । ଯେମିତି ଜୟଦେବ ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀ ହୋଇ ବିଜୟୀ ହେବାପାଇଁ ତାହା ତାଙ୍କ ନିମନ୍ତେ ଯେପରି ପରୀକ୍ଷା ଥିଲା । ଯେତେସବୁ ଘରୋଇ ପରୀକ୍ଷା ଢାଲି ଦେଇଛନ୍ତି ସବୁଥିରେ ସେ କୃତିତ୍ୱର ସହ ଉନ୍ନୀତ ହୋଇଛନ୍ତି । ତେବେ ମନ୍ତ୍ରୀ ହେବାପାଇଁ ପରୀକ୍ଷାରେ ଢ଼ାଲି କେତେଦୂର ସଫଳ ହେଉଛନ୍ତି ତାହା ଦେଖିବାକୁ ବାକି ରହିଛି । ■

## ବାବାଙ୍କ କରିସ୍ମା

ଏ ଗେରୁଆ ବସ୍ତ୍ର ପିନ୍ଧନ୍ତି । ହାତରେ ବାଡ଼ି ଧରନ୍ତି । ଆଉ ଲମ୍ବା ବାଳ ସହିତ ମୁହଁରେ ନିଶ, ଦାଢ଼ି ବଢ଼ିଯାଇଛି । ଏମିତି ପାଖରୁ ହେଉ କି ଦୂରରୁ ହେଉ ତାଙ୍କୁ ଯିଏ ଦେଖିବ ସିଏ ନିଶ୍ଚିତ ଭାବିବ ଯେ ଜଣେ ବାବା ବୋଲି । କିନ୍ତୁ ଚେହେରା ଓ ବସ୍ତ୍ର ବାବାଙ୍କ ପରି ହୋଇଥିଲେ ମଧ୍ୟ ସେ ପ୍ରକୃତରେ ବାବା ନୁହନ୍ତି । ସେ ହେଉଛନ୍ତି ଭୁବନେଶ୍ୱର ସାଂସଦ ଡକ୍ଟର ପ୍ରସନ୍ନ ପାଟ୍ଟଶାଣୀ । ଏମିତି ବେଳେବେଳେ ତାଙ୍କୁ ଅନେକ ବାବା ବୋଲି ଡାକି ଦିଅନ୍ତି । ଏଥିରେ ପ୍ରସନ୍ନ ପାଟ୍ଟଶାଣୀ ବିରକ୍ତ ମଧ୍ୟ ପ୍ରକାଶ କରିଥା'ନ୍ତି । କେତେକଙ୍କୁ ମଧ୍ୟ ସେ ସିଧାସଳଖ କହିଥା'ନ୍ତି ଯେ, ତମେ ତ ମୋତେ ଭଲ ଭାବେ ଚିହ୍ନିନାହଁ ବାବା ବୋଲି ଡାକୁଛ କାହିଁକି । ଯିଏ

ମୋର ଚିହ୍ନାଲୋକ ସେ ବାବା ଡାକିଲେ ପରବାୟ ନାହିଁ ଆଉ ଯିଏ ଚିହ୍ନା ନୁହନ୍ତି ସେ ବାବା ଡାକିପାରିବେ ନାହିଁ । ଅବଶ୍ୟ ପ୍ରସନ୍ନ ପାଟ୍ଟଶାଣୀଙ୍କ ବାବା ବସ୍ତ୍ର ଆଉ ବାବା ଦାଢ଼ି, ବାଳ ଚେହେରାଟି ହିଁ ସମସ୍ତଙ୍କୁ ଆକର୍ଷିତ କରିଥାଏ । ପ୍ରସନ୍ନ ସେଦିନ ବାଙ୍ଗାଲୋରରୁ ମୁମ୍ବାଇ ଗଲେ । ସେଠାରୁ ଦିଲ୍ଲୀ ଫେରିଲେ ଆଉ ସଙ୍ଗେସଙ୍ଗେ ଭୁବନେଶ୍ୱର ଆସିଲେ । ବିମାନ ବନ୍ଦରରେ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓ ତାଙ୍କୁ ବଲାଙ୍ଗୀର ନେଇଯିବାର ବନ୍ଦୋବସ୍ତ କଲେ । କାରଣ ହେଲା ବଲାଙ୍ଗୀର ପୌର ନିର୍ବାଚନରେ ପ୍ରସନ୍ନ ପାଟଶାଣୀ ବିଜେଡ଼ି ପ୍ରାର୍ଥୀଙ୍କ ପାଇଁ ପ୍ରଚାର କରିବେ । ଗେରୁଆ ବସ୍ତ୍ର ପିନ୍ଧି ପ୍ରସନ୍ନ ପାଟଶାଣୀ ବଲାଙ୍ଗୀରରେ ଭାଷଣ ମାରି ବେଶ୍ ଚକ୍‌ମା ଦେଖାଇଲେ । ତାଙ୍କୁ ଦେଖିବା ପାଇଁ ଲୋକ ଭିଡ଼ ହେଲେ । ଏହା ଦେଖି ଅନଙ୍ଗଙ୍କ ଶତ୍ରୁ କନକ ବର୍ଦ୍ଧନ ସିଂହଦେଓ ଲୁଚିଲୁଚି ବାବାଙ୍କୁ ଫୋନ୍ କଲେ । ପାଟଣାଗଡ଼ ଆସି ତାଙ୍କର ବିଜେପି ପ୍ରାର୍ଥୀଙ୍କ ପାଇଁ ପ୍ରଚାର କରିବାକୁ ପ୍ରସ୍ତାବ ଦେଲେ । ପ୍ରସନ୍ନ ଝୁଂଟିଲା ପରି ହେଲେ । ତା'ପରେ କହିଲେ- ତମ ବିରୋଧରେ କିଛି କହିବି ନାହିଁ । କିନ୍ତୁ ପ୍ରସନ୍ନ ଜାଣି ନଥିଲେ ଯେ, ଟିଟିଲାଗଡ଼ ବିଧାୟକ ଯୋଗେନ୍ଦ୍ର ବେହେରା ହେଉଛନ୍ତି ଅନଙ୍ଗଙ୍କର ଶତ୍ରୁ । ଯୋଗେନ୍ଦ୍ର ଡାକିଲେ ପ୍ରସନ୍ନଙ୍କୁ ପ୍ରଚାର ପାଇଁ । କଚ୍ଛା ଭିଡ଼ି ପ୍ରସନ୍ନ ଟିଟିଲାଗଡ଼ରେ ଯୋଗେନ୍ଦ୍ରଙ୍କ ପ୍ରାର୍ଥୀଙ୍କ ସପକ୍ଷରେ ପ୍ରଚାର କଲେ । ତେବେ ପ୍ରସନ୍ନଙ୍କୁ ସେଠାରେ କେତେକ ପ୍ରଶ୍ନ ମଧ ପଚରାଗଲା । ତା' ଥିଲା- ଏଥର କାହିଁକି ମୁଖ୍ୟମନ୍ତ୍ରୀଙ୍କ ସହିତ ପ୍ରଚାରରେ ସେ ଗଲେନାହିଁ । କ'ଣ ମାଓବାଦୀଙ୍କ ହତ୍ୟା ଧମକୁ ଡରିଯାଇଛନ୍ତି କି ? ପ୍ରସନ୍ନ ତାଙ୍କର ସ୍ୱଭାବ ସୁଲଭ ଢଙ୍ଗରେ ଉ ର ଦେଲେ-ଓଡ଼ିଶାକୁ ନବୀନ ଓ ସେ ଦୁଇଭାଗ କରି ପ୍ରଚାର କରୁଛନ୍ତି । ତେବେ ସେ ଯାହା ହେଉନା କାହିଁକି ପ୍ରସନ୍ନଙ୍କ ପ୍ରଚାରରେ ବିଜେଡ଼ିର ଫାଇଦା ହେଉ କି ନହେଉ କିନ୍ତୁ ବଲାଙ୍ଗୀର ଜିଲାରେ ତାଙ୍କର ଗେରୁଆ ବସ୍ତ୍ର, ଲମ୍ବା ଦାଢ଼ି ଓ ବାଳକୁ ଦେଖିବାକୁ ଦଳମତ ନିର୍ବିଶେଷର ଲୋକ ଜମା ହୋଇଥିଲେ । ସେଠିକିନ୍ତୁ ପ୍ରସନ୍ନ ବୋଲି କେହି ଜାଣୁ ନଥିଲେ । ସମସ୍ତଙ୍କ ପାଟିରେ ବାହାରିପଡୁଥିଲା ବାବା । ସତରେ ପ୍ରସନ୍ନଙ୍କୁ ବାବା ଡାକଟି କୁତୁକୁତୁ ଲାଗୁଛି । ନହେଲେ ଯିଏ ବାବା ଡାକିଲା ତା ମୁଣ୍ଡରେ ପ୍ରସନ୍ନ ବାଡ଼ି ଛୁଆଇଁ ଦେଉନଥା'ନ୍ତେ । ■

## ଠିକ୍‌ନା ଠିକ୍‌ନା



ଯଦି ନିଜେ ଭାଷଣ ଦେଇ ଅନ୍ୟମାନଙ୍କୁ ପଚାରିବ ଠିକ୍‌ନା ଠିକ୍‌ନା ତେବେ ସେ କ୍ଷେତ୍ରରେ କି ଉତର ମିଳିବ । ଏଭଳି ପ୍ରଶ୍ନର ଉତର ଖୋଜିବାକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ଖଣ୍ଡଗିରି ନିକଟରେ ଥିବା ବିଡିଏ କଲୋନୀରେ ରହନ୍ତି ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ପୂର୍ବତନ କେନ୍ଦ୍ର ମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ । ଏମିତି ତ ସେ ଜଣେ ହ୍ୱାଟ ନଟ୍ । ତାଙ୍କ ଘରକୁ ଚାଲିଗଲେ ଗମାଙ୍ଗ ଅନର୍ଗଳ ଭାଷଣ ଦେବେ । ଆଉ ମଝିରେ ମଝିରେ ପଚାରି ଦିଅନ୍ତି ଠିକ୍‌ନା ଠିକ୍‌ନା । ଶୁଣୁଥିବା ଲୋକଟି କିଛି କହିବା ପୂର୍ବରୁ ଗମାଙ୍ଗ ନିଜେ ଯାହା କହୁଛନ୍ତି ତାହା ଠିକ୍ ବୋଲି

କହିଦିଅନ୍ତି । ଅବଶ୍ୟ ନଅ ଥର ସାଂସଦ ହୋଇଥିବା ଗମାଙ୍ଗଙ୍କୁ ଯେ କିଏ ବୋକା ଭାବିବ ତାହା ନୁହେଁ  ସେ ନିଜେ କ'ଣ କୁହନ୍ତି ତାହା ଠିକ୍ ଭାବେ ଜାଣିଥାନ୍ତି। କିନ୍ତୁ ଅନ୍ୟଙ୍କୁ ଠିକ୍‌ନା ଠିକ୍‌ନା କହି ଭକୁଆ ବନାଇଥାନ୍ତି । ଅନେକ କ୍ଷେତ୍ରରେ ଗମାଙ୍ଗଙ୍କୁ ଭକୁଆ ବନାଇବା ପାଇଁ ମଧ୍ୟ ବହୁ ବଡ଼ ବଡ଼ ନେତା ଉଦ୍ୟମ କରିଛନ୍ତି । କିନ୍ତୁ ଗମାଙ୍ଗ ସେମାନଙ୍କୁ ଓଲଟି ବୁଦ୍ଧି ଶିଖାଇଛନ୍ତି । ଗମାଙ୍ଗଙ୍କ ଏହି ଠିକ୍‌ନା ଠିକ୍‌ନା ଫର୍ମୂଲାଟି ତାଙ୍କ ପାଇଁ ଅମୋଘ ଅସ୍ତ୍ର ହୋଇଯାଇଛି । ଯେଉଁମାନେ ଗମାଙ୍ଗଙ୍କ ପାଖରେ ବେଳେବେଳେ ଟିୟୁସନ ହେଉଥିବେ ସେମାନେ ଏହି ଠିକ୍‌ନାଠିକ୍‌ନାର ମହତ୍ୱ  ବୁଝିଥିବେ । ଯାହାହେଲେ ମଧ୍ୟ ଗମାଙ୍ଗଙ୍କୁ ମାନିବାକୁ ପଡିବ । ଏପଟେ ଆଦିବାସୀ ନେତା ସେପଟେ ଦିଲୀ ଠାଣି । ■

## ପ୍ୟାରୀଙ୍କ ଡାର୍ଲିଂ



ପ୍ରାୟ ୧୨ ବର୍ଷ ହେଲାଣି ଆଇଏସ୍ ଚାକିରିରୁ ପ୍ୟାରୀମୋହନ ମହାପାତ୍ର ଅବସର ନେଇସାରିଲେଣି ।  ଏମିତି ଦେଖିଲେ ତାଙ୍କର ବୟସ ପାଖାପାଖି ୬୯ । ଯଦିଓ ରାଜ୍ୟସଭା ସଭ୍ୟ ହୋଇ ଏବଂ ବିଜେଡ଼ିର ସଙ୍ଗଠନ ଦାୟିତ୍ୱ ହାତକୁ ନେଇ ସେ ବେଶ୍ ଚଳଚଂଚଳ ଅଛନ୍ତି କିନ୍ତୁ ସେ ଯେ କଂଚା ଯୁବକ ତାହା ନୁହନ୍ତି । ତେଣୁ ପ୍ୟାରୀଙ୍କ ଡାର୍ଲିଂ ପ୍ରସଙ୍ଗ ଉଠିଲେ ତାଙ୍କର ଯେ କେହି ଡାର୍ଲିଂ ଥିବେ ତାହା କେହି ଭାବିପାରିବେ ନାହିଁ । କିନ୍ତୁ ଏହା ସତ ଯେ ପ୍ୟାରୀମୋହନଙ୍କର ଜଣେ ଡାର୍ଲିଂ ଅଛନ୍ତି  । ଏମିତି ସାଧାରଣରେ  ଯୁବକଟିଏ ଭଲ ପାଉଥିବା ତା'ର ମହିଳା ବାନ୍ଧବୀଙ୍କୁ ଡାର୍ଲିଂ ଡ଼ାକିଥାଏ । ତାହାହେଲେ ପ୍ୟାରୀମୋହନ ମହାପାତ୍ର କ'ଣ କୌଣସି ମହିଳାଙ୍କୁ ଭଲ ପାଉଛନ୍ତି କି ?  ଘଟଣାକୁ ନ ଦେଖିଲେ କେହି ଏହି ପ୍ରଶ୍ନର ଉତର ଦେଇପାରିବେ ନାହିଁ । ପ୍ୟାରୀମୋହନ ମହାପାତ୍ରଙ୍କ ଝିଅର ଝିଅ ମାନେ ନାତୁଣୀ ହେଉଛି ତାଙ୍କର ଡାର୍ଲିଂ । ସେ ମୁମ୍ବାଇରେ ରହେ । ଯେତେବେଳେ ଭୁବନେଶ୍ୱର ଆସେ ସେତେବେଳେ ପ୍ୟାରୀଙ୍କ ଗୋଡ଼ ତଳେ ଲାଗେନାହିଁ । ଏମିତି କି ତାଙ୍କର ସମସ୍ତ କାର୍ଯ୍ୟକ୍ରମକୁ ସେ ବାତିଲ କରିଦେଇ ନାତୁଣୀ ସହିତ  ସମୟ ବିତାଇଥାନ୍ତି । ଏମିତି ତ ନାତୁଣୀ  ସେତେବେଳେ ହୋଇଯାଏ ତାଙ୍କ ପାଇଁ ଡାର୍ଲିଂ । ଶୟନେ ଶପନେ ପ୍ୟାରୀଙ୍କର ନାତୁଣୀ କଥା ମନେ ପଡ଼େ । ଆଉ ନାତୁଣୀକି ନେଇ ସେ ସମୟ ବେଶ୍ ଭଲରେ କଟାଇଥା'ନ୍ତି । ଯାହାହେଲେବି ରାଜନୀତିରେ ବେଳେବେଳେ ବ୍ରେକ୍‌ର ଆବଶ୍ୟକତା ରହିଥାଏ । ଏହା ହେଲେ ଯାଇ ଟେନ୍‌ସନ କମିଥାଏ ଆଉ ସ୍ୱାସ୍ଥ୍ୟ ଭଲ ରହେ । ପ୍ୟାରୀମୋହନଙ୍କର ବ୍ରେକ ହେଉଛି ତାଙ୍କ ଡାର୍ଲିଂ  । ଯେତେ ବଡ଼ ମିଟିଂ ଥାଉପଛେ ଡାର୍ଲିଂ ପାଇଁ ପ୍ୟାରୀମୋହନ ସେସବୁକୁ ବାତିଲ କରିଦେଇଥା'ନ୍ତି । ମାନିବାକୁ ପଡ଼ିବ ପ୍ୟରୀମୋନହନଙ୍କ ଡାର୍ଲିଂ ପ୍ରୀତିକୁ  । ■



# ବାବା ବନାମ ବାବା

ଓଡ଼ିଶା ରାଜନୀତିରେ ଯଦି କାହାକୁ ବାବାବୋଲି କୁହାଯାଏ ତେବେ ଜଣଙ୍କ ନାମ ସମସ୍ତଙ୍କ ମୁହଁକୁ ଆପେ ଆପେ ଚାଲିଆସେ । ସେ ହେଲେ ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀ । ଭୁବନେଶ୍ୱର ଲୋକସଭା ଆସନରୁ ସେ ବିଜେଡ଼ି ଟିକେଟରେ ନିର୍ବାଚିତ ହୋଇଛନ୍ତି । ଗେରୁଆ ବସ୍ତ୍ର ସାଙ୍ଗକୁ ମୁହଁରେ ଦାଢ଼ି, ମୁଣ୍ଡରେ ଲମ୍ବା ବାଳ ଆଉ ହାତରେ ବାଡ଼ି ହିଁ ପ୍ରସନ୍ନ କୁମାର ପାଟଶାଣୀଙ୍କୁ ବାବା କରିଦେଇଛି । ଏମିତି ତାଙ୍କୁ ଏବେ ପ୍ରାୟ ଉଣାଅଧିକେ ସମସ୍ତେ ବାବା ବୋଲି ଡାକିଲେଣି । ବାବା ଡାକ ଶୁଣି ପ୍ରସନ୍ନଙ୍କ ମନରେ ପ୍ରେମ ଆସିଯାଏ । ସତେଯେମିତି ସେ ଜଣେ ବାବା ଆଉ ତାଙ୍କଠାରୁ ଚେଲାମାନେ ଦୀକ୍ଷା ନେବେ । ସେଦିନ କିନ୍ତୁ ବାବା ପ୍ରସନ୍ନ ପାଟଶାଣୀ ଆଉ ଜଣେ ବାବାଙ୍କ ସହିତ ଦୀର୍ଘ ସମୟ ଧରି ଗପି ଚାଲିଥା'ନ୍ତି । ବୁଝୁବୁଝୁ ଜଣାପଡ଼ିଲା ସେହି ବାବାଙ୍କ ନାମ ହେଉଛି ତାରେଣୀ ବାବା । କୁଆଡ଼େ ନେତାମାନଙ୍କର ଉତ୍‌ଥାନ ପତନ ସମ୍ପର୍କରେଏହି ବାବା ଭବିଷ୍ୟବାଣୀ କରିଥା'ନ୍ତି । କେବଳ ସେତିକି ନୁହେଁ ରାଜନୀତିରେ ଆଦୌ ଅଭିଜ୍ଞତା ନଥିବା ବ୍ୟକ୍ତିଙ୍କୁ ମଧ ସେ ରାତାରାତି ନେତା କରିଦିଅନ୍ତି ଆଉ ନିର୍ବାଚନ ଲଢ଼ିବା ପାଇଁ ଟିକେଟ ଦେବାର ବନ୍ଦୋବସ୍ତ ମଧ ସେ କରିଦିଅନ୍ତି । । ଏହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ପଟ୍ଟାମୁଣ୍ଡାଇ ବିଧାୟକ କିଶୋର ଚନ୍ଦ୍ର ତରାଇ । ବାବା ତାରେଣୀ ନଥିଲେ କିଶୋର ପଟ୍ଟାମୁଣ୍ଡାଇ ବିଧାୟକ ହୋଇପାରିନଥାନ୍ତେ । ବାବା ତାରେଣୀ ବାବା ପାଟଶାଣୀଙ୍କର ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଚାହିଁଲେ । କହିଲେ ଆଗକୁ ଆଗକୁ ଭଲ ଫଳ ମିଳିବ । ଏବେ ଯାହା ଅଛ ଆଗକୁ ସେଥିରେ ପଦୋନ୍ନତି ଘଟିବ । ପାଖକୁ କ୍ଷମତା ଆସିବ । ଭୁବନେଶ୍ୱର ନିର୍ବାଚନମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତା କଲେ ବିଜୟ ସୁନିଶ୍ଚିତ । ବାବାମାନେ ସତ କି ମିଛ କଥା କହନ୍ତି ତାହା ପ୍ରସନ୍ନ ପାଟଶାଣୀ ନିଜେ ବାବା ହୋଇଥିବାରୁ ଭଲ ରୂପେ ଜାଣିଛନ୍ତି । ଏହା ସତ୍ତ୍ୱେ ତାରେଣୀବାବା ଯେତେବେଳେ କହିଦେଲେ ଆଗକୁ ପଦ ମିଳିବ ବୋଲି ସେତେବେଳେ ସେଠାରେ ଥିବା ପ୍ରସନ୍ନଙ୍କ କିଛି ସମସର୍ଥକଙ୍କ ମୁହଁରେ ହସ ଖେଳିଗଲା । କିଏ ତ କହିଲା ଏଥର ବାବା ଲୋକସଭାକୁ ଗଲେ ମନ୍ତ୍ରୀ ଚୌକି ଥୁଆ । ଆଉ କିଏ କହିଲା ଯାହାହେଲେ ମଧ ନାଲିବତୀ ଗାଡ଼ି ବାବାଙ୍କୁ ମିଳିବ । ଏହାପରେ ତାରେଣୀ ବାବାଙ୍କ ବିଦାକୀ କଥା ଆସିଲା । ବାବା କହିଲେ ପାଟକୁରା ବିଧାୟକ ଅତନୁ ସବ୍ୟସାଚୀ ହଜାରେ ଲୋକ ଭୋଜନ କରିବା ପାଇଁ ପରିବା ଡାଲି ଦେଇଛନ୍ତି । ତମକୁ ଚାଉଳ ଦେବାକୁ ପଡ଼ିବ । ପ୍ରସନ୍ନ ବାବା ତୁରନ୍ତ ରାଜି ହୋଇଗଲେ । ମାନିବାକୁ ପଡ଼ିବ ତାରେଣୀ ବାବାଙ୍କୁ । ଯଦି ପ୍ରସନ୍ନ ବାବାଙ୍କୁ ତାରେଣୀ ବାବା ତାଙ୍କର ଭବିଷ୍ୟତ ସମ୍ପର୍କରେ ସୂଚନା ଦେଇପାରୁଛନ୍ତି ତେବେ ପ୍ରସନ୍ନ ବାବା ତାଙ୍କ ଠାରୁ ସେସମ୍ପର୍କରେ ମଧ ଦୀକ୍ଷା ନେଇ ଶିକ୍ଷା ଲାଭ କରିବା ଉଚିତ୍ । ଏହା ହୋଇଗଲେ ପ୍ରସନ୍ନଙ୍କ ପଛରେ ଲୋକ ଲାଖିଯିବେ । ଏବେ ଦେଖିବା ପ୍ରସନ୍ନ କେବେ ତାରେଣୀବାବା ହେଉଛନ୍ତି । ■

# ବସନ୍ତ ଓ ପାଂଚତାରକା ହୋଟେଲ



କଂଗ୍ରେସ ନେତା ବସନ୍ତ ବିଶ୍ୱାଳଙ୍କ କଥାବାର୍ତ୍ତା ଯେମିତି ବେଖାତିର ଥିଲା ସେହିପରି ଅତିଥି ସେବାରେ ମଧ୍ୟ ଅର୍ଥବ୍ୟୟ କରିବାରେ ତାଙ୍କର ବି କାର୍ପଣ୍ୟ ନଥିଲା । ଏମିତି ଥରେ ୧୦ ଜଣ କଂଗ୍ରେସ ନେତା ଦିଲ୍ଲୀ ଯାଇଥିଲେ । ବସନ୍ତ ବିଶ୍ୱାଳ ସେମାନଙ୍କ ପାଇଁ ରହିବା, ଖାଇବା ଓ ବୁଲାବୁଲି କରିବାର ସବୁ ପ୍ରକାର ବନ୍ଦୋବସ୍ତ କରିଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏହି ନେତାମାନେ ଓଡ଼ିଶା ନିବାସରେ ରହୁଥିଲେ । ହଠାତ୍ ବସନ୍ତ ବିଶ୍ୱାଳ ଦିଲ୍ଲୀରେ ପହଂଚିଲେ ଏବଂ ଓଡ଼ିଶା ଭବନରେ ରହିଲେ । ଏହି ସମୟରେ କଂଗ୍ରେସ ନେତାମାନେ ତାଙ୍କୁ ସାକ୍ଷାତ କଲେ । ବସନ୍ତ ବିଶ୍ୱାଳଙ୍କର ପ୍ରଥମ ପ୍ରଶ୍ନ ସେମାନଙ୍କ ପ୍ରତି ଥିଲା- କେଉଁଠି ରହୁଛ । ଉତର ମିଳିଥିଲା- ଓଡ଼ିଶା ନିବାସରେ । ସଙ୍ଗେସଙ୍ଗେ ବସନ୍ତ ବିଶ୍ୱାଳ ଚିହିଁକି ଉଠିଲେ । କହିଲେ- ପାଂଚତାରକା ହୋଟେଲରେ କାହିଁକି ରହିଲ ନାହିଁ । ଟଙ୍କା ତ ମୁଁ ଦେଇଥା'ନ୍ତି ତମକୁ ବାଧିଲା କାହିଁକି । ତା'ପରେ ପଚାରିଲେ- ଗାଡ଼ି ଅଛି ନା ନାହିଁ । ଉତର ମିଳିଲା- ଯେତେବେଳେ ଦରକାର ହେବ ଗାଡ଼ି ଭଡ଼ାରେ ନେବୁ । ପୁଣି ବସନ୍ତ ବିଶ୍ୱାଳ ରାଗିଗଲେ । କହିଲେ- କେତେଜଣ ଆସିଛ । ଉତର ମିଳିଲା- ୧୦ ଜଣ । ଜଣଙ୍କୁ ଗୋଟିଏ ଲେଖାଏଁ ଗାଡ଼ି ରଖ ଏବଂ ଯିବା ପର୍ଯ୍ୟନ୍ତ ଗାଡ଼ି ସେମିତି ରହିଥିବ । ବସନ୍ତ ବିଶ୍ୱାଳଙ୍କର ଏଭଳି ମହନୀୟତା କଂଗ୍ରେସ ନେତାମାନେ ଦେଖି ନଥିଲେ । ସମସ୍ତେ ଆଚମ୍ବିତ ହୋଇଗଲେ । କାହିଁ ପାଂଚତାରକା ହୋଟେଲ ଆଉ କାହିଁ ଯେତେଦିନ ପର୍ଯ୍ୟନ୍ତ ଦିଲ୍ଲୀରେ ରହିବ ଜଣଙ୍କୁ ଗୋଟିଏ ଲେଖାଏଁ ଗାଡ଼ି । ବସନ୍ତ ବିଶ୍ୱାଳଙ୍କର ଏହି ମହନୀୟତା କେବଳ ଯେ କଂଗ୍ରେସ ନେତାଙ୍କ ପାଇଁ ଥିଲା ତାହା ନୁହେଁ । ଯେକୌଣସି ଲୋକଙ୍କୁ ସେ କଥା ଦେଇଥିବେ ତାହା ହିଁ ସେ ପୂରଣ କରୁଥିଲେ । ଅବଶ୍ୟ ବସନ୍ତ ବିଶ୍ୱାଳ ଏବେ ଆଉ ନାହାନ୍ତି । କିନ୍ତୁ ତାଙ୍କ ଏହି ମହନୀୟତାକୁ ନେଇ ସମୟେ ସମୟେ ରାଜନୀତି ମହଲରେ ହେଉଛି ଚର୍ଚ୍ଚା । ■



# ତରତର ନେତା

ଏମିତି ଓଡ଼ିଆରେ ଏକ ପ୍ରବାଦ ଅଛି ଯେ ଚାଷ ତରତର ବାଣିଜ୍ୟ ମଠ । କିନ୍ତୁ ରାଜନୀତି ଯେ ତରତର ତାହା ଦେଖିବାକୁ ଆମକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ଆମେ ଏବେ ଯିବା ରାଜ୍ୟ ବିଜେପି ସଭାପତି ଜୁଏଲ ଓରାମଙ୍କ ପାଖକୁ । ଏମିତି ଜୁଏଲ ତିନି ଥର ରାଜ୍ୟ ବିଜେପି ସଭାପତି । ପୁଣି କେନ୍ଦ୍ରରେ ବି କ୍ୟାବିନେଟ୍ ମନ୍ତ୍ରୀ ଥିଲେ । ସଭାହେଉ କିମ୍ବା ରାଜନୈତିକ ନିଷ୍ପତି ହେଉ ସବୁଠାରେ ଜୁଏଲଙ୍କୁ ତରତର ହେଉଥିବାର ଦେଖିବାକୁ ମିଳେ । ମାନେ ସବୁକିଛି

ତୁରନ୍ତ ହେବ ବୋଲି ଜୁଏଲ ଭାବିନିଅନ୍ତି । ଅବଶ୍ୟ ଜୁଏଲଙ୍କର ଏହି ତରତର ଯେ କର୍ମୀଙ୍କ ଉପରେ ଖରାପ ପ୍ରଭାବ ପକାଉଛି ତାହାନୁହେଁ । ବରଂ କର୍ମୀମାନେ ଉତ୍ସାହିତ ହେଉଛନ୍ତି । ସଭା ଯଦି ଆରମ୍ଭ ହେଲା ଆଉ ଯଦି ସେହି ସଭାରେ ଜୁଏଲ ଅତିଥି ଥାଆନ୍ତି ତେବେ ସଭା କିପରି ଶୀଘ୍ର ସରିବ ସେଥିପାଇଁ ସେ ତରତର ହୁଅନ୍ତି । ତେବେ ଜୁଏଲଙ୍କର ଏମିତି ଅନେକ ଗୁଣ ଅଛି ଯାହାକୁ ନେଇ କେବଳ ବିଜେପି କର୍ମୀ ନୁହଁନ୍ତି ଦଳମତ ନିର୍ବିଶେଷରେ ରାଜନୀତି ମହଲରେ ଚର୍ଚ୍ଚା ବି ହୁଏ । ଜୁଏଲ କେନ୍ଦ୍ର ମନ୍ତ୍ରୀ ଥାଆନ୍ତୁ କି ବିଜେପି ରାଜ୍ୟ ସଭାପତି ଥାଆନ୍ତୁ କି କେନ୍ଦ୍ର ବିଜେପି ଉପସଭାପତି ଥାଆନ୍ତୁ ସେଥିରେ କିଛି ଯାଏଆସେ ନାହିଁ । ଖାଇବାରେ ତାଙ୍କର କିଛି ବାଛବିଚାର ନଥାଏ । ଯେତେବେଳେ ଯାହା ମିଳିଲା ତାହା ଚଳିବ । ତେବେ ଆଇଁଷ ଟିକିଏ ହେଲେ ଭଲ । ପୁଣି ସ୍କୁଲ ବାରଣ୍ଡାରେ ହେଲେ ମଧ ଶୋଇଲେ ବି ତାଙ୍କର କିଛି ଅସୁବିଧା ନାହିଁ । ସଙ୍ଗଠନ ସହିତ ନିଜକୁ ସାମିଲ କରିଦେବା ପାଇଁ ସେ ସବୁବେଳେ ଚାହାନ୍ତି । ତେବେ ଏ ସବୁ ଅପେକ୍ଷା ତାଙ୍କର ତରତରିଆ ଗୁଣକୁ ନେଇ ବେଶ୍ ଚର୍ଚ୍ଚା ହୁଏ । ■

## ଓକିଲ ଗମାଙ୍ଗ



ଏ ହେଲେ ଗିରିଧର ଗମାଙ୍ଗ । ଗୋଟିଏ ସମୟରେ ତାଙ୍କର ପରିଚୟ ଥିଲା ଶିକ୍ଷକ । ଏବେ ତାଙ୍କର ଏହି ପରିଚୟକୁ ସମସ୍ତେ ଭୁଲିଗଲେଣି । କୋରାପୁଟ ସାଂସଦ ହୋଇଗଲା ତାଙ୍କର ପରିଚୟ । ପୁଣି ୯ ମାସ ଓଡ଼ିଶାର ସେ ମୁଖ୍ୟମନ୍ତ୍ରୀ ହେଲେ । ଏବେ ଆଉ ଗିରିଧର ଲୋକପ୍ରତିନିଧି ନାହାନ୍ତି । ଏମିତି ତ ତାଙ୍କର ସଙ୍ଗୀତ ପ୍ରୀତି ବହୁ ଅଧିକ । ତେବେ ତାଙ୍କର ଯୋଗ୍ୟତା ସହିତ ଓକିଲ ଯୋଡ଼ି ହୋଇ ନଥିଲା । ନାଲକୋକୁ ଘରୋଇକରଣ କରିବା ପାଇଁ ବାଜପେୟୀ ସରକାର ଯେତେବେଳେ ନିଷ୍ପତି ନେଲେ ସେତେବେଳେ ଗିରିଧର କଟକ ହାଇକୋର୍ଟରେ ପିଆଇଏଲ୍ ମୋକଦମାଟିଏ କରିଥିଲେ । ଅବଶ୍ୟ କଂଗ୍ରେସ ସରକାର କ୍ଷମତାକୁ ଆସିବା ପରେ ନାଲକୋ ଘରୋଇକରଣ ହେଲାନାହିଁ । କିନ୍ତୁ ଗମାଙ୍ଗଙ୍କ ମୋକଦମା ସେମିତି ଗଡ଼ିଚାଲିଲା ହାଇକୋର୍ଟରେ । ଏହି ମୋକଦମାର ଚୂଡ଼ାନ୍ତ ଶୁଣାଣୀ ହେଲା । ଗମାଙ୍ଗ ଏଥିରେ ନିଜେ ଓକିଲ ହେଲେ । ମୁଖ୍ୟମନ୍ତ୍ରୀ ହେବା ସମୟରେ ସେ ଧଳା ସଫାରୀ ପିନ୍ଧୁଥିଲେ । ମୁଖ୍ୟମନ୍ତ୍ରୀ ପଦରୁ ଚାଲିଯିବା ପରେ ଆଉ ସେହି ସଫାରୀକୁ ସେ ପିନ୍ଧିଲେ ନାହିଁ । ତାକୁ ଗମାଙ୍ଗ ସୁଟ୍‌କେସ୍ ଭିତରେ ସାଇତି ରଖିଥିଲେ । ହାଇକୋର୍ଟକୁ ଯିବାବେଳେ ହଠାତ୍ ମନେପଡ଼ିଲା ଗମାଙ୍ଗଙ୍କର ମୁଖ୍ୟମନ୍ତ୍ରୀ ଥିବା ସମୟରେ ପିନ୍ଧୁଥିବା ସେହି ସଫାରୀ କଥା । ସୁଟ୍‌କେସ୍ ଖୋଲାଗଲା । ଆଉ ସେଥିରେ ଥିବା ସଫାରୀକୁ ବାହାରକଲେ ଗମାଙ୍ଗ । ସଫାରୀ ପିନ୍ଧି ଗମାଙ୍ଗ ଚାଲିଲେ ହାଇକୋର୍ଟରେ ଓକିଲାତି କରିବାକୁ । ମୁଖ୍ୟ ବିଚାରପତିଙ୍କ ନିକଟରେ ଗମାଙ୍ଗ ନାଲକୋ

ଉପରେ ବହୁ ଯୁକ୍ତି ଦର୍ଶାଇଲେ । ହାଇକୋର୍ଟ ବାହାରକୁ ଆସିବା ବେଳକୁ ବହୁ ଓକିଲ ତାଙ୍କ ପାଖକୁ ଆସିଗଲେ । ସେମାନେ ଗମାଙ୍ଗଙ୍କ ସହିତ କଥାବାର୍ତ୍ତା ହେଲେ । ଏମିତି ଅନେକ ବରିଷ୍ଠ ଓକିଲଙ୍କର ମଧ୍ୟ ଗମାଙ୍ଗ ମୁଖ୍ୟମନ୍ତ୍ରୀ ଥିବା ସମୟରେ ସୁସମ୍ପର୍କ ଥିଲା । ହାଇକୋର୍ଟ ଓକିଲମାନେ ଗମାଙ୍ଗଙ୍କ ସହିତ କଥାବାର୍ତ୍ତା ହେବାବେଳକୁ ଗମାଙ୍ଗ କିନ୍ତୁ ସେ ପିନ୍ଧିଥିବା ସଫାରୀକୁ ସେମାନଙ୍କୁ ଦେଖାଇଚାଲିଲେ । ଓକିଲମାନେ କିଛି କହିବା ପୂର୍ବରୁ ଗମାଙ୍ଗଙ୍କ ପାଟିରୁ ବାହାରିଲା କଳା ଭିତରେ ଧଳା । ମାନେ ଓକିଲଙ୍କ କୋର୍ଟ କଳା ଥିବାବେଳେ ଗମାଙ୍ଗ ପିନ୍ଧିଥିବା ସଫାରୀର ରଙ୍ଗ ଧଳା ଥିଲା । ମାନିବାକୁ ପଡ଼ିବ ଗମାଙ୍ଗଙ୍କ ବାକ୍‌ଚାତୁରୀକୁ । ■

## ଦାନୀ ସତ୍ୟନାରାୟଣ



ରାଜନୀତି ହେଉଛି ଏକ ମହାକାଳ ଫଳ । ଯିଏ ରାଜନୀତି କରିଛି ସେ ରାଜନୀତିର ଫଳ କ'ଣ ଜାଣିଛି । ଆଉ ଯିଏ ନ କରିଛି ରାଜନୀତି ତାକୁ ଅତି ସୁନ୍ଦର ଲାଗିବ ନିଶ୍ଚିତ । କିନ୍ତୁ ରାଜନୀତି ଭିତରେ ଥରେ ପଶିଗଲେ ଆଉ ସେଥିରୁ ଯେ ବାହାରିବ ହେବ ନାହିଁ ଏହା ଅନେକ ନେତା ଭଲରୂପେ ଜାଣିଥିବେ । ପୁଣି ରାଜନୀତିରେ ପଶିଗଲେ ଖାଲି ଖର୍ଚ୍ଚ ଆଉ ଖର୍ଚ୍ଚ । ଆଉ ଯାହାର ରୋଜଗାର ନଥିବ ସେ ମଧ୍ୟ କାଙ୍ଗାଳ ହୋଇଯିବ । ଏହା ସତ୍ତ୍ୱେ ସେ ରାଜନୀତିକୁ ଛାଡ଼ିପାରିବ ନାହିଁ । ଏମିତି ଘଟଣା ସମ୍ପର୍କରେ ଜାଣିବା ପାଇଁ ବେଶିବାଟ ଯିବାକୁ ପଡ଼ିବ ନାହିଁ । ଏବେ ଯିବା ରଣପୁର ବିଧାୟକ ସତ୍ୟନାରାୟଣ ପ୍ରଧାନଙ୍କ ପାଖକୁ । ରଣପୁରରୁ ବିଜେଡ଼ି ଟିକଟରେ ବିଧାୟକ ହେବାପରେ କେହି ବି ଭାବିପାରିବେ ନାହିଁ ଯେ ଭୁବନେଶ୍ୱର ଶହୀଦ ନଗରରେ ଥିବା ତାଙ୍କର ବହୁତଳପ୍ରାସାଦକୁ ସେ ବିକ୍ରିକରିଦେବେ ବୋଲି । ପୁଣି ଏହି ବିକ୍ରି ଅନ୍ୟ କୌଣସି କାରଣ ପାଇଁ ନୁହେଁ । ରାଜନୀତି କରି ଯେଉଁ ହାତ ଉଧାରୀ ସେ କରିଥିଲେ ତାହାର ସୁଧମୂଳ ଦିନକୁ ଦିନ ବଢ଼ିଯିବାରୁ ଏଥିରେ ବ୍ୟତିବ୍ୟସ୍ତ ହୋଇ ଋଣ ସୁଝିବା ପାଇଁ ସତ୍ୟନାରାୟଣ ତାଙ୍କର ଶହୀଦନଗର ବାସଭବନକୁ ବିକ୍ରି କରିଦେଲେ । ଏମିତି ଦେଖିଲେ ସତ୍ୟନାରାୟଣଙ୍କ ବୁନିଆଦି ହେଉଛି ଜମିଦାରୀ । ତାଙ୍କ ଜେଜେବାପା ବୈଷ୍ଣବ ପ୍ରଧାନ ନୟାଗଡ଼ ଜିଲ୍ଲାର ମଗରବନ୍ଧ ଗାଁର ବାସିନ୍ଦା ଥିଲେ । ସତେଯେମିତି ସେ ଥିଲେ ଦାନୀ କର୍ଣ୍ଣ । ଏମିତି ଯଦି କେଉଁ ଗାଁରେ ପୋଖରୀ ନଥାଏ ତେବେ ତାଙ୍କୁ ଯଦି କେହି ପ୍ରସ୍ତାବ ଦିଅନ୍ତି ପୋଖରୀ ଖୋଳିବାକୁ ତେବେ ସେହି ଅଂଚଳରେ ଥିବା ତାଙ୍କ ଜମିରେ ସେ ପୋଖରୀ ଖୋଳିଦେଉଥିଲେ । ପ୍ରତି ଗାଁରେ କୂଅ ମଧ୍ୟ ସେ ଖୋଳୁଥିଲେ । ଗାଁରେ ଡାକ୍ତରଖାନାଟିଏ ମଧ୍ୟ ସେ କରିଥିଲେ । ସ୍କୁଲ ବି କରିଥିଲେ । ତାଙ୍କ ଅଂଚଳରେ ଥିବା ଗରିବ ବ୍ରାହ୍ମଣମାନେ ଯେପରି ଭିକ୍ଷାବୃତ୍ତି ନ କରନ୍ତି ସେଥିପାଇଁ ସେମାନଙ୍କୁ ସେ ସମସ୍ତ ଖର୍ଚ୍ଚ ଦେଉଥିଲେ । ସେହିପରି ବର୍ଷାଦିନରେ ଯେତେବେଳେ ଚାଉଳର ଅଭାବ ହୁଏ

ସେତେବେଳେ ସେ ତାଙ୍କର ଧାନ ଘରକୁ ସମସ୍ତଙ୍କ ପାଇଁ ସେ ଖୋଲିଦିଅନ୍ତି । ଆଉ କାହାକୁ ନାହିଁ କରନ୍ତି ନାହିଁ ଧାନ ନିଅ ନାହିଁ ବୋଲି । ଠାକୁର କାମରେ ତାଙ୍କ ଭଣ୍ଡାର କେବେ ବି ବନ୍ଦ ରହେ ନାହିଁ । ସତେଯେମିତି ଭଗବାନଙ୍କର ଏକ ଅବତାର ଥିଲେ ସତ୍ୟନାରାୟଣଙ୍କ ଜେଜେବାପା ବୈଷ୍ଣବ ପ୍ରଧାନ । ଏମିତି କୁହାଯାଏ ଜେଜେଙ୍କ ଜିନ୍ ନାତିଙ୍କ ରକ୍ତରେ ପ୍ରବାହିତ ହୋଇଥାଏ । ଆଉ ସେଇଥିପାଇଁ ହିଁ ଜେଜେ-ନାତିଙ୍କ ମଧ୍ୟରେ ସମ୍ପର୍କ ଅତୁଟ ହୋଇଯାଇଥାଏ । ସତ୍ୟନାରାୟଣ ସତେଯେମିତି ତାଙ୍କ ଜେଜେବାପା ବୈଷ୍ଣବ ପ୍ରଧାନଙ୍କର ଧର୍ମ ଓ ସମାଜସେବା ମନୋବୃତ୍ତିକୁ ନେଇ ଜନ୍ମ ଗ୍ରହଣ କରିଥିଲେ । ଏମିତି ଗରିବ ପିଲାଙ୍କୁ ସେ ପାଠ ପଢ଼ିଲାବେଳେ ମଧ୍ୟ ଘରୁ ପଇସା ନେଇ ପଢ଼ାଉଥିଲେ । ନୟାଗଡ଼ କଲେଜରୁ ପାଠ ପଢ଼ା ସାରି ସତ୍ୟନାରାୟଣ ବ୍ୟବସାୟ କଲେ । ବ୍ୟବସାୟରୁ କ୍ରମେ ରାଜନୀତିକୁ ଅଜାଣତରେ ସେ ଚାଲିଆସିଲେ । ସବୁ ଠିକ୍‌ଠାକ୍ ଚାଲିଥିଲା । ଯେବେଠାରୁ ସେ ନୟାଗଡ଼ ଏନ୍‌ଏସି ଅଧ୍ୟକ୍ଷ ହେଲେ ସେବେଠାରୁ ତାଙ୍କର ଆରମ୍ଭ ହେଲା ଖର୍ଚ୍ଚ । ଏହି ଖର୍ଚ୍ଚ ଦିନକୁ ଦିନ ବଢ଼ିଚାଲିଲା । ଏମିତି ଜେଜେବାପାଙ୍କ ଅମଳରେ ଯେଉଁ ଜମିବାଡ଼ି ଥିଲା ତାହା ମଧ୍ୟ ବିକ୍ରି ହେବାରେ ଲାଗିଲା । ୨୦୦୯ ନିର୍ବାଚନ ବେଳକୁ ହାତଉଧାରୀ ଏତେ ବଢ଼ିଗଲା ଯେ ସତ୍ୟନାରାୟଣ ସେଥିରେ ଅଣନିଶ୍ୱାସୀ ହୋଇଗଲେ । ଏହା ସତ୍ତ୍ୱେ ସେ ତାଙ୍କର ଧର୍ମ ଓ ସମାଜସେବା କାମରୁ ଦୂରେଇଗଲେ ନାହିଁ । ଦେଉଳକୁ ମୁଖଶାଳା ବଳାଇଗଲାପରି ସତ୍ୟନାରାୟଣଙ୍କର ଅବସ୍ଥା ହେଲା । ମାନେ ଋଣ ବଢ଼ିବଢ଼ି ଚାଲିଲା । ସତ୍ୟନାରାୟଣ ନିଜର କେବେ ପ୍ରଚାର କରନ୍ତି ନାହିଁ । ବିଧାୟକ ହେବାପରେ ସେ ଭାବିଥିଲେ ତାଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଆସିବ ବୋଲି । କିନ୍ତୁ ତାହା ମଧ୍ୟ ହେଲାନାହିଁ । ବରଂ ଖର୍ଚ୍ଚ ବଢ଼ିଚାଲିଲା । ଶେଷରେ ସତ୍ୟନାରାୟଣ ରାଜନୀତି କରି ଋଣ କରିଥିବା ଟଙ୍କାକୁ ସୁଝିବା ପାଇଁ ଭୁବନେଶ୍ୱର ଶହୀଦନଗରରେ ଥିବା ତାଙ୍କ ବହୁତଳ ପ୍ରାସାଦକୁ ବିକ୍ରି କରିଦେଲେ । ଏହାସତ୍ତ୍ୱେ ସବୁ ଋଣ ମଧ୍ୟ ସୁଝିପାରିଲା ନାହିଁ । ସତ୍ୟନାରାୟଣ ପୂର୍ବପରି ମଧ୍ୟ ସମାଜସେବା ଚଳାଇଲେ । ସତ୍ୟନାରୟଣଙ୍କୁ ଯେଉଁ ନିଅଂଟକୁ ସେହି ନିଅଂଟ । ଏ ହେଲା ବିଧାୟକ ହୋଇ ଘର ବିକିଥିବା ଜଣେ ବଧାୟକଙ୍କ ଅନ୍ତରର କଥା । ଏମିତି ଅନେକ ବିଧାୟକଙ୍କର ମଧ୍ୟ ସତ୍ୟନାରାୟଣଙ୍କ ପରି ଅନ୍ତରର କଥା ଲୁଚି ରହିଥିବ । ରାଜନୀତି ନିଶାରେ ଯିଏ ପଡ଼ିଛି ସିଏ ଜାଣିଛି ତାର ସ୍ୱାଦ କ'ଣ । ଆଉ ଏହାର ଉଦାହରଣ ହେଉଛନ୍ତି ନିଜେ ସତ୍ୟନାରାୟଣ । ■



